# ଶ୍ରୀ ଜଗନ୍ନାଥ ତତ୍ତ୍ୱ



ଡ଼ଃ. ଗୋପୀନାଥ ମହାପାତ୍ର

# ଶ୍ରୀଜଗନ୍ନାଥ ତତ୍ତ୍ୱ

ଲେଖକ

**ଡ. ଗୋପୀନାଥ ମହାପାତ୍ର**

ଏମ୍. ଏ., ପିଏଚ୍. ଡ଼ି.

ମୁଖ୍ୟ ଅଧ୍ୟାପକ, ସଂସ୍କୃତ ବିଭାଗ, ପତ୍ର ବିନିମୟ ପାଠ୍ୟକ୍ରମ

ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର-୪

ନାଳନ୍ଦା

ବିନୋଦବିହାରୀ, କଟକ-୨

# ଶ୍ରୀଜଗନ୍ନାଥ ତତ୍ତ୍ୱ

ପ୍ରକାଶକ :
**ନାଳନ୍ଦା**
ବିନୋଦବିହାରୀ, କଟକ-୨

ସ୍ୱତ୍ୱାଧିକାରିଣୀ :
**ଶ୍ରୀମତୀ ନଳିନୀ ମହାପାତ୍ର**
ସାନ୍ତରପୁର ରୋଡ଼, ଭୁବନେଶ୍ୱର-୨

ପ୍ରଥମ ପ୍ରକାଶ : ୧୯୮୯

ମୁଦ୍ରଣ :
**ଲିପିକାର**
ଝାଞ୍ଜିରୀମଙ୍ଗଳା, କଟକ-୯

ମୂଲ୍ୟ : **ପଇଁତିରିଶ ଟଙ୍କା**



# ଉତ୍ସର୍ଗ

"ପିତା ଧର୍ମଃ ପିତା ସ୍ୱର୍ଗଃ
ପିତା ହି ପରମଂ ତପଃ ।
ପିତରି ପ୍ରୀତିମାପନ୍ନେ
ପ୍ରୀୟନ୍ତେ ସର୍ବଦେବତାଃ ॥"

ମୋର ପରମାରାଧ୍ୟ ପିତା, ତଥା ଓଡ଼ିଶା ବାହାରେ ଅଜୀବନ ଜଗନ୍ନାଥ ସଂସ୍କୃତିର ପ୍ରସାରକ ଶ୍ରୀଯୁକ୍ତ ବଂଶୀଧର ମହାପାତ୍ରଙ୍କ ଚରଣାରବିନ୍ଦରେ ମଥା ନତ କରି ଅଶେଷ ପ୍ରେମ ଓ ଭକ୍ତିର ସହ ତାଙ୍କ କରକମଳରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ସମର୍ପିତ ଏହି କ୍ଷୁଦ୍ର ପୁସ୍ତକଟି ଉତ୍ସର୍ଗ କରୁଛି ।

ବିନୀତ
ଗୋପୀନାଥ



# ଶ୍ରୀଜଗନ୍ନାଥ ତତ୍ତ୍ୱମ୍

ସ୍ମାରଂ ସ୍ମାରଂ ତମମଲମୁଦନଂ ଶ୍ରୀଜଗନ୍ନାଥତତ୍ତ୍ୱମ୍
ଧ୍ୟେୟଂ ଧ୍ୟାତଂ ସସରତି ତଦା ଶ୍ରୀଜଗନ୍ନାଥରୂପମ୍ ।
ଚିନ୍ତାଗତ୍ୟେ ଚଳସତି ମନଃ ଦାରୁ ବ୍ରହ୍ମସ୍ୱରୂପମ୍
କ୍ଷେତ୍ରେ ସାକ୍ଷାତ୍କରଣମଚର୍ଣଂ ମୁକ୍ତିମାର୍ଗଂ ପ୍ରମାଣମ୍ ॥ ୧ ॥

ନାସ୍ତି ଦେବୋ ବରଚିତବପୁଃ ଶାବର-ଶ୍ରୀନିବାସଃ
ବୌଦ୍ଧୋମୂଳୋ ନ ଖଳୁ ଭବତି ଜୈନମୂଳୋନ ଚୈବ ।
ମୂଳୋଽସୌ ତୁ ପ୍ରକୃତି-ପୁରୁଷେ ସାଂଖ୍ୟତତ୍ତ୍ୱାଭିଧାନେ
ବେଦାନ୍ତେଷୁ ପ୍ରଥିତପୁରୁଷଃ ବ୍ରହ୍ମତତ୍ତ୍ୱାତ୍ମରୂପଃ ॥ ୨ ॥

ନୀଳାଦ୍ରୌ ନୀଳଜଳଧିତଟେ ନିତ୍ୟବାସଂ ଚକାର
ସାଙ୍ଗଂ ଭଂକ୍ତ୍ୱା ଦ୍ୱିବିଧପୁରୁଷୌ ସୃଷ୍ଟିତୌ ଦର୍ଶନାୟ ।
ଯଦ୍ଭେଦୋକ୍ତଂ ସରସବଚସା ସବ୍ୟସାଚିପ୍ରସଙ୍ଗେ
ଗୀତାୟାଂ ସଃ ପ୍ରକଟିତବପୁଃ ନୀଳଶୈଳାଧିନାଥଃ ॥ ୩ ॥

ଶକ୍ତିସ୍ତସ୍ୟ ପ୍ରକୃତିଜନନୀ ଯୋଗମାୟା ସୁଭଦ୍ରା
ଭଦ୍ରଂଦାତ୍ରୀ ହରପୁରଣୀବା ଲକ୍ଷ୍ମଲକ୍ଷ୍ମ୍ୟାସ୍ତୟୋଃ ।
ବୈଚିତ୍ର୍ୟଂ ଯତ୍ର ସକଳମିଳନଂ ଶୈବସମ୍ଭାରପୂର୍ଣ୍ଣମ୍
ଭିନ୍ନେ ପ୍ରୋକ୍ତେ ଦ୍ୱିବିଧକମଳେ* ବୈଷ୍ଣବ-ଶୈବାମ୍ବିକେ ଚ ॥ ୪ ॥

ଗୋପୀନାଥୋଽସ୍ୟମତିସରଳୋଽଙ୍କୁରକଳ୍ପେ ନିବଦ୍ଧଃ
ନୋ ଜାନେ କିଂ ବିଷୟସକଳଂ ବୁଦ୍ଧିହୀନସ୍ତୁ ମନ୍ଦଃ ।
ଯଲ୍ଲିଖ୍ୟନ୍ତେ ମମ ନ ମନସା ଶ୍ରୀଜଗନ୍ନାଥଦେବଃ
ନିର୍ଦ୍ଦେଶଂ ତଂ ବଦତି ନିତରାଂ ସୁସ୍ୟକାର୍ଯ୍ୟସ୍ୟ କୃତୌ ॥ ୫ ॥

— ଇତି ଶମ୍ —

ବିନମ୍ରଃ ଲେଖକଃ

*ଦ୍ରଷ୍ଟବ୍ୟ—

ଦ୍ୱିବିଧକମଳେ—ଦୁଇ ପ୍ରକାରର 'କମଳା' ଏହି ପୁରୁଷୋତ୍ତମପୀଠରେ ସ୍ୱତନ୍ତ୍ର ଭାବରେ ଅବସ୍ଥାନ କରୁଛନ୍ତି । ଅଥଚ, ଏ ଉଭୟଙ୍କ ବିଭବ ଦେବୀ ସୁଭଦ୍ରାଙ୍କଠାରେ ଏକୀକୃତ ହୋଇଛି । ଏହାହିଁ ବିଚିତ୍ର । ସୁଭଦ୍ରା ଉଭୟଙ୍କର ଶକ୍ତି । ବୈଷ୍ଣବୀ ଓ ଶୈବୀ । ଯଥା:—

୧ । କମଳା = ମହାଲକ୍ଷ୍ମୀ—ବିଷ୍ଣୁ-ଜଗନ୍ନାଥଙ୍କ ଶକ୍ତି = ବୈଷ୍ଣବୀ ।

୨ । କମଳା = ଭୁବନେଶ୍ୱରୀ—ଶିବ-ବଳଭଦ୍ରଙ୍କ ଶକ୍ତି = ଶୈବୀ ।

# କୃତଜ୍ଞତା ସ୍ୱୀକୃତି

ଲମ୍ବା ରାସ୍ତାରେ ବହୁଦୂର ଚାଲି ଚାଲି ପଥିକଟି ଥକି ପଡ଼ିଥାଏ । ପ୍ରଚଣ୍ଡ ଖରା ଅଥବା ପ୍ରବଳ ବର୍ଷା ତା'ର ପଥଶ୍ରମକୁ ଆହୁରି ଦ୍ୱିଗୁଣିତ କରେ । ପଥଶ୍ରାନ୍ତର ପାଦ ଏଣେ ତେଣେ ପଡେ । ସେ ଆଉ ଆଗକୁ ଚାଲିପାରେ ନାହିଁ । ବିଶ୍ରାମପାଇଁ ବ୍ୟାକୁଳ ହୋଇପଡ଼େ । କେଉଁ ବୃକ୍ଷମୂଳରେ ଅବା କୌଣସି ଆଶ୍ରୟ ସ୍ଥଳରେ ବସିଯାଏ କ୍ଷଣିକ ବିଶ୍ରାମପାଇଁ । କ୍ଷଣିକ ବିଶ୍ରାମ ବହୁ କ୍ଷଣରେ ପରିଣତ ହୁଏ । ସେ ଆଉ ନିର୍ଦ୍ଦିଷ୍ଟ ସମୟରେ ଆଗେଇ ପାରେନାହିଁ । କେହି କେହି ସହଯାତ୍ରୀ ତାକୁ ସାହସ ଦିଅନ୍ତି, ଦମ୍ଭ ଦିଅନ୍ତି, ହାତଧରି ଉଠାଇ ଦିଅନ୍ତି, ମନରେ ବଳ ଦିଅନ୍ତି । ସେହି ମନୋବଳରେ ସାମାନ୍ୟ କ୍ଳାନ୍ତି ଦୂର ହୁଏ ; ସେ ପୁଣି ଆଗେଇଯିବାକୁ ଚେଷ୍ଟାକରେ ନିଜର ଗନ୍ତବ୍ୟପଥରେ । ସହଯାତ୍ରୀଙ୍କର ସାହାଯ୍ୟ ତଥା ସହାନୁଭୂତି ଭୁଲିହୁଏନି ଜୀବନସାରା ।

ଯେଉଁ ସହଯାତ୍ରୀ, ବନ୍ଧୁ ଓ ଶୁଭେଚ୍ଛୁମାନଙ୍କର ଶୁଭେଚ୍ଛା ତଥା ସହାନୁଭୂତିକୁ ପାଥେୟକରି ଏହି ଆଲୋଚନା ପଥରେ କିଛିଦୂର ଆଗେଇ ପାରିଲି ସେମାନଙ୍କ ନିକଟରେ ମୁଁ ଚିରଋଣୀ । ପ୍ରଫେସର୍ ଡ. କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ତନ୍ମଧ୍ୟରେ ଅଗ୍ରଗଣ୍ୟ । ଗବେଷଣା ପଥରେ ଆଗେଇଯିବାପାଇଁ ସେ ମହାଶୟଙ୍କର ସଦିଚ୍ଛା ମୋ ମନରେ ଏକାନ୍ତ ଅସୀମ ଶକ୍ତି ସଞ୍ଚାର କରିଅଛି ; ତେଣୁ ସେ ମୋର ପ୍ରଥମ ଧନ୍ୟବାଦର ପାତ୍ର । ପ୍ରଫେସର ଡ. କରୁଣାସାଗର ବେହେରା, ଡ. ବଂଶୀଧର ମହାନ୍ତି, ଡ. ନଟବର ସାମନ୍ତରାୟ, ଡ. କାହ୍ନୁଚରଣ ମିଶ୍ର, ଡ. ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ), ଡ. ହରେକୃଷ୍ଣ ମହତାବ, ଡ. କୁଞ୍ଜବିହାରୀ ତ୍ରିପାଠୀ, ବରେଣ୍ୟ ପ୍ରଫେସର ଡ. ସଦାଶିବ ମିଶ୍ର, ଶ୍ରୀଯୁକ୍ତ ଗିରିଜାଭୂଷଣ ପଟ୍ଟନାୟକ, ବିଶିଷ୍ଟ ଔପନ୍ୟାସିକ ଶ୍ରୀଯୁକ୍ତ ଶୁକଦେବ ସାହୁ, ଅଧ୍ୟାପକ ସଦାଶିବ ପ୍ରହରାଜ, ଡ. ଲିଙ୍ଗରାଜ ଶତପଥୀ ପ୍ରଭୃତି ଓଡ଼ିଶାର ବରେଣ୍ୟ ମନୀଷୀଗଣଙ୍କର ଅକୁଣ୍ଠ ସ୍ନେହ ଓ ସଦିଚ୍ଛା ଫଳରେ ଏ କାର୍ଯ୍ୟରେ ଅଗ୍ରସର ହେବା ମୋ ପକ୍ଷରେ ସମ୍ଭବ ହୋଇଛି; ତେଣୁ ସେମାନଙ୍କୁ ଆନ୍ତରିକ ସମ୍ମାନ ଓ ଧନ୍ୟବାଦ ଜଣାଉଛି । ଏମାନଙ୍କ ବ୍ୟତୀତ ମୋର ଆହୁରି ଅନେକ ବନ୍ଧୁ ଆଲୋଚନା ମାଧ୍ୟମରେ ମୋତେ ଏ ଦିଗରେ ନୂତନ ଆଲୋକ ଦେଇଅଛନ୍ତି । ସେମାନେ ସମସ୍ତେ ମୋର ଧନ୍ୟବାଦାର୍ହ । ସ୍ୱଳ୍ପପରିସର ମଧ୍ୟରେ ସମସ୍ତଙ୍କର ନାମୋଲ୍ଲେଖ କରି ନ ପାରି ମୁଁ ଦୁଃଖିତ ।

ଯେ ଯାହାହେଉ, ଜାଣେନା ମୁଁ ଉଚିତ ମାର୍ଗରେ ଚାଲିଛି କି ନା ! ତଥାପି ଚାଲିଛି । ଗନ୍ତବ୍ୟ ସ୍ଥଳରେ ପହଞ୍ଚିଛି କି ନା ; ତାହା ମଧ୍ୟ କହିପାରିବି ନାହିଁ । କାରଣ, ମୋର ଗନ୍ତବ୍ୟ ସ୍ଥଳ ଅନନ୍ତ ; ସଂକ୍ଷେପରେ କହିଲେ—"ଅବାଂମାନସ ଗୋଚର" । ପାଠକମାନଙ୍କର ତାହା ବିଚାର୍ଯ୍ୟ । ଆଜି ଏତିକରେ ରହିଲି ।

ବିନୟାବନତ
ଗୋପୀନାଥ ମହାପାତ୍ର

ରାମନବମୀ
ତା ୭-୩-୧୯୮୭

# ବିପୁଳା ଚ ପୃଥ୍ୱୀ

## (ନିଜକଥା)

ସଂସ୍କୃତରେ କୁହାଯାଇଛି, 'ନୈକୋ ମୁନିର୍ଯସ୍ୟ ମତଂ ପ୍ରମାଣମ୍'—ଅର୍ଥାତ୍, ସଂସାରରେ ଏପରି କେହି ମୁନି ନାହାନ୍ତି, ଯାହାଙ୍କର ମତ ପୂରାପୂରି ପ୍ରାମାଣିକ ଓ ନିର୍ଦ୍ଦୋଷ । କଥାଟି ବାସ୍ତବିକ୍ ନିଶ୍ଚିତ ସତ୍ୟ । ଅନୁଧ୍ୟାନ ଫଳରେ ଆମେ ଯେତୋଟି ତଥ୍ୟ ଉଦ୍‌ଘାଟନ କରିଛୁ ବୋଲି ହୃଦ୍‌ବୋଧ ହେଲେ ମଧ୍ୟ ତାହା ଯେ ଚିରନ୍ତନ ସତ୍ୟ, ଏହା କୁହାଯାଇ ପାରିବ ନାହିଁ । ନୂତନ ପ୍ରମାଣ ମିଳିଲେ ଏ ପୁସ୍ତକରେ ପ୍ରକାଶିତ ତଥ୍ୟ ମଧ୍ୟ ଯେକୌଣସି ସମୟରେ ବଦଳିଯାଇପାରେ । ଏ ସମ୍ଭାବନା ସବୁବେଳେ ରହିଛି । ତଥାପି ବର୍ତ୍ତମାନ ପରିପ୍ରେକ୍ଷୀରେ ଉଦ୍‌ଘାଟିତ ତଥ୍ୟକୁ ସତ୍ୟ ବୋଲି ଗ୍ରହଣ କରାଯାଇଛି । ଏଥିରେ ଯେ ଭ୍ରମ, ତ୍ରୁଟି, ବିଚ୍ୟୁତି ନାହିଁ ; ଏହା କୁହାଯାଇପାରିବ ନାହିଁ । ପରିବର୍ତ୍ତନ ଓ ସଂଶୋଧନର କ୍ଷେତ୍ର ଏଥିପାଇଁ ସର୍ବଦା ଉନ୍ମୁକ୍ତ ରହିଛି । ଯେଉଁମାନେ ଏଥିରେ ଭବିଷ୍ୟତରେ ସହାୟତା କରିବେ, ସେମାନେ ସର୍ବଦା ଆମର ଧନ୍ୟବାଦାର୍ହ । ସୌଜନ୍ୟ ଭାବରେ ଯଥାର୍ଥ ତ୍ରୁଟି ବିଚ୍ୟୁତିର ସନ୍ଧାନ ଉପଲବ୍ଧ ହେଲେ ଗୁରୁତ୍ୱର ସହିତ ସେଗୁଡ଼ିକର ନିରାକରଣ କରି ପରିଶେଷରେ ପ୍ରକୃତ ତଥ୍ୟ ଉଦ୍‌ଭାସିତ ହୋଇପାରିବ । ଅତଏବ, ସେଭଳି ବରେଣ୍ୟ ସମାଲୋଚକ ଆମର ଅଭିନନ୍ଦନୀୟ । 'ପାଳ ପକାନ୍ତୁ ନିଜକୁ ଉଚ୍ଚ' ମନେକରୁଥିବା ନିନ୍ଦୁକ ସମାଲୋଚକ ସାଧାରଣତଃ ଅନେକ ଦେଖାଯାଆନ୍ତି ; ମାତ୍ର, ପ୍ରକୃତ ଉଦାର ସମାଲୋଚକ ସେମାନଙ୍କରେ କ୍ୱଚିତ୍ ଦେଖାଯାଇଥାନ୍ତି । ଏଭଳି ପରିସ୍ଥିତିରେ ସେହି ତଥ୍ୟାନ୍ୱେଷୀ ଗୁଣଜ୍ଞ ବିଦ୍ୱାନ ସମାଲୋଚକଙ୍କୁ ପ୍ରକୃତ ମାର୍ଗଦର୍ଶକ ଭାବରେ ଗ୍ରହଣ କରାଯାଇଥାଏ । ତା' ନ ହେଲେ—

"ଦୁର୍ଜନଃ ଦୂଷୟତ୍ୟେବ ସତାଂ ଗୁଣିଗଣାନ୍ କ୍ଷଣାତ୍<br>ମଳିନୀ କୁରୁତେ ଧୂମଃ ସର୍ବଥା ବିମଳାମ୍ବରମ୍ ।"

ଅତଏବ, ନିରପେକ୍ଷତା-ଶୂନ୍ୟ ସମାଲୋଚନା ତଥା ସ୍ୱାକଟୂକ୍ତି ପ୍ରକୃତ ସମାଲୋଚନା ନୁହେଁ । ତେଣୁ, ସର୍ବଥା ତ୍ୟାଜ୍ୟ । ମାତ୍ର, ନିରପେକ୍ଷ ପ୍ରାମାଣିକ ଉଦାର ସମାଲୋଚନା ସର୍ବଦା ଲେଖକଙ୍କର କାମ୍ୟ ଓ ଗ୍ରହଣୀୟ । ଏହା ଗବେଷଣାକୁ ପୁଷ୍ଟଳ କରିଥାଏ ଓ ତଥ୍ୟର ଆବିଷ୍କାରରେ ସାହାଯ୍ୟକାରୀ ହୋଇଥାଏ ।

ଜଗନ୍ନାଥଙ୍କ ଉପରେ ପୂର୍ବରୁ ଅନେକ ବରେଣ୍ୟ ଗବେଷକ କାମ କରିସାରିଛନ୍ତି । ସେମାନେ ଜଗନ୍ନାଥଙ୍କର ସ୍ୱରୂପ ଓ ବିଶେଷତ୍ୱ ଆବିଷ୍କାର କରିବାରେ ଗବେଷଣାର ଅନେକ ଦ୍ୱାର ଉନ୍ମୋଚନ କରିଅଛନ୍ତି । ମୁଁ ସେହି ଦ୍ୱାର ଦେଇ ପ୍ରବେଶ କରିବାକୁ

ଚେଷ୍ଟା କରିଛି ମାତ୍ର । ସେଥିପାଇଁ ଡ. ହରେକୃଷ୍ଣ ମହତାବ, ଡ. ବେଣୀମାଧବ ପାଢ଼ୀ, ଡ. କାହ୍ନୁଚରଣ ମିଶ୍ର, 'ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର, ଅଧ୍ୟାପକ ପ୍ରଭାତ ମୁଖାର୍ଜି, ଡ. ଗଙ୍ଗାଚରଣ ତ୍ରିପାଠୀ, ଡ. କୁଲ୍‌କେ, କୁମାରୀ ଏସ୍‌ମାନ୍, ଡ. ଷ୍ଟିଟେନ୍ ଭୋନ୍, ଜେନେରାଲ୍ କନିଂହାମ୍, ପଣ୍ଡିତ ନୀଳକଣ୍ଠ ଦାସ ପ୍ରଭୃତି ଗବେଷକ ତଥା ଏ ଦିଗରେ ମୋର ପୂର୍ବସୂରିଗଣଙ୍କ ନିକଟରେ ମୁଁ ଋଣୀ । ସେଥିପାଇଁ ସେମାନେହିଁ ମୋର ଧନ୍ୟବାଦାର୍ହ । ସେମାନେ ପ୍ରଥମେ ରାସ୍ତା ପରିଷ୍କାର କରିଥିବାରୁ ଏହି କାର୍ଯ୍ୟରେ ପ୍ରବେଶ କରିବା ମୋ ପକ୍ଷରେ ସମ୍ଭବ ହୋଇପାରିଲା; ଏକଥା ସ୍ୱୀକାର କରିବାକୁ ହେବ । ଏଥିପାଇଁ ଯଥାର୍ଥରେ କୁହାଯାଇଛି,—

"ଅଥବା କୃତବାଗ୍‌ଦ୍ୱାରେ ବଂଶେଽସ୍ମିନ୍ ପୂର୍ବସୂରିଭିଃ ।
ମଣୌ ବଜ୍ରସମୁତ୍କୀର୍ଣ୍ଣେ ସୂତ୍ରସ୍ୟେବାସ୍ତି ମେ ଗତିଃ ॥"

(କାଳିଦାସ-ରଘୁବଂଶ—୧/୪)

ସମାଲୋଚନାରେ ମତାନୈକ୍ୟ ଅସମୀଚୀନ ନୁହେଁ । ଏଣୁ ଅନେକ କ୍ଷେତ୍ରରେ ମୋର ପୂର୍ବସୂରିମାନଙ୍କ ସହିତ ମତାନୈକ୍ୟ ରହିଛି । ତଥାପି ସେମାନେ ମୋର ନମସ୍ୟ । କାରଣ, ବ୍ୟକ୍ତି ଓ ତାଙ୍କ ରଚିତ ସମୀକ୍ଷାକୁ ସମାଲୋଚନାବେଳେ ଏକାକାର କରିଦେବା ସର୍ବଥା ଅନୁଚିତ ଓ ଅସୁନ୍ଦର । ବ୍ୟକ୍ତି ଓ ବ୍ୟକ୍ତିତ୍ୱ ତତ୍ତ୍ୱକୃତ ସମାଲୋଚନାଠାରୁ ଭିନ୍ନ । ଏହି ହେତୁରୁ ବ୍ୟକ୍ତି ସର୍ବାଦୌ ନମସ୍ୟ ଓ ପୂଜ୍ୟ ; ମାତ୍ର ତାଙ୍କର ସମୀକ୍ଷା ପରବର୍ତ୍ତୀ ଗବେଷକଙ୍କର ସମାଲୋଚନାର ସମ୍ମୁଖୀନ ହେବାକୁ ବାଧ୍ୟ । ଏହାର କାରଣ ହେଲା, ସିଦ୍ଧାନ୍ତରେ ମତାନୈକ୍ୟ । ସମାଲୋଚନା ଓ ପ୍ରତିସମାଲୋଚନା ନ ହେଲେ ବୌଦ୍ଧିକ ରାଜ୍ୟରେ ଶେଷ ସିଦ୍ଧାନ୍ତରେ ଉପନୀତ ହେବା ଅସମ୍ଭବ । ସେହି ଦୃଷ୍ଟିରୁ ମୁଁ ମତପାର୍ଥକ୍ୟ ହେତୁ କେତେକ ସ୍ଥଳରେ ମୋର ପୂର୍ବବର୍ତ୍ତୀ ବରେଣ୍ୟ ଗବେଷକମାନଙ୍କର ମତାମତକୁ ଖଣ୍ଡନ କରିବାକୁ ଚେଷ୍ଟା କରିଛି ମାତ୍ର । ହେଲେ, ସେମାନଙ୍କ ବ୍ୟକ୍ତିତ୍ୱ ପ୍ରତି ମୋର ଗଭୀର ସମ୍ମାନ ରହିଅଛି । ରାମାନୁଜାଚାର୍ଯ୍ୟ, ଶଙ୍କରାଚାର୍ଯ୍ୟଙ୍କର ଯୁକ୍ତିମାନ ଖଣ୍ଡନ କରିବାକୁ ଚେଷ୍ଟା କରିଥିଲେ ମଧ୍ୟ ତାଙ୍କର ପୂର୍ବସୂରି ଶଙ୍କରାଚାର୍ଯ୍ୟଙ୍କର ପ୍ରତି ଯଥେଷ୍ଟ ସମ୍ମାନ ଥିଲି ଓ ସେ ଶଙ୍କରଙ୍କର ଯୁକ୍ତିଗୁଡ଼ିକ ଗୁରୁତ୍ୱ ଦେଇ ବିଚାରକୁ ନେଇଥିଲେ । ମୁଁ ଏଠାରେ ତାହାହିଁ କରିଛି । ଏହାକୁ ଯଦି ଏକ ବ୍ୟତ୍ୟୟ ବୋଲି ବିଚାର କରାଯାଏ, ତେବେ ସେଥିପାଇଁ କ୍ଷମାଭିକ୍ଷା କରୁଛି ।

ପୁରୀ ନିକଟସ୍ଥ ବୀରନରସିଂହପୁର ନାମକ ଏକ ଶାସନରେ ମୋର ଜନ୍ମ । ଘରେ ମାତାମହୀ ଜଗନ୍ନାଥଙ୍କର ପରମ ଭକ୍ତ । ପିତା ଶ୍ରୀଯୁକ୍ତ ବଂଶୀଧର ମହାପାତ୍ର ଜଗନ୍ନାଥ ଧର୍ମର ଆଜୀବନ ପ୍ରଖ୍ୟାପକ ଓ ପ୍ରଚାରକ । ଗ୍ରାମର ବର୍ଷୀୟାନ୍ ପଣ୍ଡିତଗଣଙ୍କ ମୁଖରେ ଅହରହ ଜଗନ୍ନାଥ ତତ୍ତ୍ୱର ବିଶ୍ଳେଷଣ । ପିଲାଦିନର ଏ ସବୁ ପରିବେଶ ମୋତେ

ଶ୍ରୀଜଗନ୍ନାଥଙ୍କ ବିଷୟରେ ପରବର୍ତ୍ତୀ ଜୀବନରେ ଗବେଷଣାଲାଗି ପ୍ରୋତ୍ସାହିତ କରିଥିଲା । ମାତ୍ର, ଅନୁଭୂତିର ସ୍ୱଳ୍ପତା, ଜ୍ଞାନର ଅପରିପକ୍ୱତା ତଥା ଉଦ୍‌ବିଦ ନିର୍ଦ୍ଦେଶକଙ୍କ ଅଭାବ ହେତୁ ୧୯୬୬ ମସିହାରେ ପ୍ରଥମ ଅଧ୍ୟାପକ ଜୀବନରେ ମୁଁ ଏ ଦିଗରେ ଆଗେଇ ପାରିଲି ନାହିଁ ; ଯଦିଓ ପରେ ବିଧି ନିର୍ଦ୍ଦେଶରେ ସ୍ୱତଃ ହିଁ କିଛି ସମ୍ଭବ ହୋଇଥିଲା ।

ଭୁବନେଶ୍ୱରରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ୧୯୬୭ ମସିହାରେ ସଂସ୍କୃତ ଅଧ୍ୟାପକ ଭାବରେ ଯୋଗ ଦେଲି । ତଥାପି ଏ ଦିଗରେ ମନୋନିବେଶ କରିବାକୁ ବିଧି ନିର୍ଦ୍ଦେଶ ଅନୁକୂଳ ନ ଥିଲା । ବିଭାଗୀୟ ମୁଖ୍ୟ ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କ ନିକଟରେ ଗବେଷଣା କରିବାପାଇଁ ତାଙ୍କର ସ୍ୱୀକୃତି ଭିକ୍ଷା କଲି । ସେତେବେଳେ ସେ ମହାଶୟ ସଂସ୍କୃତ ବିଭାଗର ଅଧ୍ୟକ୍ଷ ଥା'ନ୍ତି । ତାଙ୍କର କାର୍ଯ୍ୟବ୍ୟସ୍ତତା ହେତୁ ସେ ମୋତେ ଗବେଷଣାରେ ସାହାଯ୍ୟ କରିପାରିବେ ନାହିଁ ବୋଲି କହି ଫେରାଇଦେଲେ । ତାଙ୍କଂପରେ ସୁନାମଧନ୍ୟ ଡ. ଅନାମ ଚରଣ ସ୍ୱାଇଁ ସଂସ୍କୃତ ବିଭାଗର ଅଧ୍ୟକ୍ଷ ହେଲେ । ସେ ଜଗନ୍ନାଥତତ୍ତ୍ୱ ଉପରେ ନିବନ୍ଧ ଲୁହନ୍ତି । ଏଣେ, ତାଙ୍କ ଅଧୀନରେ ଆଉ ଜଣେ ଗବେଷଣା କରୁଥା'ନ୍ତି । ବିଭାଗର କାର୍ଯ୍ୟ ତୁଲାଇବା ସହିତ ଡ. ସ୍ୱାଇଁ ସେହି ଗବେଷଣାରେ ବଡ଼ ବ୍ୟସ୍ତ ଥାଆନ୍ତି । ସେ ମୋତେ ଗବେଷଣା କରିବାକୁ ସ୍ୱୀକୃତି ଦେଲେ ସତ ; ମାତ୍ର ମୋତେ ସମୟ ଦେଇପାରିଲେ ନାହିଁ, କି ଉତ୍ସାହ ଦେଇପାରିଲେ ନାହିଁ । ତାଙ୍କ ସହଯୋଗ ବିନା ତାଦୃଶ ବିଷୟାନ୍ତରରେ ଗବେଷଣା କରିବାପାଇଁ ମୋର ମନ ବଳିଲାନାହିଁ; ତେଣୁ ମୁଁ ତାଙ୍କ ଅଧୀନରେ ଗବେଷଣା କଲିନାହିଁ । ଫଳରେ, ସେ ଦୁଃଖିତ ହେଲେ, କ୍ଷୁବ୍ଧ ହେଲେ ଏବଂ ଏଥିପାଇଁ ପରେ ମୋର ଗୁରୁତ୍ୱ ଜୀବନରେ ବହୁତ କଷ୍ଟ ମୋତେ ଭୋଗିବାକୁ ପଡ଼ିଲା । ତାଙ୍କର ସ୍ନେହ ଓ ସଦିଚ୍ଛା ମୁଁ ପାଇବାରେ ସବୁ ପରିସ୍ଥିତିରେ ବଞ୍ଚିତ ହେଲି । ମୋ ପ୍ରତି ବିଶ୍ୱବିଦ୍ୟାଳୟରେ ଅନ୍ୟାୟ କରାଗଲା ବୋଲି ଡ. ମହତାବ ତାଙ୍କର ଚିଠିରେ (ତା ୮-୪-୮୫) ଲେଖିଲେ ଏବଂ ଆହୁରି ଅନେକ ବୁଦ୍ଧିଜୀବୀ ମହଲରୁ ମୁଁ ସେଭଳି ଚିଠି ପାଇଲି । ସମସ୍ତେ ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷଙ୍କୁ ଏ କାର୍ଯ୍ୟଲାଗି ନିନ୍ଦା କରିଥିଲେ । ହେଲେ, ମୁଁ ମୋର ଯୁଗୋପଯୋଗୀ ଯୋଗ୍ୟତା ହୀନତାକୁ ବିଚାର କରୁଥିଲି । ବିଶ୍ୱବିଦ୍ୟାଳୟକୁ ଦୋଷ ଦେଉ ନ ଥିଲି ।

ଯେ ଯାହାହେଉ, ବିଧିର ନିର୍ଦ୍ଦେଶ ଥିଲା ଅନ୍ୟପ୍ରକାର । ମୋତେ ଜଗନ୍ନାଥଙ୍କ ସମ୍ପର୍କରେ ହିଁ ଗବେଷଣା କରିବାକୁ ହେବ ; ଅବାଂମାନସଗୋଚର ଦାରୁବ୍ରହ୍ମଙ୍କର ସ୍ୱରୂପ, ଇତିହାସ ଇତ୍ୟାଦି ଉପରେ ଆଲୋକପାତ କରିବାକୁ ହେବ ; ଏ ସବୁ ଥିଲା ସତେ ଅବା ପ୍ରଭୁଙ୍କର ଇଚ୍ଛା । ସେ ଇଚ୍ଛା ରୋଧ କରିବାକୁ କାହାର ବା ଶକ୍ତି ଅଛି ? ମୁଁ ଯାହା ଅନୁଭବ କରୁଛି, ସେ ସବୁ ଆଲୋଚନା କରି ଗ୍ରନ୍ଥ ଲେଖିବାର ଶକ୍ତି ଏପର୍ଯ୍ୟନ୍ତ ମଧ୍ୟ ମୋର ଆସି ନାହିଁ । ଯାହାସବୁ ଲେଖାଗଲା, ସବୁ କିଛି ପ୍ରଭୁଙ୍କର ନିର୍ଦ୍ଦେଶରେ ହିଁ ଲେଖାଗଲା । ମୋ'ର ବୋଲି କହିବାପାଇଁ ପ୍ରକୃତରେ ଏଥିରେ କିଛି ନାହିଁ । ଯାଉଲା ଦାସ କହିଲା ଭଳି ସତେ ଅବା

'ସେ' କହୁଲାରୁ ମୁଁ ଲେଖିଲି । ଅନ୍ଧବିଶ୍ୱାସ ଭଳି ଲାଗିଲେ ମଧ୍ୟ ଏହା ହୃଦୟର କଥା । ନା' ନ ହେଲେ ମୁଁ କିଏ ; ଆଉ ଜଗନ୍ନାଥ ତତ୍ତ୍ୱ କିଏ ? ଗବେଷଣାପାଇଁ ବିଶ୍ୱବିଦ୍ୟାଳୟ କାର୍ଯ୍ୟରୁ କେବେହେଲେ ଛୁଟି ନେବାକୁ ପଡ଼ିନାହିଁ; କୌଣସି ସଂସ୍ଥାରୁ ଗବେଷଣା ବୃତ୍ତିର ଉପଯୋଗ ହୋଇନାହିଁ ; ଅଥଚ ଜଗନ୍ନାଥଙ୍କ ଉପରେ ଆଜିକୁ କୋଡ଼ିଏ ବର୍ଷ ହେଲା ଗବେଷଣା ଚାଲିଛି ; ଦୁଇଖଣ୍ଡ ବହି (୧.—Land of Vishnu; ୨-Jagannath in the history and religious traditions of Orissa) ଇଂରାଜୀରେ ଲେଖାଯାଇ ଜଗନ୍ନାଥ ତତ୍ତ୍ୱ ବିଶ୍ୱର ବିଭିନ୍ନ ଦେଶରେ ପ୍ରଚାରିତ ହେଉଛି ; ଡେନ୍‌ମାର୍କର କୋପେନ୍ ହେଗେନ୍‌ରେ ଏ ପୁସ୍ତକ ପାଠକଲାପରେ ସେଠାରେ ଜାତୀୟ ସଂଗ୍ରହାଳୟ (National Museum) ତରଫରୁ ଏକ ପ୍ରଦର୍ଶନୀ ଜଗନ୍ନାଥଙ୍କ ଉପରେ ଅନୁଷ୍ଠିତ ହୋଇଯାଇଛି ଓ ସେଠାରୁ ପ୍ରକାଶିତ ଏକ ଚିତ୍ରାଙ୍କିତ ମୁଖପତ୍ର ପୁସ୍ତକରେ ଏହି ଅଧମ ଲେଖକଙ୍କୁ ପ୍ରଶଂସା କରାଯାଇଛି ; ଏସବୁ ଭାବିଲେ ବାସ୍ତବିକ୍ ଆଶ୍ଚର୍ଯ୍ୟ ଲାଗୁଛି । ଜଣାପଡ଼ୁଛି ଯାହା ସବୁ ଲେଖୁଛି, କେବଳ ପ୍ରଭୁଙ୍କର ଇଚ୍ଛାରେ ହିଁ ହେଉଛି । ଏଥିରେ ଅନ୍ୟ କାହାର ହାତ ନାହିଁ ।

(Thesis) 'Land of Vishnu' ଏହି ପୁସ୍ତକଟିର ଜଗନ୍ନାଥ ହିଁ ବସ୍ତୁ ; ଏହି ଆଭାସ ଦିଆଯିବା ସଙ୍ଗେ ସଙ୍ଗେ ସ୍କନ୍ଦ ପୁରାଣର ଉତ୍କଳଖଣ୍ଡ ଉପରେ ସମୀକ୍ଷା କରାଯାଇଛି । ଏଥିରେ ଜଗନ୍ନାଥଙ୍କର ଯାବତୀୟ ବିଷୟ ଆଲୋଚନା କରାଯିବା ସହିତ ସ୍କନ୍ଦ ପୁରାଣର ଉତ୍କଳ ଖଣ୍ଡର ସମସ୍ତ ନିରୂପିତ ହୋଇଛି ଦ୍ୱିତୀୟ ପୁସ୍ତକଟିରେ ଦ୍ୱାଦଶ ଶତାବ୍ଦୀଠାରୁ ଆରମ୍ଭକରି ୧୯୮୦ ପର୍ଯ୍ୟନ୍ତ ଜଗନ୍ନାଥଙ୍କର ଇତିହାସ ଉପରେ ଆଲୋଚନା କରାଯାଇଛି । ବାରଶହ ପୃଷ୍ଠା ସମ୍ବଳିତ ଏହି ଦୁଇଖଣ୍ଡ ପୁସ୍ତକରେ ଜଗନ୍ନାଥଙ୍କ ବିଷୟରେ ଏତିକି ଆଲୋଚନା କରାଯାଇଥିଲେ ମଧ୍ୟ ତାଙ୍କର ଅସଲ ସ୍ୱରୂପ ବିଷୟରେ ସେପରି ବିଶେଷ ଆଲୋଚନା କରାଯାଇ ପାରିନାହିଁ । କାହିଁକି, ଜଗନ୍ନାଥ ହେଉଛନ୍ତି ବସ୍ତୁ ; ଅତଏବ ହିନ୍ଦୁ ଦେବତା ; ଏକଥା ପ୍ରାଞ୍ଜଳଭାବରେ ଏହି ପୁସ୍ତକରେ ଆଲୋଚିତ ହୋଇଛି । ତଥାପି, ଆଲୋଚନାର ଅନ୍ତ ନାହିଁ ! ଏହା ଅନନ୍ତ ଓ ବ୍ୟାପକ ଭବିଷ୍ୟତରେ କେହି 'ସମାନଧର୍ମା' ଗବେଷକ ଏହାକୁ ଆଗେଇ ନେବେ ; ଏହି ଆଶାରେ ରହିଲି ।

ଉତ୍ପତ୍ସ୍ୟତେ ହି ମମ କୋଽପି ସମାନଧର୍ମା
କାଲୋ ହ୍ୟୟଂ ନିରବଧିଃ ବିପୁଲା ଚ ପୃଥ୍ୱୀ" ।। ଭବଭୂତି ।।

ବି ମି ତ
ଲେଖକ
୧-୫-୮୭

# ସୂଚୀ





# ଜଗନ୍ନାଥ ତତ୍ତ୍ୱର ବୈଶିଷ୍ଟ୍ୟ

ଯୁଗେ ଯୁଗେ ଭାରତୀୟ ଧର୍ମ, ଭାରତୀୟ ସଂସ୍କୃତି, ଭାରତୀୟ ବିଚାରଧାରା ସାରା ବିଶ୍ୱରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଆସିଛି । ଏ ସଂସ୍କୃତିର ତୁଳନା ନାହିଁ । ଏହା ଚିରନ୍ତନ ସତ୍ୟର ଏକ ଗମ୍ଭୀର ପରିପ୍ରକାଶ । ଗୋଟିଏ ଉଦ୍ୟାନରେ ଯେପରି ଜାତି ଜାତିକା ଫୁଲ ଫୁଟି ତା'ର ଶୋଭା ବୃଦ୍ଧି କରିଥାଏ, ସେହିପରି ନାନା ଭାବ, ନାନା ଧର୍ମର ଚିନ୍ତାଧାରାକୁ ବିସ୍ତୃତ, ବିଭିନ୍ନ ଓ ଏକୀଭୂତ ଭାବରେ ସାଇତି ରଖି ଭାରତୀୟ ସଂସ୍କୃତିର ବୌଦ୍ଧିକ-ଉଦ୍ୟାନ ଚିରନ୍ତନ ଭାବରେ ଏକ ଅପୂର୍ବ ଶୋଭା ଧାରଣ କରିଛି । ସେଥିପାଇଁ ଏ ଉଦ୍ୟାନ ପ୍ରତି ଭାବୁକଶ୍ରେଣୀ ସର୍ବଦା ଆକୃଷ୍ଟ । ତେଣୁ ସାରାବିଶ୍ୱରେ ଆଜି ଭାରତୀୟ ସଂସ୍କୃତି ଉପରେ ଗବେଷଣା ଅନବରତ ଚାଲିଛି । ବୈଦେଶିକ ଗବେଷକଗଣ ଭାରତୀୟ ସଂସ୍କୃତି ଉପରେ ପର୍ଯ୍ୟାଲୋଚନା କରିବା ଲାଗି ଏହି ଦେଶକୁ ଆସିବାରେ ଲାଗିଛନ୍ତି । କେତେକ ଏଥିପ୍ରତି ଏପରି ଆକୃଷ୍ଟ ହୋଇପଡ଼ୁଛନ୍ତି ଯେ, ନିଜ ନିଜର ଧର୍ମ ପରିହାର କରି ଭାରତୀୟ ଧର୍ମରେ ଦୀକ୍ଷିତ ହେଉଛନ୍ତି । କେତେକ ବୈଦେଶିକ ମୁଣ୍ଡିତ ମସ୍ତକ ହୋଇ ଖୋଳ କରତାଳ ଧରି କୃଷ୍ଣନାମ କୀର୍ତ୍ତନ କରୁଛନ୍ତି । ଶ୍ରୀକୃଷ୍ଣଙ୍କ ପୂଜାସାଧନା କରିବା ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣଙ୍କର ମନ୍ଦିର ମଧ୍ୟ ବିଦେଶରେ ପ୍ରତିଷ୍ଠା କରାଯାଉଛି । କଳିଯୁଗରେ କୃଷ୍ଣଙ୍କର ରୂପାନ୍ତର ପରଂବ୍ରହ୍ମାତ୍ମକ ଦାରୁବ୍ରହ୍ମ ପୁରୁଷୋତ୍ତମଙ୍କ ପାଇଁ ମଧ୍ୟ ବିଦେଶରେ ମନ୍ଦିର ନିର୍ମାଣ ତଥା ବିଗ୍ରହ ପ୍ରତିଷ୍ଠା ଚାଲିଛି । ଆମେରିକା ପ୍ରଭୃତି ସ୍ଥାନରେ ରଥଯାତ୍ରାଦି ଯାତ୍ରାମାନ ଅନୁଷ୍ଠିତ ହେଉଛି । ଓଡ଼ିଆ ନୃତ୍ୟଶିଳ୍ପୀ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ସମ୍ମୁଖରେ ସ୍ଥାପନ କରି ଓଡ଼ିଶୀ ନୃତ୍ୟ ପରିବେଷଣ କରୁଛି । ବିଦେଶରେ ଏହା ବଡ଼ ଉପଭୋଗ୍ୟ ହେଉଛି । ବିଦେଶିନୀମାନେ ଓଡ଼ିଶୀ ନୃତ୍ୟପ୍ରତି ଆକୃଷ୍ଟ ହେଉଛନ୍ତି; ନିଜେ ଓଡ଼ିଶୀ ନୃତ୍ୟ ଶିଖୁଛନ୍ତି ଓ ଜଗନ୍ନାଥଙ୍କୁ ସମ୍ମୁଖରେ ରଖି ତାଙ୍କ ଆଗରେ ନୃତ୍ୟ କରୁଛନ୍ତି । ଏଣୁ କୁହାଯାଇପାରେ, ଭାରତୀୟ ଧାର୍ମିକ ଉଦ୍ୟାନରେ ଜଗନ୍ନାଥ ସଂସ୍କୃତି ହେଉଛି ଗୋଟିଏ ମହା ଆକର୍ଷଣୀୟ ପୁଷ୍ପ; ଆଉ ଓଡ଼ିଶୀ ନୃତ୍ୟ ହେଉଛି ଏହି ପୁଷ୍ପର ଏକ ଚିତ୍ତାକର୍ଷକ ପାଖୁଡ଼ା । କାରଣ, ଶ୍ରୀମନ୍ଦିରର ଦେବଦାସୀ ନୃତ୍ୟରୁ ହିଁ ଆଧୁନିକ ଓଡ଼ିଶୀ-ନୃତ୍ୟର ସୃଷ୍ଟି ।

ସାଧାରଣ ଭାବରେ ବିଗ୍ଭର କଲେ ସନାତନଧର୍ମର କେନ୍ଦ୍ରବିନ୍ଦୁ ହେଉଛି ବେଦାନ୍ତଦର୍ଶନ । ପୁଣି ବେଦାନ୍ତଦର୍ଶନର ପ୍ରଧାନ ବିଭାବ ହେଉଛନ୍ତି 'ବ୍ରହ୍ମ' । ଏହି ବ୍ରହ୍ମତତ୍ତ୍ୱ ରୂପନେଇଛି ଜଗନ୍ନାଥଙ୍କ ରୂପକଳ୍ପରେ । ଅତଏବ, ଦାରୁବ୍ରହ୍ମ-ଜଗନ୍ନାଥ ହୋଇଛନ୍ତି ସନାତନଧର୍ମର ଏକ କେନ୍ଦ୍ରବିନ୍ଦୁ । ତେଣୁ ଆଜି ଅରୂପରେ ସରୂପ ଜଗନ୍ନାଥ ମୂର୍ତ୍ତି ଆକର୍ଷଣ କରିଛି ଅଗଣିତ ଭକ୍ତ ତଥା ଗବେଷକଗଣଙ୍କୁ ।

ଜଗନ୍ନାଥଙ୍କର ଏହି ବୈଚିତ୍ର୍ୟକୁ ଉଦ୍‌ଘାଟନ କରିବାପାଇଁ ପୂର୍ବକାଳରେ ଅବଶ୍ୟ କେହି ସେପରି ଚେଷ୍ଟା କରିନଥିଲେ । ଧର୍ମାଧିକାରୀ ତଥା ଧର୍ମପ୍ରଗ୍ଭରକମାନେ ସେମାନଙ୍କ ନିଜ ନିଜ ଦୃଷ୍ଟିରୁ ତାଙ୍କୁ ସ୍ୱକୀୟ ଗ୍ରନ୍ଥମାନଙ୍କରେ ବର୍ଣ୍ଣନା କରିଗଲେ । କିଏ ତାଙ୍କୁ ପ୍ରଣବରୂପୀ କହିଲେ. ତ କିଏ ଦ୍ୱୈତ ରୂପୀ; ପୁଣି କିଏ ଅଦ୍ୱୈତ ରୂପୀ ତ କିଏ ବିଶିଷ୍ଟାଦ୍ୱୈତ ରୂପୀ । ଏପରି ଭାବରେ ଯିଏ ଯେପରି ଭାବିଲେ ସେପରି ବର୍ଣ୍ଣନା କଲେ । ଏପରିକି ଦେବୀ ସୁଭଦ୍ରାଙ୍କୁ କବି ସାରଳାଦାସ (ବ୍ରହ୍ମା) ପୁରୁଷ ଭାବରେ (୧) ବର୍ଣ୍ଣନା କରିଥିବାବେଳେ ତନ୍ତ୍ର ଯାମଳ ଆଦି ତାନ୍ତ୍ରିକ ଗ୍ରନ୍ଥମାନଙ୍କରେ ଜଗନ୍ନାଥଙ୍କୁ ସ୍ତ୍ରୀରୂପେ (୨) (ଦକ୍ଷିଣକାଳିକା) ବର୍ଣ୍ଣନା କରାଗଲା । ଫଳରେ, ଯେଉଁ ଗୋଷ୍ଠୀର ଗୁରୁ ଜଗନ୍ନାଥଙ୍କୁ ଯେଭଳି ଭାବରେ ବର୍ଣ୍ଣନା କଲେ, ସେହି ଗୋଷ୍ଠୀର ଶିଷ୍ୟମାନେ ତଥା ଭକ୍ତମାନେ ନିର୍ବିଗ୍ଭରରେ ସେଭଳି ଭାବରେ ତାଙ୍କୁ ଗ୍ରହଣ କଲେ । ଏଥିରେ ପ୍ରକୃତ ସତ୍ୟର ଉଦ୍‌ଘାଟନ ପାଇଁ ବାଦାନୁବାଦର ଆବଶ୍ୟକତା ନଥିଲା । ସବୁ ଗୋଷ୍ଠୀର ଲୋକେ ଜଗନ୍ନାଥଙ୍କୁ ନିଜ ଦୃଷ୍ଟିରେ ଗ୍ରହଣ କରି ଭକ୍ତ୍ୟର୍ଘ୍ୟ ପ୍ରଦାନ କରୁଥିଲେ । ସବୁ ଗୋଷ୍ଠୀର ଧର୍ମଯାଜକମାନେ ପୁରୁଷୋତ୍ତମ କ୍ଷେତ୍ରକୁ ଆସି ନିଜ ନିଜର ମଠ ସ୍ଥାପନ କରିଥିଲେ । ଜଗନ୍ନାଥଙ୍କୁ କାଳେ କାଳେ ସନାତନଧର୍ମର ଉପାସ୍ୟଦେବତା ଭାବରେ ଏହିପରି ଗ୍ରହଣ କରାଯାଇଥିଲା । ବିଗ୍ଭରଧାରାରେ ନାନା ଭିନ୍ନତା ମଧ୍ୟରେ ଏକ ଐକ୍ୟ ଭାବ; ଏକ ସନାତନତ୍ୱ ରହିଥିଲା । [ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାନ୍ ତଥୈବ ଭଜାମ୍ୟହମ୍"
॥ ଗୀତା ॥ ]

ମାତ୍ର, ପରେ ଅର୍ଥାତ୍ ଉନବିଂଶ ଶତାବ୍ଦୀ ଓ ବିଂଶ ଶତାବ୍ଦୀରେ ଜଗନ୍ନାଥ ତତ୍ତ୍ୱ ସମ୍ବନ୍ଧରେ ବାଦାନୁବାଦ ବେଶି ଅନୁଭୂତ ହେଲା । ସମାଜରେ ସ୍ୱାଧୀନଚେତା ବ୍ୟକ୍ତିଗଣ ପୂର୍ବର ପ୍ରତିଷ୍ଠିତ ପରଂପରାକୁ ଏତେ ସହଜରେ ମାନିନେଲେ ନାହିଁ । ଏହି ସମୟରେ ସଂସ୍କୃତଶିକ୍ଷାର ପ୍ରସାର ବହୁତ କମିଯାଇଥିଲା । ଗବେଷକମାନେ ସଂସ୍କୃତଗ୍ରନ୍ଥ ତଥା

---

୧ । ସାରଳା ମହାଭାରତ—"ବ୍ରହ୍ମା ବସିବେ ସଙ୍ଗେ ସୁଭଦ୍ରା ରୂପ ହୋଇ" ।
୨ । "ଶ୍ରୀକ୍ଷେତ୍ରେ ତୁ ଜଗନ୍ନାଥଃ ସ୍ୱୟଂ ଦକ୍ଷିଣକାଳିକା" ।

ପରଂପରାରୁ ଏକ କୁସଂସ୍କାର ବୋଲି ବିଗ୍ଭର ନାକ ଟେକୁଥିଲେ । ସମସ୍ତେ ଚାହିଁଲେ ତାଙ୍କୁ ଆଧୁନିକ, ପୁଣି ଅତ୍ୟାଧୁନିକ ହେବାକୁ ଭଗ ପସନ୍ଦ କଲେ । ଫଳରେ ଚଳାଧାରା ମଧ୍ୟ ସେପରି ଆଧୁନିକ ହୋଇପଡ଼ିଲା । ଏହା ଥିଲା ଯୁଗର ଆହ୍ୱାନ । ସଂସ୍କୃତି ଓ ସନାତନ ସଂସ୍କୃତିକୁ ଏକ ମୁଖ୍ୟ ଅଙ୍ଗ ଭାବରେ ଗ୍ରହଣ ନକରି ପ୍ରତ୍ନତତ୍ତ୍ୱ, ନୃତତ୍ତ୍ୱ ଆଦି ଆଧୁନିକ ବିଷୟକୁ ମୁଖ୍ୟାଂଶରେ ନେଇ ଓ ସଂସ୍କୃତି ଗ୍ରନ୍ଥବାର୍ତ୍ତାର ଭାବନାକୁ ଗୌଣ-ଭାବରେ ବିଗ୍ଭର କରିଗ୍ଭଲିଲା ଜଗନ୍ନାଥ ତତ୍ତ୍ୱ ଉପରେ ତର୍କ, ବିତର୍କ, ଗବେଷଣା । ଫଳରେ ପ୍ରତିଷ୍ଠିତ ହେଲା ସମସ୍ୟାବହୁଳ ଜଗନ୍ନାଥ ତତ୍ତ୍ୱ । କିଏ କହିଲା, ଜଗନ୍ନାଥ ମୂଳତଃ ବୌଦ୍ଧ ତ କିଏ କହିଲା ଜୈନ । କିଏ କହିଲା, ଆଦିବାସୀ ଦେବତା ତ କିଏ କହିଲା ଦ୍ରାବିଡ଼ ଦେବତା । ପୁଣି କିଏ ତାଙ୍କୁ ଖ୍ରୀଷ୍ଟୀୟ ଦେବତା ଭାବିଲାନି ତ କିଏ ମୁସଧର୍ମର ଦେବତା ବୋଲି କହିଲା । ଏପରି ବାଦାନୁବାଦ କ୍ରମେ ଘୋରତର ହେଲା । ଯାହେବା ତାଙ୍କାଠାରେ ଆଲୋଚନା କରି ଆଧୁନିକ ଯୁଗରେ ଭାରତୀୟ ଓ ବୈଦେଶିକ ମାନ୍ୟବରମାନେ ନିଜ ନିଜର ମତ ଏଭଳି ବିଚକ୍ଷଣଭାବରେ ପ୍ରଖ୍ୟାପନ କରି ବାହାସ୍ଫୋଟ ମାଇଲେ । ନିଜକୁ ଜଣେ ଜଣେ ବିଖ୍ୟାତ ପଣ୍ଡିତ ଭାବରେ ସମାଜରେ ପ୍ରତିଷ୍ଠା କଲେ । ହେଲେ, ଜଗନ୍ନାଥଙ୍କର ସେବା, ପୂଜା, ବିଧି, ବିଧାନରେ କିଛି ପରିବର୍ତ୍ତନ ହେଲା ନାହିଁ । ବୌଦ୍ଧ, ଜୈନ, ଆଦିବାସୀ, ଖ୍ରୀଷ୍ଟିଆନ ପ୍ରଭୃତି ଜନସମାଜ ଶ୍ରୀମନ୍ଦିର ପ୍ରତି ଆସକ୍ତ ହେଲେ ନାହିଁ । ସିଏ ଯେପରି ଥିଲେ, ସେପରି ରହିଲେ । ଜଗନ୍ନାଥ ମଧ୍ୟ ପୂର୍ବଭଳି ନିଜର ପାରମ୍ପରିକ ରୀତିରେ କାଳଯାପନ କରି ଖାଲି ଚକା ଚକା ଆଖିରେ ମିଟି ମିଟି କରି ଗ୍ଭହିଁରହିଲେ । ସତେ ଅବା ଆଧୁନିକ ପଣ୍ଡିତମାନଙ୍କ ପାଣ୍ଡିତ୍ୟ ପ୍ରଦର୍ଶନର ନାଟକ ଅଭିନୟ ଦେଖି ନିର୍ବିକାର ଭାବରେ ସେ ଦାରୁଭୂତ ମୁରାରି ହୋଇ ବସିରହିଲେ । ("ସ୍ମାରଂ ସ୍ମାରଂ ସ୍ୱଗୁହିଚରିତଂ ଦାରୁଭୂତୋ ମୁରାରିଃ" ।)

ଜଗନ୍ନାଥ ହେଉଛନ୍ତି ନିରାମିଷାଶୀ ବୈଷ୍ଣବ । ମାତ୍ର ଗବେଷକମାନେ ତାଙ୍କୁ ଡାନ୍ତ୍ରିକପଦ୍ଧତିରେ ଆମିଷଭୋଜୀ ବୋଲି ବିଗ୍ଭର କଲେ । ମଦ୍ୟ, ମାଂସ, ମତ୍ସ୍ୟ, ମୁଦ୍ରା ମୈଥୁନ ଆଦିଙ୍କର ସେବାପୂଜାରେ ରହିଛି ବୋଲି ଅର୍ଥକଲେ । ବରିପିଠାକୁ ମାଂସ ବୋଲି କଳ୍ପନା କରାଯିବା ସଙ୍ଗେ ସଙ୍ଗେ ପଇଡ଼ପାଣିକୁ ମଦ୍ୟ ବୋଲି ବିଗ୍ଭରକୁ ନିଆଗଲା । ମାତ୍ର, ଏ ସବୁ ଖାଲି ମନଗଢ଼ା କଥା । ପ୍ରକୃତରେ ଏ ମଧ୍ୟରୁ କେହି ମାଂସ ନୁହେଁ କି ମଦ୍ୟ ନୁହେଁ । ପ୍ରଭୁଙ୍କ ଭୋଗରେ ଆମିଷର ବ୍ୟବସ୍ଥା ମୋଟେ ନାହିଁ । ଏ ସବୁ କେବଳ ମଣ୍ଡନରେ ଆରୋପମାତ୍ର । ଜଣେ ନିରାମିଷାଶୀ, ନୈଷ୍ଠିକ, ଶୁଦ୍ଧ ଚରିତ୍ରର ବ୍ୟକ୍ତିକୁ ମଦ୍ୟପ, ଆମିଷଭୋଜୀ ବୋଲି ଆରୋପକରି କହିଲେ ଯାହା, କଳ୍ପିକ ମହାବିଷ୍ଣୁ ଜଗନ୍ନାଥଙ୍କୁ ସେଭଳି ଚନ୍ତାକଲେ ବି ତାହା । ଏହା ଏକ ଦିଗ୍‌ଭ୍ରମ ଛଡ଼ା ଅନ୍ୟକିଛି ନୁହେଁ । ଅବଶ୍ୟ ପଞ୍ଚମ'କାର ବିଶ୍ୱାସୀ ଅନାଦ୍ରପେକ୍ଷ ତାନ୍ତ୍ରିକମାନେ

ଜଗନ୍ନାଥଙ୍କୁ ସେପରି ସ୍ୱୀକାର କରିଥିଲେ । ପରେ କେତେକ ତାନ୍ତ୍ରିକ ବ୍ୟବସ୍ଥା ତାଙ୍କ ସେବାପୂଜାରେ ଖଞ୍ଜା ଯାଇଥିଲା । ଏହା ବୋଲି ଜଗନ୍ନାଥ ଯେ ମୂଳତଃ ଜଣେ ତାନ୍ତ୍ରିକ ଦେବତା; ଏକଥା କୁହାଯାଇ ପାରିବ ନାହିଁ । ଯେପରିକି; ଜଣେ ଭାରତୀୟର ବେଶ, ପରିଧାନରେ ଇଂରେଜଙ୍କର ପ୍ରଭାବ ପରିଲକ୍ଷିତ ହେଲେ ସେ କଦାପି ଇଂରେଜ ବୋଲି ଗଣାଯାଇ ପାରନ୍ତି ନାହିଁ । ଅତଏବ, ଜଗନ୍ନାଥ ମୂଳତଃ ବିଷ୍ଣୁ ଓ ସବୁବେଳେ ହିଁ ବିଷ୍ଣୁ । କାଳକ୍ରମେ ତାଙ୍କ ଉପରେ ବିଭିନ୍ନ ପ୍ରଭାବ ପଡ଼ିଥିଲେ ମଧ୍ୟ ତାଙ୍କର ମୌଳିକତାରେ କେବେ କିଛି ପରିବର୍ତ୍ତନ ହୋଇନାହିଁ । ଖାଲି ଭାବନାରେ ପରିବର୍ତ୍ତନ ଦେଖାଦେଇଛି ।

ବିଭିନ୍ନ ପ୍ରଭାବର ସନ୍ନିବେଶରେ ଜଗନ୍ନାଥ ସଂସ୍କୃତି ଏକ ମହାନ୍ ଆକାର ଧାରଣ କରିଛି । ସେ ସଂସ୍କୃତିକୁ ତର୍ଜମା କରିବାକୁ ଯାଇ ଗବେଷକମାନେ ବେଳେ ବେଳେ ଏକଦେଶଦର୍ଶୀ ହୋଇପଡ଼ିଛନ୍ତି । ଫଳରେ ଅନ୍ଧମାନଙ୍କର ହସ୍ତୀଦର୍ଶନ ନ୍ୟାୟରେ ଜଗନ୍ନାଥଙ୍କର ମୌଳିକତା ବିଭିନ୍ନ ବିଚିତ୍ର ରୂପନେଇ ତାହା ଉପରେ ଗ୍ରନ୍ଥମାନ ପ୍ରଣୀତ ହୋଇଛି । ବିଶ୍ୱର ପାଠକଶ୍ରେଣୀ ମଧ୍ୟ ବିଭିନ୍ନ ଗ୍ରନ୍ଥର ଆଶ୍ରୟରେ ନାନାଭାଗରେ ମାନସପଟରେ ବିଭାଗୀକୃତ ହୋଇ ଜଗନ୍ନାଥଙ୍କ ଉପରେ ବିଚିତ୍ର ମତମାନ ପୋଷଣ କରିଆସୁଛନ୍ତି । ସେହି ବୈଚିତ୍ର୍ୟର ଆପେକ୍ଷିକ ସମାଧାନ ହିଁ ଏ ଗ୍ରନ୍ଥର ମୁଖ୍ୟ ଆଭିମୁଖ୍ୟ ।

ଜେନେରାଲ୍ କନିଂହାମ୍, ପ୍ରଫେସର୍ ଉଇଲ୍‌ସନ୍, ଡକ୍ଟର ହରେକୃଷ୍ଣ ମହତାବ, ଜେମ୍‌ସ୍ ଫର୍ଗୁସନ, ଫରାସୀ ଗବେଷକ ଲୁଇସ୍ ରେଜ୍‌ଭିନ୍, ଏନ୍ ଏନ୍ ବୋଷ ପ୍ରଭୃତି ବିଦ୍ୱାନ୍‌ଗଣ ଜଗନ୍ନାଥଙ୍କୁ ବୌଦ୍ଧଧର୍ମର ପ୍ରତୀକ ରୂପେ ମାନୁଥିବାବେଳେ ପଣ୍ଡିତ ନୀଳକଣ୍ଠ ଦାସ, ଐତିହାସିକ କେଦାରନାଥ ମହାପାତ୍ର, ପଣ୍ଡିତ ବିନାୟକ ମିଶ୍ର, ପଣ୍ଡିତ ଦୀନାମ୍ବର ଆଚାର୍ଯ୍ୟ ପ୍ରଭୃତି ଗବେଷକଗଣ ତାଙ୍କୁ ଜୈନଧର୍ମର ପ୍ରତୀକ ବୋଲି ଅନୁମାନ କରନ୍ତି । କିନ୍ତୁ ଏହି ଅନୁମାନ କରିବା ମଧ୍ୟରେ ସେମାନେ ସେପରି ଦୃଢ଼ତା ପ୍ରକାଶ କରିପାରି ନାହାନ୍ତି । ଅନୁମାନ ହିଁ ଅନୁମାନର କଥା ହୋଇ ରହିଛି । ପଣ୍ଡିତ ନୀଳକଣ୍ଠ ଦାସତ ଜଗନ୍ନାଥଙ୍କୁ ଜୈନଦେବତା ବୋଲି ସ୍ୱୀକାର କରିବା ସଙ୍ଗେ ସଙ୍ଗେ ପୁଣି ତାଙ୍କୁ ପ୍ରଣବରୂପୀ ଓ ଶବରଦେବତା ବୋଲି ଜ୍ଞାନ କରି ତାଙ୍କର ପ୍ରାଚୀନତା ଯେ ବେବିଲୋନ୍ ସଭ୍ୟତା ସମୟରୁ ଥିଲା ବୋଲି ଅନୁମାନ କରନ୍ତି । (୩) କେଦାରନାଥ ମହାପାତ୍ର ଇନ୍ଦ୍ରଦ୍ୟୁମ୍ନଙ୍କୁ ଖାରବେଳ (୪) ବୋଲି ଗ୍ରହଣ କରି ଜଗନ୍ନାଥଙ୍କୁ ଜୈନ ଦେବତା

---

୩ । ଗୀତାପ୍ରବେଶ—ପଣ୍ଡିତ ନୀଳକଣ୍ଠ ଦାସ —ପୃ: ୨୪୧

୪ । ଭକ୍ତପ୍ରଦୀପ—ଆଶ୍ୱିନ ୧୯୪୨, ତା ୨୧ । ୧୨ । ୩୪ ଇନ୍ଦ୍ରଦ୍ୟୁମ୍ନ କିମ୍ବଦନ୍ତୀର ଐତିହାସିକତା—କେଦାରନାଥ ମହାପାତ୍ର ।

ବୋଲି ବିଗ୍ଭରିବା ସଙ୍ଗେ ସଙ୍ଗେ ପୁଣି ଅନ୍ୟଗ୍ରନ୍ଥରେ ଲକ୍ଷ୍ମୀନାରାୟଣ ମୂର୍ତ୍ତିର ନିମ୍ନ-ଭାଗରେ ଜଗନ୍ନାଥଙ୍କୁ ବସ୍ତୁ (୫) ବୋଲି ଜ୍ଞାନ କରିଛନ୍ତି । ସେ ପୁଣି ଓଡ଼ିଶା ହିଷ୍ଟୋରିକାଲ୍ ରିସର୍ଚ୍ଚ ଜର୍ଣ୍ଣାଲ୍‌ରେ ଥିବା ଏକ ପ୍ରବନ୍ଧରେ ସ୍କନ୍ଦପୁରାଣର ଉତ୍କଳଖଣ୍ଡରେ ବର୍ଣ୍ଣିତ ଇନ୍ଦ୍ରଦ୍ୟୁମ୍ନ ଉପାଖ୍ୟାନର ସମୟ ତ୍ରୟୋଦଶ ଶତକର ପରବର୍ତ୍ତୀ ବୋଲି ବିଗ୍ଭର କରିବାବେଳେ ତାଙ୍କର 'ଶ୍ରୀଜୟଦେବ ଓ ଗୀତ ଗୋବିନ୍ଦ' ପୁସ୍ତକରେ ଉତ୍କଳଖଣ୍ଡ (ସ୍କନ୍ଦପୁରାଣ)ର ସମୟ ଜୟଦେବଙ୍କ ପୂର୍ବବର୍ତ୍ତୀ ବୋଲି ସ୍ୱୀକାର କରିଛନ୍ତି । (୬) ଜୟଦେବଙ୍କ ସମୟ ଦ୍ୱାଦଶ ଶତାବ୍ଦୀ ହୋଇଥିବାରୁ ଉତ୍କଳଖଣ୍ଡର ସମୟ ଏହାର ପୂର୍ବବର୍ତ୍ତୀ; ଅର୍ଥାତ୍ ଏକାଦଶ ବା ଦଶମ ଶତାବ୍ଦୀ ବୋଲି ସେ ଗ୍ରହଣ କରିଛନ୍ତି । ଫଳରେ ନିଜ ମତକୁ ନିଜେ ହିଁ ବିରୋଧ କରିଛନ୍ତି । ଏଭଳି ଦେଖିବସିଲେ ବଡ଼ ବଡ଼ ଗବେଷକ-ମାନେ ମଧ୍ୟ ନିଜ ନିଜ ମତରେ ନିଃସନ୍ଦେହ ନୁହନ୍ତି ।

ବୌଦ୍ଧ ମତବାଦୀ ଗବେଷକମାନେ କିପରି ନିଜ ନିଜର ବିଗ୍ଭରରେ ଜଗନ୍ନାଥଙ୍କର ପ୍ରକୃତ ତଥ୍ୟକୁ ସଠିକ ଭାବରେ ଉଦ୍‌ଘାଟନ କରିପାରିନାହାନ୍ତି, ସେ କଥା ପୂର୍ବରୁ ଅନ୍ୟଏକ ସ୍ୱତନ୍ତ୍ର ଗ୍ରନ୍ଥରେ ଆଲୋଚନା କରାଯାଇଛି । (୭) ତହିଁରେ ସେମାନଙ୍କର ଭ୍ରମ ମଧ୍ୟ ଦର୍ଶାଇ ଦିଆଯାଇଛି । ସେମାନେ ବୌଦ୍ଧ ତ୍ରିରତ୍ନ (ବୁଦ୍ଧ, ଧର୍ମ, ସଂଘ)କୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ସହିତ ଯେଉଁଭଳି ସମାନ ବୋଲି କହି ଯୁକ୍ତି ବାଢ଼ିଛନ୍ତି, ତାହା ବୌଦ୍ଧଧର୍ମାବଲମ୍ବୀ, ବୌଦ୍ଧ ପଣ୍ଡିତମାନଙ୍କ ନିକଟରେ ଯେପରି ହାସ୍ୟାସ୍ପଦ ହୋଇଉଠିଛି, ହିନ୍ଦୁଧର୍ମର ପଣ୍ଡିତମାନଙ୍କ ନିକଟରେ ମଧ୍ୟ ସେହିପରି ଅବାସ୍ତବ ହୋଇପଡ଼ିଛି । ସେମାନେ ଏ ପ୍ରସଙ୍ଗରେ ଯେଉଁ ଯୁକ୍ତିମାନ ଉପସ୍ଥାପିତ କରନ୍ତି, ତାହା ହେଉଛି—

୧—ପୁରାତନ ପାଲି ସାହିତ୍ୟ ଓ ନେପାଳରୁ ମିଳୁଥିବା ତନ୍ତ୍ରସାହିତ୍ୟରେ ବୁଦ୍ଧଙ୍କର ନାମ ମଧ୍ୟରେ 'ଜଗନ୍ନାଥ' ହେଉଛି ଗୋଟିଏ ନାମ ।

୨—ଏଲୋରା ପର୍ବତରେ ଖୋଦିତ ଗୋଟିଏ ବୌଦ୍ଧମୂର୍ତ୍ତିର ନାମ 'ଜଗନ୍ନାଥ' ।

୩—ବୌଦ୍ଧଧର୍ମରେ (ଧର୍ମ) 'ଧମ୍ମ' ନାରୀ ବୋଲି କଳ୍ପିତ ହୁଅନ୍ତି ।

---

୫ । ଶ୍ରୀ ଜୟଦେବ ଓ ଗୀତଗୋବିନ୍ଦ—୧୯୭୩—ପୃ: ୧୪୯

୬ । ଶ୍ରୀ ଜୟଦେବ—ପୃ: ୧୨୩

୭ । The land of Vishnu—Dr. G. Mohapatra—D. K. Publisher—Delhi 1980

୪—ରଥଯାତ୍ରା ବୌଦ୍ଧମୂଳକ ବିଧାନର ଏକ ପ୍ରଧାନ ଅଙ୍ଗ । ଫାହିୟାନଙ୍କ ବର୍ଣ୍ଣିତ ଖୋଟାନ୍‌ରେ ଅନୁଷ୍ଠିତ ରଥଯାତ୍ରା ସହିତ ଏହା ପୂରାପୂରି ମେଳ ଖାଉଛି । ତେଣୁ ଜଗନ୍ନାଥ ଧର୍ମ ବୌଦ୍ଧଧର୍ମର ଅଂଶବିଶେଷ; ଏହା ନିଃସନ୍ଦେହ । ( ୮ )

ଏହି ଯୁକ୍ତିଗୁଡ଼ିକୁ ଟିକିଏ ଚିନ୍ତାକରି ଦେଖିଲେ ଜଣାଯାଏ, ଯେ ଜଗନ୍ନାଥ ଧର୍ମ ବୌଦ୍ଧଧର୍ମର ଏକ ଅଂଶବିଶେଷ ନୁହେଁ । ପୁଣି ଜଗନ୍ନାଥ ଧର୍ମ ଏକ ସ୍ୱତନ୍ତ୍ର ଧର୍ମ ମଧ୍ୟ ନୁହେଁ । ପାଲି ସାହିତ୍ୟରେ ବୁଦ୍ଧଙ୍କର ନାମ 'ଜଗନ୍ନାଥ' ବୋଲି ରଖାଯିବା ସହିତ ପୁରୀର ପ୍ରତିଷ୍ଠିତ ଜଗନ୍ନାଥଙ୍କର କୌଣସି ସମ୍ପର୍କ ନାହିଁ । 'ଏଥିରେ ଥିବା ଜଗନ୍ନାଥ ପଦଟି ହେଉଛି ଏକ ବିଶେଷଣାତ୍ମକ ପଦ । ଯେପରି ଦେଖିଲେ ବିଷ୍ଣୁ ପୁରାଣରେ ଶ୍ରୀକୃଷ୍ଣଙ୍କୁ ଓ ଶିବ ପୁରାଣରେ ଶିବଙ୍କୁ ମଧ୍ୟ ଜଗନ୍ନାଥ ବୋଲି କୁହାଯାଇଛି । ଶିବପୁରାଣ ମତରେ ଶିବ ହେଉଛନ୍ତି ପରମାତ୍ମା (୯) ଓ ବିଷ୍ଣୁ ପୁରାଣ ମତରେ ବିଷ୍ଣୁ ହେଉଛନ୍ତି ପରଂବ୍ରହ୍ମ । ତେଣୁ ଉଭୟ ଜଗତର ପତି ବା 'ଜଗନ୍ନାଥ' । ବୌଦ୍ଧଧର୍ମରେ ମଧ୍ୟ ବୁଦ୍ଧଙ୍କୁ ଜଗତ୍‌ପତି ଭାବରେ ଗ୍ରହଣ କରି 'ଜଗନ୍ନାଥ' ବୋଲି କୁହାଯାଇଛି । ମାତ୍ର; କେବଳ ଏତିକ ଯୁକ୍ତିକୁ ନେଇ ସେ ଯେ ପୁରୀର ଏହି ଜଗନ୍ନାଥ, ଏହା କୁହାଯାଇ ନ ପାରେ । ପୁଣି, ବୌଦ୍ଧ ଧର୍ମରେ ଧର୍ମକୁ ନାରୀ ଭାବରେ କୁହାଯାଇଥିବା କଳ୍ପନା, ଜଗନ୍ନାଥ ତତ୍ତ୍ୱରେ କେଉଁଠି କେଉଁ ପୁରାଣରେ ହେଲେ ବର୍ଣ୍ଣନା କରାଯାଇନାହିଁ । ସୁଭଦ୍ରାଙ୍କୁ ମଧ୍ୟ ଧର୍ମଭାବରେ କେଉଁଠି ଚିତ୍ରଣ କରାଯାଇନାହିଁ । ଆଉ ପୁରୀର ରଥଯାତ୍ରା ସହିତ ଖୋଟାନ୍ ରଥଯାତ୍ରାର ମଧ୍ୟ କୌଣସି ସମ୍ପର୍କ ନାହିଁ । ଅନ୍ୟପକ୍ଷରେ ବୈଦିକ ଯୁଗ, ରାମାୟଣ ଓ ମହାଭାରତ ଯୁଗରୁ ଏ ଦେଶରେ ରଥରେ ବସି ଯାତ୍ରା କରିବାର ଚିନ୍ତାଧାରା ରହିଆସିଛି । ଏହିସବୁ ଦୃଷ୍ଟିରୁ ବିଚାର କଲେ ଜଗନ୍ନାଥଙ୍କର ବୌଦ୍ଧଧର୍ମ ସହିତ କୌଣସି ସମ୍ପର୍କ ନାହିଁ କି ବୌଦ୍ଧ ଗ୍ରନ୍ଥରେ ତାଙ୍କର ସ୍ଥାନ ନାହିଁ ।

ତଥାପି ଏ କପୋଳକଳ୍ପିତ ଅଳୀକ ମତବାଦ ଜଗନ୍ନାଥଙ୍କ ଉପରେ ଆରୋପିତ ହୋଇ ଜୈନମତବାଦର ଆରୋପକୁ ଚପାଇ ଦେଇ ୧୯୪୮ ମସିହା ବେଳକୁ ଏକ ସ୍ଥିର ସିଦ୍ଧାନ୍ତରେ ପରିଗଣିତ ହୋଇଥିଲା । ଓଡ଼ିଶାର ସେତେବେଳର ନେତୃସ୍ଥାନୀୟ

---

୮ । ଓଡ଼ିଶା ଇତିହାସ—ମହତାବ—(ଜଗନ୍ନାଥଧର୍ମ, ଦ୍ରଷ୍ଟବ୍ୟ ) ।

୯ । ଶିବପୁରାଣ—୨, ୯, ୪, ୩୩—

ନିର୍ଗୁଣଶ୍ଚେ ଶିବାଖ୍ୟୋ ହି ପରମାତ୍ମା ମହେଶ୍ୱରଃ ।
ପରଂବ୍ରହ୍ମାଽବ୍ୟୟୋଽନନ୍ତୋ ମହାଦେବେତି ଗୀୟତେ ॥

ବ୍ୟକ୍ତିମାନଙ୍କର ସମର୍ଥନ ପାଇଁ ଏହା ଏକ ଦୃଢ଼ ସିଦ୍ଧାନ୍ତ ଭାବରେ ମୁଣ୍ଡ ଟେକିଥିଲା । ମାତ୍ର, ପୂର୍ବେ ଏ ସିଦ୍ଧାନ୍ତ ନ ଥିଲା, କି କୌଣସି ଧର୍ମଗ୍ରନ୍ଥରେ ସ୍ଥାନ ପାଇଁ ନ ଥିଲା । ମାତ୍ର, ୧୯୪୮ ମସିହା ବେଳକୁ ଜନସାଧାରଣ ଏ ମତବାଦକୁ ଧର୍ମ ସୂତ୍ର ବିଶ୍ୱାସ କରି ଗ୍ରହଣ କରିଥିଲେ ମଧ୍ୟ, ଏ ମତବାଦର ପୃଷ୍ଟପୋଷକମାନେ ଏଥିରେ ପୂର୍ଣ୍ଣ ନିଃସନ୍ଦେହ ନଥିଲେ । ତାହାରକୁ ନିଃସନ୍ଦେହ ବୋଲି କହୁଥିଲେ ମଧ୍ୟ, ସେମାନଙ୍କ ମନର ଏକ କୋଣରେ, ଜଗନ୍ନାଥ ଉପାସନା ଯେ ଦ୍ରାବିଡ଼ ବା ଶବର ସୃଷ୍ଟ ତାର ଏକ ନିଖୁଣ ପ୍ରତିଛବି; ଏହି ଭାବ ବଦ୍ଧମୂଳ ହୋଇଥିଲା । (୧୦) ମହତାବ ସେଥିପାଇଁ ରଥଯାତ୍ରାର ବିସ୍ତାରକ୍ରମରେ ଗୁଣ୍ଡିଗୁଡ଼ିର ଆଦି ପ୍ରସଙ୍ଗକୁ ଉଦ୍ଧୃତି କରି ଏହା ଦ୍ରାବିଡ଼ ଭାଷାମୂଳକ ବୋଲି ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ପୁଣି, ଜଗନ୍ନାଥ ଯେ ଶବର ଦେବତା; ଏହା ମଧ୍ୟ ଲେଖିଅଛନ୍ତି । ତାଙ୍କ ମତରେ ଜଗନ୍ନାଥ ପ୍ରଥମେ ବୌଦ୍ଧ ଓ ପରେ ଶାବର । ସେ କହନ୍ତି, "ଅଶୋକଙ୍କ ସମୟରେ ଓଡ଼ିଶାର ଶବରମାନେ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ । (ମାତ୍ର, ପ୍ରମାଣ ଦେଇ ନାହାନ୍ତି,) ପୁରୀରେ ବୌଦ୍ଧସ୍ତୁପ ନିର୍ମିତ ହୋଇଥିଲା ଓ ସେଥିରେ ବୌଦ୍ଧ ତ୍ରିରତ୍ନ ଚିହ୍ନ ସ୍ୱାଭାବିକକ୍ରମରେ ଅଙ୍କିତ ହୋଇଥିଲା । (ଏହାର କିଛି ପ୍ରମାଣ ଦେଇନାହାନ୍ତି ।) ଖ୍ରୀଷ୍ଟପୂର୍ବ ପ୍ରଥମଶତାବ୍ଦୀରେ ବା ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଯେତେବେଳେ ମହାଯାନ ପନ୍ଥା ପ୍ରବର୍ତ୍ତିତ ହୋଇ ବୁଦ୍ଧ ଓ ବୋଧିସତ୍ତ୍ୱମାନଙ୍କର ପୂଜା ଆରମ୍ଭ ହେଲା, ସେତେବେଳେ ସରଳପ୍ରାଣ ଶବରମାନେ ସ୍ତୁପର 'ତ୍ରିରତ୍ନ' ଚିହ୍ନକୁ ପୂଜା କଲେ ।" ଡଃ ମହତାବଙ୍କର ଏହି ଉକ୍ତିଟିର ପଛରେ କିଛି ବଳିଷ୍ଠ ପ୍ରମାଣ ନାହିଁ । ଏହା କେବଳ ଅନୁମାନ ଉପରେ ପର୍ଯ୍ୟବସିତ । ଶବରମାନେ ବୌଦ୍ଧ ତ୍ରିରତ୍ନ ଚିହ୍ନକୁ ପୂଜା କରୁଥିବାର ପ୍ରମାଣ କ'ଣ ? ପୁଣି, କାହିଁକି ବା ଏ ତ୍ରିରତ୍ନ' ସେମାନଙ୍କ ଦ୍ୱାରା ସଂସ୍କୃତମୂଳକ ନାମ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଭାବରେ ଅଭିହିତ ହୁଅନ୍ତା ? ଏ ସବୁ କହିଲାବେଳେ ପ୍ରମାଣ ତ ଦେବାର ଥିଲା । ତା' ନହେଲେ, ଏସବୁକୁ ଗ୍ରହଣ କରାଯିବାର ଅବକାଶ କାହିଁ ? ସେହିପରି ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ତାଙ୍କର 'ଜଗନ୍ନାଥମନ୍ଦିର ଓ ଜଗନ୍ନାଥ-ତତ୍ତ୍ୱ' ପୁସ୍ତକରେ ଲେଖିଛନ୍ତି, 'ଜଗନ୍ନାଥପୀଠ ହେଉଛି ଦନ୍ତପୁର । ସେ ମହାଶୟ ଏକ ପକ୍ଷରେ ଜଗନ୍ନାଥଙ୍କୁ ହିନ୍ଦୁଧର୍ମର ଦେବତା ବୋଲି ବିଚାରୁଛନ୍ତି ତ ପୁଣି ବୌଦ୍ଧଦେବତା

---

୧୦ । ଓଡ଼ିଶା ଇତିହାସ—ମହତାବ—ପୃ: ୪୫୮, ଦାରୁଦେବତା—ପୃ: ୭୭ ।
ଓଡ଼ିଶା ଇତିହାସ—ମହତାବ—ପୃ: ୪୬୦ ଗୁଡ଼ସା—ଦ୍ରାବିଡ଼ ଶବ୍ଦ; ଅର୍ଥ କୁଟୀର
ଗୁଡ଼ସା' ରୁ ଗୁଣ୍ଡିଗୁ' ହୋଇଛି; = ମହତାବ ।
ଦାରୁଦେବତା—ପୃ: ୮୯, ଆଦିବାସୀ ଭାଷା କୁନ୍+ଡିକା ମିଶି 'ଗୁଣ୍ଡିଗୁ' ହୋଇଛି ।
ଅର୍ଥ ସେହି ଗଣ୍ଡି = କାଠଗଣ୍ଡି = ଡଃ ପାଢ଼ୀ"

ବୋଲି ମଧ୍ୟ କହୁଛନ୍ତି ଏବଂ ରତ୍ନଗିରି ହିଁ ନୀଳଗିରି ବୋଲି ଉଲ୍ଲେଖ କରିଛନ୍ତି । (୧୧) ସେ ଲେଖିଛନ୍ତି, ''ପାଲିଭାଷାରେ ଲିଖିତ ଦାଠାବଂଶ' ପୁସ୍ତକ ଅନୁସାରେ ରତ୍ନଗିରି ହିଁ ପ୍ରସିଦ୍ଧ ବୌଦ୍ଧପୀଠ ଥିଲା ।'' ଏହି ରତ୍ନଗିରି ଏବେ କଟକ ଜିଲ୍ଲାରେ ଅବସ୍ଥିତ ଓ ଏଠାରେ ଅନେକ ବୌଦ୍ଧବିହାରର ଭଗ୍ନାବଶେଷ ଅଛି । ଏହା ନୀଳଗିରି' ବୋଲି ଭାବିବାର କୌଣସି କାରଣ ନାହିଁ । ଏହି ପ୍ରସଙ୍ଗରେ ଆଲୋଚନା କରିବାବେଳେ ପଣ୍ଡିତ ଦାସ ପୁଣି ଆହୁରି କେତେକ ଅଳୀକ କଳ୍ପନା, ଜଳ୍ପନା କରିବସିଛନ୍ତି । ସେ ଭାବୁଛନ୍ତି, ବୌଦ୍ଧ ସାହିତ୍ୟରେ ଉଲ୍ଲିଖିତ ଦନ୍ତପୁର ହେଉଛି, ପୁରୀର ଗୁଣ୍ଡିଚାବାଡ଼ି । ପୁଣି ନୀଳଗିରିରେ ବୁଦ୍ଧଦେବଙ୍କ ଦନ୍ତ ପୂଜା ପାଉଥିଲା । (୧୨) ଏସବୁ କେବଳ ତାଙ୍କର ଭାବନା ଛଡ଼ା ଅନ୍ୟ କିଛି ନୁହେଁ । ଏହା ପଛରେ କୌଣସି ବଳିଷ୍ଠ ଯୁକ୍ତି ନାହିଁ । ସେ ମଧ୍ୟ ନିଜ ବିଶ୍ୱାସରେ ଦୃଢ଼ ନୁହନ୍ତି । କାରଣ ଥରେ ଲେଖିଛନ୍ତି କଟକ ଜିଲ୍ଲାର ରତ୍ନଗିରି ନିକଟରେ ଦନ୍ତପୁର । ପୁଣି ଆଉ ଠାଏ ଲେଖିଛନ୍ତି ଏହି ଦନ୍ତପୁର ହେଉଛି ପୁରୀର ଗୁଣ୍ଡିଚାବାଡ଼ି ଯେଉଁଠି ଇନ୍ଦ୍ରଦ୍ୟୁମ୍ନ ପୋଖରୀଟି ରହିଅଛି । ଏହିଭଳି ଦେଖିଲେ, ତାଙ୍କର ମତ ତାଙ୍କରି ନିଜର ଉକ୍ତିରେ ହିଁ କଟିଯାଉଛି । ସେ ନିଜ ମତରେ ସ୍ଥିର ନୁହନ୍ତି ।

ସେ ଯାହାହେଉ, ସମାଲୋଚକମାନେ କେତେକ ଯୁକ୍ତି ପାଇବାକ୍ଷଣି, ତାହାରି ବଳରେ ଗୋଟାଏ ଗୋଟାଏ ସିଦ୍ଧାନ୍ତ ନିରୂପଣ କରିଦେଉଛନ୍ତି । ମାତ୍ର ଯେତିକି ପ୍ରମାଣ ମିଳିଲେ ସିଦ୍ଧାନ୍ତଟାଏ କରାଯାଇପାରିବ, ସେଥିପ୍ରତି ପୂରା ନଜର ଦେଉନାହାନ୍ତି । ଫଳରେ ସିଦ୍ଧାନ୍ତଟି ଅଧାପନ୍ତରିଆ ହୋଇଯାଉଛି ଓ ସମାଲୋଚକମାନେ ନିଜ ମତରେ ସ୍ଥିର ରହି ପାରୁନାହାନ୍ତି । ଯଦିଓ ନିଜେ ସ୍ଥିର ଓ ଅଟଳ ଅଛନ୍ତି ବୋଲି କହୁଛନ୍ତି, ତଥାପି ବାସ୍ତବରେ ତାହା ଦେଖାଯାଉ ନାହାନ୍ତି । ପ୍ରମାଣ ଓ ଯୁକ୍ତିରେ ସ୍ଥିରତା ରହୁନାହିଁ । ଏପରି ଦେଖାଯାଉଛି ଯେ, ଗବେଷଣା କରିବା ପୂର୍ବରୁ ପ୍ରଥମେ ସ୍ଥିରୀକୃତ ସିଦ୍ଧାନ୍ତ ନିରୂପିତ ହୋଇଯାଉଛି ଓ ପରେ କେତେଟା ସମର୍ଥକ ପ୍ରମାଣ ଆଣି କଳ୍ପିତ ସିଦ୍ଧାନ୍ତକୁ ଆପାତତଃ ପ୍ରତିଷ୍ଠା କରାଯାଉଛି । ସେଥିରେ ସିଦ୍ଧାନ୍ତଟି ପ୍ରକୃତ ତଥ୍ୟମୂଳକ ସିଦ୍ଧାନ୍ତ ହେବ କିପରି ? ପ୍ରମାଣମାନ ମିଳିବାପରେ ଯିନା ସିଦ୍ଧାନ୍ତରେ ପହଞ୍ଚିବାକୁ ହୁଏ । ପ୍ରଥମେ ସିଦ୍ଧାନ୍ତ, ଆଉ ପରେ ପ୍ରମାଣ; ଏହା ପୁଣି କିପରି କଥା ? ସେଇଥିପାଇଁ ଏ ବିଭ୍ରାନ୍ତି ।

ଜଗନ୍ନାଥଙ୍କ ମୂର୍ତ୍ତିକୁ ଦେଖି ସମାଲୋଚକମାନେ ଆଗେ ଭାବିନେଲେ ଯେ, ଏ ମୂର୍ତ୍ତି ଅସମ୍ପୂର୍ଣ୍ଣ । ଖାଲି ସମାଲୋଚକ କାହିଁକି, ପୁରାଣକାରମାନେ ମଧ୍ୟ ସେପରି ଭାବିଥିଲେ ।

---

୧୧ । ଜଗନ୍ନାଥମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ -ପୃ : ୧୬ ।

୧୨ । ଜଗନ୍ନାଥମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ -ପୃ : ୧୬ ।

ଖାଁବଲବେଳେ କୌଣସି ପ୍ରମାଣ ଭିତ୍ତିରେ ଏପରି ଭାବି ନାହାନ୍ତି । ପୁରାଣକାର ଭାବିଲେ ଓ ପୁରାଣରେ କଳ୍ପନା କରି ଏକ କାହାଣୀ ଲେଖିଦେଲେ । ବିଭିନ୍ନ ପୁରାଣରେ କାହାଣୀଟି ବିଭିନ୍ନ ରୂପ ନେଲା । ସମାଲୋଚକମାନେ ଏହାଦ୍ୱାରା ପରବର୍ତ୍ତୀ ଯୁଗରେ ବିଭ୍ରାନ୍ତ ହେଲେ । ଭାବିଲେ, ଏ କାହାଣୀର ମୂଳ କେଉଁଠି ? ସେମାନଙ୍କୁ ଦେଖାଗଲା, ବୌଦ୍ଧଧର୍ମରେ ଏକ ଅନୁରୂପ କାହାଣୀ । ଦୁଇଟିକୁ ସେମାନେ ଯୋଡ଼ିଦେଲେ । କିଏ ଆଗ; କିଏ ପଛ—ସେ କଥାକୁ ଆଉ ବିଚାର କଲେ ନାହିଁ । ପୁଣି ଜଗନ୍ନାଥଙ୍କର ଏ ମୂର୍ତ୍ତି ଏକ ଅସମ୍ପୂର୍ଣ୍ଣ ମୂର୍ତ୍ତି କି ସ୍ୱୟଂସମ୍ପୂର୍ଣ୍ଣ ମୂର୍ତ୍ତି, ଅଥବା ପରଂବ୍ରହ୍ମଙ୍କର ପ୍ରତୀକ ମୂର୍ତ୍ତି—ଏ ସବୁ କଥା ମଧ୍ୟ ବିଚାରକୁ ନେଲେ ନାହିଁ । ହଠାତ୍ ସିଦ୍ଧାନ୍ତରେ ପହଞ୍ଚିଗଲେ, ଏହି ଜଗନ୍ନାଥମୂର୍ତ୍ତିର ଗଠନ ଅନ୍ତରାଳରେ ବୌଦ୍ଧଧର୍ମରେ ପ୍ରଚଳିତ କାହାଣୀଟିଏ ଅଛି । ସେହି ପ୍ରଭାବରେ ଏ ମୂର୍ତ୍ତିଗଠନ ପ୍ରଭାବିତ ।

ରାଜେନ୍ଦ୍ର ଲାଲ ମିତ୍ର 'ବୁଦ୍ଧଗୟା' ନାମକ ଗ୍ରନ୍ଥରେ ଏହିପ୍ରକାର ମତବ୍ୟକ୍ତ କରି ହୁଏନ୍‌ସାଂଙ୍କ କମ୍ପୃନ୍ତ୍ରୀରୁ ଏକ କାହାଣୀ ଉଦ୍ଧାର କରିଛନ୍ତି । ବୁଦ୍ଧଗୟାରେ ଥିବା ଏକ ବୁଦ୍ଧମୂର୍ତ୍ତି ଉପରେ କାହାଣୀଟି ପର୍ଯ୍ୟବସିତ । କାହାଣୀଟି ହେଉଛି—"ମନ୍ଦିର ନିର୍ମିତ ହୋଇଯାଇବାପରେ ବୁଦ୍ଧଙ୍କର ବୁଦ୍ଧତ୍ୱ ପ୍ରାପ୍ତି ସମୟର ଅବସ୍ଥାର ଏକ ମୂର୍ତ୍ତି ଗଠନ କରିବା ପାଇଁ ସେମାନେ ଶିଳ୍ପୀମାନଙ୍କୁ ନିବେଦନ କଲେ । ବହୁବର୍ଷ ବିତିଗଲା । କିନ୍ତୁ କାମରେ ହାତ ଦିଆହୋଇପାରିଲା ନାହିଁ । ଶେଷରେ ଜଣେ ବ୍ରାହ୍ମଣ, ଭିକ୍ଷୁମାନଙ୍କ ସଭାରେ ଉପସ୍ଥିତ ହୋଇ କହିଲେ, ମୁଁ ତଥାଗତଙ୍କ ମୂର୍ତ୍ତି ଗଠନ କରିଦେବି । ବିହାରର ମଝିରେ କିଛି ଅଠା ଓ ଗୋଟିଏ ଆଲୋକ ରଖିଦିଅନ୍ତୁ । ମୁଁ ଭିତରେ ପଶିଲେ ଛଅ ମାସ ଯାଏଁ କବାଟ ଖୋଲିବେ ନାହିଁ । ତାହାହିଁ ହେଲା । ଚାରି ମାସ ପରେ କୌତୁହଳ ହେତୁ ଭିକ୍ଷୁମାନେ ଦ୍ୱାର ଖୋଲିଦେଲେ । ବିହାରର ମଧ୍ୟସ୍ଥଳରେ ବୁଦ୍ଧଦେବଙ୍କ ମୂର୍ତ୍ତି ଧ୍ୟାନମଗ୍ନ ଅବସ୍ଥାରେ ଥିବାର ଦେଖିଲେ । କିନ୍ତୁ ବକ୍ଷର ବାମ ଭାଗଟା ପୂର୍ଣ୍ଣ ଭାବରେ ଗଢ଼ା ହୋଇନଥିଲା । ବ୍ରାହ୍ମଣଙ୍କୁ ଆଉ କେହି ଦେଖିପାରିଲେ ନାହିଁ । (୧୩)

ଏହି ଯେଉଁ କାହାଣୀଟି ରାଜେନ୍ଦ୍ର ଲାଲ ମିତ୍ର ଉଦ୍ଧାର କଲେ, ତାହା ପ୍ରକୃତରେ ହୁଏନ୍‌ସାଂଙ୍କ ବିବରଣୀରେ ଅଛି କି ନାହିଁ, ପ୍ରଥମେ ଦେଖିବାର କଥା । ଯଦି ବା ଥାଏ, ତେବେ ତାହା ପ୍ରକ୍ଷେପ କି ନା ତାହା ମଧ୍ୟ ବିଚାର କରିବାର କଥା । କାହାଣୀଟିକୁ ପଢ଼ିଲେ ଜଣାଯାଉଛି, ଏହା ଏକ ପ୍ରକ୍ଷେପ । କାରଣ, ଏଭଳି କଥା ବୌଦ୍ଧଦର୍ଶନ ବିରୋଧୀ । ଦ୍ୱିତୀୟତଃ ଜଣେ ବ୍ରାହ୍ମଣଙ୍କୁ ଏ ବୁଦ୍ଧମୂର୍ତ୍ତିର ନିର୍ମାତା ହେବାର ଆସନ

୧୩ । ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ—ପୃ : ୧୦୨, ଉଦ୍ଧୃତ—ବୁଦ୍ଧଗୟା ।

ଦିଆଯାଇଛି । ଏହା ବୌଦ୍ଧଧର୍ମ ପରମ୍ପରା ବିରୋଧୀ । ବୌଦ୍ଧଙ୍କ ଦୃଷ୍ଟିରେ ବ୍ରାହ୍ମଣ ହେଉଛନ୍ତି ଘୃଣ୍ୟ । ବ୍ରାହ୍ମଣଙ୍କ ଯଜ୍ଞର ପ୍ରତିବାଦ କରି ବୌଦ୍ଧଧର୍ମ ସୃଷ୍ଟି ହୋଇଥିଲା । ତେଣୁ ବ୍ରାହ୍ମଣଙ୍କୁ ବୁଦ୍ଧମୂର୍ତ୍ତି ଗଢିବାର ଅଧିକାର ଦିଆଯାଆନ୍ତା କିପରି ? ବ୍ରାହ୍ମଣ ବୁଦ୍ଧମୂର୍ତ୍ତି ଗଢ଼ିବ; ବୌଦ୍ଧମାନେ ସେ ମୂର୍ତ୍ତିକୁ ପୂଜା କରିବେ; ଏହା କିପରି କଥା ? ଏଣୁ ଜଣାପଡ଼ୁଛି, ଏ ଗଳ୍ପ ହୁଏନ୍‌ସାଂ ବିବରଣୀରେ ଲେଖିନାହାନ୍ତି । ପରେ ଏହା ସେଥିରେ ଅନ୍ତର୍ଭୁକ୍ତ ହୋଇଥାଇପାରେ । ସେଥିର ଏକ ସମୀକ୍ଷା ଓ ସଂସ୍କାର ଆବଶ୍ୟକ । ଗମ୍ଭାରେ ଥିବା ବୁଦ୍ଧମୂର୍ତ୍ତିଙ୍କର ବକ୍ଷର ଏକ ଅଂଶ ଅସଂପୂର୍ଣ୍ଣ ଥିବା ଦେଖି କେହି ଜଣେ ଏ କାହାଣୀଟି ରଚନା କରିଛନ୍ତି; ଏହା ଖୁବ୍ ସମ୍ଭବ । ଅତଏବ, ଏ ସବୁ କଥା ଭଲଭାବରେ ବିସ୍ତରଂନ କରି, ଏହାକୁ ଇନ୍ଦ୍ରଦ୍ୟୁମ୍ନ ଉପାଖ୍ୟାନ ସହିତ ତୁଳନା କରିବା ସର୍ବଥା ଅଯୌକ୍ତିକ । ତା'ଛଡ଼ା ଦେଶର ବିଭିନ୍ନ ସ୍ଥାନରେ ପ୍ରଚଳିତ କିମ୍ବଦନ୍ତୀ-ମାନଙ୍କରେ କେତେକ ସ୍ଥଳରେ କିଛିଟା ସାମ୍ୟ ଥାଇପାରେ । ଏହା ବୋଲି ଯେ, ସେଗୁଡ଼ିକ ପରସ୍ପର ସମ୍ପର୍କିତ; ଏପରି ବିଚାରିବା ଆଦୌ ଠିକ୍ ନୁହେଁ ।

ସାମାନ୍ୟ ଟିକିଏ ସାମ୍ୟ ଦେଖି ଦେଖି ସମାଲୋଚକଗଣ ଏଭଳି ବିଚିତ୍ର ପରିକଳ୍ପନା କରିବସୁଛନ୍ତି । ଜଗନ୍ନାଥ ଶବ୍ଦର ସାମ୍ୟ ଦେଖିବାକ୍ଷଣି ବିଖ୍ୟାତ ଗବେଷକ ଡଃ ମହାତାବଙ୍କ ମନରେ ଆସିଛି, ଜଗନ୍ନାଥ ହିଁ ବୁଦ୍ଧ । ଜ୍ଞାନସିଦ୍ଧିରେ ଥିବା "ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜ୍ଞାନବରାର୍ଚ୍ଚିତମ୍"; ଏହି ଭକ୍ତିଟି ଦେଖି ସେ ଲେଖିଛନ୍ତି, "ଜଗନ୍ନାଥ ଶବ୍ଦର ମୂଳ ହେଉଛି ବୌଦ୍ଧ । ଜଗନ୍ନାଥ ଶବ୍ଦ କୌଣସି ପ୍ରାଚୀନ ପୁରାଣ ବା ଅଭି-ଲେଖରେ ବିଷ୍ଣୁଙ୍କର ପର୍ଯ୍ୟାୟବାଚୀ ଶବ୍ଦ ରୂପେ ବ୍ୟବହାର ହୋଇ ନାହିଁ" । (୧୪) ବର୍ତ୍ତମାନ ଆମେ ଯଦି ଏହି ଦୁଇଟି ବାକ୍ୟକୁ ବିଚାରକୁ ନେବା, ତେବେ ଦୁଇଟିଯାକ ବାକ୍ୟ ଅସଙ୍ଗତ ବୋଲି ମନେହେବ । କାରଣ, ବୁଦ୍ଧଙ୍କର ନାମ ଯଦି ଜଗନ୍ନାଥ ହୋଇଥା'ନ୍ତା, ତେବେ ବୌଦ୍ଧଗ୍ରନ୍ଥମାନଙ୍କରେ ଏ ନାମ ଦେଖାଯାଉଥାନ୍ତା । ମାତ୍ର କୌଣସି ପିଟକ ଗ୍ରନ୍ଥରେ ଏ ନାମ ମୁକ୍ତ ଭାବରେ ବୁଦ୍ଧଙ୍କ ପାଇଁ ବ୍ୟବହୃତ ହୋଇ ନାହିଁ । ପୁଣି, ବୌଦ୍ଧ ଅଭିଧାନକାର ହେମଚନ୍ଦ୍ରଙ୍କ ଅଭିଧାନରେ ଏ ନାମ ବୁଦ୍ଧଙ୍କର ପର୍ଯ୍ୟାୟ-ବାଚୀ ଭାବରେ ଦେଖାଯାଉ ନାହିଁ । ତେଣୁ ଇନ୍ଦ୍ରଭୂତିଙ୍କ • ଜ୍ଞାନସିଦ୍ଧିରେ ବ୍ୟବହୃତ 'ଜଗନ୍ନାଥ' ପଦଟି ଏକ ବିଶେଷଣାତ୍ମକ ପଦ ଭିନ୍ନ ଅନ୍ୟକିଛି ନୁହେଁ । ଦ୍ୱିତୀୟ କଥା ହେଉଛି, ଜଗନ୍ନାଥ ବିଷ୍ଣୁଙ୍କର ପର୍ଯ୍ୟାୟବାଚୀ ପଦ କି ନା ? ପ୍ରାଚୀନ ପୁରାଣମାନଙ୍କରେ

---

୧୪ । ଓଡ଼ିଶା ଇତିହାସ—ମହତାବ—ପୃ : ୪୬୮

ତ ଏହାର ବ୍ୟବହାର ନିଶ୍ଚୟ ଅଛି । (୧୫) ପୁଣି ବିଷ୍ଣୁ ସହସ୍ରନାମରେ (୧୬) ମଧ୍ୟ ସ୍ଥାନ ପାଇଅଛି । ଏ ସବୁ ଗ୍ରନ୍ଥ, ପୁରାଣମାନ ଅନୁଶୀଳନ ନକରି ମାନ୍ୟବର ସମାଲୋଚକ ଏକଥା ଲେଖିଲେ କିପରି; ଏହା ବୁଝିପାରୁ ନାହିଁ । ସଂସ୍କୃତ ଶାସ୍ତ୍ରର ଅନୁଶୀଳନ ନଥିବାରୁ ଏ ପ୍ରମାଦ ଘଟିଛି ।

ଶ୍ରୀଯୁକ୍ତ ବେଣୀମାଧବ ପାଢ଼ୀ ହସ୍ତଲିଖିତରେ ଜଣେ ପଣ୍ଡିତ । ସେ ତାଙ୍କର ପିଏଚ୍.ଡି. ନିବନ୍ଧରେ ଜଗନ୍ନାଥଙ୍କ ଉପାସନାର ବିକାଶ ସମ୍ବନ୍ଧରେ ଆଲୋଚନା କରିଛନ୍ତି । ସେ ସଂସ୍କୃତ ଗ୍ରନ୍ଥମାନ ନିଶ୍ଚୟ ଅନୁଧ୍ୟାନ କରିଛନ୍ତି । ତଥାପି, ଏହା ବିଚିତ୍ର ଯେ, ସେ ଜଗନ୍ନାଥଙ୍କର ମହାବିଷ୍ଣୁତ୍ୱ ଉପରେ ମୋଟେ ଗୁରୁତ୍ୱ ଦେଇନାହାନ୍ତି କି ଏ ବିଷୟରେ ବିଶେଷ ଆଲୋଚନା କରିନାହାନ୍ତି । ଗବେଷଣା ପୂର୍ବରୁ ତାଙ୍କ ମନରେ ବଦ୍ଧମୂଳ ଧାରଣା ରହିଯାଇଛି ଯେ ଜଗନ୍ନାଥ ଶବରର ଉପାସିତ ଦେବତା । ସେହି ଧାରଣା ହିଁ ଭ୍ରାନ୍ତିର ମୂଳ କାରଣ । ଗବେଷଣା କାଳରେ ଜଗନ୍ନାଥଙ୍କର ମହାବିଷ୍ଣୁତ୍ୱ ସମ୍ପର୍କରେ ଆସିଥିବା ପ୍ରମାଣବଳୀକୁ ସେ ଏହି ହେତୁରୁ ଆଲୋଚନା ନ କରି ଏଡ଼ାଇ ଦେଇଛନ୍ତି । ପୁଣି ତାଙ୍କ ବେଳକୁ ସମାଜରେ 'ଜଗନ୍ନାଥ ମୂଳତଃ ବୌଦ୍ଧ' ଏହି ଧାରଣା ପ୍ରତିଷ୍ଠିତ ହୋଇଥିଲା । ସମାଜରି ଚିନ୍ତାଶୀଳ ବ୍ୟକ୍ତିଗଣ ଓ ହରେକୃଷ୍ଣ ମହତାବଙ୍କ ଭଳି ଜନନାୟକମାନେ ଏହି କଥାରେ ଗଭୀର ବିଶ୍ୱାସ ପୋଷଣ କରିଥିଲେ । ଯଦିଓ ଜୈନମୌଳିକତା ଓ ବ୍ରାହ୍ମଣ୍ୟଧର୍ମର ମୌଳିକତା ଜଗନ୍ନାଥଙ୍କଠାରେ ଥିବାର ଯୁକ୍ତିମାନ ସେତେବେଳକୁ କେତେକ ସମାଲୋଚକ ପ୍ରକାଶ କରିଥିଲେ, ତଥାପି ସମାଜରେ ତାହା ଉପରେ ବିଶେଷ ଗୁରୁତ୍ୱ ଦିଆଯାଇନଥିଲା । କାରଣ, ସମାଜର ଜନନାୟକମାନେ ସେହି ଗବେଷକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ନ ଥିଲେ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ଭଳି ଯେଉଁମାନେ ତନ୍ମଧ୍ୟରେ ଥିଲେ, ସେମାନେ ନିଜ ଯୁକ୍ତିରେ ସେପରି ଅଟଳ ନ ଥିଲେ ଓ

---

୧୫—ସ୍କନ୍ଦପୁରାଣ, ପଦ୍ମପୁରାଣ ଦ୍ରଷ୍ଟବ୍ୟ । See my 'Land of Visnu' also for this.

୧୬—ବିଷ୍ଣୁସହସ୍ର ନାମ ସ୍ତୋତ୍ର (ମହାଭାରତାନ୍ତର୍ଗତ)—"ତସ୍ୟଲୋକ ପ୍ରଧାନସ୍ୟ ଜଗନ୍ନାଥସ୍ୟ ଭୂପତେ । ଶ୍ଳୋ ୧୨ :

ବିଷ୍ଣୁପୁରାଣ—ଏବଂ ମୁନିଂ ଜଗନ୍ନାଥାତ୍ ଦେବଦେବକନାର୍ଦ୍ଦନାତ୍—୧ମ,୧୨/୧୩
ବିଷ୍ଣୁପୁରାଣ—ତୁଷ୍ଟା ଲକ୍ଷ୍ମୀ ଜଗନ୍ନାଥୋ ଲୋକେ ନାରାୟଣଃ ପରଃ । ୧ମ, ୮/୩୩
ଇତ୍ୟାଦି ଅନେକ ।

ବେଳେ ବେଳେ ଭିନ୍ନ ମତ ପୋଷଣ କରୁଥିଲେ । (୧୭) ତେଣୁ ଡଃ ପାଢ଼ୀ, ଜୈନ-ମୌଳିକତା ଓ ବ୍ରାହ୍ମଣ୍ୟ ଧର୍ମର ମୌଳିକତା ଜଗନ୍ନାଥଙ୍କ ତତ୍ତ୍ୱରେ ଥିବା କଥାରେ ବିଶେଷ ଗୁରୁତ୍ୱ ଦେଇ ନ ଥିଲେ । କେବଳ ନିଜ ଚିନ୍ତାଧାରାରେ ଅଗ୍ରେଇଲେ ଓ ବୌଦ୍ଧମୂଳତତ୍ତ୍ୱ ଚିନ୍ତାଧାରାକୁ ଭଲରୂପେ ଖଣ୍ଡନ କଲେ । ମାତ୍ର ଜୈନତତ୍ତ୍ୱ ଓ ଆର୍ଯ୍ୟଧର୍ମ ତତ୍ତ୍ୱକୁ ଆଲୋଚନା ଭିତରକୁ ଆଣି ସନ୍ତର୍ପଣର ସହ ଏଡ଼ାଇଦେଲେ ।

'ଦାରୁଦେବତା' ଗ୍ରନ୍ଥରେ ଡଃ ପାଢ଼ୀ ନୀଳକଣ୍ଠ ଦାସ ଜଗନ୍ନାଥଙ୍କୁ ପାର୍ଶ୍ୱ ଜୈନ ମତବାଦୀ ବୋଲି ଉଲ୍ଲେଖ କରିଛନ୍ତି । ଦା: ଦେ: ପୃ-୩୭୭ । ମାତ୍ର, ଉପରୋକ୍ତ ପ୍ରବନ୍ଧରେ ଲେଖିଛନ୍ତି ଯେ, ଏହା ନୀଳକଣ୍ଠଦାସଙ୍କର ଏକ ସିଦ୍ଧାନ୍ତ ନୁହେଁ; ସନ୍ଦେହ । ଏଭଳି ସନ୍ଦେହକୁ କେବେ ସିଦ୍ଧାନ୍ତ ରୂପେ ଗ୍ରହଣ କରାଯାଇପାରେନା । ବଡ଼ ଲୋକଙ୍କର 'ସନ୍ଦେହ' ସିଦ୍ଧାନ୍ତ କିପରି ହେବ ? ପୁରୁଷୋତ୍ତମ' କୈବଲ୍ୟ ଓ ଜଗନ୍ନାଥ ପଦରେ 'ନାଥାନ୍ତ' ଦେଖି ପଣ୍ଡିତଜୀଙ୍କର ଏହି ସନ୍ଦେହ ହୋଇଥିଲା । ମାତ୍ର, ସେ ଗୀତାର "ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ,—ଏହି ତତ୍ତ୍ୱଟି ଜଗନ୍ନାଥଙ୍କଠାରେ ଥିବାର ମାନୁଥିଲେ ବୋଲି ଡଃ ପାଢ଼ୀ ତାଙ୍କ ସଙ୍ଗେ ଆଲୋଚନା କରି ଜାଣିପାରିଥିଲେ । ପଣ୍ଡିତଜୀଙ୍କ ସଙ୍ଗେ ଆଲୋଚନା କଲାପରେ ଜଣାଗଲା ଯେ, 'ଜଗନ୍ନାଥ ଜୈନଦେବତା ଏହି ତତ୍ତ୍ୱ ହେଉଛି ପଣ୍ଡିତଜୀଙ୍କର ଏକ ସନ୍ଦେହ । ସିଦ୍ଧାନ୍ତ ନୁହେଁ । ଜଗନ୍ନାଥ ଖାଲି ମହାଭାରତ ଯୁଗରୁ କାହିଁକି, ବୈଦିକ ଯୁଗରୁ ମଧ୍ୟ ଉପସ୍ଥିତ ହୋଇଆସୁଛନ୍ତି । ଏ ଯୁକ୍ତିକୁ ପଣ୍ଡିତଜୀଙ୍କ ଠାରୁ ପାଇ ଡଃ ପାଢ଼ୀ ତାଙ୍କର ଗବେଷଣା କାଳରେ ଧଙ୍ଗେ ସଙ୍ଗେ ଗ୍ରହଣ କରିଥିଲେ ବୋଲି ନିଜର ଉପରୋକ୍ତ ପ୍ରବନ୍ଧରେ ପ୍ରକାଶ କରିଛନ୍ତି । ମାତ୍ର, ଆମର ସେଥିରେ ପ୍ରମାଣାଭାବରୁ ବିଶ୍ୱାସ ନାହିଁ । କେବଳ ସେହି ଗୀତାତତ୍ତ୍ୱ ପୁରୁଷୋତ୍ତମ ତତ୍ତ୍ୱଟି ଆମ ଦୃଷ୍ଟିରେ ଗ୍ରହଣୀୟ ।

ତଥାପି ମନରେ ଏକ କୋଣରେ ସନ୍ଦେହ ଘନୀଭୂତ ହୋଇଥିଲା । ସେ ତାଙ୍କର ସିଦ୍ଧାନ୍ତରେ ଅଟଳ ରହିପାରିଲେ ନାହିଁ । ମନ ମଧ୍ୟରେ ସତ୍ୟର ଏକ କ୍ଷୁଦ୍ର ଛାୟା ବିସ୍ତାର କରୁଥିଲା । 'ପୁରୁଷୋତ୍ତମ' ଶବ୍ଦଟି ସବୁ ସନ୍ଦେହର କେନ୍ଦ୍ରବିନ୍ଦୁ

୧୭—ଦ୍ରଷ୍ଟବ୍ୟ:—ମନୀଷୀ ନୀଳକଣ୍ଠଙ୍କ ଚିନ୍ତା ଓ ଚେତନା—ଡଃ ବେଣୀମାଧବ ପାଢ଼ୀ । ପ୍ରବନ୍ଧ—ପ୍ରକାଶିତ ୧୯୮୪ ନୀଳକଣ୍ଠ ସ୍ମାରକୀ—୨ୟ ଖଣ୍ଡ—ପଣ୍ଡିତ ନୀଳକଣ୍ଠ ସ୍ମୃତି ସମିତି—୩୦୩—ଖାରବେଳ ନଗର—ଭୁବନେଶ୍ୱର-୧ = ପୃ:୩୦୨-୩୦୫

ଥିଲା । ସେ ଭାବୁଥିଲେ, ଶବର ହସ୍ତରେ ପୁରୁଷୋତ୍ତମ ଶବ୍ଦର ସୃଷ୍ଟି କାହିଁ ? ଆର୍ଯ୍ୟଧର୍ମ ସହିତ କିମ୍ବା ଗୀତାଧର୍ମ ସହିତ ଏହାକୁ ଯୋଡ଼ିଦେଲେ ଜଗନ୍ନାଥ ତ ଆଉ ଶବର ଦେବତା ହୋଇପାରିବେ ନାହିଁ । ଏଣେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ତ ଓଡ଼ିଶାରେ ସମସ୍ତେ ମାନନ୍ତି । ତାଙ୍କ ପାଣ୍ଡିତ୍ୟ ନିକଟରେ ନତମୁଖ ହୁଅନ୍ତି । ସେ ପୁଣି ପ୍ରଚାର କରିଛନ୍ତି ଜୈନମତ । ତାଙ୍କ ସହିତ ଶ୍ରୀଯୁକ୍ତ ପାଢ଼ୀ ଗବେଷଣା ପାଇଁ ପରାମର୍ଶ କରି ତାଙ୍କରି ଦିଗ୍‌ଦର୍ଶନ ଗ୍ରହଣ କରୁଥାନ୍ତି । ଏଣୁ ସେ 'ପୁରୁଷୋତ୍ତମ' ପଦଟି ମୂଳତଃ ଜୈନ ଅଥବା ଦ୍ରାବିଡ଼' ବୋଲି କହିଲେ ସିନା; ଆର୍ଯ୍ୟଧର୍ମ ଗ୍ରନ୍ଥର ଏକ ମୌଳିକ ବିଭବ ବୋଲି କହିଲେ ନାହିଁ । ହୁଏତ, କହିବାର ସ୍ୱାଧୀନତା ତାଙ୍କର ନଥିଲା । ସେ ଲେଖିଲେ,—
"ବୃକ୍ଷଧର୍ମୀ ଶବରର ନୀଳାଦ୍ରି କନ୍ଦର ଦାରୁଦେବତା ଭିତରେ ଜୈନ ଦ୍ରାବିଡ଼ର ପୁରୁଷୋତ୍ତମ ଭାବ ପଶି ମୂଳଦାରୁକୁ ପୁରୁଷୋତ୍ତମ ନାମରେ ଅଭିହିତ କଲା । (୧୮) ସେହି ଯୁଗରୁ ବୋଧହୁଏ ଦାରୁଦେବତା ପୁରୁଷୋତ୍ତମ ନାମରେ ଲୋକରେ ପରିଚିତ ହେଲେ । ସମ୍ଭବତଃ ଏହାକୁ ହିଁ ଭିତ୍ତି କରି ଭଗବଦ୍‌ଗୀତାରେ ସୁଦକ୍ଷ ଉପଦେଷ୍ଟା ଶ୍ରୀକୃଷ୍ଣ 'ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମ' ବୋଲି କହିଛନ୍ତି ।"

ଡଃ ପାଢ଼ୀଙ୍କର ଏହି ଗୋଟିଏ ଉକ୍ତିକୁ ଅନୁଶୀଳନ କଲେ, ତାଙ୍କର ସିଦ୍ଧାନ୍ତ ଯେ ସନ୍ଦେହମୁକ୍ତ ନୁହେଁ; ଏହା ବେଶ୍ ହୃଦୟଙ୍ଗମ କରିହୁଏ । ସେ ଏହି ଉକ୍ତିରେ 'ବୋଧହୁଏ ଓ ସମ୍ଭବତଃ'; —ଏପରି ଲେଖି ନିଜର ସିଦ୍ଧାନ୍ତରେ ଦୃଢ଼ ନୁହନ୍ତି ବୋଲି ପରୋକ୍ଷରେ ପ୍ରକାଶ କରିଛନ୍ତି । ତାଙ୍କ ବିଚାରରେ ବୈଦ୍ଧିକଯୁଗରୁ ବା ତା' ପୂର୍ବରୁ ଶବର ଯେଉଁ ଦାରୁକୁ ପୂଜା କରୁଥିଲା, ପରେ ଗୀତା ବା ମହାଭାରତ ଯୁଗବେଳକୁ ତାହା ପୁରୁଷୋତ୍ତମ ରୂପେ ପୂଜା ପାଇଲା (୧୯) । ପୁଣି ସମୟକ୍ରମରେ ଶବରର ଦାରୁଦେବତା ଉପରେ ଜୈନ, ବ୍ରାହ୍ମଣ୍ୟପନ୍ଥୀ, ବୌଦ୍ଧ, ଶୈବ, ଶାକ୍ତ, ସହଜିଆ ଓ ଚୈତନ୍ୟପନ୍ଥୀଙ୍କ ପ୍ରଭାବ ପଡ଼ି ନାନାବିଧ ଦର୍ଶନର ଆଘାତରେ ଶବରର ମୂଳଦାରୁ ବିକୃତ ହୋଇଛି । ତଥାପି ପ୍ରକୃତିସ୍ଥ ରହିଛି (୨୦) । ଏହା ହିଁ ସନ୍ଦେହାଚ୍ଛନ୍ନ ଭାବରେ ଡଃ ପାଢ଼ୀଙ୍କର ଆପାତତଃ ସିଦ୍ଧାନ୍ତ ।

---

୧୮ । ଦାରୁଦେବତା—ଡଃ ପାଢ଼ୀ-୧୯୬୪-ପୃ: ୧୫୩

୧୯ । ,, — ପୃ: ୧୫୪ (ଭାରତ ଯୁଦ୍ଧ ବେଳକୁ ଦାରୁଦେବତା ପୁରୁଷୋତ୍ତମ ନାମରେ ଖ୍ୟାତିଲାଭ କରିସାରିଲେଣି) ।

୨୦ । ,, —ପୃ: ୧୩୬

ଜଗନ୍ନାଥଙ୍କୁ ଶବରଦେବତା ଓ ପ୍ରାଗ୍‌ବୈଦିକ ଦେବତା ବୋଲି କହି ଡଃ ପାଢ଼ୀ ଏକ ନୂଆ କଥା କହିବାକୁ ଚେଷ୍ଟା କଲେ ସିନା, ମାତ୍ର ମନରେ ସେହି କୃଷ୍ଣରୂପୀ, ପୁରୁଷୋତ୍ତମରୂପୀ ବ୍ରହ୍ମସ୍ୱରୂପ ଦାରୁବ୍ରହ୍ମ ଜଗନ୍ନାଥଙ୍କୁ ହିଁ ମାନୁଥିଲେ । ଅଧ୍ୟାପକ ପ୍ରଭାତ ମୁଖାର୍ଜୀଙ୍କ (Mediaval Vaishnavism in Orissa) ପୁସ୍ତକ ସେ ଅଧ୍ୟୟନ କରିଛନ୍ତି । (୨୧) ସେଥିରେ ସୂଚନା ଦିଆଯାଇଥିବା କଥା—'ଜଗନ୍ନାଥ ସେ ଶ୍ରୀକୃଷ୍ଣ, ବଳଭଦ୍ର ସେ ବଳରାମ, ସୁଭଦ୍ରା ସେ ଏକାନଂଶା ଓ ଲକ୍ଷ୍ମୀ ସ୍ୱରୂପିଣୀ; ଏହା ସେ ଠିକ୍ ଉପଲବ୍ଧି କରିଛନ୍ତି । ତଥାପି ନୂଆ ତଥ୍ୟ ଦେଇ ପିଏଚ୍. ଡି. ଉପାଧି ପାଇବା ପାଇଁ ଚେଷ୍ଟିତ ହୋଇ ଜଗନ୍ନାଥ ଶବର ଦେବତା ବୋଲି ପ୍ରମାଣ କରିବାକୁ ଲାଗିପଡ଼ିଛନ୍ତି । ମାତ୍ର ଗୀତାର ଧାର୍ମିକ ଚେତନା ତଥା ପୁରୁଷୋତ୍ତମ ଯୋଗ ଉପରେ ସମ୍ପୂର୍ଣ୍ଣ ବିଶ୍ୱାସ ରଖିଛନ୍ତି; ଆଉ ସେହି ପୁରୁଷୋତ୍ତମ ସେ ପରଂବ୍ରହ୍ମ ଦାରୁବ୍ରହ୍ମ ଜଗନ୍ନାଥ, ଏହି କଥାକୁ ଅବଚେତନ ମନରେ ସ୍ୱୀକାର କରିଛନ୍ତି । (୨୨) ତାଙ୍କ ଭାଷାରେ, "ଏହା ହିଁ ଶ୍ରୀକୃଷ୍ଣଧର୍ମ—ଗୀତାଧର୍ମ । ...ସେ ବିଶ୍ୱବ୍ୟାପୀ, ବିଶ୍ୱତୋମୁଖ, ବିଶ୍ୱପ୍ରାଣ, ପରମାତ୍ମା, 'ସୋଽହଂ—ହଂସଃ' । ଓଡ଼ିଆ କଥାରେ 'ମୁଁ' ଏକା ସିଏ, ଅର୍ଥାତ୍, ସିଏ ଆରାଧକ, ସିଏ ଏକା ସିଏ (ଆରାଧ୍ୟ) । ଏହି କାରଣରୁ ସମସ୍ତ ଗୀତାରେ ଉତ୍ତମ ପୁରୁଷକର୍ତ୍ତା 'ମୁଁ'ର ବ୍ୟବହାର । ...ଏଣୁ ପ୍ରତି ବ୍ୟକ୍ତିରେ ସେ ସମଷ୍ଟି । ...ଏହି ଅନୁପ୍ରବିଷ୍ଟ ସମଷ୍ଟି ହିଁ ବିଷ୍ଣୁ । (ବିଶନ୍ତି ଲୋକାଃ ଅସ୍ମିନ୍ନିତି = ବିଷ୍ଣୁଃ"—ରାମାଶ୍ରମୀ ।।") । (୨୩) ସେହି ଦୃଷ୍ଟିରୁ କୃଷ୍ଣ ସିଏ କୃଷ୍ଣ ବିଷ୍ଣୁ ସିଏ । ଆଉ ବିଶ୍ୱରୂପ, ପରମାତ୍ମା, ପରଂବ୍ରହ୍ମ, ଦାରୁବ୍ରହ୍ମ ମଧ୍ୟ ସିଏ । ସେ କ୍ଷରପୁରୁଷ ଠାରୁ ଅତୀତ ଓ ଅକ୍ଷରପୁରୁଷଠାରୁ ଉତ୍ତମ । ତେଣୁ ସେ ହିଁ ବ୍ରହ୍ମରୂପୀ ପୁରୁଷୋତ୍ତମ—ଜଗନ୍ନାଥ । ଏହି କଥାକୁ ଧ୍ୟାନ କରି ତଥା ବିଶ୍ୱାସ କରି ଡଃ ପାଢ଼ୀ ତାଙ୍କର ଦାରୁଦେବତା ଗ୍ରନ୍ଥ ପରିସମାପ୍ତ କରିଛନ୍ତି । ସେ ଶେଷରେ ସ୍ପଷ୍ଟ ଲେଖିଛନ୍ତି—"ଏହା ହିଁ ସେତେବେଳର ସର୍ବଶେଷ (ଆନୁମାନିକ) ସିଦ୍ଧାନ୍ତ । ଏତାଦୃଶ ଅନୁମାନରେ ଯେ ବଳିଷ୍ଠ ଯୁକ୍ତି ରହିଛି, ସନ୍ଦେହ ନାହିଁ । ତା' ବୋଲି ଏ ସମ୍ବନ୍ଧୀୟ ଆଲୋଚନା ଏଠାରେ ସରିଲା ନାହିଁ । କାରଣ, କ୍ଷର ପୂର୍ଣ୍ଣ, ଅକ୍ଷର ପୂର୍ଣ୍ଣ । କ୍ଷର ଓ ଅକ୍ଷରରୁ ଅତୀତ ଜଗନ୍ନାଥ ମଧ୍ୟ ପୂର୍ଣ୍ଣ ।

---

୨୧ । ଦାରୁଦେବତା—ପୃ: ୨୧୪-୨୧୫ ।

୨୨ । ଯସ୍ମାତ୍ କ୍ଷରେ ଅତୀତୋଽହଂ ଅକ୍ଷରାଦପି ଚୋତ୍ତମଃ...ଗୀତା, ଅଧ୍ୟାୟ ୧୫ଶ ।

୨୩ । ଦାରୁଦେବତା—ପୃ ୧୭୪ । (ଦ୍ରଷ୍ଟବ୍ୟ—ଅନୁଚ୍ଛେଦରେ ଥିବା 'ଏକା' ଶବ୍ଦ ପଞ୍ଚମୀ ଭାଷାରେ 'ହି' ବା 'କେବଳ' (only) ଅର୍ଥରେ ପ୍ରଯୁକ୍ତ ।)

ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ ।
ପୂର୍ଣ୍ଣାତ୍ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବା ବଶିଷ୍ୟତେ ॥
(ଦାରୁଦେବତା—ପୃ: ୨୨୦ ॥)

ଏହିଠି ଡଃ ପାଢ଼ୀ ଗବେଷଣାନ୍ତେ ଜଗନ୍ନାଥଙ୍କ ଠିକ୍ ଚିହ୍ନି ପାରିଛନ୍ତି । ମାତ୍ର ନବକଳେବରକୁ ଖାଲି ଅଲଗା କଥା ବୋଲି ଗ୍ରନ୍ଥରେ କହୁଥିଲେ । ତାଙ୍କର ପଦାଙ୍କ ଅନୁସରଣ କରି ତାଙ୍କ ପରେ ଆହୁରି ଅନେକ ସମାଲୋଚକ ମଧ୍ୟ ଜଗନ୍ନାଥଙ୍କୁ ଶବର ଦେବତା ବୋଲି ପ୍ରତିପାଦନ କରନ୍ତି । କିନ୍ତୁ, ସେ ସବୁ ନେହରୂଙ୍କ ଦୁର୍ବଳ ଯୁକ୍ତି ଉପରେ ପ୍ରତିଷ୍ଠିତ ହୋଇଛି ।

୧୯୬୪ ମସିହା ବେଳକୁ ଡଃ ବେଣୀମାଧବ ପାଢ଼ୀଙ୍କର 'ଜଗନ୍ନାଥ ହିଁ ଶବର ଦେବତା'; ଏହି ଅଭିମତ 'ଦାରୁଦେବତା' ଗ୍ରନ୍ଥରେ ପ୍ରକାଶ ପାଇଗଲା । କ୍ରମଶଃ ବୌଦ୍ଧମତବାଦ, ଜୈନ୍ୟମତବାଦ ଆଦି ଦୁର୍ବଳ ହୋଇପଡ଼ିଲେ ଓ ସମାଜର ବୁଦ୍ଧିଜୀବୀମାନେ ଡଃ ପାଢ଼ୀଙ୍କ ମତକୁ ଶେଷ ସିଦ୍ଧାନ୍ତ ଭାବରେ ଗ୍ରହଣ କରିନେଲେ । ଏହାପରେ ଅଳ୍ପ କେତେଟା ବର୍ଷ ବିତିଗଲା ପରେ ୧୯୭୦ ମସିହା ବେଳକୁ ପଶ୍ଚିମ ଜର୍ମାନୀରେ ଓଡ଼ିଶା ସଂସ୍କୃତି ଉପରେ ଗବେଷଣା ଲାଗି ଏକ ପ୍ରତିଷ୍ଠାନ ଗଢ଼ି ଉଠିଲା । ତାହାର ନାମ ରଖାଗଲା 'Orissa Research Project. ଜର୍ମାନୀର ଦୁଇଟି ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟର ଆନୁକୂଲ୍ୟରେ (Heidelberg University and Freiberg University) ଏ ବିଭାଗ ନିଜର କର୍ମପଥରେ ଅଗ୍ରସର ହେଲା । ଏଥିରେ ଭାରତର ସଂସ୍କୃତ ଅଧ୍ୟାପକ ଡଃ ଗୋପାଳ ଚରଣ ତ୍ରିପାଠୀ, ଜର୍ମାନୀର ସଂସ୍କୃତ ଅଧ୍ୟାପକ ଷ୍ଟିଟେନ୍‌କୋନ୍, ଆଙ୍କଉଲଟ୍ ଏସମାନ୍ (Asst.prof.—South Asia Institute), ହରମାନ୍ କୁଲକେ (Representative—South Asia Insitute) ପ୍ରଭୃତି ବିଜ୍ଞ ପଣ୍ଡିତମାନେ ମୁଖ୍ୟ ଅଂଶ ଗ୍ରହଣ କଲେ । କୁମାରୀ ଏସମାନ୍ ଥିଲେ ଭାରତ ଓ ମେଜୋ ଆମେରିକାର (Mezzo America) ଧର୍ମଧାରା ଉପରେ ଜଣେ ନବ୍ୟା ଗବେଷିକା ଏବଂ କୁଲ୍‌କେ ହେଉଛନ୍ତି ଦକ୍ଷିଣ-ପୂର୍ବ ଏସିଆର ଇତିହାସ ଉପରେ ଜଣେ ଗବେଷକ । ଏମାନଙ୍କୁ ଓଡ଼ିଶାର ତଥା ଜର୍ମାନୀର ଆହୁରି ଅନେକ ପଣ୍ଡିତ ସହଯୋଗିତା କରିଥିଲେ । ପ୍ରଫେସର କେ. ଏନ୍ ଦାସ, ଡଃ ସତ୍ୟନାରାୟଣ ରାଜଗୁରୁ, ଐତିହାସିକ କେଦାରନାଥ ମହାପାତ୍ର, ଶ୍ରୀଯୁକ୍ତ ପ୍ରଭାତ ମୁଖାର୍ଜୀ, ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ପ୍ରଫେସର ମନ୍ମଥନାଥ ଦାସ, ପ୍ରଫେସର ଲକ୍ଷ୍ମଣକୁମାର ମହାପାତ୍ର, ପ୍ରଫେସର୍ ଗଣେଶ୍ୱର ମିଶ୍ର, ପଣ୍ଡିତ କୃଷ୍ଣଚନ୍ଦ୍ର ରାଜଗୁରୁ, ପ୍ରଫେସର୍ ଭି. ରାଘବନ୍ (ମାନ୍ଦ୍ରାଜ) ସେମାନଙ୍କର ରିସର୍ଚ୍ଚ ଆସିଷ୍ଟାଣ୍ଟ୍ ପୂର୍ଣ୍ଣଚନ୍ଦ୍ର ମିଶ୍ର, ସୁରେଶ୍ୱରୀ ମିଶ୍ର, ଆର୍. ପି. ମିଶ୍ର, ଆର୍ତ୍ତତ୍ରାଣ ଷଡ଼ଙ୍ଗୀ, ହରେକୃଷ୍ଣ ରଣା, ପଣ୍ଡିତ

ଜଟାଧାରୀ ମିଶ୍ର ପ୍ରଭୃତ ପଣ୍ଡିତମାନେ ଏ କାର୍ଯ୍ୟରେ ଅକୁଣ୍ଠ ସାହାଯ୍ୟ କରିଥିଲେ ବୋଲି ଏ ଅନୁଷ୍ଠାନ ତରଫରୁ ଲିଖିତ ଗ୍ରନ୍ଥରେ ଉଲ୍ଲେଖ କରାଯାଇଛି । ଏମାନଙ୍କ ଛଡ଼ା ଇଂରାଜୀ ଅଧ୍ୟାପକ ରାଜକିଶୋର ମିଶ୍ର ଓ ମୋ ଭଳି ଅନେକ ସାମାନ୍ୟବ୍ୟକ୍ତି ବିଶେଷଙ୍କର ସାହାଯ୍ୟ ଏହି ଜର୍ମାନସଂସ୍ଥା ଗ୍ରହଣ କରିଥିଲେ ମଧ୍ୟ ଭ୍ରମବଶତଃ ସେମାନଙ୍କ ପୁସ୍ତକରେ ଏ ବିଷୟ ପ୍ରକାଶ କରିନାହାନ୍ତି । ଅଧ୍ୟାପକ ରାଜକିଶୋର ମିଶ୍ର ମହିମାଧର୍ମ ସମ୍ବଳିତ ପୁସ୍ତକମାନ ସେମାନଙ୍କ ପାଇଁ ଇଂରାଜୀରେ ଅନୁବାଦ କରିଥିଲେ ଓ ମୁଁ ଜଗନ୍ନାଥ ତତ୍ତ୍ୱ ସମ୍ବଳିତ ସ୍କନ୍ଦପୁରାଣ ଉତ୍କଳ ଖଣ୍ଡର ଇଂରାଜୀ ଅନୁବାଦ କରି ସେମାନଙ୍କୁ ଯୋଗାଇ ଦେଇଥିଲି । ମୋର ବିଶ୍ୱାସ, ଆମଭଳି ଆହୁରି ଅନେକ ବ୍ୟକ୍ତି ଥିବେ, ଯେଉଁମାନଙ୍କ ସାହାଯ୍ୟ ସହାନୁଭୂତି ବିଷୟ ଏହି ଜର୍ମାନ ଗବେଷକମାନେ ସ୍ୱୀକାର କରି ପ୍ରକାଶ କରିନାହାନ୍ତି । ସେତେବେଳକୁ ଓଡ଼ିଶାରେ ଜଗନ୍ନାଥ ତତ୍ତ୍ୱ ଉପରେ ପ୍ରତିଷ୍ଠା ଅର୍ଜନ କରିଥିବା ପ୍ରଫେସର୍ ଡଃ ବେଣୀମାଧବ ପାଢ଼ୀ, ପ୍ରଫେସର୍ ଡଃ କାହ୍ନୁଚରଣ ମିଶ୍ରଙ୍କର ବ୍ୟକ୍ତିଗତ ସାହାଯ୍ୟ ଏମାନେ ନେଇଥିବାର ଉଲ୍ଲେଖ କେଉଁଠିହେଲେ କରିନାହାନ୍ତି । ମାତ୍ର ସେମାନଙ୍କର ରଚିତ ପୁସ୍ତକ ହିଁ ଏମାନଙ୍କ ପାଇଁ ପ୍ରଧାନ ଉପାଦେୟ ପୁସ୍ତକ ହୋଇଛି । ଅବଶ୍ୟ ଅନୁଶୀଳନୀ Reference କ୍ରମରେ ସେ ସବୁ ପୁସ୍ତକର ନାମ ଉଲ୍ଲେଖ କରାଯାଇଛି । ସେ ଯାହାହେଉ, ଜର୍ମାନୀର ଯେଉଁ ଅନ୍ୟାନ୍ୟ ଗବେଷକଗଣ ଏହି ଗବେଷଣା କାର୍ଯ୍ୟରେ ସଂପୃକ୍ତ ହୋଇଥିଲେ, ସେମାନେ ହେଉଛନ୍ତି—ଜେ ଲିଚ୍, କ. ଫେସର୍, ଇ. ହେନ୍ ଇତ୍ୟାଦି ।

ଏହା ସ୍ୱୀକାର୍ଯ୍ୟ ଯେ ଜର୍ମାନର ଏହି ଗବେଷଣା ସଂସ୍ଥା ଆନୁକୂଲ୍ୟରେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଇ ଓ ଉପରୋକ୍ତ ବିଦ୍ୱାନ୍‌ମାନଙ୍କର ସହାୟତା ନେଇ The Cult of Jagannath and Regional Tradition of Orissa' ନାମରେ ଯେଉଁ ପୁସ୍ତକଟି ଜଗନ୍ନାଥଙ୍କ ଉପରେ ୧୯୭୮ ମସିହାରେ ପ୍ରକାଶିତ ହେଲା, ତାହା ଜଗନ୍ନାଥ ତତ୍ତ୍ୱ ବିଷୟକ ଗବେଷଣା କ୍ଷେତ୍ରରେ ଏକ ଐତିହାସିକ ଅଭିନନ୍ଦନୀୟ ପଦକ୍ଷେପ । ଏଥିରେ ଅନେକ ଉପାଦାନ, ସଂଖ୍ୟାଚିତ୍ର, ମାନଚିତ୍ର ଆଦି ସଂଗ୍ରହ କରାଯାଇ ଆଲୋଚନାକୁ ପର୍ଯ୍ୟାପ୍ତ କରାଯାଇଛି । ମାତ୍ର, ସେହି ପର୍ଯ୍ୟାପ୍ତ ଉପାଦାନ ମଧ୍ୟରେ ଗବେଷକମାନେ ପଥବଣା ହୋଇଯାଇଛନ୍ତି । ଯେପରି ଏକ ମହାରଣ୍ୟ ମଧ୍ୟରେ ପ୍ରବେଶ କଲେ ପଥବଣା ହୋଇଯିବା ସ୍ୱାଭାବିକ୍ ହୋଇଥାଏ, ସେହିପରି ଏହି ବିଦେଶୀ ଗବେଷକମାନେ ସୁଦୂର ଓଡ଼ିଶାରେ ଗଢ଼ିଉଠିଥିବା ଏହି ବିଶାଳ ଜଗନ୍ନାଥ ସଂସ୍କୃତିର ସୂତ୍ର ପାଇବାରେ ପଥହରା ହୋଇପଡ଼ିଛନ୍ତି । ସ୍ୱୀକାର ନ କଲେ ମଧ୍ୟ, ଡଃ ବେଣୀମାଧବ ପାଢ଼ୀଙ୍କର ଦାରୁଦେବତା ପୁସ୍ତକ ଓ ଡଃ କାହ୍ନୁଚରଣ ମିଶ୍ରଙ୍କର The Cult of Jagannath' ଗ୍ରନ୍ଥ, ସେମାନଙ୍କୁ ଏ କାର୍ଯ୍ୟରେ ବହୁଦୂର

ଆଗେଇ ନେଇଛନ୍ତି । ତାହାପରେ, ସେମାନେ ନିଜ ଚେଷ୍ଟାରେ ଅନେକ ପରିପୂରକ ଉପାଦାନ ସଂଗ୍ରହ କରିଛନ୍ତି । ସବୁ ଉପାଦାନ ଏକତ୍ରିତ ହେଲାପରେ ସେମାନେ ସେ ସବୁକୁ ନିଜ ଦୃଷ୍ଟିରେ ବିଚାର କରି ଦେଖିଛନ୍ତି । କିନ୍ତୁ, ଦୃଷ୍ଟିକୋଣରେ ନିରପେକ୍ଷତା ନ ଥିବାରୁ ତଥା ଜଗନ୍ନାଥ ତତ୍ତ୍ୱ ଉପରେ ପ୍ରତିଷ୍ଠା ଲାଭ କରିଥିବା ବିଦ୍ୱାନ୍‌ମାନଙ୍କ ସାହାଯ୍ୟ ନ ନେଇଥିବା ହେତୁ, ସେମାନଙ୍କର ପ୍ରକାଶିତ ଉପରୋକ୍ତ ଗ୍ରନ୍ଥଟିରେ ସିଦ୍ଧାନ୍ତ ଯେପରି ଅସାମଞ୍ଜସ୍ୟ ଓ ଅସମୀଚୀନ ହୋଇଛି, ତାହା ଏ ପୁସ୍ତକରେ ଯଥାସ୍ଥାନରେ ଆଲୋଚିତ ହୋଇଛି ।

ଏ ସଂସ୍ଥାରେ କାର୍ଯ୍ୟ କରୁଥିବା ଗବେଷକମାନଙ୍କ ମଧ୍ୟରୁ ଡଃ ଷ୍ଟିଟେନ୍ କୋନ୍ ଡଃ ଗଙ୍ଗାଚରଣ ତ୍ରିପାଠୀ ପ୍ରଭୃତି ଅଳ୍ପ କେତେଜଣଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତଙ୍କ ପକ୍ଷରେ ସଂସ୍କୃତ ବୁଝିବା କଷ୍ଟକର ଥିଲା । ତେଣୁ ମୋ ଭଳି କେତେଜଣଙ୍କ ସାହାଯ୍ୟ ନେଇ ଏମାନେ ସଂସ୍କୃତଗ୍ରନ୍ଥରୁ ଜଗନ୍ନାଥ ତତ୍ତ୍ୱ ବୁଝିବାକୁ ଚେଷ୍ଟା କରିଥିଲେ । ମୁଁ ସେମାନଙ୍କ ପାଇଁ ସେଥିଲାଗି ଜଗନ୍ନାଥ ତତ୍ତ୍ୱର ମୁଖ୍ୟ ସଂସ୍କୃତଗ୍ରନ୍ଥ ସ୍କନ୍ଦପୁରାଣ ଉତ୍କଳଖଣ୍ଡକୁ (ବୈଷ୍ଣବଖଣ୍ଡ) ଇଂରାଜୀରେ ଅନୁବାଦ କରିଥିଲି । ଏ କଥା ମୋର ୧୯୭୬ ମସିହାରେ ପି: ଏଚ୍: ଡି ପ୍ରାପ୍ତ ନିବନ୍ଧ 'A critical study of Skanda Purana, Purusottama Kshetra Mahatmyam' ତଥା ପରେ ପ୍ରକାଶିତ 'The Land of Vishnu' ପୁସ୍ତକର ଆରମ୍ଭରେ ଉଲ୍ଲିଖିତ ହୋଇଛି । ସେ ଯାହାହେଉ, ସେମାନେ ଯେତେବେଳେ ଏହି ଉତ୍କଳଖଣ୍ଡଟି ପଢ଼ିଲେ, ସେତେବେଳେ ଇନ୍ଦ୍ରଦ୍ୟୁମ୍ନ ଉପାଖ୍ୟାନରେ ଦେଖିଲେ ଯେ, ପୁରୁଷୋତ୍ତମ କ୍ଷେତ୍ରରେ ପୂର୍ବରୁ ନୃସିଂହ ପୂଜା ପାଉଥିଲେ । ତାହାକୁ ହିଁ ସେମାନେ ଜଗନ୍ନାଥ ଉପାସନାର ମୂଳରୂପ ବୋଲି ଗ୍ରହଣକଲେ ଓ ଏଥିପାଇଁ ଖୋଜି ଖୋଜି ପରିପୂରକ ଭାବରେ ଆହୁରି କେତେକ ପ୍ରମାଣ ଯୋଡ଼ିଲେ ।

ପୁଣି ଡଃ ବେଣୀମାଧବ ପାଢ଼ୀଙ୍କର ପୁସ୍ତକ 'ଦାରୁଦେବତା' ସେମାନଙ୍କୁ ଆଉ ଏକ ଦିଗକୁ ଟାଣିନେଲା । ସେମାନଙ୍କର ହୃଦ୍‌ବୋଧ ହେଲା ଯେ ଜଗନ୍ନାଥ ହେଉଛନ୍ତି, ମୂଳତଃ ଶବର ବା ଆଦିବାସୀଙ୍କର ଦେବତା । ସେହି ଗବେଷକମାନଙ୍କ ମଧ୍ୟରେ ଯେଉଁମାନେ ନୃତତ୍ତ୍ୱବିତ୍ ଥିଲେ, ସେମାନଙ୍କ ମନକୁ ଏହା ଭଲଭାବରେ ପାଇଗଲା । ଏଣୁ ଏ ତତ୍ତ୍ୱକୁ ସିଦ୍ଧାନ୍ତ ଭାବରେ ଗ୍ରହଣ କରିବା ପାଇଁ ସେମାନେ ଆଦିବାସୀ ଅଞ୍ଚଳ ବୁଲି ଆହୁରି କେତେକ ପରିପୂରକ ପ୍ରମାଣ, ଫଟୋ ଓ କାହାଣୀମାନ ସଂଗ୍ରହ କଲେ । ତାହାପରେ ନୃସିଂହ ସିଦ୍ଧାନ୍ତ ଓ ଆଦିବାସୀ ସିଦ୍ଧାନ୍ତ ଦୁଇଟିକୁ ମିଶାଇ ତଥା ଗୋଳାଇ ଦେଇ ଏକ ଶଙ୍କର ସିଦ୍ଧାନ୍ତ ଭାବରେ ପୁସ୍ତକଟିରେ ପ୍ରକାଶ କଲେ । ଆଲୋଚନା ବେଳେ ପ୍ରମାଣ ଭାବରେ ସେମାନେ ପରସ୍ପରର ପ୍ରବନ୍ଧକୁ ମୁଖ୍ୟତଃ ଅନୁଶୀଳନରେ ଯୁକ୍ତକଲେ ।

ଏମାନଙ୍କ ମଧ୍ୟରେ ସର୍ବପ୍ରଥମ ଫେସ୍କ୍ରାଜ୍ଙ୍କ ଡଃ ଗଙ୍ଗାଚରଣ ତ୍ରିପାଠୀ ଜଗନ୍ନାଥଙ୍କର ଅସଲ ମୌଳିକତା ତଥା ବୃକ୍ଷମୂଳତ୍ୱ ବିଷୟ ଜାଣିପାରୁଥିଲେ ଓ ସୁଭଦ୍ରାଙ୍କୁ ଲକ୍ଷ୍ମୀସ୍ୱରୂପିଣୀ ବୋଲି ବୁଝିଥିଲେ, ତଥାପି ଦଳଗତ ଗବେଷଣା ଦୃଷ୍ଟିରୁ ନିଜେ ସ୍ୱାଧୀନ ଭାବରେ ମନ୍ତବ୍ୟଟି କରିପାରିଲେ ନାହିଁ । ସେ ତାଙ୍କ ନିଜ ଲେଖାରେ ଜଗନ୍ନାଥଙ୍କ ବୃକ୍ଷମୂଳତ୍ୱ ସୂଚାଇ ପ୍ରମାଣ ଦେଇ ମଧ୍ୟ ଶେଷକୁ ଅକାରଣରେ ସିଦ୍ଧାନ୍ତ ବଦଳାଇ ପାଶ୍ଚାତ୍ୟ ବନ୍ଧୁମାନଙ୍କ ସହ କରମର୍ଦ୍ଦନ କଲେ । (୧୪) ଫଳରେ ସତ୍ୟ ଉଦ୍‌ଘାଟିତ ହୋଇ ମଧ୍ୟ ଆତ୍ମଗୋପନ କରି ଅପ୍ରକାଶିତ ରହିଲା । ଜର୍ମାନବନ୍ଧୁମାନେ ସନ୍ତୁଷ୍ଟ ହେଲେ । ଡଃ ତ୍ରିପାଠୀ ଜର୍ମାନୀର ଫ୍ରିବର୍ଗ ବିଶ୍ୱବିଦ୍ୟାଳୟରେ ଆସିଷ୍ଟାଣ୍ଟ ପ୍ରଫେସର୍ ହୋଇ ଯୋଗଦେବାର ସୁଯୋଗ (୧୯୭୪-୧୯୭୭) ଲାଭକଲେ ।

ଏହି ଗବେଷଣା ସଂସ୍ଥାରେ ସାହାଯ୍ୟ କରିଥିଲେ ବୋଲି ଯେଉଁମାନଙ୍କ ନାମ ଏ ପୁସ୍ତକରେ ପ୍ରକାଶିତ ହୋଇଛି, (୧୫) ତନ୍ମଧ୍ୟରୁ ଐତିହାସିକ କେଦାରନାଥ ମହାପାତ୍ର, ପ୍ରଫେସର ଗଣେଶ୍ୱର ମିଶ୍ର (ଦର୍ଶନ), ପ୍ରଫେସର୍ ପ୍ରହ୍ଲାଦ ପ୍ରଧାନଙ୍କ ସହିତ ମୁଁ ପ୍ରତ୍ୟକ୍ଷ ଆଲୋଚନା କରିଛି । ସେମାନେ କେହିହେଲେ ଏ ସଂସ୍ଥାର 'ଗବେଷଣା ସିଦ୍ଧାନ୍ତରେ ସନ୍ତୁଷ୍ଟ ଓ ଏକମତ ନଥିଲେ । କେଦାରନାଥ ମହାପାତ୍ର ଥିଲେ ଜଗନ୍ନାଥଙ୍କ ଉପରେ ଜୈନ ମତବାଦୀ । ଗଣେଶ୍ୱର ମିଶ୍ର ଥିଲେ ବେଦାନ୍ତ ମତବାଦୀ । ନୃତତ୍ତ୍ୱବିତ୍ ପ୍ରହ୍ଲାଦ ପ୍ରଧାନ ବୌଦ୍ଧ ମତବାଦକୁ ପସନ୍ଦ କରୁଥିଲେ ଓ ଏ ସମ୍ପର୍କରେ ପୌରୁଷ ଆଦି ପତ୍ରିକାରେ କେତୋଟି ପ୍ରବନ୍ଧ ଛପିଥିଲେ । ସେମାନେ ତେଣୁ ଏହି ପାଶ୍ଚାତ୍ୟ ଗବେଷକମାନଙ୍କ ତାଦୃଶ ସିଦ୍ଧାନ୍ତର ପକ୍ଷପାତୀ ନଥିଲେ । ଜଗନ୍ନାଥଙ୍କ ଉପରେ ବୌଦ୍ଧମତର ଆରୋପଣ କରିଥିବା ବିଶିଷ୍ଟ ପଣ୍ଡିତ ତଥା ପ୍ରଖ୍ୟାତ ରାଜନୀତିଜ୍ଞ ଡଃ ହରେକୃଷ୍ଣ ମହତାବଙ୍କର ସମୁଚିତ ଉପଦେଶ ଏ ସଂସ୍ଥା ଗ୍ରହଣ କରିନାହାନ୍ତି କି ତାଙ୍କର ଯୁକ୍ତିଗୁଡ଼ିକ ପ୍ରତି ଯଥେଷ୍ଟ ଧ୍ୟାନ ଦେଇନାହାନ୍ତି । ତେଣୁ ଡଃ ମହତାବ ଏହି ଜର୍ମାନପଣ୍ଡିତମାନଙ୍କର ସିଦ୍ଧାନ୍ତକୁ ମୋଟେ ଗ୍ରହଣ କରିନାହାନ୍ତି ଓ ସେଥିପାଇଁ ତାଙ୍କୁ 'The mysterious Jagannath and Problem of History of Orissa ନାମରେ ଖଣ୍ଡେ ପୁସ୍ତିକା ଲେଖି, ତାକୁ ଭୁବନେଶ୍ୱରର ହ୍ୱାଇଟ ପ୍ରେସ୍‌ରେ ଛପାଇ ପଣ୍ଡିତମାନଙ୍କୁ ବାଣ୍ଟିବାକୁ ପଡ଼ିଛି । ଡଃ ମହତାବ, ଏ ପୁସ୍ତକରେ ଥିବା

---

୧୪ । The Cult of Jagannath and Regional Tradition of Orissa—C. J. R. T. O-PP-31 (See The article of G. C. Tripathy)

୧୫ । C. J. R.T.O.-PP.-(Preface) xi.

ଆଲୋଚନା ଉଚିତ ଭାବରେ ପର୍ଯ୍ୟାପ୍ତ ହୋଇନାହିଁ ବୋଲି ନିମ୍ନୋକ୍ତ ପ୍ରକାରେ ସ୍ପଷ୍ଟ ମତ ବ୍ୟକ୍ତ କରିଛନ୍ତି । ଯଥା—

"The articles have been edited by Anncharlott Eshmann, Hermann Kulke and Gaya charan Tripathy. × × As far as I know the details of the Cult of Jagannath from various angles have not been so elaborately dealt with by any scholar or group of scholars as have been done by the writers in this book of 1978. (୨୬) ପ୍ରଖ୍ୟାତ ଗବେଷକ ଡଃ ମହତାବ ଡଃ କୁଲ୍‌କେ ପ୍ରଭୃତିଙ୍କର 'ନୃସିଂହ ହିଁ ଜଗନ୍ନାଥ ଉପାସନାର ମୂଳ;' ଏହି ମତକୁ ଏଥିରେ ଅତି ଦକ୍ଷତାରେ କାଟି ଉଡ଼ାଇଦେଇଛନ୍ତି (୨୬A) । ଜଗନ୍ନାଥଙ୍କ ଉପାସନାରେ ନୃସିଂହ ମନ୍ତ୍ରର ପ୍ରୟୋଗକୁ ସ୍ୱୀକାର କରି ତାହା ଉପରେ ଅଯଥାରେ ବିଶେଷ ଗୁରୁତ୍ୱ ଆରୋପ କରି ଜର୍ମାନ ଗବେଷକମାନେ ନୃସିଂହଙ୍କୁ ଜଗନ୍ନାଥ ଉପାସନାର ମୂଳ ସ୍ୱରୂପ ବୋଲି କହି ତାକୁ ପୁଣି ଆଦିବାସୀମୂଳକ ବୋଲି ଗୋଳାଇଘାଣ୍ଟି କହିଥିଲେ । ମାତ୍ର ଡଃ ମହତାବ ଏହାକୁ ଖଣ୍ଡନ କରି କହିଛନ୍ତି ଯେ, ଏହି ଜର୍ମାନ ଗବେଷକମାନେ ନୃସିଂହ ମନ୍ତ୍ରର ପ୍ରୟୋଗ ଉପରେ ଏତେ ଗୁରୁତ୍ୱ ଦେବାର ଆବଶ୍ୟକତା ନଥିଲା । ଯଦି ନୃସିଂହ ମନ୍ତ୍ର ଉପରେ ଏତେ ଗୁରୁତ୍ୱ ଦିଆଗଲା, ତେବେ ବାସୁଦେବ ମନ୍ତ୍ର ଉପରେ ମଧ୍ୟ ସେତିକି ଗୁରୁତ୍ୱ ଦେବାର ଥିଲା । କାରଣ, ବଳଭଦ୍ରଙ୍କୁ ବାସୁଦେବ ମନ୍ତ୍ରରେ ପୂଜା କରାଯାଏ । ଏକାନଂଶାଙ୍କୁ

---

୨୬ । The Mysterious Jagannath and Problems of History of Orissa—Mahatab - (No Publication date)—P.P.1. (Hereafter,—M. J. P. H.O.)

୨୬A। See my 'Article'—"An attempt of the German scholars to discover truth behind the mysterious Jagannath "—Published—Indo German seminar on German thinkers and India— The universe—Maitri Sarani Cuttack on 5.10 1986. This was discussed in that seminar in presence of Dr. H. Kulke, the chief guest and other dignitaries of Orissa.

ଚଣ୍ଡୀ ବା ଦୁର୍ଗା ରୂପରେ ପୂଜା କରାଯାଏ । ଏକାନଂଶା ହିଁ ସୁଭଦ୍ରା । ତାଙ୍କୁ ମାହେଶ୍ୱରୀ ମନ୍ତ୍ରରେ ପୂଜା କରାଯାଏ । ଗବେଷକମାନଙ୍କର ଚେଷ୍ଟା ସମାନ ଦୃଷ୍ଟି ଭଙ୍ଗୀ-ଥିବାର ଆବଶ୍ୟକତା ଥିଲା । ଡଃ ମହତାବଙ୍କ ଭାଷାରେ,—

"Dr. Kulke points out the use of Narasinha Mantra and suggests that origin of Jagannath might be (ସମ୍ପାଦକ—Note) Narasingha. I am afraid the learned author has taken much more serious notice of this Mantra than it deserves. It merely shows that at one stage the incarnation of Narasingh (Vishnu) was attributed to Jagannath as once Vasudeva or Purusottama was attributed to him. The remains of the Vasudeva attribution are found in Vasudeva Mantra with which Balaram is worshipped. In the initial stage Ekanamsa was worshipped as Chandi or Durga as the description of her image in the canons indicate. The same conception appears to have continued even after Ekanamsa was taken to be the sister of Balarama and Jagannath (Krishna) and replaced by Subhadra. This is perhaps the reason why Subhadra is worshipped with Maheswari Mantra. Literatures have been produced to prove Jagannath as representing one or the other incarnation of Vishnu Purusottama···(୨୭).

ଏତକରେ ଡଃ ମହତାବ ଜଗନ୍ନାଥଙ୍କର ବସ୍ତୁଭୂକୁ ପରୋକ୍ଷରେ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଜର୍ମାନ ଗବେଷକମାନଙ୍କର ଗବେଷଣା ଦୃଷ୍ଟିକୁ ସମାଲୋଚନା କରି ପୁଣି ଯଥାର୍ଥରେ ବୁଝାଇଛନ୍ତି ଯେ, ନବମ-ଦଶମ ଶତାବ୍ଦୀରେ ବ୍ରାହ୍ମଣ୍ୟଧର୍ମର ପୁନରଭ୍ୟୁଦୟ ହେଲା । ଏତତ୍କାଳବେଳେ ପୁରାଣମାନ ଲେଖାଗଲା । ଏହାଦ୍ୱାରା ସେ ପ୍ରକାରାନ୍ତରେ ସ୍କନ୍ଦପୁରାଣ (ଉତ୍କଳ ଖଣ୍ଡ)ର ସମୟ ନବମ-ଦଶମ ଶତାବ୍ଦୀ

---

୨୭ । M. J. P. H.O—Mahatab,—pp-8.

ବୋଲି ସ୍ୱୀକାର କରିବନ୍ତି, (୨୮) ଯଦ୍ୱାରା ଅନ୍ୟାନ (୨୯) ଏହାର ସମୟ ଯେ ଷୋଡ଼ଶ ଶତାବ୍ଦୀ ବୋଲି କହୁଛନ୍ତି । ସେ ଯାହାହେଉ, ନବମ-ଦଶମ ଶତାବ୍ଦୀରେ ରଚିତ ପୁରାଣ-ମାନଙ୍କରେ ବିଷ୍ଣୁଙ୍କର ଅବତାର ନୃସିଂହ ଉପରେ ଗୁରୁତ୍ୱ ଦିଆଗଲା । ଏହି ସମୟରେ ଶଙ୍କରାଚାର୍ଯ୍ୟ ନୃସିଂହଙ୍କ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥିଲେ ଓ ତାଙ୍କ ଶୃଙ୍ଗେରୀ ମଠରେ ନରସିଂହ ମୂର୍ତ୍ତି ସ୍ଥାପନ କରି ପୂଜା କଲେ । ପୁରୀର ଶଙ୍କରାନନ୍ଦ ମଠରେ ମଧ୍ୟ ଅନୁରୂପ ବ୍ୟବସ୍ଥା ହୋଇ ନୃସିଂହ ପୂଜା ପାଇଲେ । କାରଣ, ଶଙ୍କରା-ନନ୍ଦ ମଠ ହେଉଛି ଶୃଙ୍ଗେରୀ ମଠର ଏକ ଶାଖା । (୩୦) ଏହି ଶଙ୍କରାଚାର୍ଯ୍ୟ ନିଜର ଦିଗ୍-ବିଜୟ କାଳରେ ପୁରୀକୁ ଆସି ଏଠାରେ ଗୋବର୍ଦ୍ଧନ ମଠ ସ୍ଥାପନ କରିଥିଲେ ଓ ଜଗନ୍ନାଥ ଉପାସନାରେ ଏହାଙ୍କର ଗଭୀର ପ୍ରଭାବ ଥିଲା । (୩୧) ତେଣୁ ନୃସିଂହ ଉପାସନାର ପ୍ରଭାବ ବିଷ୍ଣୁ-ଜଗନ୍ନାଥଙ୍କ ଠାରେ ପରିଦୃଷ୍ଟ ହେବାରେ ବିଚିତ୍ରତା ନାହିଁ । ଡଃ ମହତାବ ସ୍ପଷ୍ଟ ଲେଖିଛନ୍ତି ଯେ, ଶ୍ରୀଧର ସ୍ୱାମୀଙ୍କର ଭାଗବତ ଉପରେ ପ୍ରଣୀତ ଟୀକାରୁ ବେଶ୍ ଜଣାଯାଏ ଯେ, ଭାଗବତ ଧର୍ମରେ ବିଷ୍ଣୁଙ୍କର ଅବତାର ନୃସିଂହଙ୍କର ପ୍ରଭାବ ଯଥେଷ୍ଟ ଥିଲା । (୩୨) ତେଣୁ ପରେ ଜଗନ୍ନାଥ ଦାସ ତାଙ୍କ ଓଡ଼ିଆ ଭାଗବତରେ ମଧ୍ୟ ଲକ୍ଷ୍ମୀପତି ନୃସିଂହଙ୍କୁ ପ୍ରତ୍ୟେକ ଅଧ୍ୟାୟରେ ବନ୍ଦନା କରିଛନ୍ତି ।

"ନମଇଁ ନୃସିଂହ ଚରଣ । ଅନାଦି ପରମ କାରଣ ।।"

"ତୋ ଲୀଳା ଜଗତେ ବିଖ୍ୟାତ । ନମସ୍ତେ ପଦ୍ମାଳୟା କାନ୍ତ ।।"

ପୁଣି ଏହି ଓଡ଼ିଶୀ ବୈଷ୍ଣବମାନଙ୍କର ମୂଳ ଆରାଧ୍ୟ ହେଉଛନ୍ତି ଜଗନ୍ନାଥ । ଅତଏବ, ସାର କଥା ହେଲା, ଅଷ୍ଟମ ଶତାବ୍ଦୀ ବେଳକୁ ଉତ୍କଳଖଣ୍ଡରେ ଜଗନ୍ନାଥ ଓ ଓ ନୃସିଂହଙ୍କୁ ଏକ ବୋଲି ବିଚାର କରାଯାଇଥିଲା । ଉଭୟେ ଥିଲେ ଲକ୍ଷ୍ମୀପତି 'ବିଷ୍ଣୁ' । ଶଙ୍କରାଚାର୍ଯ୍ୟ ଏହି ସମୟରେ ପୁରୀକୁ ଆସିଥିଲେ । ସେ ମଧ୍ୟ ଏହି କ୍ଷେତ୍ରରେ ବିଶ୍ୱାସୀ

୨୮ । M. J. P. H. O.—pp. 8.

୨୯ । M. J. P. H. O. — PP. 3.(ନୀଳାଦ୍ରି ମହୋଦୟର ସମୟ ହେଉଛି ୧୫ଶ ବା ଷୋଡ଼ଶ ଶତାବ୍ଦୀ; ମାତ୍ର ଉତ୍କଳ ଖଣ୍ଡର ସମୟ ଅଷ୍ଟମ ଶତାବ୍ଦୀ । ଏଥିପାଇଁ ମୋର 'Land of Vishnu' ପୁସ୍ତକର ଶେଷଅଧ୍ୟାୟ '(Date of Purusottma Mahatmayam' ଦ୍ରଷ୍ଟବ୍ୟ ।)

୩୦ । M.J. P.H. O. pp-8

୩୧ । M. J. P. H. O. — PP.-9.

୩୨ । M. J. P. H. O. —pp-8. ; ଦ୍ରଷ୍ଟବ୍ୟ— ଦ୍ୱାଦଶ ଶତାବ୍ଦୀରେ ରଚିତ ଜୟଦେବଙ୍କ ଗୀତଗୋବିନ୍ଦରେ ନୃସିଂହଙ୍କୁ ବିଷ୍ଣୁ-ଜଗଦୀଶ (ଜଗନ୍ନାଥ)ଙ୍କର ଏକ ଅବତାର ରୂପେ ଗ୍ରହଣ କରାଯାଇଛି ।

ହେଲେ ଓ ନିଜ ମଠରେ ନୃସିଂହଙ୍କୁ ଉପାସନା କଲେ । ଭାଗବତ ପୁରାଣର ସମୟ ଦ୍ୱାଦଶ ଶତାବ୍ଦୀ ବୋଲି କୁହାଯାଉଥିଲେ ମଧ୍ୟ ଅନ୍ୟ କେତେକ ସମାଲୋଚକଙ୍କ ମତରେ ଏହା ଦଶମ ଶତକଠାରୁ ମଧ୍ୟ ପୁରାତନ । ଅତଏବ, ଏଥିରେ ବର୍ଣ୍ଣିତ ନୃସିଂହ ଉପାସନା କଥା ଅତ୍ୟନ୍ତ ବାସ୍ତବ । ସେ ଦୃଷ୍ଟିରୁ ମହତାବ୍‌ଙ୍କ ମତ ଗ୍ରହଣଯୋଗ୍ୟ । ଷୋଡ଼ଶ ଶତାବ୍ଦୀ ବେଳକୁ ସେଥିପାଇଁ ଜଗନ୍ନାଥ ଦାସ ଭାଗବତରେ ନୃସିଂହଙ୍କ ତଥା ସେହି ଭାବରେ ଜଗନ୍ନାଥଙ୍କୁ ବନ୍ଦନା କରିବା ଅତ୍ୟନ୍ତ ପ୍ରାସଙ୍ଗିକ । ଏହା ଜଗନ୍ନାଥଙ୍କଠାରେ ଭାଗବତଧର୍ମ ମୂଳକ ତଥା ବିଷ୍ଣୁତ୍ୱକୁ ସୂଚାଉଛି ସିନା; ଶବର ଦେବତା, ବୌଦ୍ଧ ବା ଜୈନ ମତବାଦକୁ ନୁହେଁ ।

୧୯୪୮ ମସିହାରେ ଡଃ ମହତାବ ତାଙ୍କର ଓଡ଼ିଶା ଇତିହାସରେ ଜଗନ୍ନାଥଙ୍କୁ ବୌଦ୍ଧଦେବତା ବୋଲି ପ୍ରମାଣ କଲେ । ଏହାର ୩୨ବର୍ଷ ପରେ ସେ ଅନେକ ଗ୍ରନ୍ଥ ପଢ଼ିବା ପରେ ଏଭଳି ମତ ଦେଇ ଜର୍ମାନ ଗବେଷକମାନଙ୍କର ଯୁକ୍ତି ଖଣ୍ଡନ କରି ପ୍ରକାରାନ୍ତରେ ଜଗନ୍ନାଥଙ୍କୁ ବିଷ୍ଣୁ ବୋଲି ସ୍ୱୀକାର କଲେ ମଧ୍ୟ ତାଙ୍କ ମନରୁ ବୌଦ୍ଧ ମତବାଦର ବିଶ୍ୱାସ ପୂରାପୂରି ଦୂର ହୋଇନାହିଁ । କାରଣ, ଏ ମତବାଦ ତାଙ୍କର ବଳିଷ୍ଠ ଓ ପ୍ରଥମ ସଫଳ ପ୍ରଚେଷ୍ଟା । ଜଗନ୍ନାଥଙ୍କ ଉପରେ ଯେତେବେଳେ ଯେଉଁ ମତବାଦୀମାନେ ଦୃଷ୍ଟି ନିକ୍ଷେପ କରିଛନ୍ତି, ଜଗନ୍ନାଥ ସେମାନଙ୍କର ନିଜର ହୋଇଛନ୍ତି । ସେହି ଦୃଷ୍ଟିରୁ ବିଚାର କଲେ, ଜଗନ୍ନାଥ ବୌଦ୍ଧଧର୍ମର ଗବେଷକଙ୍କ ପାଇଁ ବୌଦ୍ଧ ଓ ଜୈନ ମତବାଦୀଙ୍କ ପାଇଁ ଜୈନ । ସେହିଭଳି ନୃତତ୍ତ୍ୱଗବେଷକଙ୍କ ପାଇଁ ଆଦିବାସୀ ଦେବତା ଓ ଅନ୍ୟ ଧର୍ମର ଗବେଷକଙ୍କ ପାଇଁ ସେହି ସେହି ଧର୍ମମୂଳକ ଦେବତା ଭାବରେ ଦୃଷ୍ଟିଗୋଚର ହୁଅନ୍ତି । ଯିଏ ଦ୍ୱୈତବାଦୀ, ଜଗନ୍ନାଥ ତାଙ୍କ ଦୃଷ୍ଟିରେ ଦ୍ୱୈତ; ପୁଣି ଅଦ୍ୱୈତବାଦୀଙ୍କ ଦୃଷ୍ଟିରେ ସେ ଅଦ୍ୱୈତ । ବିଶିଷ୍ଟା ଦ୍ୱୈତବାଦୀଙ୍କ ମତରେ ସେ ତଦ୍ରୂପ, ଆଉ ଶାକ୍ତ ମତରେ ସେ ଦକ୍ଷିଣ କାଳିକା । "ଶ୍ରୀକ୍ଷେତ୍ରେ ତୁ ଜଗନ୍ନାଥ ସ୍ୱୟଂ ଦକ୍ଷିଣ କାଳିକା ।" ସେ ପୁଣି ଶିବ ଭୈରବ, ଆଉ ବିମଳା ତାଙ୍କର ଭୈରବୀ । ଅତଏବ, ଯିଏ ଯେପରି ତାଙ୍କୁ ପ୍ରଥମରୁ ଭାବି ଗବେଷଣା ଚଳାଇଲା, ତାହା ଦୃଷ୍ଟିରେ ସେ ସେପରି ଦେଖାଯାଆନ୍ତି । ଏହା ପୂର୍ବରୁ ଗବେଷଣା ମାନଙ୍କରୁ ସ୍ପଷ୍ଟ । "ଯେ ଯଥା ମାଂ ପ୍ରପଦ୍ୟନ୍ତେ···(ଗୀତା) । ତେଣୁ ସେ ପ୍ରକୃତରେ ଗୀତାର ଭଗବାନ୍ ଯୋଗେଶ୍ୱର ଶ୍ରୀକୃଷ୍ଣ ପୁରୁଷୋତ୍ତମ । ଗୀତାଧର୍ମର ଏକ ନିଖୁଣ ପ୍ରତିମୂର୍ତ୍ତି; ବିଷ୍ଣୁ-କୃଷ୍ଣଙ୍କର ଏକ ଭାବମୂର୍ତ୍ତି ଦାରୁବ୍ରହ୍ମ, କ୍ଷରାକ୍ଷର ଅବ୍ୟକ୍ତ ପୁରୁଷ ପୁରୁଷୋତ୍ତମ ; ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ବର୍ତ୍ତମାନ ସେ ଯେଭଳି ଭାବରେ ଉପାସିତ, ଯେଉଁ ବିଷ୍ଣୁତ୍ୱରେ ପରିଭାବିତ, ମୂଳରୁ ହିଁ ସେ ତାହା । ଗବେଷଣାରେ ଆସିଛି ପରିବର୍ତ୍ତନ, ଚିନ୍ତାରାଜ୍ୟରେ ଆସିଛି ପୂର୍ଣ୍ଣବାତ୍ୟା; ମାତ୍ର ସେ ଯାହା, ତାହା ।

ତାଙ୍କର କିଛି ପରିବର୍ତ୍ତନ ହୋଇନାହିଁ କି ହେଉନାହିଁ । ସେ ରୂପ ସେହିପରି ବିରାଜିତ ଓ ହିନ୍ଦୁମାନଙ୍କ ଦ୍ୱାରା ଉପାସିତ । କେବଳ ମିଛ ମାୟାରେ ପଡ଼ି 'ଟ୍ରେଞ୍ଚୁ ହର୍ପ ନ୍ୟାୟ'ରେ ଆଜିର ଗବେଷକ ଘୂରିବୁଲୁଛି ସିନା !

୧୯୪୮ ମସିହାଠାରୁ ଆରମ୍ଭକରି ବର୍ତ୍ତମାନ ପର୍ଯ୍ୟନ୍ତ ବୌଦ୍ଧମତବାଦୀ ତଥା ଡଃ ମହତାବ ଉଠାଇଥିବା ତିନିଗୋଟି ଯଥାର୍ଥ ପ୍ରଶ୍ନ ହେଉଛି—(୩୩)

୧ । କାହିଁକି ଓ କିପରି ପୁରୀର ଜଗନ୍ନାଥ ହେଉଛନ୍ତି କୃଷ୍ଣବାସୁଦେବ ?

୨ । ଦୁଇଟି ଭାଇଙ୍କ ସହିତ ଭଉଣୀଙ୍କର ପୂଜାବିଧାନ କେଉଁଠି ହେଲେ ନାହିଁ । ତେବେ ଏଠାରେ ଏହାର କାରଣ କ'ଣ ?

୩ । ଜଗନ୍ନାଥଙ୍କ ମୂର୍ତ୍ତି ଏପରି ହେବାର କାରଣ କ'ଣ ?

ଡଃ ମହତାବଙ୍କର ଏହି ତିନିଗୋଟି ପ୍ରଶ୍ନର ଉତ୍ତର ଆମର ପରବର୍ତ୍ତୀ ଅଧ୍ୟାୟମାନଙ୍କର ଆଲୋଚନାରୁ ପରିଷ୍କାର ମିଳିପାରିବ । ତେଣୁ ଏଠାରେ ତାହାର ଆଲୋଚନାର ଆବଶ୍ୟକତା ନାହିଁ । ମାତ୍ର, ଏଠାରେ ଏତିକି କହିବାକୁ ପଡ଼ୁଛି ଯେ, ଜଗନ୍ନାଥ ହିଁ କୃଷ୍ଣବାସୁଦେବ ତଥା ପୁରୁଷୋତ୍ତମ । ସୁଭଦ୍ରା ବା ଏକାନଂଶା ଜଗନ୍ନାଥ-କୃଷ୍ଣ ଓ ବଳରାମ-ବଳିଭଦ୍ରଙ୍କର କେବଳ ଭଉଣୀ ନୁହନ୍ତି, ସେହି ଲକ୍ଷ୍ମୀସ୍ୱରୂପା (ଶ୍ରୀ) ତଥା ଦୁର୍ଗା ବା ଭୁବନେଶ୍ୱରୀ ରୂପିଣୀ ଭଦ୍ରା (୩୪) ବା ସୁଭଦ୍ରା ବିଷ୍ଣୁ-ଜଗନ୍ନାଥ ତଥା ଶିବ-ବଳଭଦ୍ରଙ୍କର ଶକ୍ତି ରୂପିଣୀ । ସେ ହିଁ ଶାକ୍ତଙ୍କର ଉପାସ୍ୟ ମହାଶକ୍ତି, ମହାମାୟା ଭଦ୍ରଦାୟିନୀ, ମଙ୍ଗଳମୟୀ ସୁଭଦ୍ରା । କେତେକ ଭକ୍ତଙ୍କ ପାଇଁ ସେ ଭଉଣୀ, ମାତ୍ର ପ୍ରକୃତରେ ସେ ମହାଶକ୍ତି । ତେଣୁ ଉତ୍କଳଖଣ୍ଡରେ କୁହାଯାଇଥିଲା,—'ତସ୍ୟ ଶକ୍ତି-ସ୍ୱରୂପେୟଂ ଭଗିନୀ-ସ୍ତ୍ରୀ (ଶ୍ରୀ) ପ୍ରକୀର୍ତ୍ତିତା' । (୧୯।୧୭); ଅର୍ଥାତ୍, ଶାକ୍ତମାନଙ୍କ ପାଇଁ ସେ ଶକ୍ତିରୂପା ଓ ବୈଷ୍ଣବମାନଙ୍କ ପାଇଁ ସେ ଭଗିନୀରୂପା । ଶାକ୍ତମାନଙ୍କ ଦୃଷ୍ଟିରେ ତ ସମସ୍ତ ଜଗତ୍ ହେଉଛି ଶକ୍ତିମୟ । ସେଥିପାଇଁ ସିନା ଜଗନ୍ନାଥଙ୍କୁ ମଧ୍ୟ ସେମାନେ ସ୍ୱୀକାରରେ ବା ଦକ୍ଷିଣ କାଳିକା ଭାବରେ ଗ୍ରହଣ କରିଛନ୍ତି । ସେମାନଙ୍କ ଦୃଷ୍ଟିରେ ଜଗନ୍ନାଥ (କୃଷ୍ଣ), ବଳରାମ; ସମସ୍ତେ ହେଉଛନ୍ତି ଦେବୀ, ମାତୃକା, ଅଥବା ମହାବିଦ୍ୟା । ସେଥିପାଇଁ ବିଷ୍ଣୁ-

---

୩୩ । ଦ୍ରଷ୍ଟବ୍ୟ ଓଡ଼ିଶା ଇତିହାସ-ମହତାବ ଓ M.J.P.H.O pp-2

୩୪ । ବୃହନ୍ନୀଳତନ୍ତ୍ର ( ୫ମ ପଟଳ ) ଓ ପ୍ରାଣତୋଷିଣୀ ତନ୍ତ୍ର (ପୃ:୨୩୨—୨୩୮)ରେ ଭଦ୍ରା ହେଉଛନ୍ତି ଈଶ୍ୱରପ୍ରିୟା ଦୁର୍ଗାଙ୍କର ଅନ୍ୟନାମ । (ଉଦ୍ଧୃତ;—The Sakta Pithas—D.C.Sircar, Motilal, Delhi—1973-ପୃ:29
"ଭଦ୍ରା ଚ ଭଦ୍ରକାଳୀ ଚ ଭଦ୍ରେଶ୍ୱରୀଶ୍ୱରପ୍ରିୟା"—Ibid ପୃ ୨୯ ପୁଣି,—
"ସୁଭଦ୍ରେ ଭଦ୍ରଦା ଭବ୍ୟା ଭଦ୍ରକାଳେଶ୍ୱରେ ତଥା ।
ମହାଭଦ୍ରା ଭଦ୍ରକାଳୀ ହରତାର୍ଥେ ଗଙ୍ଗେଶ୍ୱରୀ" । Ibid ପୃ-୩୦

କୃଷ୍ଣଙ୍କର ଦଶାବତାରକୁ, ସେମାନେ ଦଶଟି ଶକ୍ତି ଭାବରେ ଗ୍ରହଣ କରନ୍ତି ଓ କୃଷ୍ଣଙ୍କୁ କାଳିକା ଏବଂ ବଳରାମଙ୍କୁ ଭୈରବୀ ଭାବରେ ଉପାସନା କରନ୍ତି । (୩୫) ଅତଏବ, ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ଉପରେ ଆରୋପିତ ଶାକ୍ତଭାବନା ଓ ବିଶେଷତଃ ସୁଭଦ୍ରାଙ୍କର ଶକ୍ତିତତ୍ତ୍ୱ ଡଃ ମହତାବଙ୍କର ଦ୍ୱିତୀୟ ପ୍ରଶ୍ନର ସମାଧାନ କରୁଛି । ସେ ମଧ୍ୟ ଏ ସମାଧାନକୁ ସ୍ୱୀକାର କରିଛନ୍ତି ଓ ତଦ୍ଦ୍ୱାରା ପରୋକ୍ଷରେ ଜଗନ୍ନାଥ ଓ ବଳଭଦ୍ରଙ୍କୁ ଶ୍ରୀକୃଷ୍ଣ ଓ ବଳରାମ, ଏପରି ଦୁଇଭାଇ ବୋଲି ଗ୍ରହଣ କରିଛନ୍ତି । ତାଙ୍କ ଉକ୍ତିରେ;

"Of these three points, further research of the second point, namely the worship of the two brothers and the sister has been satisfactorily established not only from the canonical description of them in the Vishnudharmottara Purana and the Brihat Samhita of Baraha Mihira (5th century A. D.), but also from the actual images executed in sculptures and worshipped from the fifth century A. D. (୩୬)

ଭାରତବର୍ଷରେ ବାସୁଦେବଙ୍କ ଉପାସନା ମହାଭାରତ ଯୁଗ ପରେ ଆରମ୍ଭ ହୋଇଥିଲା ଓ ଖ୍ରୀଷ୍ଟପୂର୍ବ ପଞ୍ଚମ ଶତକ ବେଳକୁ ସେଥିପାଇଁ ବୈୟାକରଣ ପାଣିନି ଅଷ୍ଟାଧ୍ୟାୟୀ ପର୍ଯ୍ୟାଲୋଚନାରେ ଏ ଶବ୍ଦକୁ ସ୍ଥାନ ଦେଲେ । ହେଲିଓଡ଼ରସ (Haliodorous)ଙ୍କର ବେଶ୍‌ନଗର ଶିଳାଲେଖରେ ତାଙ୍କୁ ବାସୁଦେବଙ୍କର ଭକ୍ତ ବୋଲି ଲେଖାଯାଇଥିଲା । ଅତଏବ,

---

୩୫ । The Sakta Pithas—D.C. Sircar-PP.48. and the following list of the Mahavidyas as found in ଗୁହ୍ୟାତି ଗୁହ୍ୟତନ୍ତ୍ର,—Des.Cat —P.206

**କୃଷ୍ଣମୂର୍ତ୍ତିଃ** କାଳିକା ସ୍ୟାଦ୍ ରାମମୂର୍ତ୍ତିସ୍ତୁ ତାରଣୀ ।
ଛିନ୍ନମସ୍ତା ନୃସିଂହଃ ସ୍ୟାଦ୍ ବାମନୋ ଭୁବନେଶ୍ୱରୀ"
ଜାମଦଗ୍ନ୍ୟଃ ସୁନ୍ଦରୀ ସ୍ୟାନ୍ମୀନୋ ଧୂମାବତୀ ଭବେତ୍ ।
ବାଲା (ବଗଳା ?) କୂର୍ମମୂର୍ତ୍ତିଃ ସ୍ୟାଦ୍ **ବଳଭଦ୍ରସ୍ତୁ ଭୈରବୀ** ।।
ମହାଲକ୍ଷ୍ମୀ ଭବେଦ୍ ବୁଦ୍ଧୋ ଦୁର୍ଗା ସ୍ୟାତ୍ କଳ୍କିରୂପିଣୀ ।
ସ୍ୱୟଂ ଭଗବତୀ କାଳୀ କୃଷ୍ଣସ୍ତୁ ଭଗବାନ୍ ସ୍ୱୟମ୍ ।।

ପୁଣି ତନ୍ତ୍ର ଚିନ୍ତାମଣିରେ ଅଛି;—"କାଳିକା କୃଷ୍ଣୟୋସ୍ତାର ରାମୟୋଶ୍ଚୈକରୂପତା"

୩୬—M. J. P. H. O—pp-2.

※ ଦ୍ରଷ୍ଟବ୍ୟ : See, Land of Vishnu of the author, Last Chapter, for date of Utkal Khanda.

ଅଟକମ୍‌ରେ ପ୍ରଥମ ଶତାବ୍ଦୀଠାରୁ ଏ ଦେଶରେ କୃଷ୍ଣ-ବାସୁଦେବ ଉପାସନା ପ୍ରତିଷ୍ଠିତ ହୋଇଛି । ପୁଣି ସେହି ଖ୍ରୀ: ପୂ: ଚତୁର୍ଥ-ପଞ୍ଚମ ଶତାବ୍ଦୀଠାରୁ ସଙ୍କର୍ଷଣ ପୂଜା ମଧ୍ୟ ଭାରତରେ ପ୍ରତିଷ୍ଠିତ ହୋଇଛି; ଏହା ନିଃସନ୍ଦେହ । ଚାଣକ୍ୟଙ୍କ କୌଟିଲ୍ୟ ଅର୍ଥଶାସ୍ତ୍ରରେ ଏହାର ପ୍ରମାଣ ଅଛି । ଖ୍ରୀ: ପୂ: ଦ୍ୱିତୀୟ ଶତକ ବେଳକୁ ବାସୁଦେବ-ସଙ୍କର୍ଷଣଙ୍କ ମିଳିତ ବିଗ୍ରହର ଉପାସନାର ଅନେକ ପ୍ରମାଣ ଆମର ହସ୍ତଗତ ହୋଇଛି । ଘୋଷୁଣ୍ଡି ଓ ନାନେଘାଟ ଶିଳାଲେଖ ଏହାର ମୂକସାକ୍ଷୀ ରୂପେ ଅଦ୍ୟାପି ବିଦ୍ୟମାନ । ବିଷ୍ଣୁଧର୍ମୋତ୍ତର ପୁରାଣ ଓ ବରାହମିହିରଙ୍କର ବୃହତ୍ ସଂହିତା ରଚନା କରାଗଲା ପୂର୍ବରୁ ଏକାନଂଶା, ସଙ୍କର୍ଷଣ ଓ ବାସୁଦେବଙ୍କ ମଝିରେ ବସି ପୂଜିତ ହେବାର କଥାରେ ଅବିଶ୍ୱାସର କାରଣ ନାହିଁ । ହୟଶୀର୍ଷ ପାଞ୍ଚରାତ୍ରର ସଙ୍କର୍ଷଣକାଣ୍ଡରେ ବାସୁଦେବ, ଏକାନଂଶା ଓ ସଙ୍କର୍ଷଣଙ୍କର ଏକତ୍ର ଉପାସନା କଥା ବର୍ଣ୍ଣିତ ହୋଇଅଛି । ସେହି ଗ୍ରନ୍ଥରେ ମଧ୍ୟ କୁହାଯାଇଛି ଯେ, ସଙ୍କର୍ଷଣ ହେଉଛନ୍ତି ବଳରାମ ଓ ଏକାନଂଶା ହେଉଛନ୍ତି ସୁଭଦ୍ରା । ଏ ସୁଭଦ୍ରା ଅର୍ଜ୍ଜୁନଙ୍କ ସ୍ତ୍ରୀ ସୁଭଦ୍ରା ନୁହନ୍ତି; ଭଦ୍ରାଙ୍ଗିନୀ ଏକାନଂଶା-ସୁଭଦ୍ରା । ଏ ସବୁକୁ ସ୍ୱୀକାର କରି ବୌଦ୍ଧ ମତବାଦୀ ଡଃ ମହାପାତ୍ର ଯଥାର୍ଥରେ ଲେଖିଛନ୍ତି,—It is clear from this account that long before the time of Brahmanda Purana and Utkal Khanda of Skanda Purana (8th century my opinion) ※ The worship of Krishna, Balarama and Subhadra had been well established (୩୭)

ଡଃ ମହାପାତ୍ରଙ୍କଠାରୁ ଏ ସମସ୍ତ ତଥ୍ୟ ନିରାଟ ସତ୍ୟ । ସ୍କନ୍ଦପୁରାଣର ଉତ୍କଳଖଣ୍ଡ ଲେଖାଯାଇଥିଲା ଜଗନ୍ନାଥତତ୍ତ୍ୱକୁ ଲୋକପ୍ରିୟ କରିବାପାଇଁ ଅଷ୍ଟମ ଶତାବ୍ଦୀରେ । ଜଗନ୍ନାଥ ଯେତେବେଳେ ସୋନପୁରରୁ ଆସି ପୁନଃପ୍ରତିଷ୍ଠିତ ହୋଇଥିଲେ । ସମାଜର ଅବସ୍ଥା ସେହି ସମୟରେ ଭିନ୍ନ ଥିଲା । ବୌଦ୍ଧ ବଜ୍ରଯାନଙ୍କ ସଂଖ୍ୟା ରାଜ୍ୟରେ ଅଧିକ ଥିଲା । ସମାଜରେ ତନ୍ତ୍ରର ଅଧିକ ପ୍ରାଧାନ୍ୟ ରହିଥିଲା । ସେଥିପାଇଁ ଯେତେବେଳେ

---

୩୭ । M. J. P. H. O.—pp-3 and—
M. J. P. H. O—pp-4—ଏଠାରେ ଡଃ ମହାପାତ୍ର ସ୍ୱୀକାର କରି ଲେଖିଛନ୍ତି,—"All this finally settle the issue against the second point of my thesis and it is conclusively proved that the worship of the brothers with sister is nothing unusual. It has been the usual practice from the ancient time."

ଉତ୍କଳଖଣ୍ଡ ରଚିତ ହେବାର ଆବଶ୍ୟକତା ଥିଲା । ଏଥିରେ ଅଷ୍ଟମ ଶତାବ୍ଦୀର ଅନେକ ପୂର୍ବରୁ ପ୍ରତିଷ୍ଠିତ କୃଷ୍ଣ-ବାସୁଦେବ, ସଙ୍କର୍ଷଣ-ବଳରାମ ଓ ସୁଭଦ୍ରାଙ୍କର ଅର୍ଚ୍ଚନାକୁ (୩୮) ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଭାବରେ ଦାରୁବ୍ରହ୍ମରୂପରେ ଅର୍ଚ୍ଚନା କରି ସାଯୁଜ୍ୟ ମୁକ୍ତିଲାଭ କରିବାର ପନ୍ଥା ଦର୍ଶାଇ ଦିଆଯାଇଥିଲା । ଫଳରେ ସେହି ସମୟରୁ ସାରା ଭାରତରେ ଜଗନ୍ନାଥ ବିଶେଷ ପ୍ରସିଦ୍ଧ ହୋଇଗଲେ (୩୯) । ଏହି ତ୍ରିମୂର୍ତ୍ତିକୁ କୃଷ୍ଣ, ବଳରାମ ଓ ସୁଭଦ୍ରା ବୋଲି ବିଚାରକୁ ନେଇ ସୁଭଦ୍ରାଙ୍କୁ ଭଉଣୀ ଭାବରେ ମଧ୍ୟ ବିଚାର କରାଗଲା । ଏହି ସୁଭଦ୍ରାଙ୍କୁ ଯେଉଁମାନେ 'ଏକାନଂଶା' ବୋଲି ଗ୍ରହଣ କରନ୍ତି, ସେମାନଙ୍କ ମତରେ ଏକାନଂଶା ହେଉଛନ୍ତି ଯଶୋଦାଙ୍କର କନ୍ୟା । ଅତଏବ, ସେହିଭାବରେ ଶ୍ରୀକୃଷ୍ଣଙ୍କର ଭଉଣୀ । ସେଥିପାଇଁ ପୂର୍ବରୁ ଏ ଦେଶରେ କୃଷ୍ଣ, ବଳରାମ ଓ ଏକାନଂଶାଙ୍କର ଏକତ୍ର ଉପାସନାର ବିଧି ପ୍ରଚଳିତ ଥିଲା । ଏଲୋରାର ଗୋଟିଏ ଗୁମ୍ଫା (Cave No. xxvii)ର ବାରଣ୍ଡାର ପଛ କାନ୍ଥରେ ଏହି ତ୍ରିମୂର୍ତ୍ତି ଦେଖିବାକୁ ମିଳେ । କଶ୍ମୀରୀ ଓ ମଥୁରାର ସଂଗ୍ରହାଳୟରେ ଏଭଳି ମୂର୍ତ୍ତିମାନ ମଧ୍ୟ ରହିଛି (୪୦) । ଏ ସବୁ କୁଷାଣ ଅମଳର ବୋଲି ଆର୍. ସି. ଅଗ୍ରୱାଲ୍ ସେହି ବୁଲେଟିନ୍‌ରେ ମତବ୍ୟକ୍ତ କରିଛନ୍ତି । ଭୁବନେଶ୍ୱରର ଅନନ୍ତବାସୁଦେବ ମନ୍ଦିରରେ ଥିବା ମୂର୍ତ୍ତିଗୁଡ଼ିକ ମଧ୍ୟ ସେହି ତ୍ରିମୂର୍ତ୍ତିର ଅନ୍ତର୍ଗତ । (୪୧) ଏଣୁ କୁହାଯାଇପାରେ ଯେ, ଏହି ତ୍ରିମୂର୍ତ୍ତି ଉପାସନା ପରଂପରାର ଏକ ରୂପାନ୍ତରୀକରଣ ହେଉଛି, ତ୍ରିମୂର୍ତ୍ତି-ଦାରୁବ୍ରହ୍ମ ବା ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଉପାସନା । ମୂର୍ତ୍ତିତତ୍ତ୍ୱ ବା ମୂର୍ତ୍ତିଗଠନ ଦୃଷ୍ଟିରୁ ଉଭୟ ପ୍ରକାରର ତ୍ରିମୂର୍ତ୍ତିରେ ସାମ୍ୟ ନାହିଁ । ତଥାପି ଭାବ ଦୃଷ୍ଟିରୁ ଉଭୟ ପ୍ରକାରର ମୂର୍ତ୍ତି ମଧ୍ୟରେ ସାମ୍ୟର ବୀଜ ନିହିତ । କୃଷ୍ଣ, ବଳରାମ, ଏକାନଂଶା ପୂରାପୂରି ବିଗ୍ରହ ମୂର୍ତ୍ତି ହେଲାବେଳେ, ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ହେଉଛନ୍ତି ପ୍ରତୀକ ମୂର୍ତ୍ତି । ଏଥିରେ ଅଧିକନ୍ତୁ ରହିଛି ଅରୂପରେ

---

୩୮ । M. J. P. H.O. — PP-4, Mahatab;—"For the purpose of this essay, it is sufficient to note that the worship of the triad, Balaram, Krishna and Subhadra was well established in about the eighth or the nineth century. Archaeological findings support this fact."

୩୯ । Land of Vishnu—First chapter.

୪୦ । N. P. Joshi — Bulletin on museum and archaeology in U. P. — March, 1968.

୪୧ । M. J. P. H. O—Mahatab—PP-4.

ସ୍ୱରୂପ ଭାବ ବା ବ୍ରହ୍ମତତ୍ତ୍ୱର ଦାର୍ଶନିକ ଚିନ୍ତା । ଏହି ଭାବନାରେ ରୂପାୟିତ ହୋଇ ଏମାନେ ଦାରୁବ୍ରହ୍ମ (୪୨) ହୋଇଛନ୍ତି ।

ତଥାପି ଆଧୁନିକ ସମାଲୋଚକଗଣ ଏହି ଚିମୂର୍ତ୍ତି କିମ୍ବା ଚତୁର୍ଦ୍ଧାମୂର୍ତ୍ତିର ଦାର୍ଶନିକ ଭାବପ୍ରତି ଦୃଷ୍ଟି ନିକ୍ଷେପ ନକରି ମୂର୍ତ୍ତିମାନଙ୍କୁ ଅର୍ଦ୍ଧ ଆମୂର୍ତ୍ତି ବା ଅସମ୍ପୂର୍ଣ୍ଣ ମୂର୍ତ୍ତି ବୋଲି ବିଗ୍ଭରୁଛନ୍ତି । ତେଣୁ, ସେମାନେ ସର୍ବହିନ୍ଦୁ ଦର୍ଶନର ସମନ୍ୱୟଭାବର ସତ୍ୟପ୍ରକାଶ ବିଗ୍ରହ ଏହି ଦାରୁବ୍ରହ୍ମ-ପୁରୁଷୋତ୍ତମଙ୍କ ଅସଲ ଭାବ ହୃଦୟଙ୍ଗମ କରିପାରୁ ନାହାନ୍ତି । ସର୍ବଦର୍ଶନ ସମ୍ମିଳିତ ଗୀତାର ପୁରୁଷୋତ୍ତମଙ୍କର ଏହି ସ୍ୱୟଂପ୍ରକାଶ ପ୍ରତୀକମୂର୍ତ୍ତିକୁ ସେମାନେ ଚିହ୍ନିପାରୁ ନାହାନ୍ତି । ସୂକ୍ଷ୍ମଦୃଷ୍ଟିର ବିଗ୍ଭରକୁ ଉପେକ୍ଷା କରି ସ୍ଥୂଳଦୃଷ୍ଟିରେ ବିଗ୍ଭରକରି ଜଗନ୍ନାଥଙ୍କୁ ଶବରଦେବତା ବୋଲି କହୁଥିଲେ । ବିଶ୍ୱାବସୁ ଶବର ଯେଉଁ ବୁଦ୍ଧଙ୍କର ପ୍ରତିମା ଚତୁର୍ଭୁଜ ବିଷ୍ଣୁଙ୍କୁ ପୂଜା କରୁଥିଲେ, ତାହା ହେତୁ ଶବରଦେବତା ବୋଲି ସମାଲୋଚକଗଣଙ୍କର ମନରେ ଏକ ଭାବ ସର୍ବଦା ଜାଗରିତ ହୋଇଛି । ତେଣୁ ବୌଦ୍ଧମତବାଦୀମାନେ ମଧ୍ୟ ତାଙ୍କୁ ବେଳେବେଳେ ଶବରଦେବତା ବୋଲି କହିବାକୁ ପଛାଉ ନାହାନ୍ତି । ଡଃ ମହତାବ ପୁଣି ଜଗନ୍ନାଥଙ୍କ ମୌଳିକତାକୁ ଦର୍ଶାଇବାକୁ ଯାଇ ତାଙ୍କୁ ଶବରଦେବତା ବୋଲି କହିଛନ୍ତି । ତାଙ୍କ ଭାଷାରେ—

"Thus it can safely be inferred that the present Jagannath is the evolution of the tribal deity who has passed through several stages of various religious movements in the society" (୪୩) ପୁଣି ଜଗନ୍ନାଥଙ୍କ ମହାପ୍ରସାଦକୁ ବିଶ୍ଳେଷଣ କରି ସେ ଏଠାରେ ଜାତି ଧର୍ମ ନିର୍ବିଶେଷରେ ମହାପ୍ରସାଦ ସେବନକୁ ଏକ ବୌଦ୍ଧ-ତାନ୍ତ୍ରିକ ପରମ୍ପରା ବୋଲି ଦର୍ଶାଇଛନ୍ତି । (୪୪) ଅତଏବ, କୁହାଯାଇପାରେ ଯେ, ସେ ବିଗ୍ଭରିଛନ୍ତି, ଜଗନ୍ନାଥ ମୂଳରୁ ଶାବର । ତାହାପରେ ବୌଦ୍ଧଦେବତା । ପୁଣି ଦଶମ ଶତାବ୍ଦୀବେଳକୁ ସେ ହେଲେ ହିନ୍ଦୁଦେବତା । କାରଣ, ତାଙ୍କ ମତରେ ଏତିକି-ବେଳେ ବୌଦ୍ଧଧର୍ମରେ ବ୍ରାହ୍ମଣ୍ୟଧର୍ମ ଅନୁପ୍ରବେଶ କରି ବୌଦ୍ଧ ଦେବତାଙ୍କୁ ହିନ୍ଦୁଦେବତା ଭାବରେ ରୂପାନ୍ତରିତ କରିଥିଲା (୪୫) ।

---

୪୨ । ଜଗନ୍ନାଥଙ୍କ ଚିମୂର୍ତ୍ତିର ସ୍ୱରୂପ ଜାଣିବାପାଇଁ ପରବର୍ତ୍ତୀ ଅଧ୍ୟାୟ ଦ୍ରଷ୍ଟବ୍ୟ ।

୪୩ । M. J. P. H. O.—Mahatab—pp-9

୪୪ । M. J. P. H. O.—pp-6

୪୫ । M. J. P. H. O.—pp-10" Buddhism of Orissa became Hindulsed round about the 10th century when Saivism made a dent in the region."

ଏକଥା ସତ୍ୟ ଯେ ଜଗନ୍ନାଥଙ୍କ ଉପାସନା ପଦ୍ଧତିରେ ତାନ୍ତ୍ରିକ ପ୍ରଭାବ ରହିଅଛି । ଅନ୍ୟାନ୍ୟ କେତେକ ଧାର୍ମିକ ପରମ୍ପରାର ପ୍ରଭାବ ମଧ୍ୟ ରହିଅଛି । ମାତ୍ର, ମୂଳରୁ ସେ ସେ ହିନ୍ଦୁ ଦେବତା, ଏଥିରେ ସନ୍ଦେହ ନାହିଁ । କାରଣ, ପ୍ରଭାବଟା ମୌଳିକତା ନୁହେଁ । ଜଗନ୍ନାଥ ପ୍ରାଗ୍‌ବୈଦିକ ହୋଇଥିଲେ, ତାଙ୍କୁ ଆଦିବାସୀ ଦେବତା ବୋଲି ମୂଳତଃ ଗ୍ରହଣ କରିବା ସମୀଚୀନ ହୋଇପାରେ । ସେତେବେଳେ ବୈଦିକ ଆର୍ଯ୍ୟମାନଙ୍କର ଜୀବନଧାରା ମଧ୍ୟ ବନରେ ନିର୍ବାହିତ ହେଉଥିଲା । ପ୍ରତ୍ୟେକ ମଣିଷସମାଜ ମୂଳରୁ ହିଁ ବନବାସୀ; ଆଦିବାସୀ । ସେପରି ଦେଖିଲେ, ଜଗନ୍ନାଥ ଯଦି ପ୍ରାଗ୍‌ବୈଦିକ ଦେବତା ହୋଇଥାନ୍ତି, ତେବେ ତାଙ୍କୁ ଆଦିବାସୀ ଦେବତା କୁହାଯାଇପାରେ । ମାତ୍ର, ଜଗନ୍ନାଥ ଏତେ ପ୍ରାଚୀନ ବୋଲି କୌଣସି ଐତିହାସିକ ପ୍ରମାଣ ନାହିଁ । ଶବ୍ଦ ପ୍ରମାଣ, ପ୍ରତ୍ନତାତ୍ତ୍ୱିକ ପ୍ରମାଣାଦି ଏହି ତଥ୍ୟକୁ ଅଦ୍ୟାବଧି ପ୍ରମାଣ କରି-ପାରିନାହାନ୍ତି । ବେଦରେ ଏ ସମ୍ପର୍କରେ କୌଣସି ଉଲ୍ଲେଖ ନାହିଁ । 'ଅଦୋ ଯଦାରୁ ପ୍ଲବତେ ସିନ୍ଧୋଃ ପାରେ ଅପୁରୁଷମ୍''—ବୋଲି ଯେଉଁ ବୈଦିକ ସୂକ୍ତଟିର (୪୬) ସାହାଯ୍ୟନେଇ ପଣ୍ଡିତମାନେ (୪୭) ତାଙ୍କୁ ବୈଦିକ ଯୁଗକୁ ଟାଣିନିଅନ୍ତି, ତାହା ସର୍ବଥା ଅସମୀଚୀନ । କାରଣ, ଏ ସୂକ୍ତଟି ଜଗନ୍ନାଥ-ପୁରୁଷୋତ୍ତମଙ୍କ ପାଇଁ ରଚିତ ହୋଇନାହିଁ । ଏହା ଅଲକ୍ଷ୍ମୀଙ୍କ ପ୍ରସଙ୍ଗରେ ରଚିତ । ଏଣୁ, ଏକଥା ନିଶ୍ଚିତ ଭାବରେ କୁହାଯାଇପାରେ ଯେ, ଜଗନ୍ନାଥ ପ୍ରାଗ୍‌ବୈଦିକ ନୁହନ୍ତି କି ବୈଦିକ ଯୁଗର ଦେବତା ମଧ୍ୟ ନୁହନ୍ତି । ଅତଏବ, ଅପ୍ରାଚୀନତ୍ୱ ହେତୁ ଶବରଦେବତା ମଧ୍ୟ ମୂଳତଃ ନୁହନ୍ତି । ଗୀତାରେ ଭଗବାନ୍ ବିଷ୍ଣୁ-କୃଷ୍ଣ ବା ଯୋଗେଶ୍ୱର କୃଷ୍ଣଙ୍କୁ ପୁରୁଷୋତ୍ତମ ବୋଲି କୁହାଯିବାପରେ ଓ ବିଷ୍ଣୁଙ୍କଠାରେ ବ୍ରହ୍ମତ୍ୱ ଆରୋପିତ ହେବାପରେ ପୁରୁଷୋତ୍ତମ ତତ୍ତ୍ୱରେ ବେଦାନ୍ତର ବ୍ରହ୍ମଭାବକୁ ରୂପାୟନ କରି ଏହି ଦାରୁବ୍ରହ୍ମ ଜଗନ୍ନାଥଙ୍କ ମୂର୍ତ୍ତି ଗଠିତ ହୋଇଛି ଓ ତାହାଙ୍କର ଉପାସନା ଚାଲିଛି । ପୁରାଣ ଯୁଗରେ ହିଁ ଜଗନ୍ନାଥଙ୍କ ଉପାସନା ଲୋକପ୍ରିୟ ହୋଇପାରିଛି । ଏସବୁ ପ୍ରମାଣ ସ୍ପଷ୍ଟ ଥିବା ସତ୍ତ୍ୱେ ଆମେ ପାଶ୍ଚାତ୍ୟ ଗବେଷକମାନଙ୍କ ସହିତ ହାତ ମିଳାଇ ଜଗନ୍ନାଥଙ୍କୁ ଅର୍ବାଚୀନ ବୋଲି ଭାବି ପୁଣି ମୂଳତଃ ଶାବର ବୋଲି କହିଚାଲିଛୁ । ଆଖିବୁଜି ସେହି ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମତ ଗ୍ରହଣ କରିନେଉଛୁ । ଏହା ଆମର ଏକ ଅଭ୍ୟାସରେ ପରିଣତ ହୋଇଯାଇଛି । ଆମେ ସ୍ୱାଧୀନ ହେଲୁଣି ସତ; ମାତ୍ର ସ୍ୱାଧୀନ ଚିନ୍ତାଧାରାଠାରୁ ଦୂରରେ ରହିଛୁ । ଅବଶ୍ୟ, ସମୟକ୍ରମେ ଆମେ ଚିନ୍ତାରାଜ୍ୟରେ ସ୍ୱତନ୍ତ୍ର ଓ ସ୍ୱାଧୀନ ହେବୁ; ଏଥିରେ ସନ୍ଦେହ ନାହିଁ ।

---

୪୬ । ଋଗ୍ ୧୦ ମ:, ୧୫୫ ସୂ: ୩ ମନ୍ତ୍ର ।

୪୭ । ଦାରୁଦେବତା -ପୃ: ୩୬, ୪୬ । ଦ୍ରଷ୍ଟବ୍ୟ—Hints on the Significance. and History of Jagannath Pt. Nilakanta Das—Part II

ପାଶ୍ଚାତ୍ୟ ଗବେଷକମାନଙ୍କର ଭାରତୀୟ ଧର୍ମ ସମ୍ବନ୍ଧରେ ଗବେଷଣାର ଦୃଷ୍ଟିଭଙ୍ଗୀ ସର୍ବଦା ଅନ୍ୟପ୍ରକାର । ମାତ୍ର ମୃଗତୃଷ୍ଣା ଭଳି ଆମେ ତାହା ସହଜରେ ଧରି ପାରୁ ନାହିଁ । ଉଦାହରଣତଃ, ଯେତେବେଳେ ମକ୍ସମୁଲର୍ ଉଇଲ୍ସନ୍ ସଂସ୍କୃତ ଉପରେ ଗବେଷଣା କଲେ ଓ ପୁସ୍ତକ ପ୍ରଣୟନ କଲେ, ଆମେ ସେତେବେଳେ ତାଙ୍କୁ ଧନ୍ୟ ଧନ୍ୟ କହିଲୁ । ଆମକୁ ଜଣାଗଲା; ମାତ୍ର ଗୋଟିଏ ଦାଗ ଯେ, ସେ ସଂସ୍କୃତର ବହୁ ଉନ୍ନତି କରୁଛନ୍ତି, ତେଣୁ ସେ ସଂସ୍କୃତର ପୂଜାରୀ । କିନ୍ତୁ, ତାଙ୍କର ଦୃଷ୍ଟିଭଙ୍ଗୀ ଥିଲା ଭିନ୍ନ । ସେ ତାଙ୍କ ନିଜ ଧର୍ମ ତଥା ଖ୍ରୀଷ୍ଟଧର୍ମର ପୃଷ୍ଠପୋଷକତା କରିବାପାଇଁ, ଭାରତୀୟଧର୍ମର ଦୁର୍ବଳତା ପଦାରେ ପକାଇ ଭାରତୀୟମାନଙ୍କୁ ଖ୍ରୀଷ୍ଟଧର୍ମ ଆଡ଼କୁ ଆକୃଷ୍ଟ କରିବାପାଇଁ ଉଦ୍ଦେଶ୍ୟ ରଖି ସଂସ୍କୃତ ଉପରେ କାମ କରୁଥିଲେ । ଏ କାମରେ ସେଥିପାଇଁ ଖ୍ରୀଷ୍ଟିଆନ୍ ମିସନ୍ ତାଙ୍କୁ ଅକୁଣ୍ଠ ସାହାଯ୍ୟ କରିଥିଲେ । ଏକଥା ସେ ତାଙ୍କର 'ସଂସ୍କୃତ-ଇଂରାଜୀ ଅଭିଧାନର ମୁଖବନ୍ଧରେ ସ୍ୱୀକାର କରିଛନ୍ତି । ସେହିଭଳି, ଯେଉଁମାନେ ସୁଦୂର ଜର୍ମାନରୁ ଆସି ଓଡ଼ିଶାରେ ଜଗନ୍ନାଥଙ୍କ ଉପରେ ଗବେଷଣା କରିଗଲେ, ସେମାନଙ୍କର ଉଦ୍ଦେଶ୍ୟ ଭିନ୍ନ ଥିଲା । ଜଗନ୍ନାଥଙ୍କୁ ସେମାନେ ଭକ୍ତି କରୁନଥିଲେ ମଧ୍ୟ ଜଗନ୍ନାଥ ଧର୍ମ ଉପରେ ଗବେଷଣା ତାଙ୍କପାଇଁ ଆବଶ୍ୟକତା ଥିଲା । ସେମାନେ ପୁଣି ଯେଉଁ ତଥ୍ୟ ଓ ସିଦ୍ଧାନ୍ତ ଉପସ୍ଥାପନ କଲେ, ତାହାର ମଧ୍ୟ ସେମାନଙ୍କ ପାଇଁ ଆବଶ୍ୟକତା ଥିଲା । ସିଦ୍ଧାନ୍ତ ଅନ୍ୟପ୍ରକାର ହୋଇଥିଲେ ସେମାନଙ୍କ ଉଦ୍ଦେଶ୍ୟ ସିଦ୍ଧି ହୋଇନଥାନ୍ତା । ସେହିପରି ସିଦ୍ଧାନ୍ତ ପାଇଁ ସେମାନଙ୍କ ଉଦ୍ଦେଶ୍ୟ ପ୍ରଣୋଦିତ ଦୃଷ୍ଟିଭଙ୍ଗୀ ହିଁ ପ୍ରଧାନ କାରଣ ।

ଉଦାହରଣ ସ୍ୱରୂପ, ଗବେଷିକା ଏସ୍ଚମାନ୍ ଆରମ୍ଭରୁ ଧରିନେଲେ ଯେ, ହିନ୍ଦୁ ଧର୍ମ ଅନ୍ୟଧର୍ମମାନଙ୍କୁ ନିଜର ଅଙ୍ଗୀଭୂତ କରିଦେଇପାରେ ଓ ଭାରତରେ ଜନ୍ମ ହୋଇଥିବା ପ୍ରତ୍ୟେକ ବ୍ୟକ୍ତି ହିନ୍ଦୁ । (୮) ଆରମ୍ଭରୁ ଏପରି ଅମୂଳକ ଭାବନା ନେଇ ସେ "Hinduization of Tribal deities in Orissa···" ନାମକ ପ୍ରବନ୍ଧ ଲେଖିଲେ । ତେଣୁ ସେ ହିନ୍ଦୁଧର୍ମ ଭିତରେ ଯାହାସବୁ ପାଇଲେ, ସବୁ ତାଙ୍କୁ ଅନ୍ୟ ଧର୍ମରୁ ତଥା ଅନ୍ୟ ସଂସ୍କୃତିରୁ ଆସିଥିବା ଭଳି ଜଣାଗଲା । ଫଳରେ ଜଗନ୍ନାଥ ସଂସ୍କୃତି ହେଲା ଆଦିବାସୀ ସଂସ୍କୃତି ବା ତାହାର ଏକ ଅନ୍ୟ ରୂପ ।

---

୪୮ । C.J.R.T.O—pp-79 "Hinduism has an extraordinary capacity to incorporate and amalgamate other religions···; and that whoever is born in India is essentially a hindhu" (ଏହା ତାଙ୍କ ପ୍ରବନ୍ଧର ଆରମ୍ଭ ।)

ତାଙ୍କ ମତରେ ଆଦିବାସୀ ସଂସ୍କୃତି ଜଗନ୍ନାଥ ସଂସ୍କୃତି ଭାବରେ ରୂପ ନେଇଛି (୪୯) ଓ ଏହା ହେଲା ହିନ୍ଦୁ, ବିଶେଷକରି ବ୍ରାହ୍ମଣମାନଙ୍କର କାରସାଦି । (Hinduisation or Brahmanaisation) । ଏପରିକି ଗାଁ ଗଣ୍ଡାରେ ହିନ୍ଦୁମାନେ ଯେଉଁ ଦେବୀମାନଙ୍କୁ 'ଗ୍ରାମଦେବୀ' ଭାବରେ ପୂଜା କରନ୍ତି, ସେମାନେ ମଧ୍ୟ ଆଦିବାସୀଙ୍କ ଦେବତା ବୋଲି ସେ ଅନୁମାନ କରନ୍ତି । (୫୧) ଅନୁମାନ ହିଁ ଅନୁମାନ; କଳ୍ପନା । ଏହା ପ୍ରାମାଣିକ କିପରି ହେବ ? ଏହା ତାଙ୍କର ଅନୁମାନ ମାତ୍ର । ହୁଏତ, କେତେକ କ୍ଷେତ୍ରରେ ଏପରି ଘଟିଥାଇ-ପାରେ; ମାତ୍ର ସବୁ କ୍ଷେତ୍ରରେ ନୁହେଁ । ଅନେକ ଗ୍ରାମଦେବୀଙ୍କର ତ ପୁଣି ହିନ୍ଦୁ ମତରେ ମୂର୍ତ୍ତିମାନ ଗଠିତ ହୋଇଛି । କେତେକ ସ୍ଥାନରେ ଦୁର୍ଗା ବା ଶକ୍ତିଙ୍କର ଶାସ୍ତ୍ରୀୟ ବିଭାବର ଧ୍ୟାନ ମୂର୍ତ୍ତିମାନ ଅଛି । ତେଣୁ, ସାଧାରଣ ଭାବରେ ଏପରି ଅନୁମାନ କରି ସିଦ୍ଧାନ୍ତ ଗ୍ରହଣ କରିନେବା ଅସଙ୍ଗତ । ବୈଦିକ ଦେବୀ ସୂକ୍ତଠାରୁ ଆରମ୍ଭକରି ପୁରାଣ ଯୁଗ ପର୍ଯ୍ୟନ୍ତ ଶକ୍ତିଙ୍କର ସ୍ୱରୂପାବସ୍ଥା ହେଉଛି ହିନ୍ଦୁ ସଂସ୍କୃତିର ଅବଦାନ; ମାତ୍ର ଏହି ଦୁର୍ଗାପୂଜାର ମୂଳ ଆଦିବାସୀ ସଂସ୍କୃତି ବୋଲି ବିଶ୍ୱାସ କରିବା କେତେଦୂର ଯୁକ୍ତିଯୁକ୍ତ ? ମାତ୍ର, ଏହି ଜର୍ମାନୀ ଗବେଷିକା ସେଭଳି ଅନୁମାନ କରିଛନ୍ତି ଓ ତାଙ୍କର ଅନ୍ୟ ସାଥୀମାନେ ଏହାକୁ ସିଦ୍ଧାନ୍ତ ଭାବରେ ନିର୍ବିଘ୍ନରେ ଗ୍ରହଣ କରିନେଇଛନ୍ତି । ସେ ଲେଖିଛନ୍ତି, ଦୁର୍ଗାଉପାସନା ଭାରତବର୍ଷରେ ମଧ୍ୟଯୁଗର ପ୍ରାକ୍‌କାଳରେ ହୋଇଥିଲା ଓ ଏଥିରେ ଥିବା ବଳିପ୍ରଥା ବୈଦିକ ପଦ୍ଧତିରେ ନଥିଲା; ବରଂ ଏହା ଆଦିବାସୀଙ୍କ ନରବଳି ଭଳି ନଥିଲା । (୫୨) ଅବଶ୍ୟ ଏହା ସତ୍ୟ ଯେ, ଦୁର୍ଗାଙ୍କ ନିକଟରେ ନରବଳି ଦେବାର ବିଧି କେଉଁଠି କେଉଁଠି ଥିଲା । ମାତ୍ର, ଏହାର ଅର୍ଥ ନୁହେଁ ଯେ, ନରବଳି ପ୍ରଥା ହେଉଛି ଆଦିବାସୀ-ସର୍ବସ୍ୱ ଓ ଅବୈଦିକ । ଏହା ହିନ୍ଦୁ ପରଂପରାରେ ନଥିଲା ବୋଲି କହିଲେ ଭୁଲ୍ ହେବ । 'ନରବଳି' ପରିଷ୍ଟିର କଥା ଆସିଲାକ୍ଷଣି; ଏହାକୁ ଆଦିବାସୀ ସଂସ୍କୃତି ସହିତ ଯୋଡ଼ିଦେବା ଜ୍ଞାନର ଅଗଭୀରତାର ପରିଚାୟକ । ବୈଦିକ ଯୁଗରେ ମଧ୍ୟ ଯଜ୍ଞରେ ନରବଳି ପ୍ରଥା ଥିବାର ପ୍ରମାଣ ଅଛି । (୫୩) 'ଶୁନଃଶେପ ଉପାଖ୍ୟାନ' ହେଉଛି

୪୯ । C. J. R. T. O.—pp-80

୫୦ । C. J. R. T. O.—pp-83

୫୧ । C. J. R. T. O.—pp-84 "Gramdevi of a Hindu village in the shape of stone might have orginally been tribal goddess"

୫୨ । C. J. R. T. O.—pp-86

୫୩ । ଐତରେୟ ବ୍ରାହ୍ମଣ—୭ମ । ୩—୮ । ସାଂଖ୍ୟାୟନ ଶ୍ରୌତସୂତ୍ର—୧୫/୨୦, p ଓ ୧୭/୨/୨ । ଋଗ୍‌ବେଦ—୧/୨୪; ୫/୨; ।୭। Vedic Index Macdonell and keith Part II—pp-385

ତାହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ଦେବତାମାନେ ସାହାଯ୍ୟ ନ କରିଥିଲେ ଶୂନଶେପକୁ ଯଜ୍ଞରେ ବଳିପଡ଼ିବାକୁ ପଡ଼ିଥାନ୍ତା । ଏଣୁ ଦୁର୍ଗାଦି ଦେବୀଙ୍କ ନିକଟରେ ବଳି ପ୍ରଥାକୁ ଆଦିବାସୀ ସଂସ୍କୃତି ବୋଲି ହଠାତ୍ ଧରିବାର କୌଣସି କାରଣ ନାହିଁ । ଅବଶ୍ୟ, ବୈଦିକ ସଂସ୍କୃତି ବିଷୟରେ ଅବହିତ ନଥିଲେ ମନରେ ସେପରି ସମ୍ଭାବନା ଆସିପାରେ ।

ଡଃ ଏସ୍‌ମାନ୍ ଜଣେ ନୃତତ୍ତ୍ୱବିତ୍ । ତାଙ୍କ ଦୃଷ୍ଟିରେ ସତେଅବା ନୃତତ୍ତ୍ୱର ଏକ କଳାଚଷମା ରହିଛି । ଏଥିପାଇଁ ସବୁ ତାଙ୍କ ଆଖିରେ ଆଦିବାସୀ ସଂସ୍କୃତିମୂଳକ । ଏପରିକି, ଲିଙ୍ଗରାଜ ମହାପ୍ରଭୁଙ୍କର ମାଳୀସେବକ 'ବଡୁମାନେ' ମଧ୍ୟ ତାଙ୍କ ଦୃଷ୍ଟିରେ ଆଦିବାସୀ । (୫୪) ମାତ୍ର, ଏବେ ମଧ୍ୟ ଭୁବନେଶ୍ୱରରେ ଆଦିବାସୀ ଶ୍ରେଣୀର ବାଉରୀମାନେ ଅଛନ୍ତି । ସେମାନେ ମନ୍ଦିରର ଜଗମୋହନ ଭିତରକୁ ଯିବାର ଅଧିକାର ପାଇନାହାନ୍ତି । ସେମାନେ ହରିଜନ । ବଡୁଙ୍କ ସଙ୍ଗେ ବନ୍ଧୁ ବାନ୍ଧିବାର ପ୍ରଶ୍ନ ସେମାନଙ୍କ ପାଇଁ ନାହିଁ । ଅଥଚ, ବଡୁମାନେ ପ୍ରଭୁ ଲିଙ୍ଗରାଜଙ୍କୁ ଚନ୍ଦନଲାଗି, ବେଶ, ମାଜଣା ଆଦି କରନ୍ତି । ଅତଏବ, ଆଦିବାସୀମାନେ ମନ୍ଦିର ଭିତରକୁ ପ୍ରବେଶ କରିପାରୁନଥିବାବେଳେ, ବଡୁମାନଙ୍କୁ ଆଦିବାସୀ ବୋଲି କହିବାର ଯାଥାର୍ଥ୍ୟ କେଉଁଠି ? ଏ ଦିଗରେ ଭଲକରି ବିଚାର କରି ମାନନୀୟା ଗବେଷିକାଙ୍କର ମନ୍ତବ୍ୟ କରିବାର ଥିଲା । ପ୍ରକୃତରେ ଦେଖିବସିଲେ, କପିଳେଶ୍ୱର ମହାଦେବଙ୍କ ସେବକ 'ମଲିଆ' ଲିଙ୍ଗରାଜଙ୍କର ବଡୁସେବକ ଓ ଜଗନ୍ନାଥ ମହାପ୍ରଭୁଙ୍କର ଦଇତା ସେବକ (୫୫) ହେଉଛନ୍ତି ଅବ୍ରାହ୍ମଣ; ମାତ୍ର, ଆଦିବାସୀ ନୁହନ୍ତି; ଏକ ବର୍ଣ୍ଣସଂକର ଗୋଷ୍ଠୀ ।

ସେ ଯାହାହେଉ, ଏଭଳି ଭ୍ରମ ଧାରଣାର ବଶବର୍ତ୍ତୀ ହୋଇ ଗବେଷଣା କରାଗଲେ ସିଦ୍ଧାନ୍ତମାନ ନିଶ୍ଚୟ କିମ୍ଭୂତକିମାକାର ହେବ । ତେଣୁ ଏକ ଦିଗରେ ନୃସିଂହ ଉପାସନାକୁ ଆଦିବାସୀମୂଳକ ବୋଲି ଗ୍ରହଣକରି ତହିଁରୁ ଜଗନ୍ନାଥ ଉପାସନା ସୃଷ୍ଟି ହୋଇଛି ବୋଲି ଡଃ ଏସ୍‌ମାନ୍ ଓ ତାଙ୍କର ସହଯୋଗୀମାନେ ଗ୍ରହଣ

---

୫୪ । C. J. R. T. O.—pp. 97. "The Badus' are the tribals."

୫୫ । Please see my book—'Jagannath in the History and Religious traditions of Orissa—Punthi Pustak, Calcutta—for details about 'Daita' ଦଇତା ।

କରିଛନ୍ତି (୫୬) । ସେମାନେ କହନ୍ତି, ନୃସିଂହ ଆଦିବାସୀଙ୍କର ଦେବତା ଓ ସେ କାଠ ଖୁଣ୍ଟି ରୂପରେ ପୂଜା ପାଉଥିଲେ (୫୭) । ମାତ୍ର ଏହାର ପ୍ରମାଣ ସେପରି କିଛି ସେମାନେ ଦେଇନାହାନ୍ତି । ସେମାନେ ପୁଣି କହନ୍ତି, 'ପରେ ଏହି ଆଦିବାସୀଙ୍କ ନୃସିଂହଙ୍କୁ ବୈଷ୍ଣବ ଧର୍ମରେ ଗ୍ରହଣ କରାଯାଇଛି । ଏକଥା କେବଳ ସେମାନେ ଅନୁମାନ କରି କହୁଛନ୍ତି; ପ୍ରମାଣ କିଛି ଦେଇନାହାନ୍ତି । ଏଭଳି ଅନୁମାନ କେବଳ ତାଦୃଶ କଳାଚପମା ଉପରେ ପର୍ଯ୍ୟବସିତ । ଅତଏବ ସର୍ବଥା ଗ୍ରହଣୀୟ ନୁହେଁ ।

ହିନ୍ଦୁଶାସ୍ତ୍ର ମତରେ ସୁଦର୍ଶନ ହେଉଛନ୍ତି ବିଷ୍ଣୁଙ୍କର ଆୟୁଧ—ପୁରୁଷ । ଏହା ପରବର୍ତ୍ତୀ ଅଧ୍ୟାୟମାନଙ୍କରେ ଆଲୋଚିତ ହୋଇଛି । ରାମାୟଣରେ ବର୍ଣ୍ଣିତ ରାମଚନ୍ଦ୍ରଙ୍କର ଭାଇମାନେ ଥିଲେ ସେହି ଆୟୁଧ-ପୁରୁଷ ଓ ସ୍ୱୟଂ ବିଷ୍ଣୁ ହେଉଛନ୍ତି ରାମଚନ୍ଦ୍ର । ଜଗନ୍ନାଥ ମନ୍ଦିରରେ ଥିବା ସୁଦର୍ଶନ ହେଉଛନ୍ତି ବିଷ୍ଣୁ-ଜଗନ୍ନାଥଙ୍କର ଆୟୁଧ-ପୁରୁଷ ଓ କ୍ରିୟାଶକ୍ତି । ମାତ୍ର ଏସବୁ ଆଡ଼କୁ ଚିନ୍ତା ନକରି ଡଃ କୁଲ୍‌କେ ଓ ତାଙ୍କର ସହଯୋଗୀମାନେ ସିଦ୍ଧାନ୍ତ ଗ୍ରହଣ କରିନେଲେ ଯେ, ସୁଦର୍ଶନ ହେଉଛନ୍ତି ଜଗନ୍ନାଥଙ୍କର ଚଳନ୍ତି ପ୍ରତିମା (୫୮) । ସେ ହେଉଛନ୍ତି ଜଗନ୍ନାଥଙ୍କର ମୂଳରୂପ । ଏଭଳି ଚିନ୍ତାଧାରା ପଛରେ ସେପରି କିଛି ଅକାଟ୍ୟ ଯୁକ୍ତି ନାହିଁ । କେବଳ ଅଛି କଳ୍ପନା ମାତ୍ର । ଏଣେ କହୁଛନ୍ତି, ସୁଦର୍ଶନ ଜଗନ୍ନାଥଙ୍କର ମୂଳରୂପ; ତେଣେ କହୁଛନ୍ତି, ନୃସିଂହ ଜଗନ୍ନାଥଙ୍କର ମୂଳରୂପ (୫୯) । ଏ ମଧ୍ୟରୁ କେଉଁଟା ଠିକ୍; ତାହା ବୁଝିବା ବାସ୍ତବିକ୍ ବଡ଼ କଷ୍ଟକର ବ୍ୟାପାର । ଏହି ଦ୍ୱିତୀୟ ସିଦ୍ଧାନ୍ତ ପରେ ପୁଣି ସେମାନଙ୍କର ତୃତୀୟ ସିଦ୍ଧାନ୍ତ ହେଉଛି, 'ଜଗନ୍ନାଥ ହେଉଛନ୍ତି ମୂଳତଃ ଆଦିବାସୀ ଦେବତା । ଏସବୁ ଭାବ ମିଶି ସେପରି ପାଠକ ମନରେ ଏକ ଗୋଳମାଳିଆ ପରିସ୍ଥିତି ସୃଷ୍ଟି କରୁଛି । ସବୁ ଅନୁମାନ, କଳ୍ପନାବିଳାସ ସିଦ୍ଧାନ୍ତରେ ପରିଣତ ହୋଇଛି ।

---

୫୬ । C. J. R. T. O.—pp-112-113.—Eschmann.

୫୭ । C. J. R. T. O.—pp-116. "Narasimha was a tribal deity represented by wooden post."

୫୮ । C. J. R. T. O.—pp-89. (See foot note No. 27.) and the last paragraph.; C. J. R. T. O.—pp-90.
(ପ୍ରକୃତରେ ମଦନମୋହନ ହେଉଛନ୍ତି ଚଳନ୍ତି ପ୍ରତିମା)

୫୯ । C. J. R. T. O.—pp. 90. Moreover, its (of Sudarshana) iconology retains an early stage of the development of Jagannath theology, namely the identification of Narasimha.

ସେ ସିଦ୍ଧାନ୍ତ ଗୋଟିଏ ନ ହୋଇ ହୋଇଛି ପୁଣି 'ଘନୋଟି' । ସେଥିରେ ମଧ୍ୟ କେତେବେଳେ ଏ ମୂର୍ତ୍ତିମାନ ଶାବର କାଷ୍ଠମୂର୍ତ୍ତିର ପ୍ରତିଛବି ବା ଜମିବକାଶ ତ କେତେବେଳେ ପ୍ରସ୍ତର ପ୍ରତୀକର ଜମିବକାଶ । ଏଥିରୁ ସ୍ପଷ୍ଟ ଭାବରେ ଏତିକି ବୁଝାପଡ଼ୁଛି ଯେ, ଆଲୋଚନାର ଚିନ୍ତାଧାରା ବିପର୍ଯ୍ୟସ୍ତ ଓ ଅସ୍ପଷ୍ଟ ।

ଏହି ସମାଲୋଚକମାନେ ସୁଭଦ୍ରାଙ୍କୁ ଆଦିବାସୀ 'ଖମ୍ବେଶ୍ୱରୀଙ୍କର ରୂପାନ୍ତର ବୋଲି ଅଭିହିତ (୬୦) କରିଛନ୍ତି । ମାତ୍ର ତଥାକଥିତ ଆଦିବାସୀ ଦେବତା ଅଥବା ନୃସିଂହମୂଳକ ଜଗନ୍ନାଥଙ୍କ ସହିତ ଏହି ଖମ୍ବେଶ୍ୱରୀଙ୍କର କ ସମ୍ପର୍କ ଅଛି; କିମ୍ବା ବଳଭଦ୍ରଙ୍କର ଏହାଙ୍କ ସଙ୍ଗେ ସମ୍ପର୍କ କ'ଣ; କାହିଁକି ସେମାନେ ଏକତ୍ର ଉପାସିତ; ଏ ସବୁର ଯଥାଯଥ କାରଣ ଦେଖାଇ ନାହାନ୍ତି । ସେମାନେ ଗବେଷଣା କରିବା ପୂର୍ବରୁ ତ ଧରିନେଇଛନ୍ତି, ଏସବୁ ଆଦିବାସୀ ଦେବତା । ତେଣୁ, ସେମାନଙ୍କର ଆଲୋଚନା ତଥାବଦ୍ଧ ହୋଇଛି । ସେମାନେ ଓଡ଼ିଶାର ମାଳ ଅଞ୍ଚଳ ବୁଲିଛନ୍ତି । ଆଦିବାସୀ ଗ୍ରାମକୁ ଯାଇଛନ୍ତି । ସେମାନଙ୍କ ପୂଜିତ ମୂର୍ତ୍ତିମାନ ଦେଖିଛନ୍ତି । ବର୍ତ୍ତମାନର ପ୍ରଚଳିତ କିମ୍ବଦନ୍ତୀମାନ ଶୁଣିଛନ୍ତି । ସେ ସବୁକୁ ପୁରାପୂରି ବିଶ୍ୱାସ କରି ଗ୍ରହଣ କରିଛନ୍ତି ଓ ସିଦ୍ଧାନ୍ତମାନ ଦେଇ ଅନୁମାନରେ ନିରୂପଣ କରିଛନ୍ତି । ମାତ୍ର, ଅନ୍ୟ ପକ୍ଷରେ ଶ୍ରୀମନ୍ଦିରରେ ପ୍ରଚଳିତ କିମ୍ବଦନ୍ତୀ ଉପରେ ସେଭଳି ଗୁରୁତ୍ୱ ଆରୋପ କରିନାହାନ୍ତି । ସେ କଥାମାନଙ୍କୁ ବିଶ୍ୱାସ ନକରି ମିଛ ବୋଲି କହି ଉଡ଼ାଇ ଦେଇଅଛନ୍ତି । ପୁରାଣ-ମାନଙ୍କ ଉପରେ ମୋଟେ଼ ଆସ୍ଥା ରଖିନାହାନ୍ତି, କି ସେଗୁଡ଼ିକ ତର୍ଜମା କରି ତହିଁରୁ ମୌଳିକତା ସଂଗ୍ରହ କରିନାହାନ୍ତି । ଇନ୍ଦ୍ରଦ୍ୟୁମ୍ନ ଉପାଖ୍ୟାନ ଉପରେ କୌଣସି ଗୁରୁତ୍ୱ ଦେଇନାହାନ୍ତି; ମାତ୍ର ଏସବୁ ହେଲି ଲୋକୋକ୍ତି, ଡାଳୁଶରୀଙ୍କ ଉପାଖ୍ୟାନ ଉପରେ ଗୁରୁତ୍ୱ ଦେଇଛନ୍ତି (୬୧) । ମନେ ଅବା ଯେଉଁଠି ମନ ହେଲି ବା ସୁହାଇଲା, ସେଠାରେ ଗୁରୁତ୍ୱ ଦେଇଛନ୍ତି ଓ ଯେଉଁଠି ମନ ନ ହେଲି ବା ନ ସୁହାଇଲା, ସେଠାରେ ଗୁରୁତ୍ୱ ଦେଇନାହାନ୍ତି । ଅତଏବ, ସିଦ୍ଧାନ୍ତରେ ସତ୍ୟ ଉଦ୍‌ଘାଟିତ ହୋଇପାରି ନାହିଁ । ଆଲୋଚନାରେ ପାତର ଅନ୍ତର ହୋଇଛି ଓ ନିରପେକ୍ଷତା ନାହିଁ ।

---

୬୦ । C. J. R. T. O.—pp- 92.

୬୧ । C.J.R.T.O.—pp-92 A Eschmann— ଲୋକେ କହୁଥିବା କିମ୍ବଦନ୍ତୀ ଅସ୍ପଷ୍ଟ ହେଲେ ମଧ୍ୟ ତାହା ପ୍ରାମାଣିକ ବୋଲି ସେ କହିଛନ୍ତି । "The other story, locally told, is certainly the original, though not very clear"

ଉଦାହରଣତଃ, ଜର୍ମାନ ଗବେଷିକା ଏସ୍‌ମାନ୍ ତାରାତାରଣୀଙ୍କ ଉପରେ ଜନଶ୍ରୁତିରୁ ଦୁଇଟି ଗଳ୍ପର ଉଲ୍ଲେଖ କରିଛନ୍ତି । ଦୁଇଟିଯାକ ଗଳ୍ପରେ ପରସ୍ପର ସାମଞ୍ଜସ୍ୟ ନାହିଁ । ଦୁଇଟିଯାକ ମନଗଢ଼ା ଗଳ୍ପ । ତେଣୁ ତାକୁ ବିଶ୍ୱାସ କରିବାର କାରଣ ନାହିଁ । ମାତ୍ର, ସେ ତାକୁ Original ମୌଳିକ ବା ପ୍ରାମାଣିକ ବୋଲି ବିଶ୍ୱାସ କରିଛନ୍ତି । ଗଳ୍ପ ଦୁଇଟି ନିମ୍ନୋକ୍ତ ପ୍ରକାରର:—ଗୋଟିଏ କଥା:—"ଦିନେ ଦୁର୍ଗାଦେବୀ ଦୁଇଜଣ ସୁନ୍ଦରୀ କନ୍ୟା-ରୂପ ଧରି 'ବାସୁପ୍ରଭରାଜ ଅର୍ଚ୍ଚକଙ୍କ * ଘରେ ପହଞ୍ଚିଲେ । ତାଙ୍କଘରେ ସେ ଦୁହେଁ କିଛିଦିନ ରହିଲେ । ଦିନେ ହଠାତ୍ ସେମାନେ ଅନ୍ତର୍ଦ୍ଧାନ ହୋଇଗଲେ । 'ବାସୁପ୍ରଭରାଜ' ( ବାସୁପ୍ରହରାଜ ? ) ସେ ଦୁହିଁଙ୍କୁ ଝିଅ କରିଥିଲେ; ଝିଅ ଭଳି ଦେଖୁଥିଲେ । ତେଣୁ, ସେ ଏଥିରେ ବିଚଳିତ ହୋଇପଡ଼ିଲେ । ଚାରିଆଡ଼େ ଖୋଜିଲେ । ମାତ୍ର କେଉଁଠି ପାଇଲେ ନାହିଁ । ଦିନେ ସ୍ୱପ୍ନରେ ସେହି ଦୁଇଝିଅ ବାସୁପ୍ରଭରାଜଙ୍କୁ ଦେଖାଦେଇ କହିଲେ, "ଆମେ ଏ ପାହାଡ଼ରେ ପଥର ମୂର୍ତ୍ତିରୂପରେ ଅଛୁ"। ସେହି ଦୁହେଁ ହେଉଛନ୍ତି, ତାରାତାରଣୀ । "ବର୍ତ୍ତମାନ ମଧ୍ୟ ତାଙ୍କର ପୂଜକ ହେଉଛନ୍ତି ଏହି ବାସୁପ୍ରଭରାଜଙ୍କର ବଂଶଧର ।" ଏହି କଥାକୁ ଶ୍ରୀମତୀ କୁମାରୀ ଏସ୍‌ମାନ୍ ଗ୍ରହଣ କରି ଏହାକୁ ପ୍ରାମାଣିକ ତଥ୍ୟ · 'original' ବୋଲି ଅଭିହିତ କରିଛନ୍ତି । (୬୨) କିଏ ଜାଣେ, ଏକଥା ସେହି ପୂଜକ-ମାନଙ୍କର ଏବର କଳ୍ପିତ ଗଳ୍ପ ହୋଇନଥିବ । ଗବେଷଣାରେ ଏଭଳି ଅନ୍ଧବିଶ୍ୱାସର ସ୍ଥାନ ନାହିଁ । ସେ ଯାହାହେଉ, ତାରାତାରଣୀଙ୍କ ଉପରେ ପ୍ରତିଷ୍ଠିତ ଅନ୍ୟ ଗଳ୍ପଟି ଡ଼.ସି. ସରକାରଙ୍କ ପୁସ୍ତକରୁ ସେ ଉଦ୍ଧାର କରିଛନ୍ତି । ଏହି ଗଳ୍ପଟି 'ଶ୍ରୀ ତାରାତାରଣୀ ଦେବୀ କ୍ଷେତ୍ରମାହାତ୍ମ୍ୟ'ରୁ ସଂଗୃହୀତ ହୋଇଛି । ପୁରାଣର ବର୍ଣ୍ଣନା ଅନୁସାରେ ଯେପରି ଦେବୀ-ପୀଠ ଗୁଡ଼ିକ ସତୀଙ୍କର ଦରପୋଡ଼ା ଅବସ୍ଥବର କ୍ଷେତ୍ର, ଏହି ତାରାତାରଣୀ ମଧ୍ୟ ସେହିଭଳି ଏକ ଶକ୍ତିପୀଠ । ପୁରାଣ ଅନୁସାରେ ଏହା ହେଉଛି ଦକ୍ଷକନ୍ୟା ସତୀଙ୍କର ଉରଜ ଅଂଶ (୬୩) ଅତଏବ; ଏଠାରେ ଦେଖିବାର କଥା ଯେ, ଏହି ଉଭୟ ଗଳ୍ପ ମଧ୍ୟରେ କିଛି ସାଦୃଶ୍ୟ

---

୬୨ । C.J.R.T O—pp 92 Ibid.

* **ଦ୍ରଷ୍ଟବ୍ୟ**:—ପ୍ରଭରାଜ = ପ୍ରହରାଜ । ଅର୍ଚ୍ଚକ = ଅର୍ଚ୍ଚକ, ବା ପୂଜକ । ପ୍ରହରାଜମାନେ ହେଉଛନ୍ତି ବ୍ରାହ୍ମଣ; ଆଦିବାସୀ ନୁହନ୍ତି । ତାରାତାରଣୀ (ସଂସ୍କୃତନାମ) ତାଙ୍କର ଠାକୁରାଣୀ ଓ ସେମାନେ ତାଙ୍କର ପୂଜକ । ବ୍ରାହ୍ମଣଙ୍କ ଦ୍ୱାରା ଅର୍ଚ୍ଚିତା ଦେବୀ ଆଦିବାସୀ ଦେବତା ହେବେ କିପରି ? ସେ ଏହାର କାରଣ କିଛି ଦେଇନାହାନ୍ତି ।

୬୩ । C.J.R.T.O—pp-91

ନାହିଁ । ମାତ୍ର, ଡଃ ଏସ୍‌ମାନ୍ ପ୍ରଥମ ଗଳ୍ପଟି ଉପରେ ଅହେତୁକ ଗୁରୁତ୍ୱ ଆରୋପ କରିଛନ୍ତି ଓ ସତୀ ବା ଦୁର୍ଗାଙ୍କର ରୂପାନ୍ତର ହେଲେ ମଧ୍ୟ ତାରାତାରିଣୀଙ୍କୁ ଆଦିବାସୀଙ୍କର ଦେବତା ବୋଲି ଧରିନେଇଛନ୍ତି (୭୪) । ଏଭଳି ତାଙ୍କ ଦୃଷ୍ଟିରେ ସବୁକିଛି ଆଦିବାସୀ-ମୂଳକ । ହିନ୍ଦୁ ଦେବତାଙ୍କୁ ଆଦିବାସୀ ଦେବତା ବୋଲି ଗ୍ରହଣକରି ସେ ପୁଣି ବିଶ୍ୱାସକରନ୍ତି ଯେ, ଆଦିବାସୀ ଦେବତାମାନେ କ୍ରମଶଃ ହିନ୍ଦୁ ଦେବତା ଭାବରେ ପରିଣତ ହୋଇଛନ୍ତି । ଯେପରି କି ଆଦିବାସୀଙ୍କ 'ସ୍ତମ୍ଭେଶ୍ୱରୀ' ସୁଭଦ୍ରା ଭାବରେ ଗଢ଼ିଉଠିଛନ୍ତି । ସମ୍ଭବତଃ ହିନ୍ଦୁମାନେ ନିଜର କୌଣସି ଦେବାଦେବୀ ନ ଥିବାରୁ ଏପରି ଆଦିବାସୀଙ୍କ ଦେବତା-ମାନଙ୍କୁ ଆଣି ହିନ୍ଦୁ ଦେବତା ଭାବରେ ପରିଣତ କରିଦେଇଅଛନ୍ତି; ଯେପରିକି, ଖ୍ରୀଷ୍ଟିଆନ୍ ପାଦ୍ରୀମାନେ ନିରୀହ ଆଦିବାସୀଙ୍କୁ ଖ୍ରୀଷ୍ଟିଆନ୍ କରିଦିଅନ୍ତି । ମାତ୍ର ଦେଖିବସିଲେ ଜଣାଯାଏ ଯେ, ହିନ୍ଦୁମାନେ ପୂର୍ବକାଳରେ ଏତେ ରକ୍ଷଣଶୀଳ ଥିଲେ ଯେ, ଆଦିବାସୀଙ୍କୁ ଅସ୍ପୃଶ୍ୟ ବୋଲି ଜ୍ଞାନ କରୁଥିଲେ । ତେଣୁ ହଠାତ୍ ଏକ ଆଦିବାସୀ ସଂସ୍କୃତି ବା ପରମ୍ପରାକୁ ଗ୍ରହଣ କରିନେବା ସେମାନଙ୍କ ପକ୍ଷରେ ଏତେ ସହଜ ନଥିଲା । ମାତ୍ର, ଡଃ ଏସ୍‌ମାନ୍ ତ ହିନ୍ଦୁଙ୍କର ଏହି ରକ୍ଷଣଶୀଳ ହୃଦୟକୁ ଜାଣନ୍ତି ନାହିଁ । ସେ ନିଜେ ଖ୍ରୀଷ୍ଟିଆନ୍ ଓ ପାଶ୍ଚାତ୍ୟ ସଂସ୍କୃତିରେ ତାଙ୍କର ଚିନ୍ତାଧାରା ଗଢ଼ିଉଠିଛି । ତେଣୁ ତାଙ୍କ ଦୃଷ୍ଟିରେ ସେ ବିଚାର କରି ସୁଭଦ୍ରା ହିଁ ସ୍ତମ୍ଭେଶ୍ୱରୀ ବୋଲି ଭାବନେଇଛନ୍ତି ।

ଆସ୍ଥାର ସ୍ତମ୍ଭେଶ୍ୱରୀଙ୍କ ଉପରେ ଆଧାରିତ ଯେଉଁ ଲୋକୋକ୍ତି (୭୫) ସେ ଉଲ୍ଲେଖ କରି ତାକୁ ସଙ୍ଗେ ସଙ୍ଗେ ବିଶ୍ୱାସ କରିଛନ୍ତି, ତାହା ଏହି ଭଳି:—

"ଖମ୍ବମୁନି ବନରେ ଥିଲେ । ଦିନେ ସେ ସ୍ୱପ୍ନରେ 'ଖମ୍ବେଶ୍ୱରୀ'ଙ୍କୁ ଦେଖିଲେ । ସ୍ୱପ୍ନରେ ଖମ୍ବେଶ୍ୱରୀ ତାଙ୍କୁ କହିଲେ ଯେ, ସେ ଏହି ମୁନିଙ୍କ ଦ୍ୱାରା ପୂଜିତା ହେବେ । କ୍ରମେ ଦେବୀ ଖମ୍ବେଶ୍ୱରୀ ଏହି ମୁନିଙ୍କ ଘରେ ଆସି ଆତ୍ମପ୍ରକାଶ କଲେ ଓ ତାଙ୍କର ଝିଅ ହୋଇ ରହିଲେ । ଏକଦା ସେ ଝିଅ ଏକ କଙ୍କଣ କିଣି ମୁନିଙ୍କୁ ତାହାର ମୂଲ୍ୟ

---

୭୪ । C. J. R. T. O.—pp-92 "The Goddess appears through a human being in a low class or even tribal surroundings' —Eschmann

୭୫ । ଡଃ ଏସ୍‌ମାନ୍ ଏହି ଗଳ୍ପ ଆସ୍ଥାର 'ଖମ୍ବେଶ୍ୱରୀ'ଙ୍କ ପୂଜକଠାରୁ ସଂଗ୍ରହ କରିଛନ୍ତି । ଏଥିପାଇଁ କୌଣସି ପୋଥିଗତ ପ୍ରମାଣ ନ ଥିବାରୁ, ଏଥିରେ ତୁଳନାତ୍ମକ ଅଧ୍ୟୟନ କରିବାର ଅବକାଶ ନାହିଁ । ଅତଏବ, ଡଃ ଏସ୍‌ମାନ୍ ଯାହା ଶୁଣିଲେ, ତାହାକୁ ପ୍ରାମାଣିକ ବୋଲି ଭାବି ତାହା ଉପରେ ଜଳ୍ପନା କଲେ । ଏହା ତାରାତାରିଣୀ ଗଳ୍ପ ସହିତ ପ୍ରାୟ ସମାନ ବୋଲି ସେ ଉଲ୍ଲେଖ କଲେ—C J. R. T. O. p-93

ଦେବାକୁ କହିଲେ । ତାହାପରେ ସେ ମୁନିଙ୍କୁ ଡରାଇବାକୁ ଲାଗିଲେ । ବୈଷ୍ଣଶକ୍ତି ବଳରେ ଗୋଟିଏ ପିଲାର ମୁଣ୍ଡ କାଟି ଆଣି ଆସି ତାଙ୍କ ଆଗରେ ଉଭାହେଲେ । ଏଥିରେ କ୍ରୁଦ୍ଧମୁନି ରାଗିଯାଇ ତାଙ୍କୁ ଗୁମ୍ଫୁଡ଼ାଏ ଦେଲେ ଓ ଦେବୀଙ୍କର ମୁହଁ ଗୋଟେ ପଟକୁ ବୁଲିଗଲା ।" (୭୭)

ଏହି ଗଳ୍ପଟିର କୌଣସି ଐତିହାସିକ ଭିତ୍ତିଭୂମି ନାହିଁ । ଏହା ଏକ ପରବର୍ତ୍ତୀ ଯୁଗର କପୋଳକଳ୍ପିତ ଗଳ୍ପ । ଭକ୍ତମାନଙ୍କ ମନରେ ଖମ୍ଭେଶ୍ୱରୀଙ୍କ ପାଇଁ ଭୟ ଓ ଭକ୍ତି ସୃଷ୍ଟି କରିବା ଉଦ୍ଦେଶ୍ୟରେ ସେଠାର ପୂଜକମାନଙ୍କ ଦ୍ୱାରା ଏ ଗଳ୍ପ ସୃଷ୍ଟି କରାଯାଇଛି । ଖମ୍ଭ କେବେ କୌଣସି ଲୋକ ବା ମୁନିଙ୍କର ନାମ ନ ହୋଇପାରେ * । ମୂର୍ତ୍ତି ନିର୍ମାଣର ଏକ ସୁବିଧା ଶୈଳୀରେ ମୁହଁର ଏକ ପାର୍ଶ୍ୱ ଖୋଦିତ Side face ହୋଇଥାଏ । ଏଭଳି ଅନେକ ମୂର୍ତ୍ତି ଓଡ଼ିଶାରେ ପ୍ରସ୍ତର ଖୋଦିତ ହୋଇଥିବାର ଦେଖାଯାଏ । ପୁରୀ ଜିଲାର ଶିରୁଳିଠାରେ ଥିବା ମହାବୀର ହନୁମାନ ଏହି ଅନୁରୂପ (Side face) ମୂର୍ତ୍ତି । ପରେ, ମୁହଁର ଏହି ପାର୍ଶ୍ୱ ପ୍ରକାଶକୁ ଦେଖି, କାହିଁକି ମୁହଁ ବୁଲିଗଲା; ସେଥିପାଇଁ ଗୋଟିଏ ଗୋଟିଏ ଗଳ୍ପ ଏଭଳି ପୂଜକମାନେ ସୃଷ୍ଟି କରିଛନ୍ତି । ଶିରୁଳି ମହାବୀରଙ୍କ ପାଇଁ ଗଳ୍ପ ଅଛି ଯେ, ତାଙ୍କ ମାଆ ତାଙ୍କୁ ଗୁମ୍ଫୁଡ଼େ ପକାଇଦେଲେ ଯେ, ତାଙ୍କ ମୁହଁ ବୁଲିଗଲା । ତା'ନହେଲେ ସେ ପ୍ରତିଦିନ ହାତେ ଲେଖାଏଁ ବଢ଼ୁଥିଲେ । ମାଆ କହିଲେ, "ତୁ ଏମିତି ବଢ଼ିଲେ ତୋତେ କୋଉ ପୂଜକ ପୂଜା କରିବ ? କାହା ହାତ ତୋ ଗଳାକୁ ପାଇବ ଯେ, ତୋତେ ଫୁଲମାଳ ଲାଗିହେବ ? ଏସବୁ ଗଳ୍ପ ମନଗଢ଼ା ଏହା ଉପରେ ଗୁରୁତ୍ୱ ଦେଇ ଗବେଷଣା କରିବାର କୌଣସି କାରଣ ନାହିଁ । ମାତ୍ର, ଡଃ ଏସ୍ ମାନ୍ ଖମ୍ଭେଶ୍ୱରୀଙ୍କର ଏଭଳି ଏକ ମନଗଢ଼ା ଗଳ୍ପ ଉପରେ ଗୁରୁତ୍ୱ ଦେଇ ଗବେଷଣା କାର୍ଯ୍ୟରେ ବାହଦେଶୀ ହୋଇଛନ୍ତି । ସେ ଏହାକୁ ତର୍ଜମା କରି ଲେଖିଛନ୍ତି,—"The feature of the baby cut into pieces suggest the idea of Human sacrifice or atleast tantric practices" । (୭୭) ଏଥିରେ

୭୭ । C. J. R. T. O.—pp- 93

* ଦ୍ରଷ୍ଟବ୍ୟ:—ଯଦି ଏକଥା ଉପରେ ଗୁରୁତ୍ୱ ଦିଆଯାଏ, ତେବେ କୁହାଯାଇପାରେ ଯେ, ସ୍ତମ୍ଭେଶ୍ୱରୀ ମୁନିଙ୍କ ଦ୍ୱାରା ଉପାସିତା । ଅତଏବ ଆଦିବାସୀ ଦେବତା ନୁହନ୍ତି । ପୁଣି ଖମ୍ଭ ବା ସ୍ତମ୍ଭ+ଈଶ୍ୱରୀ = ସ୍ତମ୍ଭେଶ୍ୱରୀ । ଏହି ନାମକରଣ ସଂସ୍କୃତମୂଳକ; ଆଦିବାସୀ ଭାଷାମୂଳକ ନୁହେ । ଆଦିବାସୀମାନେ ଦେବୀଙ୍କର ନାମ ସଂସ୍କୃତରେ କାହିଁକି ଦେଇଥନ୍ତେ ? ସେମାନଙ୍କ ନିଜ ଭାଷାରେ ସିନା ନାମକରଣ କରନ୍ତେ !

୭୭ । C. J. R. T. O.—pp- 93

ଥିବା ଝମ୍ବମୁନିଙ୍କୁ ସେ ବିଶ୍ୱାସ କରି ଗ୍ରହଣ କରିଥିଲେ ଓ ତାଙ୍କୁ ଏକ ଶୂଦ୍ରମୁନି * ବୋଲି କହିଥିଲେ । ଆଜି ଏହି ଖମ୍ବେଶ୍ୱରୀ ଦେବୀଙ୍କୁ tribal ଆଦିବାସୀଙ୍କ ଦେବୀ ବୋଲି ଉଲ୍ଲେଖ କରିଥିଲେ । ମୁନିଙ୍କୁ ଶୂଦ୍ରମୁନି କହିବା ଓ ଦେବୀଙ୍କୁ ଶାବର (ଆଦିବାସୀ) କହିବା ପଛରେ ସେ କୌଣସି ବିଶେଷ ଯୁକ୍ତି ଦେଇନାହାନ୍ତି । ଏହା କେବଳ ତାଙ୍କ ବିଶ୍ୱାସ ଉପରେ ପର୍ଯ୍ୟବସିତ । ଏସମ୍ବନ୍ଧରେ କିଛି ଭିତ୍ତିଭୂମି ନଥିଲେ ମଧ୍ୟ, ଏହି ଗଳ୍ପ ସୃଷ୍ଟି ହେବା କାଳରେ ସମାଜରେ ତାନ୍ତ୍ରିକ ପ୍ରଥା ପ୍ରଚଳିତ ଥିବାର ଆଭାସ ମିଳୁଛି । କିନ୍ତୁ, କେବେ ଏ ଗଳ୍ପ ରଚିତ ହେଲା, ତାହାର ପ୍ରମାଣ ଏଥିରେ ନାହିଁ । ଅତଏବ, ଖମ୍ବେଶ୍ୱରୀ ସେ ପୁରୀର ସୁଭଦ୍ରା; ଏଥିପାଇଁ ଏଥିରେ କିଛି ପ୍ରମାଣର ଆଭାସ ମାତ୍ର ନାହିଁ । ଏଣୁ ଏପରି ଏକ ମନଗଢ଼ା ଗଳ୍ପ ଉପରେ ଆସ୍ଥା ସ୍ଥାପନ ଓ ଆଲୋଚନା ନିଷ୍ପ୍ରୟୋଜନ ।

ଖମ୍ବେଶ୍ୱରୀ ଯଦି କେବଳ ଆଦିବାସୀଙ୍କ ଦେବତା, ତେବେ ଭୈରବ, ଦକ୍ଷିଣକାଳିକା ଓ ମହିଷାମର୍ଦ୍ଦିନୀ ଦୁର୍ଗାଙ୍କ ସହିତ ତାଙ୍କର ସହାବସ୍ଥାନ ସମ୍ଭବ କିପରି ? ମାତ୍ର, ଓଡ଼ିଶାର ଧାର୍ମିକ ପରଂପରାରେ ଏପରି ଦେଖାଯାଉଛି । ପାରଳାଖେମୁଣ୍ଡିର ମାଳମା ମନ୍ଦିର ଗାତ୍ରରେ ଖମ୍ବେଶ୍ୱରୀଙ୍କର ଏକ ପଟ୍ଟଚିତ୍ର ଅଛି । ପୁଣି ଗୋଟିଏ ପଟ୍ଟଚିତ୍ରରେ (painting) ଭୈରବ, ଦକ୍ଷିଣକାଳୀ ଓ ମହିଷମର୍ଦ୍ଦିନୀ ଦୁର୍ଗାଙ୍କ ସହିତ ଖମ୍ବେଶ୍ୱରୀ ଥିବାର ଡଃ ଏସ୍. ଏନ୍. ରାଜଗୁରୁଙ୍କ ପାଖରେ ଅଛି । (୬୮) ଅତଏବ ଖମ୍ବେଶ୍ୱରୀଙ୍କୁ ତାନ୍ତ୍ରିକ ମୂର୍ତ୍ତି ଭୈରବଙ୍କର ଏକ ଭୈରବୀ ତଥା ଶକ୍ତିପ୍ରଦା ମୂର୍ତ୍ତି ବୋଲିଯାଇପାରେ । ପୁରୀର ସୁଭଦ୍ରାଙ୍କ ସହିତ ଏହାଙ୍କର ସମ୍ପର୍କ କ'ଣ ? ଏପରି ବର୍ଣ୍ଣନା କେଉଁଠିହେଲେ ନାହିଁ, କି ଏଭଳି କୌଣସି ସାଦୃଶ୍ୟ ଏଠାରେ ଆଲୋଚନା ହୋଇନାହିଁ । କେବଳ ଏହି ଗବେଷିକାଙ୍କୁ ସେପରି ସାଦୃଶ୍ୟ ଦେଖାଯାଇଛି । ତେଣୁ ସେ ଲେଖିଛନ୍ତି—
'The figure of Khambesvari in Aska resembles very much the figure of Subhadra in Puri (see fig. 21.) …we can thus suppose that in ancient times, probably before Ramachandra of Subhadra must have been even more similar to the Aska Khambesvary as to-day'' (୬୯)

ଟିକିଏ ବିଚାରକଲେ ଦେଖାଯିବ ସେ ଜର୍ମାନ ଗବେଷିକାଙ୍କର ବିଚାର ମୋଟେ ଠିକ୍ ହୋଇନାହିଁ । ସୁଭଦ୍ରାଙ୍କର ଆସ୍ଥାଣ ଖମ୍ବେଶ୍ୱରୀଙ୍କ ସହିତ କିଛି ସାଦୃଶ୍ୟ ନାହିଁ ।''

---

* ଦ୍ରଷ୍ଟବ୍ୟ—ଶୂଦ୍ର କହିଲେ 'ଚତୁର୍ବର୍ଣ୍ଣର' ଏକ ବର୍ଣ୍ଣକୁ ବୁଝାଏ । ଏଣୁ ଶୂଦ୍ର ହେଉଛନ୍ତି ଆର୍ଯ୍ୟ; ଅନାର୍ଯ୍ୟ ବା ଆଦିବାସୀ ନୁହନ୍ତି ।

୬୮ । C. J. R. O.—pp. 93, Foot note No-39

୬୯ । C. J. R. T. O.—PP.94.

ସୁଭଦ୍ରାଙ୍କର ମୁଖ 'କୋଣାକୃତି' ଓ ନେତ୍ରରେ କୌଣସି ନରନେତ୍ରର ସାଦୃଶ୍ୟ ନାହିଁ । ମାତ୍ର ଆସ୍ଥାନ ଖମ୍ଭେଶ୍ୱରୀଙ୍କର ମୁଖ ସୂର୍ଯ୍ୟପୁର ଗୋଲାକାର ଏବଂ ଆଖି ପ୍ରାୟ ମଣିଷର ଆଖିଭଳି । ତାଙ୍କ ପାଟିରୁ ଲେଲିତ ଜିହ୍ୱା ଓହ୍ଲାଇ କାଳୀଙ୍କ ଭଳି ଶୋଭା ପାଉଛି । ମାତ୍ର ସୁଭଦ୍ରାଙ୍କର ସେପରି ନାହିଁ । ସୁଭଦ୍ରାଙ୍କର ଶରୀରରେ ଏକ ସୁନ୍ଦର ସଂଗଠନ ରହିଛି । କିନ୍ତୁ ଏହି ଖମ୍ଭେଶ୍ୱରୀଙ୍କର ଶରୀର କେବଳ ଏକ ସ୍ତମ୍ଭ । (୭୦) ଏଣୁ ଠିକଏ ଭାବିଲେ ସ୍ପଷ୍ଟ ଜଣାପଡ଼ୁଛି, ସୁଭଦ୍ରା ହେଉଛନ୍ତି ଜଣେ ବୈଷ୍ଣବୀ ଶକ୍ତି । ମାତ୍ର ଏହି ସ୍ତମ୍ଭେଶ୍ୱରୀ ହେଉଛନ୍ତି କାଳୀଙ୍କ ଭଳି ଏକ ଶାକ୍ତ ବା ତାନ୍ତ୍ରିକ ଦେବୀ । ସୁଭଦ୍ରା ଯଦି ସ୍ତମ୍ଭେଶ୍ୱରୀ ହୋଇଥାନ୍ତେ, ତେବେ ସମ୍ପୂର୍ଣ୍ଣ ଅନ୍ୟ ପ୍ରକାରର ଏକ ସ୍ତମ୍ଭେଶ୍ୱରୀ ସ୍ତମ୍ଭସନ୍ନିହିତା ହୋଇ ସେହି ଶ୍ରୀମନ୍ଦିରର ଅଭ୍ୟନ୍ତରରେ ଯୋଗବ୍ରହ୍ମା ପଥ ନିକଟରେ ଆଉ କାହିଁକି ସ୍ଥାପିତ ହୋଇଥାନ୍ତେ ? ଖମ୍ଭେଶ୍ୱରୀ ଶାକ୍ତ-ତାନ୍ତ୍ରିକ ମତରେ ପୂଜିତ ହେଉଥିବାରୁ ତାଙ୍କୁ କଜ୍ଜ୍ୱଳ, ସିନ୍ଦୂର ଆଦି ଦିଆଯାଇ ପୂଜା କରାଯାଏ । (୭୧) ମାତ୍ର, ସୁଭଦ୍ରାଙ୍କୁ ଏପରି ପୂଜା କରାଯାଏ କି ? ତେଣୁ ସେ ସେଭଳି ତାନ୍ତ୍ରିକ ମୂର୍ତ୍ତି ନୁହନ୍ତି । ପୁଣି ଦେଖିବାର କଥା; ଯେ ସ୍ତମ୍ଭେଶ୍ୱରୀ କେଉଁଠି ଏକ କାଠର ସ୍ତମ୍ଭ ତ କେଉଁଠି ଏକ ପଥରର ସ୍ତମ୍ଭ । ଅନୁଗୁଳର ବାମୁର୍, ଇତ୍ୟାଦିଠାରେ ସେ ହେଉଛନ୍ତି ଏକ ପଥରର ଖୁଣ୍ଟି । (୭୨) ସୁଭଦ୍ରା କ'ଣ ପୁରୀଠାରେ ପଥରରେ ନିର୍ମିତ ହେବାର ବିଧି ଅଛି କି ? ଏକାନଂଶା କିନ୍ତୁ ପଥରରେ ନିର୍ମିତା । ମାତ୍ର ତାଙ୍କର ରୂପସମ୍ଭାର ତ ସ୍ତମ୍ଭେଶ୍ୱରୀଙ୍କ ଭଳି ନୁହେଁ । ସେ ତ ମନୁଷ୍ୟାକାର ମୂର୍ତ୍ତି; ଏକ ନାରୀ ମୂର୍ତ୍ତି । ଅତଏବ ସ୍ତମ୍ଭେଶ୍ୱରୀଙ୍କ ସହିତ ତୁଳନୀୟ ନୁହନ୍ତି । ସେ ଦୃଷ୍ଟିରୁ ସୁଭଦ୍ରାଙ୍କର କୌଣସିମତେ ସ୍ତମ୍ଭେଶ୍ୱରୀଙ୍କ ସହିତ ତୁଳନା କରିବାର ନୁହେଁ । ଦୁହେଁ ହେଉଛନ୍ତି, ଭିନ୍ନ ଭିନ୍ନ ମତର ଭିନ୍ନ ଦେବତା ।

ଯେ ଯାହାହେଉ, ସ୍ତମ୍ଭେଶ୍ୱରୀ ପ୍ରଥମେ ପଶ୍ଚିମ ଓଡ଼ିଶାରେ ବିଶେଷ ଭାବରେ ପ୍ରତିଷ୍ଠିତା ଥିଲେ । (୭୩) ସୁଲ୍କୀ ଓ ଭଞ୍ଜଙ୍କ ରାଜତ୍ୱ ସମୟରେ ସେ ଏହି ଅଞ୍ଚଳରେ ବିଶେଷ ଆଦର ଲାଭ କରିଥିଲେ । ମାତ୍ର, ସୁଭଦ୍ରା ତ ପୂର୍ବ ଓଡ଼ିଶାର ଦେବୀ । ଏହାଙ୍କ ସହିତ ତାଙ୍କର ରୀତି, ନୀତି, ଆକୃତି, ତଥା ଉପାସନାବିଧିର କୌଣସି ସାମ୍ୟ ନାହିଁ । ଏହା କେବଳ ଆଧୁନିକ ଗବେଷକମାନଙ୍କର ଏକ କଳ୍ପନା । ସେଥିପାଇଁ ଗବେଷିକା ଏଚ୍‌ମାନ୍ 'might be' ଶବ୍ଦ ପ୍ରୟୋଗ କରି ଏହା ଏକ ସମ୍ଭାବନା ବୋଲି ଯଥାର୍ଥରେ ଉଲ୍ଲେଖ କରିଛନ୍ତି; ଯଥା:—

---

୭୦ । C. J. R. T. O.—ଦ୍ରଷ୍ଟବ୍ୟ—Fig. 63a.

୭୧ । C. J. R. T. O.—PP. 87.

୭୨ । C. J. R. T. O.—PP.86

୭୩ । C. J. R. T. O.—PP, 94.

"As worship of Khambesvari is known since the fifth century A. D. her Hinduised inconography might be taken as the prototype for the development which led to the Subhadra figure." (୭୪)ଏଥିରୁ ସ୍ପଷ୍ଟ ବୁଝାପଡ଼ୁଛି ଯେ, ଏହି ଗବେଷିକା ଏ ବାବଦରେ କିଛି ନିଶ୍ଚିତ ପ୍ରମାଣ ପାଇନାହାନ୍ତି । ଅତଏବ, ଖମ୍ବେଶ୍ୱରୀ ଯେ ସୁଭଦ୍ରା, ଏଥିରେ ସେ ନିଶ୍ଚିତ ନୁହନ୍ତି ।

ଡଃ ଷ୍ଟିଟେନ୍‌କୋନ୍, ଡଃ କୁଲ୍‌କେ, ଡଃ ଏସ୍‌ମାନ୍ ପ୍ରଭୃତି ଜର୍ମାନ ଗବେଷକଙ୍କ ମତରେ ଅଦିବାସୀ ସଂସ୍କୃତିରୁ ତଥା ପଶ୍ଚିମ ଓଡ଼ିଶାରୁ ଜଗନ୍ନାଥ ସଂସ୍କୃତି ଯଯାତି କେଶରୀଙ୍କ ସମୟରେ ପୁରୀକୁ ଆସିଛି । ତେଣୁ ସୁଭଦ୍ରା ସ୍ତମ୍ଭେଶ୍ୱରୀ ହୋଇପାରନ୍ତି । (୭୫) ଏହାର ମୁଖ୍ୟ ପ୍ରମାଣ ସେମାନେ ଦେଉଛନ୍ତି ମାଦଳାପାଞ୍ଜିରେ ଥିବା ସୋନ୍‌ପୁରରୁ ଜଗନ୍ନାଥଙ୍କୁ ଅଣାଯାଇଥିବା କାହାଣୀ । ଏହାକୁ ବିଶ୍ୱାସକରି ସେମାନେ ଭାବନ୍ତି ଯେ, ଯଯାତିଙ୍କ ପୂର୍ବରୁ ପୁରୀରେ ଜଗନ୍ନାଥ ନଥିଲେ । ଯଯାତିହିଁ ତାଙ୍କୁ ପ୍ରତିଷ୍ଠା କରିଥିଲେ । ମାତ୍ର ବଡ଼ ବିଚିତ୍ର କଥା ହେଉଛି, ଏହି ଗବେଷକମାନେ ମାଦଳାପାଞ୍ଜିର ଯଯାତିଙ୍କ ଜଗନ୍ନାଥ; ବଳଭଦ୍ର, ସୁଭଦ୍ରାଙ୍କୁ ପ୍ରତିଷ୍ଠା କରିଥିବା କଥା ବିଶ୍ୱାସ କଲେ; ମାତ୍ର ଯଯାତିଙ୍କୁ କାହିଁକି ଅନ୍ୟମତରେ ୨ୟ ଇନ୍ଦ୍ରଦ୍ୟୁମ୍ନ କୁହାଯାଇଥିଲା, କେଉଁ କାହାଣୀର ଆଧାରରେ ଏପରି ଉପାଧି ତାଙ୍କୁ ମିଳିଥିଲା, ସେ କଥା ବିଗ୍ଭରକୁ ନେଲେ ନାହିଁ । ରକ୍ତବାହୁ ଆକ୍ରମଣ କଥାକୁ ମଧ୍ୟ ଅବିଶ୍ୱାସ କଲେ । ଅତଏବ, ଯଯାତିଙ୍କ ପୂର୍ବରୁ ଜଗନ୍ନାଥ ଥିଲେ ବୋଲି ସେମାନେ ଅବିଶ୍ୱାସ କଲେ । ପୁଣି ଡଃ କୁଲ୍‌କେ, ଏସ୍‌ମାନ୍, ଓ ଗୟାଚରଣ ତ୍ରିପାଠୀ ମିଶି ଏଥିରେ ଏକ ପ୍ରବନ୍ଧରେ କହିଲେ, ଯଯାତିଙ୍କ ପୂର୍ବରୁ ସମୁଦ୍ରତୀରରେ ଶାକ୍ତଦେବୀ ଖମ୍ବେଶ୍ୱରୀ ଓ ଜଗନ୍ନାଥ ଶବର ସଂସ୍କୃତିକୁ ଧରି ରହିଥିଲେ । ଖମ୍ବେଶ୍ୱରୀଙ୍କର ସୁଭଦ୍ରାଭାବରେ ରୂପାନ୍ତରୀକରଣ ପୁରୀଠାରେ ହିଁ କେବଳ ହେଲା । (୭୬)ପୁଣି ଲେଖିଲେ, ଜଗନ୍ନାଥ ମୂଳରୁ ନୃସିଂହ ଥିଲେ । ପୁରୁଷୋତ୍ତମ ମଧ୍ୟ ଥିଲେ ।

୭୪ । C. J· R T· O.—PP-94.

୭୫ । C.J. R. T. O.—PP- 174 ff; See and consult Foot Note· No·13, here

୭୬ । C. J, R. T. O.—PP, 177-178—See first para

ସୁଭଦ୍ରା ପ୍ରକୃତରେ ଥିଲେ ଲକ୍ଷ୍ମୀ । (୭୭) ଏହିଭଳି ମିଶାମିଶି ଗୋଳିଆପୋଳିଆ ମତ ଦେଇ ସେହି ଜନୈକ ଗବେଷକ ମିଶିମାସି ଯାହାସବୁ କହିଛନ୍ତି, ତହିଁରୁ ପ୍ରକୃତ ତଥ୍ୟ ଧରାପଡ଼ୁ ନାହିଁ । ସେମାନେ ମଧ୍ୟ ନିଜ ମତରେ ସନ୍ଦେହମୁକ୍ତ ନଥିଲା ଭଳି ଜଣାପଡ଼ୁଛି । କାରଣ, ଯେତେବେଳେ ଯାହା ମନହେଲା, ସେମାନେ ବିଶ୍ୱାସ କଲେ । ଯାହା ମନ ନହେଲା ତାହା ବିଶ୍ୱାସ କଲେ ନାହିଁ । ଏପରି ଗ୍ରନ୍ଥ ପ୍ରମାଣକୁ ଅଧାପନ୍ତରିଆ ଭାବରେ ବିଶ୍ୱାସ କଲେ ଓ ନିଜକୁ ସୁହାଉଥିବା ରାସ୍ତାରେ ଗଲେ ଗବେଷଣାରେ ପ୍ରକୃତ ତଥ୍ୟ ମିଳିପାରିବ ନାହିଁ କି ସତ୍ୟ ଉଦ୍‌ଘାଟିତ ହୋଇପାରିବ ନାହିଁ ।

ତଥାପି ଏସବୁକୁ ଗୋଳମାଳିଆ ସିଦ୍ଧାନ୍ତ ମଧ୍ୟରେ 'ସୁଭଦ୍ରା' ଯେ 'ଲକ୍ଷ୍ମୀ ସ୍ୱରୂପା' ବୋଲି ସେମାନେ ଯାହା ଉଲ୍ଲେଖ କରିବନ୍ତି, ତାହାହିଁ ପ୍ରକୃତ ତଥ୍ୟ । ପରବର୍ତ୍ତୀ ଅଧ୍ୟାୟରେ ଏ ବିଷୟ ଆଲୋଚିତ ହେବ । ସତ୍ୟକୁ ହାତପାଖରେ ପାଇ ପୁଣି ସେମାନେ ଭ୍ରମବଶତଃ ତାଙ୍କୁ ହାତଛଡ଼ା କରିଦେଇଛନ୍ତି । ମାତ୍ର ସତ୍ୟର ସନ୍ଧାନ ଦେଇଥିବାରୁ ସେମାନେ ଆମର ସର୍ବଥା ଧନ୍ୟବାଦାର୍ହ । ଏହା ନିଶ୍ଚିତ ଯେ ଗବେଷକମାନେ ନିଜ ଦୃଷ୍ଟିରୁ ବିଭିନ୍ନ ମତ ଦିଅନ୍ତି । ମତ ବିରୋଧ ହେଲେ ମଧ୍ୟ ସେମାନେ ସର୍ବଦା ନମସ୍ୟ । ଡଃ ମହତାବ, ଜେନେରାଲ୍, କନିଂହାମ୍, ପ୍ରଭୃତ ବୌଦ୍ଧମତବାଦୀଙ୍କ ସହିତ ଆମର ମତ ନ ମିଶିଲେ ମଧ୍ୟ ସେମାନେ ଆମର ସମ୍ମାନାସ୍ପଦ । କାରଣ, ସେମାନଙ୍କର ଯୁକ୍ତିକୁ ପାଥେୟ କରି ଏ କାର୍ଯ୍ୟରେ ପ୍ରଣୋଦିତ ହୋଇ ଆମକୁ ଆଗେଇବାକୁ ପଡ଼ିଲା । ସେମାନଙ୍କର ଗମ୍ଭୀର ଅକାଟ୍ୟ ଯୁକ୍ତିକୁ ବିଗ୍ଭରକୁ ନେଇ ଆମର ଚିନ୍ତାଧାରା ପୁଷ୍ଟିଲ ହେଲା । ସେଥିପାଇଁ ସେମାନେ ଆମର ଚିର ନମସ୍ୟ ଓ ଆମେ ତାଙ୍କଠାରେ ଋଣୀ । ମତ ଭିନ୍ନ ହେଲେ ମଧ୍ୟ ବ୍ୟକ୍ତିତ୍ୱ ମହାନ୍ । ଏହା ସ୍ୱୀକାର କରିବାକୁ ହେବ । ଅତଏବ ମୋର ପୂର୍ବସୂରୀ ସମାଲୋଚକମାନଙ୍କ ନିକଟରେ ମଥା ନତ କରୁଛି ।

---

୭୭ । C. J. R. T. O.—PP- 178—See second para (ଏହା ନିଶ୍ଚୟ ଡଃ ପାଠୀଙ୍କର ଭାବଧାରା ଓ ଏହାହିଁ ସତ୍ୟର ଲୁକ୍‌କାୟିତ ପରିପ୍ରକାଶ । ମୁଁ ଏହି ସତ୍ୟ ମୋର ଦୁଇଟି ପୁସ୍ତକ 'The land of Vishnu'' ଓ "Jagannath in the History and Religious Traditions of Orissa" ପ୍ରଖ୍ୟାପନ କରିଛି । )

# ପ୍ରଥମ ପରିଚ୍ଛେଦ

## ଗ୍ରନ୍ଥ ପ୍ରମାଣରେ ଜଗନ୍ନାଥଙ୍କର ସ୍ୱରୂପ ଓ ପ୍ରାଚୀନତା

ପୁରାଣ ଗ୍ରନ୍ଥମାନଙ୍କରେ ପୁରୀ ବା ପୁରୁଷୋତ୍ତମକ୍ଷେତ୍ରକୁ ଭୂସ୍ୱର୍ଗ ବୋଲି ବର୍ଣ୍ଣନା କରାଯାଇଛି । ବାଲୁକା ସନ୍ନିବେଶିତ ମହୋଦଧି ତଟଦେଶରେ ଶତାବ୍ଦୀ ଶତାବ୍ଦୀ ଧରି ସଗର୍ବରେ ଦଣ୍ଡାୟମାନ ହୋଇ ରହିଛି ଜଗତ ପ୍ରସିଦ୍ଧ ପୁରୁଷୋତ୍ତମ ଜଗନ୍ନାଥଙ୍କର ଦେବଳ ମୁଖରିତ ବଡ଼ଦେଉଳ । ଉତ୍କଳୀୟ ଶିଳ୍ପୀର ନିହାଣମୁନର ପରଶରେ କାରୁକାର୍ଯ୍ୟର ଗନ୍ତାଘର ହୋଇଉଠିଛି ଶ୍ରୀକ୍ଷେତ୍ରର ଏହି ବିଶାଳ ତୁଙ୍ଗ ମନ୍ଦିର । କୋଟିବ୍ରହ୍ମାଣ୍ଡର ନାଥ ଜଗନ୍ନାଥଙ୍କୁ ନିଜ କଳେବର ଭିତରେ ଉଦ୍‌ଭାସିତ କରି ବଡ଼ଦେଉଳ ହୋଇଛି ଅଶେଷ ଜନସମାଜର ଆକର୍ଷଣୀୟ ଗର୍ଭାଭ୍ୟନ୍ତରରେ ଶୋଭମାନ ଆତ୍ମାଭଳି ମନ୍ଦିର କୁକ୍ଷିରେ ବିରାଜମାନ 'ଦାରୁବ୍ରହ୍ମ ଜଗନ୍ନାଥ' । ଏଭଳି ଏକ ବିଶାଳ ବପୁ ଧାରଣକରି ଏ ମନ୍ଦିର ନିଜର ମସ୍ତକରେ ବହିଛି ବିଶାଳ ନୀଳଚକ୍ର । ତାର ଉପରେ ପୁଣି ସର୍ବଦା ଫର୍ ଫର୍ ହୋଇ ଉଡ଼ୁଛି ଅବାଧିତ ଭାବରେ ମହାକେତନ 'ପତିତପାବନ ବାନା' । ସତେ ଅବା ସେ ପୁଣ୍ୟଧ୍ୱଜ ପତାକା ପାପୀମାନଙ୍କୁ ଡାକୁଛି । "ହେ ପତିତଗଣ ! ଆସ । ଥରେ ଏଇ ପାବନ କ୍ଷେତ୍ରରେ ପାଦ ଦିଅ । ଦେଖିବ, ତୁମର ସମସ୍ତ ପାପ ଦୂର ହୋଇଯିବ । ଭାରତ ବର୍ଷରେ ଯେତେ ଯେତେ ପାପକ୍ଷାଳକ ତୀର୍ଥ ରହିଛି, ସବୁରି ମଧ୍ୟରେ ଶ୍ରେଷ୍ଠ ଏଇ ତୀର୍ଥରାଜ ପୁରୁଷୋତ୍ତମ । ଏଇ ବିଶ୍ୱାସକୁ ଅଙ୍ଗୀକାରର କରି ଭାରତର ପ୍ରତ୍ୟେକ ପ୍ରାନ୍ତରୁ ଆବାଳବୃଦ୍ଧବନିତା ଧାଇଁଆସନ୍ତି ପ୍ରତି-ବର୍ଷ ପୁରୁଷୋତ୍ତମ ଧାମକୁ ଖାଲି ଟିକିଏ ମୁକ୍ତି ପାଇଁ; ଶାନ୍ତି ପାଇଁ । ସେକାଳରେ ଆସୁଥିଲେ ପଦବ୍ରଜରେ ନୌକାରେ କିମ୍ବା ବାହନରେ । ସେଥିପାଇଁ କେତେକଙ୍କୁ ମଧ୍ୟ ପ୍ରାଣପାତ କରିବାକୁ ପଡ଼ୁଛି । ମାତ୍ର ଏବେ ସେ ଅସୁବିଧା ଆଉ ନାହିଁ । ଦେଶୀ ସଂଖ୍ୟାରେ ଲୋକସମାଗମ ବଢ଼ିଛି । ଭକ୍ତର ହୃଦୟରେ ଆବେଗ ଦ୍ୱିଗୁଣିତର ହୋଇଛି । ଆଖିରୁ ଝର ଝର ହୋଇ ଲୁହ ଝରିପଡ଼ୁଛି; ଖାଲି ଟିକେ କାଳିଆର ଦର୍ଶନ ପାଇଁ ।

ଆକାଶ ଚୁମ୍ବି ତୁଙ୍ଗ ମନ୍ଦିର । ତନ୍ମଧ୍ୟରେ କେନ୍ଦ୍ରରେ ବିରାଜିତ ଦାରୁମୂର୍ତ୍ତି ଦାରୁବ୍ରହ୍ମ-ଜଗନ୍ନାଥ । ତାପରେ ପୁଣି ଜଗନ୍ନାଥଙ୍କ ଗର୍ଭାଭ୍ୟନ୍ତରରେ ରହିଛି ସେହି

ସେହି ଗୋପନୀୟ ଜ୍ଞାନାଗମ୍ୟ ଅନିର୍ବଚନୀୟ ବ୍ରହ୍ମ ପଦାର୍ଥ । ସାକ୍ଷାତ୍ ବ୍ରହ୍ମ ଅବା ସିଏ । କେହି ତାଙ୍କୁ ଦେଖିନାହାନ୍ତି । କାହାର ଦେଖିବା ମଧ୍ୟ ମନା । ଏପରିକି, ଏହାକୁ ସ୍ଥାନାନ୍ତରିତ କରୁଥିବା ବ୍ୟକ୍ତି ମଧ୍ୟ ଆଖିରେ ଅନ୍ଧପୁଟୁଳି ବାନ୍ଧି ଏ ପଦାର୍ଥକୁ ଦେଖିବାରୁ ବଞ୍ଚିତ । ଯେପରି ଆତ୍ମା ଅଦୃଶ୍ୟ, ଅଚିନ୍ତ୍ୟ, ସେହିପରି ଏ ବ୍ରହ୍ମରୂପୀ ପରମାତ୍ମା ମଧ୍ୟ ସାଧାରଣରେ ଗୋଚର ବା ଦର୍ଶନୀୟ ନୁହନ୍ତି । ଏହି ହେତୁରୁ ଯୁଗ ଯୁଗ ଧରି ଚାଲିଆସୁଛି ଏ ଗୋପନୀୟତା । ଫଳରେ ମାନବର ମନ ଆଜି ହୋଇଉଠିଛି ଅନୁସନ୍ଧିତ୍ସୁ । ଗବେଷକମାନେ ବିଶ୍ୱର ପ୍ରତ୍ୟେକ କୋଣରୁ ଆସି ଅଡ଼ିବସୁଛନ୍ତି ସେହି ଗୋପନୀୟ ବ୍ରହ୍ମ ପଦାର୍ଥକୁ ଜାଣିବା ପାଇଁ । ମାତ୍ର ସେ ଗୋପନୀୟତା ଏ ପର୍ଯ୍ୟନ୍ତ ଭଙ୍ଗ କରାଯାଇ ପାରିନାହିଁ । ଜିଜ୍ଞାସା ପୂରଣ ହୋଇପାରୁନାହିଁ । ଅନୁଦ୍ଘାଟିତା କେବଳ ଅନୁସନ୍ଧିତ୍ସା ହୋଇ ରହିଯାଉଛି । ସନ୍ଦେହକୁ ସନ୍ଦେହରେ ହିଁ ପ୍ରକାଶ କରାଯାଉଛି । ଅନୁମାନ ପ୍ରମାଣ ଉପରେ ଗବେଷକ ନିର୍ଭରଶୀଳ ହୋଇ କମ୍ଭୂତକମାକାର ତଥ୍ୟ ପରିବେଷଣ କରୁଛନ୍ତି । କିଏ ଏହି ବ୍ରହ୍ମପଦାର୍ଥକୁ ଏକ ସ୍ୱର୍ଣ୍ଣପିଣ୍ଡ ବୋଲି କଳ୍ପନା କଲାବେଳେ, କିଏ ଏହାକୁ ଏକ ଶାଳଗ୍ରାମ ବା ଉପଲଖଣ୍ଡ ବୋଲି ବିଚାର କରୁଛି । ପୁଣି କିଏ ବା ଏହାକୁ ତେଜସ୍କ୍ରିୟ ଭୟଙ୍କର ଏକ ମଣି ବୋଲି ବିଚାରୁଛି ତ କିଏ ବା ଏହାକୁ ଏକ ବାଲୁକାପିଣ୍ଡ ବୋଲି ଅନୁମାନ କରୁଛି । ମାତ୍ର ସତ୍ୟର ଉଦ୍‌ଘାଟନ ଏପର୍ଯ୍ୟନ୍ତ ହୋଇପାରି ନାହିଁ । ସମସ୍ତେ ଖାଲି ଜାଣନ୍ତି ଯେ ଏହା 'ନାଭିବ୍ରହ୍ମ' । କଳାପାହାଡ଼ ଜଗନ୍ନାଥଙ୍କୁ ନେଇ ପୋଡ଼ିପକାଉଥିବା ବେଳେ ଭକ୍ତ 'ବିଶର ମହାନ୍ତି' ଏହି ନାଭିବ୍ରହ୍ମକୁ ଖୋଳରେ ପୂରାଇ ନେଇ ଆସି କୁଜଙ୍ଗରେ ପୂଜାକରିବା କଥା ମାଦଳାପାଞ୍ଜିରୁ (୧) ମିଳିଥାଏ । ତେଣୁ ଲୋକେ ଏହାକୁ ସେହି 'ନାଭିବ୍ରହ୍ମ' ବୋଲି ହିଁ ଜାଣନ୍ତି । 'ନାଭିବ୍ରହ୍ମ' ହେଉଛି ପ୍ରକୃତରେ ବ୍ରହ୍ମର ପ୍ରତୀକ, ପରମାତ୍ମାଙ୍କର ସ୍ୱରୂପ; ଆଉ ଜଗନ୍ନାଥ ହେଉଛନ୍ତି ପ୍ରତୀକମୂର୍ତ୍ତି ଦାରୁବ୍ରହ୍ମ । ସେ ହିଁ ବେଦାନ୍ତର ବ୍ରହ୍ମ, ସାଂଖ୍ୟର ପୁରୁଷ, ବେଦର ବିରାଟ ଯଜ୍ଞପୁରୁଷ ଆଉ ସର୍ବୋପରି ଗୀତାର ପରଂବ୍ରହ୍ମ ସ୍ୱରୂପୀ ପୁରୁଷୋତ୍ତମ । ତାଙ୍କର ଏହି ପୁରୁଷୋତ୍ତମ ନାମ ଯୁଗ ଯୁଗ ଧରି ସର୍ବଜନବିଦିତ ।

---

୧ । ମାଦଳାପାଞ୍ଜି—ପୃ: ୬୨ । (ପ୍ରାଚୀ-୧୯୬୯ ।) "ବ୍ରହ୍ମ ଖୋଳକରି ମୃଦଙ୍ଗେ ପୂରେଇ ଘେନି ଅଇଲା । କୁଜଙ୍ଗ ଗଡ଼ରେ ଆଣି ପ୍ରବେଶ କଲା । ଖଣ୍ଡାଇତ ଓଳିଆ ଉପରେ ଦୁଇଠାକୁରେ (ଜଗନ୍ନାଥ ଓ ବଳଭଦ୍ର) ରହିଲେ ।"—ଅର୍ଥାତ୍— ସୁଭଦ୍ରାଙ୍କର ବ୍ରହ୍ମ ଅଣାଯାଇ ନାହିଁ । ପରେ ହୁଏତ ସୁନାଭଳି କିଛି ଜିନିଷ ସୁଭଦ୍ରାଙ୍କର ବ୍ରହ୍ମସ୍ଥଳରେ ସ୍ଥାପନ କରାଯାଇଥିବ । ମାତ୍ର ତାହା ମୌଳିକ-ବ୍ରହ୍ମ-ପଦାର୍ଥ ନୁହେଁ ।

ଠାକୁରଙ୍କ ନାମାନୁସାରେ କ୍ଷେତ୍ରର ନାମ ମଧ୍ୟ ପୁରୁଷୋତ୍ତମ । ଅପଭ୍ରଂଶରେ ଏହା ପୁରୁଷୋତ୍ତମ ଓ ବର୍ତ୍ତମାନ ପୁରୀ ନାମରେ ଜଗତ ବିଖ୍ୟାତ । ଶଙ୍ଖାକାର ହୋଇଥିବାରୁ ଏ କ୍ଷେତ୍ରକୁ ମଧ୍ୟ ଶଙ୍ଖକ୍ଷେତ୍ର ବୋଲି କୁହାଯାଏ । 'ପୁରୁଷୋତ୍ତମ' ହେଉଛନ୍ତି 'ବିଷ୍ଣୁ' । ତାଙ୍କ ସହିତ 'ଶ୍ରୀ' ବା 'ଲକ୍ଷ୍ମୀ' ସର୍ବଦା ଏ କ୍ଷେତ୍ରରେ ପୂଜିତ ହୁଅନ୍ତି । 'ଲକ୍ଷ୍ମୀ-ନାରାୟଣ' ପୂଜା କେଉଁ ପ୍ରାଚୀନ କାଳରୁ ଏ କ୍ଷେତ୍ରରେ ହୋଇ-ଆସିଛି । ପ୍ରଥମେ ନୀଳମାଧବ ପୂଜିତ ହେଉଥିବା ବେଳେ ସେଇ ଲକ୍ଷ୍ମୀନାରାୟଣ ପୂଜାହିଁ ଏଠାରେ ଚାଲିଥିଲା । ପୁଣି ପରେ ଜଗନ୍ନାଥ ପୂଜା ପାଇବା ସମୟରେ ମାତା ଲକ୍ଷ୍ମୀଙ୍କୁ ମଧ୍ୟ ଉପେକ୍ଷା କରାଯାଇନାହିଁ । ତେଣୁ କ୍ଷେତ୍ରଟିକୁ ଯେପରି ପୁରୁଷୋତ୍ତମଙ୍କର କ୍ଷେତ୍ର ବୋଲି କୁହାଯାଏ, ସେପରି ମଧ୍ୟ **ଶ୍ରୀକ୍ଷେତ୍ର** ବୋଲି ଅଭିହିତ କରାଯାଏ । ଏହା **ମହାବିଷ୍ଣୁ** ଜଗନ୍ନାଥ-ପୁରୁଷୋତ୍ତମଙ୍କର କ୍ଷେତ୍ର ଓ ତତ୍ସହିତ **ମହାଲକ୍ଷ୍ମୀ** କମଳାଙ୍କର ମଧ୍ୟ ପ୍ରିୟ ପୀଠ; ଏଥିରେ ତିଳେମାତ୍ର ସନ୍ଦେହର ଅବକାଶ ନାହିଁ । ଜଗନ୍ନାଥ ସାନ୍ଭାଇ ହେଲେ ମଧ୍ୟ ଅଗ୍ରଜ ବଳଭଦ୍ରଙ୍କର ପ୍ରାଧାନ୍ୟ ନ ରହି କ୍ଷେତ୍ରରେ ସେହି ଜଗନ୍ନାଥଙ୍କର ପ୍ରାଧାନ୍ୟ ପ୍ରତିଷ୍ଠିତ । ଦ୍ୱାପର ଯୁଗରେ ବଳରାମଙ୍କ ଠାରୁ ଶ୍ରୀକୃଷ୍ଣଙ୍କର ମହିମା ଓ କୀର୍ତ୍ତି ସେହିପରି ଅଧିକ ଥିବାର ମହାଭାରତ ଓ ପୁରାଣମାନଙ୍କରୁ ଜଣାଯାଏ । ବୋଧହୁଏ ସେଇ ଧାରା ଏଠି ଜଗନ୍ନାଥପୀଠରେ ନିହିତ ।

## ପୁରୁଷୋତ୍ତମ-ଜଗନ୍ନାଥ :

ଶ୍ରୀକୃଷ୍ଣଙ୍କୁ ଶ୍ରୀମଦ୍ ଭଗବଦ୍‌ଗୀତାରେ ପୁରୁଷୋତ୍ତମ ବୋଲି କୁହାଯାଇଛି । ସେ ହେଉଛନ୍ତି 'କ୍ଷରପୁରୁଷ' ଠାରୁ ଭିନ୍ନ ଓ 'ଅକ୍ଷର ପୁରୁଷ' ଠାରୁ ଶ୍ରେଷ୍ଠ । ସେହି କାରଣରୁ ତାଙ୍କୁ ପୁରୁଷୋତ୍ତମ ବୋଲି କୁହାଯାଇଛି । (୧) ସେହି ଦୃଷ୍ଟିରୁ ବୁଝିବାକୁ ଗଲେ ପୁରୁଷୋତ୍ତମ ହେଉଛନ୍ତି, ପରମାତ୍ମା, ପରମପୁରୁଷ ଅଥବା ସଚ୍ଚିଦାନନ୍ଦ ସ୍ୱରୂପ ସେହି 'ପରଂବ୍ରହ୍ମ' । ଶ୍ରୀକୃଷ୍ଣଙ୍କୁ ସେହି ଦୃଷ୍ଟିରେ ଗୀତାରେ ଗ୍ରହଣ କରାଯାଇଛି । ପୁଣି ସେହି 'ପରଂବ୍ରହ୍ମ'ର ଭାବ ମଧ୍ୟ 'ଦାରୁବ୍ରହ୍ମ' ଭାବରେ ଦାରୁମୂର୍ତ୍ତି ଜଗନ୍ନାଥଙ୍କ ଠାରେ କଳ୍ପିତ ହୋଇଛି । ସେ ଯାହାହେଉ, ପୁରୁଷୋତ୍ତମ ହେଉଛନ୍ତି ଜ୍ଞାନଗମ୍ୟ; ପୁଣି ଜ୍ଞାନର ଅଗମ୍ୟ । ସେ ସ୍ଥୂଳ, ପୁଣି ସୂକ୍ଷ୍ମ । ସେ ସମସ୍ତଙ୍କର ଖୁବ୍ ନିକଟରେ ଅଛନ୍ତି, ପୁଣି ବହୁ ଦୂରରେ ଅଛନ୍ତି । ବ୍ରହ୍ମପୁରାଣରେ କୁହାଯାଇଛି ଯେ,

---

୧ । ଗୀତା—୧୫/୧୮—କଠ—୩/୨ = "ଅକ୍ଷରବ୍ରହ୍ମ" ।

ଯସ୍ମାତ୍ କ୍ଷରମତୀତୋଽହମକ୍ଷରାଦପି ଚୋତ୍ତମଃ
ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମ ॥

'ପୁରୁଷୋତ୍ତମ' ଶବ୍ଦ ହେଉଛି ନାନା ବିପରୀତ ବିଷୟର ପ୍ରତୀକ । (୩) ଉପନିଷଦ-ମାନଙ୍କରେ ଏହିପରି ବିପରୀତ ଗୁଣମାନ 'ବ୍ରହ୍ମ'ଙ୍କଠାରେ ନିହିତ ଥିବାର କୁହା-ଯାଇଛି । ପରମବ୍ରହ୍ମ ହେଉଛନ୍ତି "ଅଣୋରଣୀୟାନ୍" ଓ ମହତୋମହୀୟାନ୍"; ଏକଥା ଛନ୍ଦେ ଛନ୍ଦେ ଉପନିଷଦରେ କୁହାଯାଇଛି । (୪)

ଉପନିଷଦରେ ଥିବା ପରଂବ୍ରହ୍ମଙ୍କର ସ୍ୱରୂପ କ୍ରମେ କ୍ରମେ ସଂସାରରେ ଦାର୍ଶନିକ ମଣ୍ଡଳରେ ପ୍ରାଧାନ୍ୟ ବିସ୍ତାର କଲା । ସମସ୍ତ ଜାଗତିକ ବସ୍ତୁ ବ୍ରହ୍ମରୁ ସୃଷ୍ଟ, ପୁଣି ପରିଶେଷରେ ସେହି ବ୍ରହ୍ମରେ ଲୀନ ହେବାକଥା ସମାଜରେ ଦୃଢ଼ ଭାବରେ ସାବ୍ୟସ୍ତ ହୋଇଗଲେ । ସର୍ବତ୍ର ପ୍ରଚାର ଉଠିଲା, "ସର୍ବଂ ଖଳୁ ଇଦଂ ବ୍ରହ୍ମ" । ଜୀବାତ୍ମା ଓ ପରମାତ୍ମାଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । "ଜୀବ-ବ୍ରହ୍ମୈବନାପରଃ"—ଇତ୍ୟାଦି । ଯେତେ-ବେଳେ ଧର୍ମ ଲୋପ ହେବାକୁ ଯାଉଥାଏ, ସେତେବେଳେ ଧର୍ମରକ୍ଷା କରିବାପାଇଁ ସେହି ପରମପିତା ପରଂବ୍ରହ୍ମ ନିଜେ ଅବତାର ଗ୍ରହଣକରି ସଂସାରରେ ଅବତୀର୍ଣ୍ଣ ହୁଅନ୍ତି । ସେହିପରି ଦିନେ ରାମଚନ୍ଦ୍ର ଅବତୀର୍ଣ୍ଣ ହୋଇଥିଲେ, ଶ୍ରୀକୃଷ୍ଣ ମଧ୍ୟ ସଂସାରରେ ଅବତାର ଗ୍ରହଣ କରିଥିଲେ । ସେମାନେ ହେଉଛନ୍ତି ଭାରତୀୟ ଚିନ୍ତାଧାରାରେ ପରଂବ୍ରହ୍ମ ସ୍ୱରୂପ, ପରଂବ୍ରହ୍ମ ପରମେଶ୍ୱରଙ୍କର ଅବତାର ।

ବେଦରେ ବିଷ୍ଣୁ-ଦେବତାଙ୍କୁ ପରମପୁରୁଷ ବା ପରଂବ୍ରହ୍ମ ପଦରେ ରଖାଯାଇ ନଥିଲା । ବୈଦିକ ଦେବତାମାନଙ୍କ ମଧ୍ୟରେ ସେ ଏତେ ବଡ଼ ଶ୍ରେଷ୍ଠ ପର୍ଯ୍ୟାୟଭୁକ୍ତ ବୋଲି ବେଦରୁ ଜଣାଯାଏ ନାହିଁ । ସେ ଥିଲେ ଜଣେ ସାଧାରଣ ଦେବତା ମାତ୍ର କାଳକ୍ରମେ ବିଷ୍ଣୁ ଉପାସକମାନଙ୍କର ସଂଖ୍ୟା ବୃଦ୍ଧି ହେବାରୁ ମହାପୁରାଣ ଓ ପୁରାଣାଦି ଗ୍ରନ୍ଥମାନଙ୍କରେ ବିଷ୍ଣୁଙ୍କୁ ସର୍ବଶ୍ରେଷ୍ଠ ଶକ୍ତିଶାଳୀ ଦେବତା ଭାବରେ ଗ୍ରହଣ କରାଗଲା । ଯେତେବେଳେ ଆର୍ଯ୍ୟ ଧର୍ମ ତଥା ଯଜ୍ଞଯାଗ ଉପରେ ବିପଦ ପଡ଼ୁଥିଲା, ଅସୁର ବା ଅନାର୍ଯ୍ୟମାନେ

୩ । The Cult of Jagannath—Dr. K. C. Mishra—(Here after C. J.)—ପୃ-୧୮୧ ।

୪ । କଠୋପନିଷଦ—୨।୨୦—"ଅଣୋରଣୀୟାନ୍ ମହତୋ ମହୀୟାନ୍, ଆତ୍ମାସ୍ୟ ଜନ୍ତୋର୍ନିହିତୋ ଗୁହାୟାମ୍ ।।"
ଅର୍ଥାତ୍, ଆତ୍ମା ବ୍ରହ୍ମସତ୍ତା' କ୍ଷୁଦ୍ରତମ ଓ ବୃହତ୍ତମ ରୂପରେ ପ୍ରାଣୀମାନଙ୍କଠାରେ ଅବସ୍ଥାନ କରେ ।
ବ୍ରହ୍ମହିଁ ପ୍ରଣବରୂପୀ, ଓଁ'କାର । ଏହା ହେଉଛି 'ଅକ୍ଷର', ଚିରନ୍ତନ । ଯଥା:—
କଠ—୨।୧୬ "ଏତଦ୍ଦେବାକ୍ଷରଂ ବ୍ରହ୍ମ ଏତଦ୍ଧ୍ୟେ **ବାକ୍ଷରଂ** ପରମ୍ । ଏତଦ୍ଧ୍ୟେ **ବାକ୍ଷରଂ** ଜ୍ଞାତ୍ୱା ଯୋ ଯଦିଚ୍ଛତି ତସ୍ୟ ତତ୍ ।"

ଯେତେବେଳେ ଯଜ୍ଞ ଧ୍ୱଂସ କରୁଥିଲେ, ସେତେବେଳେ ଭଗବାନ୍ ବିଷ୍ଣୁ ମୁଖ୍ୟତଃ ଏକଯୁଗ ପୁରୁଷର ଅବତାର ଗ୍ରହଣକରି ଦୁଷ୍ଟମାନଙ୍କୁ ସଂହାରକରି ଧର୍ମରକ୍ଷା କରୁଥିଲେ। ଫଳରେ ତାଙ୍କୁ କୁହାଗଲା ପୁରୁଷୋତ୍ତମ। ପରଂବ୍ରହ୍ମ, ସଚ୍ଚିଦାନନ୍ଦ ସ୍ୱରୂପ, ସର୍ବକାରଣର କାରଣ ଇତ୍ୟାଦି। ରାମାୟଣରେ ରାମଚନ୍ଦ୍ରଙ୍କୁ କୁହାଗଲା ମର୍ଯ୍ୟାଦା ପୁରୁଷୋତ୍ତମ (୫) ଶାସକୋତ୍ତମ ଶ୍ରେଷ୍ଠପୁରୁଷ। ରାମଚନ୍ଦ୍ର ବିଷ୍ଣୁଙ୍କର ଅବତାର ହୋଇଥିବାରୁ ବିଷ୍ଣୁ ହେଉଛନ୍ତି ସେହି ପରଂବ୍ରହ୍ମ; ତଥା ସମସ୍ତ ଜଗତର କାରଣ। ନିଜର ସମ୍ମାନ ରକ୍ଷାକରି କର୍ତ୍ତବ୍ୟପରାୟଣତା ହୋଇ ପ୍ରଜାମାନଙ୍କୁ ସୁଚାରୁରୂପେ ପାଳନ କରିଥିବାରୁ ରାମଚନ୍ଦ୍ରଙ୍କୁ ମର୍ଯ୍ୟାଦା ପୁରୁଷୋତ୍ତମ ବୋଲି ଆଖ୍ୟା ଦିଆଗଲା। ତା ଛଡ଼ା ରାମାୟଣ ଏକ ବୈଷ୍ଣବ ଗ୍ରନ୍ଥ ହୋଇଥିବାରୁ ବିଷ୍ଣୁଙ୍କୁ ଏକ ଶ୍ରେଷ୍ଠତମ ଦେବତାଭାବରେ ଚିତ୍ରଣ କରାଗଲା। ସେହିପରି ମହାଭାରତ ଓ ଗୀତା ଗୋଟିଏ ଗୋଟିଏ ବୈଷ୍ଣବ ଗ୍ରନ୍ଥ ହୋଇ ବିଷ୍ଣୁ ବା ଶ୍ରୀକୃଷ୍ଣଙ୍କର ଉତ୍କର୍ଷ ପ୍ରତିପାଦନ କରିଛି। ତାହାପରେ ମତ୍ସ୍ୟପୁରାଣ, ମାର୍କଣ୍ଡେୟ ପୁରାଣ, ବ୍ରହ୍ମପୁରାଣ ଆଦି ବିଷ୍ଣୁଙ୍କର ମହିମା ସର୍ବୋତ୍କୃଷ୍ଟ ତଥା ସେ ନିଜେ ପରମବ୍ରହ୍ମ ବୋଲି ପ୍ରତ୍ୟକ୍ଷ ବା ପରୋକ୍ଷରେ ସ୍ୱୀକାର କରିଛନ୍ତି। ସ୍କନ୍ଦପୁରାଣ ପ୍ରଭୃତି କେତେକ ପୁରାଣ ଶୈବାତ୍ମକ ହେଲେ ମଧ୍ୟ ସେଗୁଡ଼ିକର ବିଭିନ୍ନ ଖଣ୍ଡରେ ବିଷ୍ଣୁଙ୍କର ମହତ୍ତ୍ୱ ତଥା ଶ୍ରେଷ୍ଠତା ପ୍ରତିପାଦନ କରିଛନ୍ତି। ସ୍କନ୍ଦପୁରାଣର ବୈଷ୍ଣବ ଖଣ୍ଡରେ ଜଗନ୍ନାଥଙ୍କର ତଥା ବିଷ୍ଣୁଙ୍କର ଭୂୟସୀ ପ୍ରଶଂସା କରାଯାଇଛି। ସେହିପରି ପଦ୍ମପୁରାଣର ପାତାଳଖଣ୍ଡ ଓ କ୍ରିୟାଯୋଗସାର ଖଣ୍ଡରେ ଅନୁରୂପ ପ୍ରୟାସ କରାଯାଇଛି।

ଏହିପରି ଭାବରେ ଯେତେବେଳେ ପ୍ରାଚୀନ ଗ୍ରନ୍ଥମାନେ ବିଷ୍ଣୁଙ୍କୁ ପୁରୁଷୋତ୍ତମ ବା ଶ୍ରେଷ୍ଠପୁରୁଷ ଅଥବା ପରଂବ୍ରହ୍ମ ଭାବରେ ଚିତ୍ରଣ କଲେ, ସେତେବେଳେ ବିଷ୍ଣୁଙ୍କର ବିଭିନ୍ନ ଅବତାର ମଧ୍ୟରୁ ରାମଚନ୍ଦ୍ର, ଶ୍ରୀକୃଷ୍ଣ ଓ ଜଗନ୍ନାଥଙ୍କ ଭଳି କେତେକଙ୍କୁ ପୁରୁଷୋତ୍ତମ ବୋଲି କୁହାଗଲା। ଶ୍ରୀମଦ୍ ଭଗବଦ୍ ଗୀତା ଶ୍ରୀକୃଷ୍ଣଙ୍କୁ ପୁରୁଷୋତ୍ତମ ବୋଲି ପ୍ରମାଣ କରୁଥିବା ବେଳେ ଏକ ପ୍ରାଚୀନ ପୁରାଣ ମତ୍ସ୍ୟପୁରାଣ ଜଗନ୍ନାଥଙ୍କୁ ପୁରୁଷୋତ୍ତମ ବୋଲି ସ୍ୱୀକାର କରିଛି। (୬) ମତ୍ସ୍ୟପୁରାଣ ବିମଳାଙ୍କୁ ପୁରୁଷୋତ୍ତମ (ଜଗନ୍ନାଥ) ଓ ପୁରୁଷୋତ୍ତମ-

୫। Socio politial study of Valmiki Ramayan—Ramashraya Sharma, (Here after S. P. S. V. R-)—PP. 230. (ବେଦାନ୍ତର ବ୍ରହ୍ମବାଦ ଓ ଗୀତାର ପୁରୁଷୋତ୍ତମବାଦ ରାମଚନ୍ଦ୍ରଙ୍କ ଉପରେ ଆରୋପିତ ହୋଇ ତାଙ୍କୁ 'ମର୍ଯ୍ୟାଦାପୁରୁଷୋତ୍ତମ' ବୋଲି ଅଭିହିତ କରାଯାଇଥିଲା।)

୬। ମତ୍ସ୍ୟପୁରାଣ—୧୩।୩୫ "ବିମଳାପୁରୁଷୋତ୍ତମେ।"
ଗୋକର୍ଣ୍ଣେ ଗଜକର୍ଣ୍ଣେ ଚ ତଥା ଚ ପୁରୁଷୋତ୍ତମଃ॥

କ୍ଷେତ୍ର; ଉଭୟ ପ୍ରସିଦ୍ଧ ହୋଇସାରିଥିଲା। କିନ୍ତୁ ଏତେ ପୁରୁଷୋତ୍ତମଙ୍କର ଅନ୍ୟନାମ ଜଗନ୍ନାଥ ଥିଲା କି ନା, ସେ ବିଷୟରେ ଏ ଗ୍ରନ୍ଥ ନୀରବ। କିନ୍ତୁ, ଏକଥା ସର୍ବାଦୌ ସ୍ୱୀକାର୍ଯ୍ୟ ଯେ ମତ୍ସ୍ୟପୁରାଣର ସମୟରୁ ଜଗନ୍ନାଥଙ୍କୁ ପୁରୁଷୋତ୍ତମ ବା ବିଷ୍ଣୁ ବୋଲି ସ୍ୱୀକାର କରାଯାଉଛି। (୭) ଏହା ନିଶ୍ଚୟ ବୈଷ୍ଣବ ଗଙ୍ଗରାଜାମାନଙ୍କର ପୂର୍ବର ଘଟଣା ବା ଦ୍ୱାଦଶ ଶତକର ପୂର୍ବର ଘଟଣା। ଅତଏବ ଯେଉଁମାନେ (ପାଶ୍ଚାତ୍ୟ ଗବେଷକମାନେ) କହୁଛନ୍ତି ଯେ ଜଗନ୍ନାଥଙ୍କଠାରେ ବିଷ୍ଣୁତ୍ୱର ଆରୋପ ଗଙ୍ଗବଂଶୀ ରାଜାମାନେ କରିଛନ୍ତି; ତାହା ଅସଙ୍ଗତ।

ମତ୍ସ୍ୟପୁରାଣ ଭଳି ପଦ୍ମପୁରାଣ ହେଉଛି ଏକ ପ୍ରାଚୀନ ଓ ବୃହତ୍ କଳେବର ବିଶିଷ୍ଟ ଏକ ପୁରାଣ। ଏଥିରେ ପାତାଳଖଣ୍ଡ ଓ କ୍ରିୟା ଯୋଗସାର ଖଣ୍ଡ; ଏହି ଉଭୟ ଖଣ୍ଡରେ ପୁରୁଷୋତ୍ତମକ୍ଷେତ୍ର ବିଷୟ ବର୍ଣ୍ଣିତ ହୋଇଛି। ପୁରୁଷୋତ୍ତମକ୍ଷେତ୍ର ବୋଲି ଉଲ୍ଲେଖ ଥିବାର ଅର୍ଥ, ସେତେବେଳକୁ ପୁରୁଷୋତ୍ତମ ଜଗନ୍ନାଥଙ୍କର ପୂଜା ଏଠାରେ ପ୍ରତିଷ୍ଠିତ ଥିଲା। ପାତାଳଖଣ୍ଡରେ ପୁରୁଷୋତ୍ତମ (ଜଗନ୍ନାଥ)ଙ୍କୁ ନୀଳାଦ୍ରିର ଅଧିବାସୀ ଓ ସ୍ୱୟଂ ରାମଚନ୍ଦ୍ର ବୋଲି ବର୍ଣ୍ଣନା କରାଯାଇଛି। କିନ୍ତୁ ଶ୍ରୀକୃଷ୍ଣ ବୋଲି ଯେ ବର୍ଣ୍ଣନା ନ କରାଯାଇଛି ଏପରି ନୁହେଁ। ତେବେ, ଏଠାରେ ଗୋଟିଏ ଶ୍ଳୋକରେ କୁହାଯାଇଛି, (ଜଗନ୍ନାଥ) ପୁରୁଷୋତ୍ତମ ଯିଏ ରାମଚନ୍ଦ୍ର ମଧ୍ୟ ସିଏ। ଏ କ୍ଷେତ୍ରର ମହାଲକ୍ଷ୍ମୀ ହେଉଛନ୍ତି ସୀତା। (୮) ପୁଣି ଏହି ପୁରାଣରେ କ୍ରିୟାଯୋଗସାର ଖଣ୍ଡରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା; ସମସ୍ତଙ୍କ ବିଷୟ ବର୍ଣ୍ଣିତ ହୋଇଛି। (୯) ଏଥିରୁ ବୁଝାପଡୁଛି, ପଦ୍ମପୁରାଣ

---

୭। ମତ୍ସ୍ୟପୁରାଣର ୨୪ ଅଧ୍ୟାୟରେ ଥିବା ଉର୍ବଶୀ ଉପାଖ୍ୟାନରୁ ଉପାଦାନ ସଂଗ୍ରହ କରି କାଳିଦାସ ବିକ୍ରମୋର୍ବଶୀୟମ୍ ନାଟକ ଲେଖିଛନ୍ତି। କାଳିଦାସଙ୍କର ସମୟ ପଞ୍ଚମ ଶତକ ବୋଲି ମନେକରି ଶ୍ରୀ ବଳଦେବ ଉପାଧ୍ୟାୟ ତାଙ୍କ 'ପୁରାଣ ବିମର୍ଷ— ପୃଷ୍ଠା-୫୨୨ରେ ଦ୍ୱିତୀୟରୁ ଚତୁର୍ଥ ଶତକ ମଧ୍ୟରେ ମତ୍ସ୍ୟପୁରାଣ ବୋଲି ସ୍ଥିର କରିଛନ୍ତି। ମାତ୍ର ଏବେ କାଳିଦାସଙ୍କ ସମ୍ପର୍କରେ ଅଧିକ ପ୍ରମାଣ ମିଳିଛି ଓ ତାଙ୍କର ସମୟ ଖ୍ରୀ.ଅ. ପ୍ରଥମ ଶତକ ବୋଲି ସ୍ଥିର ହୋଇଛି। ଅତଏବ ମତ୍ସ୍ୟପୁରାଣ ଏହି ସମୟର ପୂର୍ବବର୍ତ୍ତୀ ଅଟେ।

୮। ପଦ୍ମପୁରାଣ, ପାତାଳଖଣ୍ଡ, ଗୁରୁମଣ୍ଡଳ—ପୃ ୮୩—ଅ ୨୨/୫୭।

"ଯୋଽସୌ ନୀଳାଧିବାସୀ ଚ ସ ରାମଃ ପୁରୁଷୋତ୍ତମଃ
ସୀତା ସାକ୍ଷାତ୍ ମହାଲକ୍ଷ୍ମୀ ସର୍ବକାରଣ କାରଣମ୍ ॥

୯। ପଦ୍ମପୁରାଣ—କ୍ରିୟାଯୋଗସାରଖଣ୍ଡ—ପୃ ୪୮୩, ପଞ୍ଚମ ଭାଗ, ଅ ୧୩୨/୪୮ ଓ ପୃ ୧୦୪୦, ଅ୧୭/୨୮।

ବେଳକୁ ଜଗନ୍ନାଥ ବଳଭଦ୍ର, ସୁଭଦ୍ରା ପୂଜା ପାଉଥିଲେ । ସେତେବେଳକୁ ଜଗନ୍ନାଥଙ୍କୁ ମହାବିଷ୍ଣୁ ବୋଲି ମଧ୍ୟ ସ୍ୱୀକାର କରାଯାଉଥିଲା । ସେହି ଦୃଷ୍ଟିରୁ ମନ୍ଦିର ବେଢ଼ାରେ ଅଧିଷ୍ଠିତା ଲକ୍ଷ୍ମୀଙ୍କୁ ମଧ୍ୟ ମହାବିଷ୍ଣୁଙ୍କ ଶକ୍ତି ହିସାବରେ ମହାଲକ୍ଷ୍ମୀ ବୋଲି କୁହାଯାଉଥିଲା । ପଦ୍ମପୁରାଣ ମଧ୍ୟ କାଳିଦାସଙ୍କ ଠାରୁ ପ୍ରାଚୀନ । ତେଣୁ କାଳିଦାସ ତାଙ୍କ ଅଭିଜ୍ଞାନ-ଶାକୁନ୍ତଳଂ ନାଟକର କଥାବସ୍ତୁରେ ପଦ୍ମପୁରାଣ ଦ୍ୱାରା ଅନେକାଂଶରେ ପ୍ରଭାବିତ । (୧୦) ଅତଏବ କାଳିଦାସଙ୍କ ସମୟ ଖ୍ରୀ:ଅ: ପ୍ରଥମ ଶତକ ହୋଇଥିବାରୁ ପଦ୍ମପୁରାଣ ପ୍ରଥମ ଶତକର ପୂର୍ବବର୍ତ୍ତୀ ବୋଲି ମାନିବାକୁ ହେବ । ଅତଏବ ସେହି ଦୃଷ୍ଟିରୁ ଦେଖିଲେ ଜଣାଯାଏ ଯେ ପ୍ରଥମ ଶତକର ପୂର୍ବରୁ ଜଗନ୍ନାଥ ମହାବିଷ୍ଣୁ (ପରମାତ୍ମା ବା ପରଂବ୍ରହ୍ମ ଅଥବା ପ୍ରକାରାନ୍ତରରେ ଦାରୁବ୍ରହ୍ମ) ଭାବରେ ପୁରୁଷୋତ୍ତମ କ୍ଷେତ୍ରରେ ପୂଜିତ ହେଉଥିଲେ । ଭକ୍ତମାନଙ୍କ ଦୃଷ୍ଟିରେ ସେ ଖାଲି ଶ୍ରୀକୃଷ୍ଣ ନୁହନ୍ତି । ସେ ମଧ୍ୟ ମର୍ଯ୍ୟାଦାପୁରୁଷୋତ୍ତମ ରାମଚନ୍ଦ୍ର । ଏଣୁ ତାଙ୍କୁ ବିଷ୍ଣୁଙ୍କ ଭିନ୍ନ ଅନ୍ୟ ଦେବତା ବୋଲି ସ୍ୱୀକାର କରିବାର ଅବକାଶ ନାହିଁ । ସେପରି ମଧ୍ୟ କେଉଁଠି ହେଲେ ବର୍ଣ୍ଣିତ ହୋଇ ନାହିଁ ।

ପଦ୍ମପୁରାଣର ପାତାଳଖଣ୍ଡ ସେହି ପୁରାଣାନ୍ତର୍ଗତ କ୍ରିୟାଯୋଗସାର ଖଣ୍ଡଠାରୁ ପୁରାତନ (୧୧)। କ୍ରିୟାଯୋଗସାର ଖଣ୍ଡରେ ବଳଭଦ୍ର, ସୁଭଦ୍ରା ଆଦି ସମସ୍ତଙ୍କ ବିଷୟ ବର୍ଣ୍ଣିତ ହୋଇଥିବା ସ୍ଥଳେ ପାତାଳଖଣ୍ଡରେ କେବଳ ପୁରୁଷୋତ୍ତମଙ୍କର କଥା ବର୍ଣ୍ଣିତ ହୋଇଛି । ସୁଭଦ୍ରା ଓ ବଳଭଦ୍ର ସେତେବେଳେ ଥିଲେ କି ନା, ସେ କଥା ପାତାଳଖଣ୍ଡରୁ କିଛି ଜଣାପଡ଼ୁନାହିଁ । ନୀଳାଦ୍ରିରେ ପୁରୁଷୋତ୍ତମ ପୂଜା ପାଉଥିବାର ମାତ୍ର ଉଲ୍ଲେଖ ଅଛି । (୧୨) ସେଠାରେ ଗୋଟିଏ ମନ୍ଦିର ଭିତରେ ଭଗବାନ ପୁରୁଷୋତ୍ତମ

୧୦ । ମତ୍‌ସଂକଳିତ ଅଭିଜ୍ଞାନ ଶାକୁନ୍ତଳଂ (ନାଳନ୍ଦା, କଟକ)ର ମୁଖବନ୍ଧ ଦ୍ରଷ୍ଟବ୍ୟ ।

୧୧ । The land of Vishnu—(ମତ୍‌କୃତ)—ଦିଲ୍ଲୀରୁ ପ୍ରକାଶିତ—ପ୍ରଥମ ଅଧ୍ୟାୟ ଦ୍ରଷ୍ଟବ୍ୟ ।

୧୨ । ପଦ୍ମପୁରାଣ, ପାତାଳଖଣ୍ଡ,—ପୃ ୬୪—ଅ ୧୭/୮୨—

"ପରମେକଂ ମହଚ୍ଚିହ୍ନଂ ଯଦ୍ଦୃଷ୍ଟେ ନୀଳ ପର୍ବତେ ।
ପୁରୁଷୋତ୍ତମ ସାନ୍ନିଧ୍ୟେ ତନ ହ୍ୱାପ୍ୟକ୍ଷିଗୋଚରମ୍ ।"

ପଦ୍ମପୁରାଣ, ପାତାଳଖଣ୍ଡ—ପୃ ୬୭—ଅ ୧୯/୫—

"ପୁରୁଷୋତ୍ତମଦର୍ଶନେନ ନ ପୁନର୍ଗର୍ଭମାବିଶମ୍ ।
ରାଜଂସ୍ତ୍ୱମପି ତତ୍ରାଶୁ ଗଚ୍ଛ ନୀଳାଭିଧଂ ଗିରମ୍ ।"

ପଦ୍ମପୁରାଣ, ପାତାଳଖଣ୍ଡ—ପୃ ୭୬—ଅ ୨୧/୭—

ସ୍ୱାମିନ୍ନବନ୍ଦ କସ୍ମିନ୍‌ଦୂରେ ନୀଳାଖ୍ୟଃ ପର୍ବତୋ ମହାନ୍
ପୁରୁଷୋତ୍ତମ ସବାସଃ ସୁରାସୁର ନମସ୍କୃତଃ ।।"

ପୂଜିତ ହେଉଥିଲେ (୧୩) । ଏ ମନ୍ଦିରକୁ ପୁରୁଷୋତ୍ତମ ମନ୍ଦିର ବୋଲି କୁହାଯାଉଥିଲା । ଠାକୁରଙ୍କ ନିକଟରେ ନିଯୁମିତ ଭୋଗ ହେଉଥିଲା (୧୪) । ଭକ୍ତମାନେ ଠାକୁରଙ୍କୁ ଦର୍ଶନ କରସାରିଲା ପରେ ଭୋଗ ଓ ଅନ୍ନଭୋଗ (୧୫) ଖାଇ ନିଜ ନିଜର ମୁକ୍ତିଲାଭ ହେବ ବୋଲି ବିଶ୍ୱାସ କରୁଥିଲେ । ଦେବାଳୟଟି ଅତି ସୁନ୍ଦର ଥିଲା (୧୬) ଓ ଚତୁର୍ଭୁଜ ପୁରୁଷୋତ୍ତମ ବସିବାପାଇଁ ତନ୍ମଧ୍ୟରେ ଏକ ରତ୍ନଖଚିତ ସିଂହାସନ ଥିଲା । ରତ୍ନସିଂହାସନ ନିକଟରେ ଜୟବିଜୟ ଓ ଚଣ୍ଡପ୍ରଚଣ୍ଡ ଦ୍ୱାରପାଳ ଥିଲେ (୧୭) । ବର୍ତ୍ତମାନ ମଧ୍ୟ ଜଗନ୍ନାଥଙ୍କ ସିଂହାସନ ରତ୍ନନିର୍ମିତ ନ ହେଲେହେଁ ତାକୁ ରତ୍ନ-ସିଂହାସନ ବୋଲି କୁହାଯାଉଛି ଓ ସିଂହାସନର ସମ୍ମୁଖ ଦ୍ୱାରକୁ ଜୟବିଜୟ ଦ୍ୱାର ବୋଲି କୁହାଯାଉଛି । କିନ୍ତୁ ଏକଥା ସତ୍ୟ ଯେ ବର୍ତ୍ତମାନର ଏହି ମନ୍ଦିର ସେହି ପଦ୍ମପୁରାଣ କାଳର ନୁହେଁ । ଏହା ଗଙ୍ଗବଂଶୀ ରାଜାମାନଙ୍କ ରାଜତ୍ୱ କାଳରେ ନିର୍ମାଣ କରାଯାଇଛି । ପୁଣି ଏବର ଯେଉଁ ଜଗନ୍ନାଥଙ୍କର ମୂର୍ତ୍ତି; ସେହି ମୂର୍ତ୍ତିର ଲକ୍ଷଣ ପାତାଳଖଣ୍ଡରେ ବର୍ଣ୍ଣିତ ହୋଇଥିବା ମୂର୍ତ୍ତିର ଲକ୍ଷଣ ମଧ୍ୟରେ କୌଣସି ପ୍ରକାରର ସାମ୍ୟ ଦୃଷ୍ଟିଗୋଚର ହେଉନାହିଁ । ଅବଶ୍ୟ ପୁରୁଷୋତ୍ତମଙ୍କର ମୂର୍ତ୍ତି ବିଷ୍ଣୁଙ୍କର ଏକ ମୂର୍ତ୍ତି ବୋଲି କୁହାଯାଇଛି ।

ପୁରୁଷୋତ୍ତମଙ୍କର ଏହି ମୂର୍ତ୍ତିଟିର ଚତୁର୍ଭୁଜ ଅଛି ବୋଲି କୁହାଯାଉଛି । ପୁଣି ଏଥିରେ କୁହାଯାଇଛି ଯେ, ସେ ତାଙ୍କର ଚାରିଗୋଟି ଭୁଜରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରଣ କରିଛନ୍ତି । ପୁଣି ବେଳେ ବେଳେ କୃଷ୍ଣଙ୍କ ଭଳି ତାଙ୍କୁ ବନମାଳ ବିଭୂଷିତ ଥିବାର ବର୍ଣ୍ଣନା କରାଯାଇଛି ଓ ଛଅଗୋଟି ଅସ୍ତ୍ର ଧାରଣ କରିଥିବାର ମଧ୍ୟ ଉଲ୍ଲେଖ

---

୧୩ । ପଦ୍ମପୁରାଣ, ପାତାଳଖଣ୍ଡ—ପୃ ୭୬—ଅ ୨୧/୪—

"ଗତ୍ୱା ପ୍ରତକ୍ଷମେ ରାଜା ପୁରୁଷୋତ୍ତମ ମନ୍ଦିରମ୍ ।"

୧୪ । ପଦ୍ମପୁରାଣ, ପାତାଳଖଣ୍ଡ—ପୃ ୮୨—ଅ ୨୨/୩୮—

"ନୈବେଦ୍ୟଭକ୍ଷଣଂ ତ୍ୱଂ ହି ଶୀଘ୍ରଂ କୁରୁ ମନୋହରମ୍ ।"

୧୫ । ପଦ୍ମପୁରାଣ, ପାତାଳଖଣ୍ଡ—ପୃ ୭୬—ଅ ୧୮/୨୯—

"ଅନ୍ନାଦିକଂ ତତ୍ତଦ୍ଭକ୍ଷ୍ୟଂ ସର୍ବସ୍ୱାଦଂ ସମନ୍ୱିତମ୍ ।"

୧୬ । ପଦ୍ମପୁରାଣ, ପାତାଳଖଣ୍ଡ—ପୃ ୮୧—ଅ ୨୨/୧୯—

"ଦଦର୍ଶ ହାଟକାବଦ୍ଧଂ ଦେବାଳୟ ମନୁତ୍ତମମ୍ ।"

୧୭ । ପଦ୍ମପୁରାଣ, ପାତାଳଖଣ୍ଡ—ପୃ ୮୧—ଅ ୨୨/୨୨—

"ତତ୍ରଦୃଷ୍ଟ୍ୱା ଜାତରୂପେ ମହାମଣି ବିରଚିତେ<br>ସିଂହାସନେ ବିରାଜନ୍ତଂ ଚତୁର୍ଭୁଜ ମନୋହରମ୍<br>ଚଣ୍ଡପ୍ରଚଣ୍ଡ ବିଜୟ ଜୟାଦ୍ୟ ଭିରୂପାସିତମ୍ ।"

ରହିଛୁ (୧୮) । ଯେଉଁ ପୁରୁଷୋତ୍ତମ ଶଙ୍ଖ, ଚକ୍ର, ଗଦା, ଶାର୍ଙ୍ଗଧନୁ, ପଦ୍ମ, କୋଦଣ୍ଡ ଧାରଣ କରିଛନ୍ତି ଓ ତାଙ୍କୁ ଦର୍ଶନ କଲେ ଭକ୍ତମାନେ ମଧ୍ୟ ସେହିପରି ସ୍ୱୟଂ ବିଷ୍ଣୁ ହୋଇଯାଆନ୍ତି (୧୯) । ଯେମାନେ ମଧ୍ୟ ବୈକୁଣ୍ଠବାସୀ ହୋଇ ବିଷ୍ଣୁଙ୍କ ଭଳି ଚତୁର୍ଭୁଜ ହୁଅନ୍ତି । ମୋଟାମୋଟି କହିବାକୁ ଗଲେ ଯେ ପୁରୁଷୋତ୍ତମ ବିଗ୍ରହ ବିଷ୍ଣୁଙ୍କ ଭିନ୍ନ ଆଉ ଅନ୍ୟ କିଛି ନୁହନ୍ତି । ଏହି ପୁରାଣ ମତରେ ଇଏ ହେଉଛନ୍ତି ସେଇ ବିଷ୍ଣୁ, ଯିଏ ଦିନେ ନୃସିଂହ ଅବତାର ଗ୍ରହଣ କରିଥିଲେ । ଏହି ବିଷ୍ଣୁ ମଧ୍ୟ ଦିନେ ଗଜକୁ ଗ୍ରାହ କବଳରୁ ରକ୍ଷା କରିଥିଲେ (୨୦) । ଏହି ପୁରୁଷୋତ୍ତମ ହେଉଛନ୍ତି ସର୍ବଶକ୍ତିମାନ୍ ବିଷ୍ଣୁ । ଯେତେବେଳେ ଧର୍ମ ସଙ୍କଟରେ ଧର୍ମରକ୍ଷା କରିବାକୁ ପଡ଼େ, ଏହି ପୁରୁଷୋତ୍ତମ ସେତେବେଳେ ଅବତାର ଗ୍ରହଣ କରନ୍ତି । (୨୧) "ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ" । ଗୀତାର ଏହି ବାଣୀ ଯେପରି ଶ୍ରୀକୃଷ୍ଣଙ୍କ ଲାଗି ଉଦ୍ଦିଷ୍ଟ, ସେହିପରି ମଧ୍ୟ ଏହି ପୁରୁଷୋତ୍ତମଙ୍କ ପାଇଁ ପ୍ରଯୁକ୍ତ ।

ଗୀତାର ପୁରୁଷୋତ୍ତମ (କୃଷ୍ଣ) ଗୋପାଳକୃଷ୍ଣ ନୁହନ୍ତି । ସେ ସାକ୍ଷାତ୍ ଅବତାରୀ ବିଷ୍ଣୁ । ସେହିପରି ମନେ ହୁଏ ଗୀତାର ଯୋଗେଶ୍ୱର ଶ୍ରୀକୃଷ୍ଣ ଏହି ପୁରୁଷୋତ୍ତମ-କ୍ଷେତ୍ରରେ ପୁରୁଷୋତ୍ତମ ରୂପରେ ମୂର୍ତ୍ତିମନ୍ତ ହୋଇଛନ୍ତି କି । ଆଲୋଚନା କଲେ ପାତାଳଖଣ୍ଡରୁ ଏପରି କି ନିର୍ଯ୍ୟାସ ମିଳିଥାଏ । ଏ କ୍ଷେତ୍ରର ପୁରୁଷୋତ୍ତମ ସେହି

---

୧୮ । ପଦ୍ମପୁରାଣ, ପାତାଳଖଣ୍ଡ—ପୃ ୬୫—ଅ୯।୬—
"ବନମାଳ ପରୀତାଙ୍ଗା ବିଷ୍ଣୁଭକ୍ତା ଇବାନ୍ତକେ ।"

୧୯ । ପଦ୍ମପୁରାଣ, ପାତାଳଖଣ୍ଡ—ପୃ ୮୦—ଅ୨୨।୨—
"ଦର୍ଶନ ସ୍ୱପ୍ନ ମଧ୍ୟେ ତୁ ସ ସ୍ୱାତ୍ମାନଂ ଚତୁର୍ଭୁଜମ୍
ଶଙ୍ଖ ଚକ୍ର ଗଦାପଦ୍ମଂ ଶାର୍ଙ୍ଗ କୋଦଣ୍ଡ ଧାରଣମ୍ ।"

( ଛଅଟି ଆୟୁଧର କଳ୍ପନା ଷଡ଼୍ଭୁଜର ସଙ୍କେତ ଦେଲେ ମଧ୍ୟ ଏହା ଏକ ସ୍ୱପ୍ନର ବର୍ଣ୍ଣନା ହୋଇଥିବାରୁ ଉପେକ୍ଷଣୀୟ ।)

୨୦ । ପଦ୍ମପୁରାଣ, ପାତାଳଖଣ୍ଡ—ପୃ ୭୭—ଅ ୨୧।୨୨—
"ଶ୍ରୀ ନୃସିଂହ ତନୁଧାରଣୀ ତ୍ୱୟା ରକ୍ଷିତଃ ସପଦ ପଶ୍ୟତାପିତୁଃ ।
ଗ୍ରାହନକ୍ର ପତିତାଙ୍ଘ୍ରି ମୁଦ୍ଭଟଂ ବାରଣେନ୍ଦ୍ର ମତ ତୁଃଖ ପାଡ଼ିତମ୍ ।।"

୨୧ । ପଦ୍ମପୁରାଣ, ପାତାଳଖଣ୍ଡ—ପୃ ୮୨—ଅ୨୨।୩୨—
"ତଥାପି ଭକ୍ତରକ୍ଷାର୍ଥଂ ଧର୍ମସ୍ଥାପନ ହେତବେ ।
କରୋଷି ଜନ୍ମ କର୍ମାଣି ହ୍ୟନୁରୂପଗୁଣାନ ଚ ।।"

ବିଷ୍ଣୁଙ୍କ ଭିନ୍ନ ଅନ୍ୟ କିଛି ନୁହନ୍ତି । (୧୨) ପଦ୍ମପୁରାଣ ତାଙ୍କୁ ବିଷ୍ଣୁ ବୋଲି ବର୍ଣ୍ଣନ କରିବା ସଙ୍ଗେ ସଙ୍ଗେ ସ୍ଥାନେ ସ୍ଥାନେ ସେହି ପୁରୁଷୋତ୍ତମଙ୍କୁ ହରି ବୋଲି ମଧ୍ୟ ଉଲ୍ଲେଖ କରିଛି । (୧୩) ପୁଣି ତାଙ୍କୁ ଲକ୍ଷ୍ମୀପତି ବା 'ଶ୍ରୀଶ' ବୋଲି ଏହି ଗ୍ରନ୍ଥରେ କୁହାଯାଇଛି । (୧୪) ଶ୍ରୀକୃଷ୍ଣ ତ ଲକ୍ଷ୍ମୀପତି ନ ଥିଲେ । ତେଣୁ ଏ କ୍ଷେତ୍ରରେ ପୁରୁଷୋତ୍ତମ ଯେତେ ଶ୍ରୀକୃଷ୍ଣାର୍ଥକ ନୁହନ୍ତି, ସେତେ 'ବିଷ୍ଣୁ' ବୋଲି ପ୍ରକାଶିତ ହେଉଛନ୍ତି । ଏହି ଦୃଷ୍ଟିରୁ ଗୀତାର ପୁରୁଷୋତ୍ତମଙ୍କଠାରୁ ଏ ପୁରୁଷୋତ୍ତମ ଚିନ୍ତାଧାରା ଟିକିଏ ଆହୁରି ଅଧିକ ଉପର ସ୍ତରର । ଅର୍ଥାତ୍ ଗୀତାରେ ଶ୍ରୀକୃଷ୍ଣଙ୍କୁ ନେଇ ଯେଉଁ ବ୍ରହ୍ମସ୍ୱରୂପ ପୁରୁଷୋତ୍ତମଙ୍କ ତତ୍ତ୍ୱ ସମାନ କରାଯାଇଛି, ଏଠି ସେହି ପୁରୁଷୋତ୍ତମ ସ୍ୱୟଂ ଆବିର୍ଭୂତ । ସେ ଶ୍ରୀକୃଷ୍ଣଙ୍କ ଭଳି ମନୁଷ୍ୟ ଶରୀର ମାଧ୍ୟମରେ ପ୍ରକାଶିତ ନ ହୋଇ ସାକ୍ଷାତ୍ ବ୍ରହ୍ମସ୍ୱରୂପରେ ଆବିର୍ଭୂତ ହୋଇଛନ୍ତି । ଏହା **ଅଦ୍ଭୁତ** (୧୪ କ) ହେଲେ ମଧ୍ୟ ସତ୍ୟ । କାରଣ, ବ୍ରହ୍ମ ସାଯୁଜ୍ୟ ହେଲେ ଯେପରି ସଚ୍ଚିଦାନନ୍ଦ ପ୍ରାପ୍ତି ହୁଏ, ପୁନର୍ଜନ୍ମ ହୁଏ ନାହିଁ; ସେହିପରି

---

୧୨। ପଦ୍ମପୁରାଣ, ପାତାଳଖଣ୍ଡ—ପୃ ୬୪, ୬୫, ୬୭, ୬୯, ୭୦, ୭୬, (ଗୁରୁମଣ୍ଡଳ ସଂସ୍କରଣ) ।

୧୩। ପଦ୍ମପୁରାଣ, ପାତାଳଖଣ୍ଡ—ପୃ ୭୬—ଅ ୧୮/୨୦—"ହରିଂ ସାକ୍ଷ୍ୟ...;"

" " —ପୃ ୮୦— ଅ ୨୨/୭—

"ରାଜଂସ୍ତ୍ୱୟା ଯୌ ଦୃଷ୍ଟୋ ଯଃ ପୁରୁଷୋତ୍ତମ ସଂଜ୍ଞିତଃ
ଦାସ୍ୟତେ ଶଙ୍ଖଚକ୍ରାଦ୍ଧ ଚହ୍ନିତାଂ ସ୍ୱତନୁଂ ହରିଃ ।"

୧୪। ପଦ୍ମପୁରାଣ, ପାତାଳଖଣ୍ଡ—ପୃ ୮୦ — ଅ ୨୨/୩—

"ଶ୍ରୀଶଂ ସଦୋପାସିତମ ।"

୧୪କ। ବ୍ରହ୍ମ; ସେ କି ଅବ୍ୟକ୍ତ, ଅଚିନ୍ତ୍ୟ, ଅଶରୀରୀ, ସେ କିପରି ବା ମନୁଷ୍ୟରୂପୀ ହେବେ ? ତେଣୁ ତାଙ୍କର ରୂପକଳ୍ପ ମଧ୍ୟ ଅଦ୍ଭୁତ ହେବା ସ୍ୱାଭାବିକ । ଏଣେ ସେ ଶରୀରହୀନ ଓ ତେଣେ ପ୍ରତ୍ୟେକ ଶରୀରରେ ବିଦ୍ୟମାନ । କଠୋପନିଷଦରେ ତାଙ୍କୁ—'Bodiless all pervading supreme at man' ବୋଲି କୁହାଯାଇଛି । ଯଥା—

କଠ ୨/୨୨—"ଅଶରୀରଂ ଶରୀରେଷୁ ଅନବସ୍ଥେଷ୍ୱବସ୍ଥିତମ୍ ।
ମହାନ୍ତଂ ବିଭୁମାତ୍ମାନଂ ମତ୍ୱା ଧୀରୋ ନ ଶୋଚତି । ୨୨ ।।

ସେହି ରୂପକଳ୍ପ ହିଁ ବିଭୁ ଜଗନ୍ନାଥଙ୍କଠାରେ 'ଆକାର' 'ଅଣାକାର' ସଂଯୋଗରେ ବଡ଼ ଅଦ୍ଭୁତ ଭାବରେ ରୂପାୟିତ । ସେହି 'ବ୍ରହ୍ମ' ହିଁ 'ବିଷ୍ଣୁ' ବୋଲି କଠୋପନିଷଦ ଘୋଷଣା କରିଛି । କଠ—୩/୯ 'ତଦ୍ ବିଷ୍ଣୋଃ ପରମଂ ପଦମ୍ । ଅତଏବ;—ବିଷ୍ଣୁ = ପରଂବ୍ରହ୍ମ, ପରମାତ୍ମା ।

ଏହି ପୁରୁଷୋତ୍ତମଙ୍କର ଦର୍ଶନରେ ପାପ କ୍ଷୟ ହୋଇ ପୁନର୍ଜନ୍ମରୁ ନିଷ୍କୃତି ମିଳେ ଓ ସମସ୍ତ ଦୁଃଖ ଦୂର ହୋଇ ଅପାର ଆନନ୍ଦ ଲାଭ ହୋଇଥାଏ । (୨୫) ପାତାଳଖଣ୍ଡରେ ଏହିପରି ବର୍ଣ୍ଣିତ ହୋଇଛି । ଏହି ପୁରାଣରେ ତାଙ୍କୁ ସର୍ବଶକ୍ତିମାନ୍ 'ମହାବିଷ୍ଣୁ' ବୋଲି ଜ୍ଞାନ କରାଯାଇଛି । (୨୬) ଆଉ ମଧ୍ୟ ବାରଂବାର ତାଙ୍କୁ ବ୍ରହ୍ମ ଓ ପରଂବ୍ରହ୍ମ ବା ପରମାତ୍ମା ବୋଲି ଘୋଷଣା କରାଯାଇଛି । (୨୭) ଶ୍ରୀମଦ୍ ଭଗବଦ୍ ଗୀତାର ସୃଷ୍ଟି, ସ୍ଥିତି, ଲୟର କାରଣ ସେହି ପୁରୁଷୋତ୍ତମ, ଯେ ଏଠାରେ ମୂର୍ତ୍ତିମନ୍ତ ହୋଇ ମହାବିଷ୍ଣୁ ସ୍ୱରୂପରେ ରୂପ ନେଇଛନ୍ତି । ଏ ମହାବିଷ୍ଣୁଙ୍କ ରୂପ ଚତୁର୍ଭୁଜ ମହାବିଷ୍ଣୁଙ୍କ ଭଳି ନିର୍ମିତ । ଚତୁର୍ଭୁଜ ମୂର୍ତ୍ତି ନୁହନ୍ତି । ବୋଧହୁଏ, ପରବର୍ତ୍ତୀ କାଳରେ 'ମହାବିଷ୍ଣୁ'ଙ୍କୁ 'ବ୍ରହ୍ମସ୍ୱରୂପୀ' ବୋଲି ବିଚାର କରି ଚତୁର୍ଭୁଜ ମୂର୍ତ୍ତି ନିର୍ମିତ ହୋଇଛନ୍ତି ।

ବେଦାନ୍ତ ବା ଉପନିଷଦ୍‌ର ଯୁଗରେ ବ୍ରହ୍ମଙ୍କୁ ପରମପୁରୁଷ, ଅନିର୍ବଚନୀୟ, ସର୍ବଶକ୍ତିମାନ ସଚ୍ଚିଦାନନ୍ଦସ୍ୱରୂପ ବୋଲି ପ୍ରମାଣ କରାଗଲା । ସୃଷ୍ଟି, ସ୍ଥିତି, ଲୟର

---

୨୫ । ପଦ୍ମପୁରାଣ, ପାତାଳଖଣ୍ଡ, ପୃ ୬୭—ଅ ୧୯/୪—

"ପୁରୁଷୋତ୍ତମଦର୍ଶନେନ ନ ପୁନର୍ଗର୍ଭମାବିଶେତ୍ ।"

ପଦ୍ମପୁରାଣ, ପାତାଳଖଣ୍ଡ, ପୃ ୬୯—ଅ ୧୯/୩୭—

"ପୁରୁଷୋତ୍ତମପାଦାବ୍ଜ ଦର୍ଶନ ପ୍ରୀତି ହେତବେ ।"

ପଦ୍ମପୁରାଣ, ପାତାଳଖଣ୍ଡ, ପୃ ୬୯—ଅ ୧୯/୪୪—

"ଦୃଶ୍ୟତାଂ ପାପସଂହାରୀ ପୁରୁଷୋତ୍ତମନାମଧୃକ୍ ।"

ପଦ୍ମପୁରାଣ, ପାତାଳଖଣ୍ଡ, ପୃ ୭୦—ଅ ୧୯/୬୦—

"ଜୟ ଦେବେଶ ! ଦୁଃଖଘ୍ନ ! ପୁରୁଷୋତ୍ତମସଞ୍ଜ୍ଞିତ !"

୨୬ । ପଦ୍ମପୁରାଣ, ପାତାଳଖଣ୍ଡ, ପୃ ୭୧—ଅ ୨୦/୪—

"ମାର୍ଗେ ମାର୍ଗେ ମହାବିଷ୍ଣୁଂ ଗାପୟାମାସ ଗାୟକାନ୍ ।"

ପଦ୍ମପୁରାଣ, ପାତାଳଖଣ୍ଡ, ପୃ ୮୨—ଅ ୨୨/୩୫—

"କମୁତାନେ୍ୟ ମହାବିଷ୍ଣୋ ! ମାଦୃଶାସ୍ତୁ କୁବୁଦ୍ଧୟଃ ।"

୨୭ । ପଦ୍ମପୁରାଣ, ପାତାଳଖଣ୍ଡ, ପୃ ୬୫—ଅ ୧୮/୧—

"ରାଜଂସ୍ତ୍ୱଂ ଶୃଣୁ ସଦ୍‌ବୃତ୍ତଂ ନୀଲେ ପର୍ବତସତ୍ତମେ ।
ସନ୍ତି ବିଧାନାଃ ପୁରୁଷାଃ ଯାନ୍ତି ବ୍ରହ୍ମ ସନାତନମ୍ ।"

ପଦ୍ମପୁରାଣ, ପାତାଳଖଣ୍ଡ, ପୃ ୬୯—ଅ ୨୧/୩୯—

"ଶ୍ୱ ମଧ୍ୟାହ୍ନେ ହରଦାତା ଦର୍ଶନଂ ବ୍ରହ୍ମ ଦୁର୍ଲଭମ୍ ।"

ପଦ୍ମପୁରାଣ ପାତାଳଖଣ୍ଡ ପୃ ୮୧—ଅ ୨୨/୨୩—

"ପ୍ରଣମ୍ୟ ପରମାତ୍ମାନଂ ମହାରାଜଃ ସ୍ୱରୋତ୍ତମମ୍ ।"

କାରଣ ତଥା 'ସମସ୍ତ କାର୍ଯ୍ୟର ଏବଂ କାରଣର କାରଣ ବୋଲି ବ୍ରହ୍ମଙ୍କୁ ସ୍ୱୀକାର କରାଗଲା । ତାହା ପରେ ପରେ ସମସ୍ତ ଦେବତାଙ୍କ ଭିତରେ ବିଷ୍ଣୁ ଲୋକପ୍ରିୟ ହୋଇଉଠିଲେ । ଶିବ ଯେ ଲୋକପ୍ରିୟ ହୋଇନଥିଲେ ଏପରି ନୁହେଁ । ଯେଉଁମାନେ ଶୈବ ଥିଲେ, ସେମାନେ ଶିବଙ୍କୁ ବା ଈଶ୍ୱରଙ୍କୁ ଏହି ବ୍ରହ୍ମପଦରେ ସ୍ଥାନ ଦେଇଥିଲେ । ଉଦାହରଣ ସ୍ୱରୂପ କାଳିଦାସ ପ୍ରଥମ ଶତାବ୍ଦୀରେ ଲେଖିଥିବା ବିକ୍ରମୋର୍ବଶୀୟଂ, ରଘୁବଂଶମ୍, ଅଭିଜ୍ଞାନଶାକୁନ୍ତଳଂ ଆଦି ଗ୍ରନ୍ଥମାନଙ୍କରେ ଈଶ୍ୱରଙ୍କୁ (ଶିବ) ସମସ୍ତ ଜଗତର ସ୍ୱରୂପ ଓ ଉତ୍ସ ଭାବରେ ବର୍ଣ୍ଣନା କରିଛନ୍ତି । (୨୮) ମାତ୍ର ଶ୍ରୀମଦ୍ ଭଗବଦ୍‌ଗୀତା ଭଳି ବୈଷ୍ଣବ-ଗ୍ରନ୍ଥମାନେ ଭଗବାନ୍ ବିଷ୍ଣୁ (ପୁରୁଷୋତ୍ତମ)ଙ୍କୁ ଈଶ୍ୱର ଆଦି ବା ମୂଳାଧାର ବୋଲି ବର୍ଣ୍ଣନା କଲେ । (୨୯) କାଳକ୍ରମେ ଭାରତରେ ପୁରୁଷୋତ୍ତମ ପୂଜା ବା ବିଷ୍ଣୁ ପୂଜା ଲୋକପ୍ରିୟ ହୋଇଉଠିଲା । ବିଷ୍ଣୁ ଖାଲି ପୁରୁଷୋତ୍ତମ ଭାବରେ ପୂଜିତ ହେଲେ ନାହିଁ । ଶ୍ରୀକୃଷ୍ଣ, କେଶବ, ହରି, ମାଧବ, ପଦ୍ମନାଭ, ଅନନ୍ତଶାୟୀ, ନାରାୟଣ, ବାସୁଦେବ, ଶଙ୍କର୍ଷଣ, ଗୋବିନ୍ଦ, ଗୋବର୍ଦ୍ଧନଧାରୀ, ମଧୁସୂଦନ, ତ୍ରିବିକ୍ରମ, ହୟଗ୍ରୀବ, ନୃସିଂହ, ମହାବରାହ, ବାମନ, ରାମ, ପର୍ଶୁରାମ, ମତ୍ସ୍ୟନାରାୟଣ, ମହାକଚ୍ଛପ, ହୃଷୀକେଶ, ଦାମୋଦର ଆଦି ଅନେକ ରୂପରେ ପୂଜା ପାଇଲେ । ଶଙ୍ଖ, ଚକ୍ର, ଗଦା, ପଦ୍ମ, ଶାର୍ଙ୍ଗଧନୁ, କୋଦଣ୍ଡ, ଖଡ୍‌ଗ ଆଦି ଅସ୍ତ୍ରଶସ୍ତ୍ର ତଥା ବନମାଳ, କୌସ୍ତୁଭ, ଶ୍ରୀବତ୍ସାଙ୍କ, କରାଟ, ମୁକୁଟ ଆଦି ତାଙ୍କଠାରେ ଶୋଭା ପାଇଲା । ଭାରତରେ ଉପଲବ୍ଧ ମୂର୍ତ୍ତିମାନଙ୍କରୁ ଜଣାଯାଏ ଯେ, ସେ କେତେବେଳେ ଗରୁଡ଼ବାହନ ଉପରେ ବସିଛନ୍ତି ତ କେତେବେଳେ ଯୋଡ଼ହସ୍ତରେ ଗରୁଡ଼ ତାଙ୍କ ନିକଟରେ ଉଭା ହୋଇଛନ୍ତି । କେତେବେଳେ ସେ ଚତୁର୍ଭୁଜ ତ କେତେବେଳେ ଷଡ଼୍‌ଭୁଜ ଅଥବା ଅଷ୍ଟଭୁଜ । 'ପାଞ୍ଚରାତ୍ରସଂହିତା' ଅନୁସାରେ ବିଷ୍ଣୁଙ୍କର ମୂର୍ତ୍ତିରେ ଦୁଇ ଭୁଜରୁ ଆରମ୍ଭକରି ଚଉଦଗୋଟି ଭୁଜ ପର୍ଯ୍ୟନ୍ତ ହୋଇପାରେ (୩୦) ଓ ସେଥିରେ ସେ ବିଭିନ୍ନ ଆୟୁଧ ଧାରଣ କରିପାରନ୍ତି । ପ୍ରାଚୀନ ଯୁଗରେ ବିଷ୍ଣୁଙ୍କର ଦୁଇ ଭୁଜମୂର୍ତ୍ତି ଓ ଚତୁର୍ଭୁଜ ମୂର୍ତ୍ତି ନିର୍ମିତ ହେଉଥିଲା । ପରଯୁଗରେ ବହୁଭୁଜମୂର୍ତ୍ତି ନିର୍ମିତ ହୋଇଛି । କିନ୍ତୁ ଏହା ବୋଲି ଯେ ପରବର୍ତ୍ତୀ ଯୁଗରେ ପୁଣି ଚତୁର୍ଭୁଜ ମୂର୍ତ୍ତି ବିଷ୍ଣୁଙ୍କର ନିର୍ମିତ ନ ହେଉଛି, ଏପରି ନୁହେଁ । ବର୍ତ୍ତମାନ ମଧ୍ୟ ସ୍ଥାନେ ସ୍ଥାନେ ନୂତନ ବିଷ୍ଣୁ ମନ୍ଦିର ନିର୍ମାଣ କରାଯାଇ ଚତୁର୍ଭୁଜ ବିଷ୍ଣୁମୂର୍ତ୍ତି ନିର୍ମାଣ କରାଯାଇପାରୁଛି । ତଥାପି ଏକ

୨୮ । ଶାକୁନ୍ତଳମ୍, ବିକ୍ରମୋର୍ବଶୀୟମ୍, ରଘୁବଂଶମ୍‌ର ପ୍ରଥମ ଶ୍ଳୋକ ଦ୍ରଷ୍ଟବ୍ୟ ।

୨୯ । ଗୀତା ୧୫/୧—"ଊର୍ଦ୍ଧ୍ୱମୂଳଂ ଅଧଃଶାଖମ୍ ·········।"

୩୦ । Inconography of Vishnu—Kalpana Desai—Delhi—1973 (Here after I. V.) pp. 16.

ସାଧାରଣ ଅନୁମାନ ଭାବରେ ଆଧୁନିକ ଐତିହାସିକମାନେ ଏପରି ଏକ ମତବାଦ ପୋଷଣ କରନ୍ତି କି, ପ୍ରଥମେ ଅଳ୍ପସଂଖ୍ୟକ ଭୁଜ ବିଶିଷ୍ଟ ମୂର୍ତ୍ତି ନିର୍ମିତ ହେଉଥିଲା; ମାତ୍ର ପରେ ନାନା ଭାବ ସ୍ୱଭାବର ଅଭିବୃଦ୍ଧି ସଙ୍ଗେ ସଙ୍ଗେ ଭୁଜର ସଂଖ୍ୟା ମଧ୍ୟ ବଢ଼ି ବଢ଼ି ଗଲା । ଏହା ଅନେକ କ୍ଷେତ୍ରରେ ସତ୍ୟ ହୋଇଥିଲେ ମଧ୍ୟ ଅଖଣ୍ଡ ଚିରନ୍ତନ ସତ୍ୟ ବା ବୈଜ୍ଞାନିକ ଚିନ୍ତାଧାରା ନୁହେ । ଯେପରିକି ଦୁର୍ଗାପୂଜା ସମୟରେ ସବୁ ଦୁର୍ଗାମେଢ଼ ଦଶଭୁଜା ନୁହନ୍ତି । କିଏ ଡାଲ୍ଲଧରୁ ଷଡ଼ଭୁଜା, କିଏ ବା ଅଷ୍ଟଭୁଜା, କିଏ ବା ଚତୁର୍ଭୁଜା । ମନୁଷ୍ୟର ରୁଚି ଅନୁସାରେ ଏପରି ଭୁଜର ପରିବର୍ତ୍ତନ ଯେ କୌଣସି ସମୟରେ ମଧ୍ୟ କରାଯାଇପାରେ । (୩୦କ) ସେ ଦୃଷ୍ଟିରୁ ଚତୁର୍ଭୁଜ ନୀଳମାଧବ, ବା ପୁରୁଷୋତ୍ତମ ବିଷ୍ଣୁଙ୍କ ପରେ ଦୁଇଭୁଜ ବିଶିଷ୍ଟ ଜଗନ୍ନାଥ-ପୁରୁଷୋତ୍ତମ ବିଷ୍ଣୁ ପୂଜାହେବା ବିରଳ ନୁହେଁ । ସେ ଯାହା-ହେଉ, ପାତାଳଖଣ୍ଡ ରଚିତ ହେବାବେଳକୁ ଏ ଚକାଆଖି-ଦାରୁବ୍ରହ୍ମ-ଜଗନ୍ନାଥ ବୋଧ ହୁଏ ନଥିଲେ ଏବଂ ପୁରୁଷୋତ୍ତମ ଚତୁର୍ଭୁଜ ବିଷ୍ଣୁ ପୂଜିତ ହେଉଥିଲେ । ଚତୁର୍ଭୁଜ ବିଷ୍ଣୁ ମହାବିଷ୍ଣୁ ଭାବରେ ପରିକଳ୍ପିତ ହେବାପରେ ତାଙ୍କୁ ବ୍ରହ୍ମ ବୋଲି ସ୍ୱୀକାର କରାଗଲା ଓ ପରଯୁଗରେ ଦାରୁବ୍ରହ୍ମ ଜଗନ୍ନାଥ—ପୁରୁଷୋତ୍ତମ ପୂଜିତ ହେଲେ । ପଦ୍ମପୁରାଣର କିମ୍ବା ଯୋଗସାରଖଣ୍ଡ ରଚିତ ହେଲାବେଳକୁ ଜଗନ୍ନାଥ ଚତୁର୍ଦ୍ଧା ମୂର୍ତ୍ତି ହୋଇ ପୂଜା ପାଉଥିଲେ ।

**ଏହାର ରଚନା କାଳ :**

ପଦ୍ମପୁରାଣକୁ ସମ୍ପାଦନା କଲାବେଳେ ଭାରତରେ ମୁଖ୍ୟତଃ ଦୁଇ ପ୍ରକାରର ପୋଥି ମିଳିଥିଲା । ଆନନ୍ଦାଶ୍ରମ ସଂସ୍କୃତ ସିରିଜ ପକ୍ଷରୁ ପ୍ରକାଶିତ ତଥା ବମ୍ବେ ଅଞ୍ଚଳ ଏବଂ ଦକ୍ଷିଣଭାରତରୁ ସଂଗୃହୀତ ପଦ୍ମପୁରାଣ ପୋଥିରେ ସମୁଦାୟ ଛଅଗୋଟି 'ଖଣ୍ଡ' ବା ଭାଗ ଦୃଷ୍ଟିଗୋଚର ହୁଏ । ପୁଣି ଉତ୍ତର ଭାରତରୁ ତଥା ପୂର୍ବଭାରତରୁ ମିଳୁଥିବା ବଙ୍ଗାକ୍ଷରରେ ଲିଖିତ ପଦ୍ମପୁରାଣର ପୋଥିରେ ପାଞ୍ଚଗୋଟି ଖଣ୍ଡ (ଭାଗ) ଉପଲବ୍ଧ ହୁଏ । ଦକ୍ଷିଣ ସଂସ୍କରଣର ଛଅଗୋଟି ଭାଗ ହେଉଛି,—ଆଦିଖଣ୍ଡ, ଭୂମିଖଣ୍ଡ, ବ୍ରହ୍ମଖଣ୍ଡ, ପାତାଳଖଣ୍ଡ, ସୃଷ୍ଟିଖଣ୍ଡ ଓ ଉତ୍ତରଖଣ୍ଡ । ଉତ୍ତରଭାରତୀୟ ସଂସ୍କରଣର ପାଞ୍ଚଗୋଟି ଖଣ୍ଡ ହେଉଛି;—ସୃଷ୍ଟିଖଣ୍ଡ, ସ୍ୱର୍ଗଖଣ୍ଡ, ଭୂମିଖଣ୍ଡ ପାତାଳଖଣ୍ଡ ଓ ଉତ୍ତରଖଣ୍ଡ । ଅର୍ଥାତ୍;

---

୩୦କ । ବର୍ତ୍ତମାନର ଐତିହାସିକମାନେ ଉପରୋକ୍ତ ମତରେ ଉଦ୍‌ଭ୍ରାନ୍ତ ହୋଇ ମୂର୍ତ୍ତି-ମାନଙ୍କର ସମୟ ନିରୂପଣ କଲାବେଳେ ଅଷ୍ଟଭୁଜବିଶିଷ୍ଟ ମୂର୍ତ୍ତିମାନଙ୍କୁ ପ୍ରାଚୀନତର ବୋଲି ବୁଝାଇଥାନ୍ତି । ମାତ୍ର, ଏ ଯୁକ୍ତି ବଡ଼ ଦୁର୍ବଳ ତାହାହିଁ ଉପରେ ଦର୍ଶାଇ ଦିଆଯାଇଛି । ଅତଏବ, ଐତିହାସିକମାନେ ଏ ଦୁର୍ବଳଯୁକ୍ତି ପରିହାର କରିବା ବାଞ୍ଛନୀୟ ଓ ହେତୁ ଯୁକ୍ତିର ଭିତ୍ତିରେ କିଛି ଗୋଟାଏ ନିର୍ଦ୍ଧାରଣ କରିବା ଅନୁଚିତ ।

ଦକ୍ଷିଣ ସଂସ୍କରଣର, ଆଦ୍ୟଖଣ୍ଡ ଓ ବ୍ରହ୍ମଖଣ୍ଡ ଉତ୍ତରଭାରତୀୟ ସଂସ୍କରଣରେ ନାହିଁ, ପୁଣି ଉତ୍ତରଭାରତୀୟ ସଂସ୍କରଣର ସ୍ୱର୍ଗଖଣ୍ଡର ନାମକରଣ ଦକ୍ଷିଣଭାରତୀୟ ସଂସ୍କରଣରେ ନାହିଁ । ଏହି ନାମକରଣ ଭିନ୍ନ ବିଷୟବିନ୍ୟାସ ଉଭୟରେ ପ୍ରାୟ ସମାନ । ସେ ଯାହାହେଉ, 'ଉତ୍ତରଖଣ୍ଡ'ଟି ଉଭୟରେ ଉପଲବ୍ଧ ହେଉଛି ଓ ତାହା ଅନ୍ୟାନ୍ୟ 'ଖଣ୍ଡ, ମାନଙ୍କଠାରୁ ବହୁବର୍ଷପରେ ଲେଖାଯାଇଛି । ଏପରିକି କେତେକଙ୍କ ମତରେ ଉତ୍ତରଖଣ୍ଡର ରଚନାକାଳ ଷୋଡ଼ଶ ଶତାବ୍ଦୀରେ ବୋଲି କୁହାଯାଉଛି (୩୧) । କିନ୍ତୁ 'ପାତାଳଖଣ୍ଡ' ହେଉଛି ପଦ୍ମପୁରାଣର ଏକ ମୌଳିକ ଓ ପୁରାତନ ରଚନା । ପୂର୍ବରୁ କୁହାଯାଇଛି ଯେ ମତ୍ସ୍ୟପୁରାଣ ଓ ପଦ୍ମପୁରାଣ କାଳିଦାସଙ୍କଠାରୁ ମଧ୍ୟ ପୁରାତନ । ସେ ଦୃଷ୍ଟିରୁ ପାତାଳଖଣ୍ଡ ପ୍ରଥମ ଶତାବ୍ଦୀ ବେଳକୁ ଅନ୍ତତଃ ରଚିତ ହୋଇଯାଇଥିଲା । ପଦ୍ମପୁରାଣର ମୂଳକୃତିରେ ଯଦିଓ ମତ୍ସ୍ୟପୁରାଣର ଅନେକ ଶ୍ଳୋକ ମିଶିଯାଇଛି, ତଥାପି କିଏ କାହାଠାରୁ ପ୍ରାଚୀନ; ଏକଥା ସ୍ଥିର କରିବା କଠିନ କଥା (୩୨) । ତଥାପି ଅନେକ ବିଦ୍ୱାନ୍ ପଦ୍ମପୁରାଣକୁ ଅଧିକ ପ୍ରାଚୀନତା ଦିଅନ୍ତି । ଏପରିକି ଡଃ ଲୁଡ଼ର୍ସ ସାହେବ ମତବ୍ୟକ୍ତ କରନ୍ତି ଯେ, ପାତାଳଖଣ୍ଡରେ ଥିବା ଋଷ୍ୟଶୃଙ୍ଗ ଉପାଖ୍ୟାନ ମହାଭାରତର ବନପର୍ବ (୧୧୦ ଅଧ୍ୟାୟରୁ ୧୧୨ ଅଧ୍ୟାୟ)ରେ ଥିବା ଉକ୍ତ ଉପାଖ୍ୟାନଠାରୁ ପ୍ରାଚୀନତର । ପୁଣି ଅନ୍ୟ କେତେକ ବିଦ୍ୱାନ କହନ୍ତି ଯେ ପଦ୍ମପୁରାଣରେ ବର୍ଣ୍ଣିତ ତୀର୍ଥଯାତ୍ରା ପ୍ରକରଣ ମହାଭାରତରେ ଥିବା (ବନପର୍ବରେ) ତୀର୍ଥଯାତ୍ରାପ୍ରକରଣଠାରୁ ମଧ୍ୟ ପ୍ରାଚୀନତର (୩୩) । ଅତଏବ ପାତାଳଖଣ୍ଡକୁ ଏତେ ପ୍ରାଚୀନ ବୋଲି ସମସ୍ତେ କହୁଥିବା ବେଳେ ଆମେ ଏତିକି କହିଲେ ବୋଧହୁଏ ଚଳିବ ଯେ ପ୍ରଥମ ଶତକ ବେଳକୁ ପୁରୁଷୋତ୍ତମଙ୍କର ପୂଜା ଓଡ଼ିଶାରେ (ପୁରୁଷୋତ୍ତମ କ୍ଷେତ୍ରରେ) ହେଉଥିଲା । ତେଣୁ ପାତାଳଖଣ୍ଡରେ ଓ ମତ୍ସ୍ୟପୁରାଣରେ ଏହାର ଉଲ୍ଲେଖ ରହିଛି ।

**ପ୍ରଥମଶତକ ପୂର୍ବର ବିଷ୍ଣୁଭାବନା :**

ରାମାୟଣ ଓ ମହାଭାରତର ପଛକୁ ହରିବଂଶର ସ୍ଥାନ । ମହାଭାରତରେ ଶ୍ରୀକୃଷ୍ଣଙ୍କର ମହତ୍ତ୍ୱ ପ୍ରତିପାଦିତ ହୋଇଗଲାପରେ ଧୀରେ ଧୀରେ ଭାରତରେ ବାସୁଦେବଙ୍କର ପୂଜା

୩୧ । "Some observations on the date of the Bengali Recension of the Uttara Khanda of Padma Purana' —Purana Bulletin-All India Kashiraj Trust— Part. V. pp- 122—126.

୩୨ । ପୁରାଣବିମର୍ଶ—ବଳଦେବ ଉପାଧ୍ୟାୟ—ପୃ. ୫୪୦,

୩୩ । ପୁରାଣବିମର୍ଶ—ପୃ. ୫୪୦.

ଅର୍ଚ୍ଚନା ସ୍ଥଳିଲା । ଏକପକ୍ଷରେ ଜୈନଧର୍ମ ଓ ବୌଦ୍ଧଧର୍ମର ପ୍ରାଧାନ, ଏବଂ ଅନ୍ୟପକ୍ଷରେ କୃଷ୍ଣ ବାସୁଦେବଙ୍କର ପ୍ରାଧାନ୍ୟ । ଏହି ପରିପ୍ରେକ୍ଷୀରେ କୃଷ୍ଣବାସୁଦେବଙ୍କର ପୂଜା ଖୁବ ଲୋକପ୍ରିୟ ହୋଇଉଠିଲା । ସେତେବେଳକୁ ଷଡ଼ଦର୍ଶନର ମତବାଦ ମଧ୍ୟ ପ୍ରତିଷ୍ଠିତ ହୋଇସାରିଥିଲା । ଜୈନ ଦର୍ଶନ ଓ ବୌଦ୍ଧଦର୍ଶନ ତାହାକୁ ଛଟେ ଛଟେ ବିରୋଧ କରୁଥିଲେ । ତଥାପି ବେଦାନ୍ତ ଦର୍ଶନ ନିଜର ଶିର ଉଚ୍ଚାଇରଖି ଦଣ୍ଡାୟମାନ ହୋଇଥିଲା । ପ୍ରକାରାନ୍ତରେ ମୂର୍ତ୍ତିପୂଜା ବିରୋଧି ବୌଦ୍ଧ ଓ ଜୈନମାନେ ବେଦାନ୍ତର ବ୍ରହ୍ମବାଦକୁ ବିରୋଧ କରିପାରୁନଥିଲେ । "ସର୍ବଂ ଖଳ୍ବ ଇଦଂ ବ୍ରହ୍ମ"ତତ୍ତ୍ବ ଅନ୍ୟଭାବରେ ସେମାନଙ୍କ ଦ୍ୱାରା ସ୍ୱୀକୃତ ହୋଇଥିଲା । ଏହି ପରିପ୍ରେକ୍ଷୀରେ ହରିବଂଶ ଓ ଶ୍ରୀମଦ୍ ଭଗବଦ୍ ଗୀତା ଶ୍ରୀକୃଷ୍ଣଙ୍କୁ 'ସନାତନ ବ୍ରହ୍ମ, ଆଦିପୁରୁଷ ଓ ପୁରୁଷୋତ୍ତମ' ବୋଲି ଘୋଷଣା କଲେ । (୩୪) ଏହି ପୁରୁଷୋତ୍ତମ ଆଦିପୁରୁଷ ହେଉଛନ୍ତି ସ୍ୱୟଂ ବିଷ୍ଣୁ; ଏକଥା ହରିବଂଶ ସୂଚାଇ ଦେଲା । (୩୫) କୃଷ୍ଣ-ବିଷ୍ଣୁ ବିମୂର୍ତ୍ତିଧାରୀ ସହିତ ତାଙ୍କୁ ନାରାୟଣ ବା 'ନାର' ଅର୍ଥାତ୍ ଜଳଶାୟୀ ଅନନ୍ତଶୟନ ବିଷ୍ଣୁ ବୋଲି ମଧ୍ୟ ପରିକଳ୍ପନା କରାଗଲା ବେଦର ପୁରୁଷସୂକ୍ତର "ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍" ଇତ୍ୟାଦି ଚିନ୍ତାଧାରାକୁ ଆଣି ସେହି ନାରାୟଣଙ୍କ ଠାରେ ରୂପାୟିତ କରିଦିଆଗଲା । (୩୬) ଏବଂ ଏପରି ଏକ ବିଶାଳରୂପର ପରିକଳ୍ପନା ମଧ୍ୟରେ ସେହି ବିଷ୍ଣୁଙ୍କୁ ମଧ୍ୟ ଅରୂପ ବା ରୂପହୀନ ବୋଲି ବ୍ରହ୍ମବିଦ୍‌ମାନେ କହିଲେ । ଆଉ ହରିବଂଶ ଏହି ପରିକଳ୍ପନାକୁ ମଧ୍ୟ ସସମ୍ମାନେ ସ୍ଥାନ ଦେଲା । (୩୭) ଏହାପରିଲରେ ଉପନିଷଦ୍‌ର (୩୮) "ଅଣୋରଣୀୟାନ୍ ମହତୋ ମହୀୟାନ୍" ଉକ୍ତିଟି ବିଷ୍ଣୁଙ୍କଠାରେ ଆରୋପିତ ହୋଇଗଲା । ବ୍ରହ୍ମ ସାଧାରଣରେ ଦର୍ଶନୀୟ ନ ହେଲେ ମଧ୍ୟ, ତାହା ଅଚିନ୍ତ୍ୟ, ଅବ୍ୟକ୍ତ ବୋଲି କୁହାଯାଉଥିଲେ ସୁଦ୍ଧା, ବାସୁଦେବ ପୁରୁଷୋତ୍ତମ ବିଷ୍ଣୁଙ୍କର ଏହି ତଥାକଥିତ ପରସ୍ପର ବିରୋଧୀ ରୂପପ୍ରକଳ୍ପ ମାଧ୍ୟମରେ ସେ ଅଚିନ୍ତ୍ୟ ବସ୍ତୁ ଉପଲବ୍ଧ ହୋଇପାରିଲା । ଫଳରେ ବିଷ୍ଣୁଙ୍କର ସ୍ଥାନ

---

୩୪ । ଶ୍ରୀମଦ୍‌ଭଗବଦ୍‌ଗୀତା—ପଞ୍ଚଦଶ ଅଧ୍ୟାୟ । ୧୫/୧୮
ହରିବଂଶ—(Bareli) ବରେଲୀ, ପ୍ରଥମଭାଗ, ୧୯୬୭, ୧/୯ ପୃ. ୫୨
"ଋତମେକାକ୍ଷରଂ ବ୍ରହ୍ମ ବ୍ୟକ୍ତାବ୍ୟକ୍ତଂ ସନାତନମ୍"

୩୫ । ହରିବଂଶ—(Introduction) ପୃ: ୭ । (ପ୍ରଥମ ଭାଗ)

୩୬ । ହରିବଂଶ—୨୯/୪-୫ ପୃ: ୧୮୮ (ବିଷ୍ଣୁଙ୍କର ଶିର, ମୁଖ, ନେତ୍ର ସର୍ବବ୍ୟାପୀ, ମାତ୍ର ସେ ପୁଣି ଅରୂପ ।) (ପ୍ରଥମ ଭାଗ)

୩୭ । ହରିବଂଶ—ଦ୍ୱିତୀୟ ଭାଗ, ୨୯/୮, ୨୯/୧୪, "ହ୍ୟରୂପୀ ପରମାର୍ଥିତଃ"—୨୯/୮ ପୃ. ୧୮୮.

୩୮ । କଠୋପନିଷଦ୍—୨/୨୦ ।।

ସମାଜରେ ଅତି ଉଚ୍ଚତର ହୋଇଗଲା । ସମାଜରେ ଯଜ୍ଞରେ ପଶୁହିଂସା ଘୃଣିତ ହେଉଥିବା ବେଳେ ଜୀବହିଂସା ବିହୀନ ନିରାମିଷଭୋଗାର୍ଚ୍ଚିତ ପରଂବ୍ରହ୍ମ କୃଷ୍ଣ-ବିଷ୍ଣୁଙ୍କ ପୂଜା ବେଶ୍ ଲୋକପ୍ରିୟତା ଲାଭ କଲା । ଏହାକୁ ଖ୍ରୀଷ୍ଟପୂର୍ବ ସମୟର ଘଟଣା । ସମାଜରେ ବୌଦ୍ଧ ଜୈନଙ୍କର ପ୍ରାଧାନ୍ୟ ଥିଲା ସତ୍ୟ; ମାତ୍ର ସେମାନେ ଏହି ଅହିଂସ ବିଷ୍ଣୁପୂଜାକୁ ବିରୋଧ କରିବାକୁ ଉପାୟ ପାଇଲେ ନାହିଁ । ଫଳରେ ହିନ୍ଦୁଧର୍ମ ବିଷ୍ଣୁଙ୍କୁ କେନ୍ଦ୍ରକରି ସଗର୍ବରେ ମୁଣ୍ଡ ଟେକି ଛିଡ଼ା ହେଲା ।

ପ୍ରଥମ ଶତାବ୍ଦୀର ପୂର୍ବରୁ ରଚିତ ବିଷ୍ଣୁପୁରାଣରୁ ଜଣାଯାଏ ଯେ, ସେତେବେଳକୁ ମଧ୍ୟ ଶ୍ରୀକୃଷ୍ଣଙ୍କୁ ବିଷ୍ଣୁ ଓ ପୁରୁଷୋତ୍ତମ ବୋଲି ବାରଂବାର ଉଦ୍‌ଘୋଷଣା କରାଯାଉଥିଲା । ଅନେକସ୍ଥଳରେ ମଧ୍ୟ ତାଙ୍କୁ ଜଗନ୍ନାଥ ଓ ପୁରୁଷୋତ୍ତମ ବୋଲି ସମ୍ବୋଧନ କରାଯାଉଥିଲା । ଏଣେ ସେହି ଶତାବ୍ଦୀର କିଛିକ ପରେ ମତ୍ସ୍ୟପୁରାଣ ଓ ପଦ୍ମପୁରାଣ ପୁରୁଷୋତ୍ତମ-କ୍ଷେତ୍ରର ଅବତାରଣା କରିଛନ୍ତି । ଏଣୁ ବୋଧହୁଏ, ଏକଥା ଚିନ୍ତା କରାଯାଇପାରେ ଯେ ବିଷ୍ଣୁପୁରାଣର ପୁରୁଷୋତ୍ତମ ଜଗନ୍ନାଥ-ପରଂବ୍ରହ୍ମ-କୃଷ୍ଣ, ପୁରୁଷୋତ୍ତମ ଜଗନ୍ନାଥ ଭାବରେ ପୁରୁଷୋତ୍ତମ କ୍ଷେତ୍ରରେ ପରଯୁଗରେ ଉପାସିତ ହେଲେ । ହୁଏତ ଏକଥା ନିଶ୍ଚିତ ଯେ ଏହି ପୂଜା ଲୋକପ୍ରିୟ ହେବାପାଇଁ ଅନେକ କାଳ ଲାଗିଥିଲା । ଯେ ଯାହାହେଉ, ବିଷ୍ଣୁପୁରାଣରେ ଥିବା ଶ୍ରୀକୃଷ୍ଣଙ୍କର ସ୍ୱରୂପ ଆଲୋଚନା କରିବା ପୂର୍ବରୁ, ଏ ପୁରାଣର ସମୟ ଟିକିଏ ଆଲୋଚନା ସାପେକ୍ଷ୍ୟ । ତା'ହେଲେ ଯାଇଁ ସେ ଯୁଗର ଧାର୍ମିକ ଚିନ୍ତାଧାରା ସ୍ପଷ୍ଟ ହୋଇପାରିବ ।

**ସମୟ—**

ବିଷ୍ଣୁପୁରାଣର ସମୟ ବେଳକୁ ଗ୍ରୀକ୍‌ମାନେ, ଶକମାନେ ଓ ଅନ୍ୟାନ୍ୟ ବୈଦେଶିକମାନେ ଭାରତ ଆକ୍ରମଣ କରିସାରିଥିଲେ । ସେହି ବୈଦେଶିକମାନଙ୍କୁ 'ଯବନ' ବୋଲି କୁହାଯାଉଥିଲା । ବିଷ୍ଣୁପୁରାଣରେ ଏମାନଙ୍କର ଉଲ୍ଲେଖ ମିଳୁ ନଥିବାରୁ, (୩୯) ଏହା ନିଶ୍ଚୟ ଆଲେକ୍‌ଜାଣ୍ଡାର୍‌ଙ୍କ ଆକ୍ରମଣର ପରବର୍ତ୍ତୀ କୃତ । ତା ଛଡ଼ା ଏହି ପୁରାଣଗ୍ରନ୍ଥରେ ରାଜବଂଶ ବର୍ଣ୍ଣନା ପ୍ରସଙ୍ଗରେ ନନ୍ଦବଂଶର ଶେଷରାଜା 'ମହାପଦ୍ମନନ୍ଦ' ଓ ମୌର୍ଯ୍ୟସମ୍ରାଟ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କର ଉଲ୍ଲେଖ ରହିଅଛି (୪୦) । ଏଣୁ ଏ ପୁରାଣ କଦାପି ଏ ରାଜାମାନଙ୍କର ପୂର୍ବବର୍ତ୍ତୀ ହୋଇ ନ ପାରେ । ପୁଣି ଏଥିରେ ମୌର୍ଯ୍ୟବଂଶୀ ବିନ୍ଦୁସାର ଓ

---

୩୯ । ବିଷ୍ଣୁପୁରାଣ-ବରେଲୀ—୪ର୍ଥ ଭାଗ—୩/୪୬ ଓ ୩/୪୭ (ଗଦ୍ୟାକାର)
"ଶକ ଯବନ କାମ୍ବୋଜ ପାରଦ ପହ୍ଲବାଃ......"

୪୦ । ବିଷ୍ଣୁପୁରାଣ—୪ର୍ଥ ୨୪।୨୪-୨୮ ପୃ: ୩୫୯

ଅଶୋକଙ୍କ ବିଷୟରେ କଥିତ ଆଲୋଚନା କରାଯାଇଛି (୪୧) । ପୁଣି ଏହି ଗ୍ରନ୍ଥରେ ଶୁଙ୍ଗବଂଶୀ ରାଜା ପୁଷ୍ୟମିତ୍ର, ଅଗ୍ନିମିତ୍ର ପ୍ରଭୃତିଙ୍କର ଉଲ୍ଲେଖ ଅଛି (୪୨) । ଏହାଛଡ଼ା ଏହି ପୁରାଣ ମଧ୍ୟ ଗୁପ୍ତ ରାଜବଂଶର ଉଲ୍ଲେଖ କରିଛି (୪୩) । ଆଉ ମଧ୍ୟ ଏଥିରୁ 'ଶାନ୍ତକର୍ଣ୍ଣୀ' ବା ଶାତକର୍ଣ୍ଣୀ ରାଜାଙ୍କର ନାମ ଜାଣିବାକୁ ମିଳୁଛି (୪୪) । ଅତଏବ ଏ ପୁରାଣର କାଳ ଏକ ଲମ୍ବା ସମୟସ୍ରୋତ ମଧ୍ୟରେ ବିସ୍ତୀର୍ଣ୍ଣ ହେବା ଯୁକ୍ତିଯୁକ୍ତ । କାରଣ, ଏହା ଏକ ବୃହତ୍ତର ପୁରାଣ । ପୁଣି ଏହାର ପ୍ରତି ଖଣ୍ଡ ଅନ୍ୟାନ୍ୟ ପୁରାଣମାନଙ୍କ ଭଳି ଏକ ସମୟରେ ତଥା ଏକ ଶତାବ୍ଦୀରେ ଲେଖାଯାଇନାହିଁ । ପୁରାଣଟିକୁ ଲେଖିବାକୁ ଅନେକ ସମୟ ଲାଗିଛି । ତେଣୁ ମହାପଦ୍ମନନ୍ଦଙ୍କଠାରୁ ଆରମ୍ଭକରି ଗୁପ୍ତରାଜବଂଶ ପର୍ଯ୍ୟନ୍ତ ଏଥିରେ ଉଲ୍ଲିଖିତ ହୋଇଛି । ମାତ୍ର ଏତିକ ପ୍ରମାଣ ବଳରେ ଏ ପୁରାଣକୁ ଖ୍ରୀ: ପୂ: ତୃତୀୟ ଶତକଠାରୁ ଆରମ୍ଭକରି ପଞ୍ଚମ ଶତକ ମଧ୍ୟରେ ରଖିଦେଲେ ଚଳିବ ନାହିଁ । କିମ୍ବା ଏହାର ସମୟ ଗୁପ୍ତରାଜବଂଶ ପରେ ବା ସାତକର୍ଣ୍ଣୀଙ୍କ ପରେ ବୋଲି କହିଦେଇ ଏହା ପଞ୍ଚମ ଶତକର ପରବର୍ତ୍ତୀ ବୋଲି କହିଦେଲେ ଚଳିବ ନାହିଁ । କାରଣ, ଏହିସବୁ ଉପରୋକ୍ତ ପ୍ରମାଣାବଳୀ କେବଳ ବିଷ୍ଣୁପୁରାଣର ଚତୁର୍ଥ ଖଣ୍ଡରେ ହିଁ ଆସୁଛି । ଏଣୁ ଏହି ଖଣ୍ଡଟି ହୁଏତ ପଞ୍ଚମ ବା ଷଷ୍ଠ ଶତକର ପରବର୍ତ୍ତୀ ରଚନା ହୋଇପାରେ । ମାତ୍ର, ସମ୍ପୂର୍ଣ୍ଣ ବିଷ୍ଣୁପୁରାଣର ଏହା କାଳନିର୍ଣ୍ଣୟ ହୋଇ ନ ପାରେ । ଏଥିପାଇଁ ବିଭିନ୍ନ ସମାଲୋଚକ ବିଭିନ୍ନ ଦୃଷ୍ଟିରୁ ଆଲୋଚନା କରିଛନ୍ତି ।

ଅନ୍ତରଙ୍ଗ ଓ ବହିରଙ୍ଗ ପରୀକ୍ଷାକୁ ନେଇ କାଳନିରୂପଣ ସାଧାରଣତଃ କରାଯାଇଥାଏ । ଅନ୍ୟାନ୍ୟ ପୁରାଣରେ ନୃସିଂହ ଅବତାରରେ ଭଗବାନ୍ ବିଷ୍ଣୁ 'ପ୍ରହ୍ଲାଦ'ଙ୍କର ପିତା 'ହିରଣ୍ୟ କଶିପୁ' ନାମକ ରାକ୍ଷସକୁ ମାରିଥିବାର ବର୍ଣ୍ଣନା ରହିଅଛି । ମାତ୍ର ବିଷ୍ଣୁପୁରାଣ ରଚନା ହେଲାବେଳକୁ ବୋଧହୁଏ, ଏହି ହିରଣ୍ୟକଶିପୁନିଧନ ମତବାଦ

---

୪୧ । ବିଷ୍ଣୁପୁରାଣ-୪ର୍ଥ/୨୪/୨୯-୩୦—ତସ୍ୟାପି ପୁତ୍ରୋ ବିନ୍ଦୁସାରୋ ଭବିଷ୍ୟତି । ତସ୍ୟାପ୍ୟଶୋକବର୍ଦ୍ଧନ...(ଗଦ୍ୟ)

୪୨ । ବିଷ୍ଣୁପୁରାଣ-୪ର୍ଥ/୨୪/୩୪-୩୭—ପୁଷ୍ୟମିତ୍ରସେନାପତିସ୍ୱାମିନଂ ହତ୍ୱା ରାଜ୍ୟଂ କରିଷ୍ୟତି ।
ତସ୍ୟାତ୍ମଜୋଽଗ୍ନିମିତ୍ରଃ ॥ ୩୪......ଇତ୍ୟେତେ ଶୁଙ୍ଗା ଦ୍ୱାଦଶୋତ୍ତରଂ ବର୍ଷଶତଂ ପୃଥିବୀଂ ଭୋକ୍ଷ୍ୟନ୍ତି ॥ ପୃ: ୩୫୯.

୪୩ । ବିଷ୍ଣୁପୁରାଣ ୪ର୍ଥ/୨୪/୬୩-ପ୍ରସ୍ତୀଂ ଅନୁଗଙ୍ଗା ପ୍ରୟାଗଂ ଗୟାଂଚ ମାଗଧା ଗୁପ୍ତାଶ୍ଚ ଭୋକ୍ଷ୍ୟନ୍ତି ॥ ପୃ: ୩୬୧.

୪୪ । ବିଷ୍ଣୁପୁରାଣ ୪ର୍ଥ/୨୪/୪୩-୪୯. ପୃ: ୩୬୦.

ପ୍ରଚଳିତ ହୋଇନଥିଲା । ତେଣୁ ବିଷ୍ଣୁପୁରାଣକାର ଉକ୍ତଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ଯେ, ପ୍ରହ୍ଲାଦଙ୍କର ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ଭଗବାନ୍ ନୃସିଂହ ହିରଣ୍ୟକଶିପୁଙ୍କୁ ନଖରେ ଚିରି ମାରିଲେ ନାହିଁ । ତାଙ୍କୁ ମୁକ୍ତ କରିଦେଲେ (୪୫) । ଏଥିରୁ ବିଷ୍ଣୁପୁରାଣର ପ୍ରାଚୀନତା ସାବ୍ୟସ୍ତ ହେଉଛି (୪୫କ) ।

କୃଷ୍ଣଚରିତ ବର୍ଣ୍ଣନା ବିଷ୍ଣୁପୁରାଣରେ ସଂକ୍ଷେପରେ କରାଯାଇଛି । କିନ୍ତୁ ଏହି ଚରିତ ଶ୍ରୀମଦ୍‌ଭାଗବତରେ ବିସ୍ତୃତରୂପେ କରାଯାଇଛି । ଏହାଫଳରେ ଏତିକି ଅନୁମାନ କରିବାର କଥା ଯେ, ଏ ପୁରାଣ ଭାଗବତ ପୁରାଣଠାରୁ ନିଶ୍ଚୟ ପ୍ରାଚୀନତର । ଅନେକଙ୍କ ମତରେ ଭାଗବତର ସମୟ ଦ୍ୱାଦଶଶତକ । ମାତ୍ର ଏ ପୁରାଣର ମୂଳଧ୍ୱରୂପ ଦ୍ୱାଦଶଶତକଠାରୁ ବହୁ ପ୍ରାଚୀନ । କାରଣ ଅନ୍ୟାନ୍ୟ ପୁରାଣମାନଙ୍କରେ ଅଷ୍ଟାଦଶ ପୁରାଣର ତାଲିକା ପ୍ରସ୍ତୁତରେ ଭାଗବତର ନାମ ମିଳୁଛି । ଯେ ଯାହାହେଉ, ବିଷ୍ଣୁପୁରାଣ ଭାଗବତ ପୁରାଣଠାରୁ ପ୍ରାଚୀନତର; ଏଥିରେ ସନ୍ଦେହର ଅବକାଶ ନାହିଁ ।

ଡଃ ହାଜରା (Dr. Hazara) ଏକ ପ୍ରବନ୍ଧରେ ଜ୍ୟୋତିଷ ଦୃଷ୍ଟିରୁ ଆଲୋଚନା କରି ଏ ପୁରାଣର ସମୟ ଖ୍ରୀ: ଅ: ଦ୍ୱିତୀୟ ଶତକ ବୋଲି ସ୍ଥିର କରିଛନ୍ତି (୪୬) । ଏଥିରେ ଯେଉଁ ରାଶିଚକ୍ରର ଉଲ୍ଲେଖ ଅଛି, ତହିଁରୁ ଜଣାପଡ଼ୁଛି ଯେ, ନକ୍ଷତ୍ରମାନଙ୍କର ଗଣନାର ଆରମ୍ଭ ସେତେବେଳେ 'କୃତ୍ତିକା'ଠାରୁ ହେଉଥିଲା (୪୭) । ରାଶିମାନଙ୍କର

---

୪୫ । ବିଷ୍ଣୁପୁରାଣ—୧ମ: ୨୦।୨୧-୨୫, ୨୯-୩୦,

ଦ୍ରଷ୍ଟବ୍ୟ—ପ୍ରହ୍ଲାଦର ସ୍ତୁତିରେ ହିରଣ୍ୟକଶିପୁର ସବୁ ପାପ ଦୂର ହୋଇଗଲା । ସେ ଅନୁତାପ କଲା । ଭଗବାନ ତାକୁ ମୁକ୍ତି ଦେଲେ । ସେ ପ୍ରହ୍ଲାଦକୁ ଆଲିଙ୍ଗନ କଲା । ଭଗବାନ ବି ଅନ୍ତର୍ହିତ ହେଲେ, ଅତଏବ ହିରଣ୍ୟକଶିପୁକୁ ପ୍ରଭୁ ମାରିଲେ ନାହିଁ । ତେଣୁ ଶ୍ଳୋକ ନଂ ୩୨ରେ ନୃସିଂହ ରୂପରେ ହିରଣ୍ୟକଶିପୁକୁ ମାରିଲେ ବୋଲି ଯାହା ଲେଖାଅଛି, ତାହା ନିଶ୍ଚୟ ପ୍ରକ୍ଷେପ ।)

୪୫(କ) । ବିଷ୍ଣୁ—୧ମ, ୨୦।୩୨—ଏହି ଶ୍ଳୋକଟିର ପୂର୍ବାପର ସାମଞ୍ଜସ୍ୟ ନ ଥିବାରୁ ଏହା ଏକ ପ୍ରକ୍ଷେପ ଅଟେ ।

୪୬ । Dr. Hazara—'The date of Vishnu Purana—Journal of Bhandarkar research institute. 18. (1936-37)

୪୭ । ବିଷ୍ଣୁପୁରାଣ—୨।୮।୨୭.—କୃତ୍ତିକାଦିଷୁ ଋକ୍ଷେଷୁ ବିଷମେଷୁ ଚ ଯଦ୍ଦିବଃ
ଦୃଷ୍ଟାର୍କ ପତିତଂ ଜ୍ଞେୟଂ ତଦ୍‌ଗାଙ୍ଗମ୍ ଦିଗ୍‌ଗଜୋଜ୍ଝିତମ୍ ॥

ଗଣନାର କ୍ରମରେ "ମକର, କୁମ୍ଭ, ମୀନ" କ୍ରମାନ୍ୱୟରେ ଆସୁଥିଲେ (୪୮)। ରାଶିଗଣନାରେ କିଛି ବ୍ୟତିକ୍ରମ ନାହିଁ । ମାତ୍ର ଏ ପୁରାଣ ସମୟରେ 'କୃତ୍ତିକା'ଠାରୁ ନକ୍ଷତ୍ର ଗଣନାର ଆରମ୍ଭ ପଦ୍ଧତି ଯାହା ଥିଲା, ତାହା ବରାହମିହିରଙ୍କ ସମୟବେଳକୁ ବଦଳିଗଲା ଏବଂ 'ଅଶ୍ୱିନୀ'ନକ୍ଷତ୍ର ଠାରୁ ଆରମ୍ଭ ହେଲା । ବରାହମିହିରଙ୍କର ସମୟକୁ ଆନୁମାନିକ ଖ୍ରୀ: ଅ: ୫୫୦ ବୋଲି ବିଚାରକରି ଶ୍ରୀଯୁକ୍ତ ହାଜରା କହନ୍ତି ଯେ, ବିଷ୍ଣୁପୁରାଣର ରଚନା ଖ୍ରୀ: ଅ. ୫୫୦ର ବହୁତ ପୂର୍ବବର୍ତ୍ତୀ । କିନ୍ତୁ କେତେ ପୂର୍ବବର୍ତ୍ତୀ; ଏକଥା ସେ ବସ୍ତୁତଃ ସଠିକ୍ ନିରୂପଣ କରିପାରି ନାହାନ୍ତି । ମାତ୍ର, ତାଙ୍କ ମତରେ ଯାଜ୍ଞବଲ୍କ୍ୟ-ସ୍ମୃତି ହେଉଛି ପ୍ରଥମ ଜ୍ୟୋତିଷାତ୍ମକଗ୍ରନ୍ଥ, ଯହିଁରେ ରାଶିମାନଙ୍କର ଉଲ୍ଲେଖ ରହିଛି । ଏ ଗ୍ରନ୍ଥର ସମୟ ହେଉଛି ଦ୍ୱିତୀୟ ଶତକ । ତେଣୁ ତାଙ୍କ ମତରେ ବିଷ୍ଣୁପୁରାଣର ସମୟ ହେଉଛି ଦ୍ୱିତୀୟ ଶତକ ।

କିନ୍ତୁ, ଶ୍ରୀଯୁକ୍ତ ହାଜରାଙ୍କର ଏ ସିଦ୍ଧାନ୍ତ ଏକ ସମ୍ପୂର୍ଣ୍ଣ ସିଦ୍ଧାନ୍ତ ନୁହେଁ । ସେ ମହାଶୟ ମୋଟେ ଚିନ୍ତା କରିନାହାନ୍ତି ଯେ, ଯାଜ୍ଞବଲ୍କ୍ୟ ସ୍ମୃତିଠାରୁ ପ୍ରାଚୀନ ରାଶିଚକ୍ର ଉପରେ ଅନ୍ୟ କିଛି ଗ୍ରନ୍ଥ ଅଛି କି ନା ? ତା'ଛଡ଼ା, ଏହି ଯେଉଁ 'ଦ୍ୱିତୀୟ ଶତକ' ଏ ସ୍ମୃତିଗ୍ରନ୍ଥର ସମୟ ବୋଲି ଲେଖିଦେଲେ, ଏହା ମଧ୍ୟ ସର୍ବଜନଗ୍ରାହ୍ୟ ନୁହେଁ । ସମାଲୋଚକ ଐତିହାସିକ କିଥ୍ (A. B. Keith) ମଧ୍ୟ ଏହାକୁ ସ୍ୱୀକାର କରନ୍ତି ନାହିଁ । ତାଙ୍କ ମତରେ ଯାଜ୍ଞବଲ୍କ୍ୟ ସ୍ମୃତିର ସମୟ ଖ୍ରୀ. ଅ. ୩୦୦ (୪୯) । ଏହାଛଡ଼ା ବିଷ୍ଣୁପୁରାଣରେ ଉପଲବ୍ଧ ଗୋଟିଏ ବିଷୟ ଯଦି ଏକ ଆଧୁନିକ ଗ୍ରନ୍ଥରେ ମିଳିଯାଏ, ତେବେ କହିବା ପ୍ରାସଙ୍ଗିକ ନୁହେଁ ଯେ, ଏହି ପୁରାଣ ଏହି ତଥାକଥିତ ଗ୍ରନ୍ଥରଚନାର ପରବର୍ତ୍ତୀ । ଅତଏବ ଶ୍ରୀଯୁକ୍ତ ହାଜରାଙ୍କର ଯୁକ୍ତି ବଡ଼ ଦୁର୍ବଳ । ଆଲୋଚନା ଅସମ୍ପୂର୍ଣ୍ଣ । ଏଣୁ ଏହା ଗ୍ରହଣୀୟ ନୁହେଁ ।

ଆଚାର୍ଯ୍ୟ ବଳଦେବ ଉପାଧ୍ୟାୟ ତାଙ୍କ ପୁରାଣବିମର୍ଶରେ ବିଷ୍ଣୁପୁରାଣର ସମୟ ଖ୍ରୀ. ଅ. ପ୍ରଥମଶତକରୁ ଆରମ୍ଭକରି ତୃତୀୟ ଶତକ ମଧ୍ୟରେ ରଖିଛନ୍ତି । ସେ ମହାଶୟ ବାଚସ୍ପତିମିଶ୍ର (୯ମ ଶତକ) ଙ୍କର ଯୋଗଭାଷ୍ୟରେ ବିଷ୍ଣୁପୁରାଣର ଉଦ୍ଧୃତି, ପୁଣି ଯୋଗ-ଭାଷ୍ୟ ଓ ବାତ୍ସାୟନଙ୍କର ନ୍ୟାୟଭାଷ୍ୟର ତୁଳନାର ମାପକାଠିରେ ବିଚାରକରି ଏବଂ ଆମର ପୂର୍ବୋକ୍ତ ରାଜବଂଶମାନଙ୍କର ଆଲୋଚନାକୁ ବିଚାରକୁ ନେଇ ଏପରି ଏକ

---

୪୮ । ବିଷ୍ଣୁପୁରାଣ—୨।୮।୨୮—ଅୟନସ୍ୟୋତ୍ତରସ୍ୟାଦୌ ମକରଂ ଯାତି ଭାସ୍କରଃ ।
ତତଃ କୁମ୍ଭଂ ଚ ମୀନଂ ଚ ରାଶେଃ ରାଶ୍ୟନ୍ତରଂ ଦ୍ୱିଜ ॥

୪୯ । A History of Sanskrit Literature-Keith—1961-London-pp-446.

ସମୟସୀମା ନିର୍ଦ୍ଧାରଣ କରିଛନ୍ତି (୫୦) । ଏ ସମୟସୀମା ଡଃ ହାଜରାଙ୍କ ନିର୍ଦ୍ଧାରଣ ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ । ଆଉ ମଧ୍ୟ, ପଣ୍ଡିତ ଡଃ ରାମଚନ୍ଦ୍ର ଦୀକ୍ଷିତର୍‌ଙ୍କର 'Studies in Tamil literature and History' ନାମକ ପୁସ୍ତକରେ ତାମିଲଗ୍ରନ୍ଥ "ମଣି ମେଖଲୈ"ର ଆଲୋଚନା ହୋଇଅଛି । ଏ ଗ୍ରନ୍ଥର ସମୟ ଦ୍ୱିତୀୟଶତକ ଓ ଏଥିରେ ବିଷ୍ଣୁପୁରାଣର ଉଲ୍ଲେଖ ରହିଅଛି । ଏହି ଆଧାର ଉପରେ ବିଷ୍ଣୁପୁରାଣର ସମୟ ଖ୍ରୀ. ପୂ. ୧ମଶତକ ବୋଲି ରଖାଯାଇଛି (୫୧) । ଏ ମତକୁ ମଧ୍ୟ ଆଚାର୍ଯ୍ୟ ବଳଦେବ ଉପାଧ୍ୟାୟ ପ୍ରଭୃତି ଗବେଷକଗଣ ଅସ୍ୱୀକାର କରିନାହାନ୍ତି । (୫୨) ଅତଏବ ବିଷ୍ଣୁପୁରାଣର ପ୍ରାଚୀନତମ ସମୟସୀମା ଖ୍ରୀ. ପୂ. ଦ୍ୱିତୀୟଶତକ ଓ ଏହା । ମତ୍ସ୍ୟପୁରାଣ ଓ ପଦ୍ମପୁରାଣଠାରୁ ସାମାନ୍ୟ ପ୍ରାଚୀନତର ବୋଲି ସ୍ୱୀକାର କରିବା ଅଯୌକ୍ତିକ ହେବ ନାହିଁ । ଏହା ସଙ୍ଗେ ସଙ୍ଗେ ମଧ୍ୟ ସ୍ୱୀକାର କରିବାକୁ ହେବ ଯେ, ଯେପରି ପଦ୍ମପୁରାଣର 'ପୁଷ୍କରଖଣ୍ଡ', 'କ୍ରିୟାଯୋଗସାର ଖଣ୍ଡ' ବହୁ ପରେ ରଚିତ, ସେହିପରି ବିଷ୍ଣୁପୁରାଣର ଚତୁର୍ଥଖଣ୍ଡ ଗୁପ୍ତରାଜତ୍ୱ କାଳରେ ରଚିତ । କାରଣ ଏଥିରେ ଗୁପ୍ତ ରାଜାଙ୍କର ଆଭାସ ଆଦିଯାଇଛି (୫୩) । ତା'ଛଡ଼ା ମୂଳତଃ ଏହା ଏକ ବୌଦ୍ଧଧର୍ମ ପ୍ରାବଲ୍ୟ କାଳର ରଚନା । କାରଣ ଏଥିରେ ଯକ୍ଷ ନିନ୍ଦକ ବୌଦ୍ଧମାନଙ୍କୁ ଠିକଣା ଜବାବମାନ ଦିଆଯାଇଛି । (୫୩କ) ଏହି ଦୃଷ୍ଟିରୁ ମଧ୍ୟ ଏହାର ମୂଳ ସମୟ ଖ୍ରୀ. ପୂ. ୧ମ ଶତକ ଖୁବ୍ ସମୀଚୀନ ହେବ ।

ପ୍ରଥମ ଶତାବ୍ଦୀ ବେଳକୁ ପଦ୍ମପୁରାଣ ଓ ମତ୍ସ୍ୟପୁରାଣରେ ପୁରୁଷୋତ୍ତମ କ୍ଷେତ୍ରର ଉଲ୍ଲେଖ ଥିଲେ ମଧ୍ୟ ଏକଥା ସ୍ପଷ୍ଟ ଯେ ପୁରୁଷୋତ୍ତମ ମହାପ୍ରଭୁ ସାମ୍ରାଜ୍ୟରେ ପ୍ରସିଦ୍ଧ ହୋଇପାରିନଥିଲେ । ସେଥିପାଇଁ ସେ ଯୁଗର ସାହିତ୍ୟମାନଙ୍କରେ ଏ କ୍ଷେତ୍ର ବିଷୟରେ ଆଗ୍ରହ ବହୁତ କମ୍ । ବିଷ୍ଣୁପୁରାଣ ଟିକିଏ ପୂର୍ବବର୍ତ୍ତୀ ହେଲେ ମଧ୍ୟ, ଏହା ଏକ ବିଷ୍ଣୁକୈନ୍ଦ୍ରିକ ପୁରାଣ । କିନ୍ତୁ ଏ ପୁରାଣରେ ପୁରୁଷୋତ୍ତମ ଓ ଜଗନ୍ନାଥ ଶବ୍ଦ କୃଷ୍ଣବିଷ୍ଣୁଙ୍କ ପାଇଁ ବହୁଳଭାବରେ ପ୍ରୟୋଗ କରାଯାଇଥିବାବେଳେ, ଏ ପୁରାଣକାର ପୁରୁଷୋତ୍ତମ-କ୍ଷେତ୍ର ବିଷୟରେ ନୀରବ । ଏଥିରୁ ଜଣାପଡ଼ୁଛି, ବୋଧହୁଏ, ସେତେବେଳେ

---

୫୦ । ପୁରାଣବିମର୍ଶ—ଆଚାର୍ଯ୍ୟ ବଳଦେବ ଉପାଧ୍ୟାୟ-ବାରାଣସୀ-୧୯୬୫-ପୃ. ୫୪୪,

୫୧ । Indian Historical Quaterly—VII, Cal 1931, PP-370-371. "The age of Visnupurana."

୫୨ । ପୁରାଣ ବିମର୍ଶ—ପୃ ୫୪୫

୫୩ । ବିଷ୍ଣୁପୁରାଣ—୪ର୍ଥ—୨୪।୬୩—ପୃ ୩୬୧

୫୩କ । ବିଷ୍ଣୁପୁରାଣ—୩ୟ—୧୮।୨୫—

"ନୈତଦ୍ ଯୁକ୍ତିସହଂ ବାକ୍ୟଂ ହିଂସା ଧର୍ମାୟ ଚେଷ୍ୟତେ" ।

ପୁରୁଷୋତ୍ତମଙ୍କର ପୂଜା ପୁରାରେ ଆରମ୍ଭ ହୋଇନଥିଲା, କମ୍ବା ଆରମ୍ଭ ହୋଇଥିଲେ, ପ୍ରସିଦ୍ଧିଲାଭ କରିନଥିଲା । ଏ ପୁରାଣର ଅଧ୍ୟୟନରୁ ଜଣାଯାଏ ଯେ ଐ ପୁରାଣକାର ଓଡ଼ିଶାର ଲୋକ ନୁହନ୍ତି । ଓଡ଼ିଶା ବିଷୟରେ ଏହାଙ୍କ ଧାରଣା ଅଳ୍ପ । ସେତେବେଳକୁ ଓଡ଼ିଶାକୁ କଳିଙ୍ଗ ନାମରେ ଅଣଓଡ଼ିଶା ପ୍ରଦେଶର ଲୋକେ ବିଶେଷତ୍ୱବରେ ଜାଣୁଥିଲେ । ବୋଧହୁଏ ଏହା ହେଉଛି ଐରରାଜା କଳିଙ୍ଗ ସମ୍ରାଟ ଖାରବେଳଙ୍କ ସମୟ । ତେଣୁ ଉତ୍କଳର ଅନେକ ଅଂଶ କଳିଙ୍ଗର ଅନ୍ତର୍ଭୁକ୍ତ ହୋଇଯାଇଛି । ଉତ୍କଳ ଏକ କ୍ଷୁଦ୍ର ରାଜ୍ୟ ଭାବରେ ନିଜର ସତ୍ତା ହରାଇଛି । ଫଳରେ କଳିଙ୍ଗର ଏ ନାମ ପୁରାଣରେ ବହୁଳ ଭାବରେ ଦେଖିବାକୁ ମିଳୁଛି ।

## ବିଷ୍ଣୁପୁରାଣରେ କଳିଙ୍ଗ—

ବିଷ୍ଣୁପୁରାଣର ଦ୍ୱିତୀୟସ୍କନ୍ଧରେ କୁଳପର୍ବତ ପ୍ରସଙ୍ଗରେ ମହେନ୍ଦ୍ର ପର୍ବତର ବର୍ଣ୍ଣନା ଅଛି । (୫୪) ଏ ପର୍ବତରୁ ଋଷିକୁଲ୍ୟାନଦୀ ପ୍ରବାହିତ ହେବା କଥା ମଧ୍ୟ ବର୍ଣ୍ଣିତ ହୋଇଛି । (୫୫) ତାହା ସହିତ କୁହାଯାଇଛି, ଏହି ମହେନ୍ଦ୍ର ପର୍ବତ ନିକଟରେ କଳିଙ୍ଗ ଦେଶ ଅବସ୍ଥିତ । (୫୬) ଏହି ପୁରାଣର ତୃତୀୟସ୍କନ୍ଧରେ 'ଯମଗୀତା' ବର୍ଣ୍ଣନ ପ୍ରସଙ୍ଗରେ ତିନଥର କଳିଙ୍ଗର ନାମ ଆସୁଅଛି । (୫୭) ଏହିପରି ଅନେକବାର କଳିଙ୍ଗର ସୂଚନା ଦିଆଯାଇଥିଲେ ମଧ୍ୟ ଉତ୍କଳ, ଓଡ୍ର, ତୋଷଳ ଇତ୍ୟାଦି ପ୍ରାଚୀନ ଓଡ଼ିଶାର ନାମଗୁଡ଼ିକ ଏ ପୁରାଣରେ ମିଳେ ନାହିଁ । ତେବେ ଏହି ଉଦ୍ଧୃତିଗୁଡ଼ିକରୁ ଏତିକିମାତ୍ର ଜଣାଯାଉଛି ଯେ, ଏ ପୁରାଣକାର କଳିଙ୍ଗ ବିଷୟରେ ଅବହିତ ଥିଲେ । ଭୁବନେଶ୍ୱର ଓ ପୁରୀ ଅଞ୍ଚଳ ପ୍ରାଚୀନ ଯୁଗରେ, ବିଶେଷକରି ଅଶୋକ ଓ ଖାରବେଳଙ୍କ ସମୟରେ କଳିଙ୍ଗ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ମାତ୍ର ପରେ, ଅର୍ଥାତ୍ ସ୍କନ୍ଦପୁରାଣର ଉତ୍କଳଖଣ୍ଡବେଳକୁ

---

୫୪ । ବିଷ୍ଣୁପୁରାଣ—୨ସ୍କ—୩।୩

୫୫ । ବିଷ୍ଣୁପୁରାଣ—୨ସ୍କ—୩।୧୩-୧୪—ପୃ ୧୪୪

୫୬ । ବିଷ୍ଣୁପୁରାଣ—୨ସ୍କ—୩।୧୫—

"ପୁଣ୍ଡ୍ରାଃ କଳିଙ୍ଗା ମଗଧା ଦକ୍ଷିଣାଦ୍ୟାଶ୍ଚ ସର୍ବଶଃ"—ପୃ ୧୪୪

୫୭ । ବିଷ୍ଣୁପୁରାଣ—୩ସ୍କ—୭।୯—ପୃ ୨୨୩—

"ପରମମାଗତୋ ନସ୍ତ ସଖା କଳିଙ୍ଗକୋ ଦ୍ୱିଜଃ" ॥

,, —୩ସ୍କ—୭।୧୨—ପୃ ୨୨୪—

"ପ୍ରାହ କଳିଙ୍ଗକୋ ବିପ୍ର ଧୃତ୍ୱା ତସ୍ୟ ମୁନେର୍ବଚଃ" ॥

,, —୩ସ୍କ—୭।୩୬—ପୃ ୨୨୭—

"କଳିଙ୍ଗଦେଶା ଦମେତ୍ୟ ପ୍ରୀତେନ ସୁମହାତ୍ମନା" ॥

ଅର୍ଥାତ୍, ଅଷ୍ଟମଶତାବ୍ଦୀ ବେଳକୁ ଏ ଅଞ୍ଚଳ ଓଡ୍ର ବା ଉତ୍କଳର ଅନ୍ତର୍ଗତ ହୋଇଥିଲା । ସେ ଯାହାହେଉ, ବ୍ରହ୍ମପୁରାଣବେଳକୁ କଳିଙ୍ଗ ବିଷୟରେ କୁହାଯାଉଥିଲେ ମଧ୍ୟ ପୁରୁଷୋତ୍ତମକ୍ଷେତ୍ର ବିଷୟରେ ସେପରି କିଛି ବଳିଷ୍ଠ ସୂଚନା ଏ ପୁରାଣରେ ନାହିଁ । ଖାଲି ଏତିକି ଜଣାଯାଉଛି, କଳିଙ୍ଗ ଏକ ଅନାର୍ଯ୍ୟ ବା ଦ୍ରାବିଡ଼ ରାଜ୍ୟ ନୁହେଁ । ଏଥିରେ ଚାରିବର୍ଣ୍ଣର ଲୋକମାନେ ଅଛନ୍ତି । ଏଠାରେ ବ୍ରାହ୍ମଣମାନେ ବାସ କରନ୍ତି ଓ ନିଜର କୌଳିକ କର୍ମ ଯଜ୍ଞ ଯାଗାଦି ସମ୍ପାଦନ କରନ୍ତି । କିନ୍ତୁ ପୁରୁଷୋତ୍ତମ ପୂଜା କରନ୍ତି କି ନା; ସେ ବିଷୟରେ କିଛି କୁହାଯାଇନାହିଁ । ତେବେ ଏହି ପୁରାଣର ପ୍ରଥମ ଭାଗରେ ଆମେ ପୁରୁଷୋତ୍ତମ କ୍ଷେତ୍ରର (?) ଏକ ଅସ୍ପଷ୍ଟ ସୂଚନା ପାଉ । (୫୮) କିନ୍ତୁ ତାହା ସେପରି ସ୍ପଷ୍ଟ ନ ଥିବାରୁ ଆମ ପକ୍ଷରେ ଗ୍ରହଣ କରିବା ଅତ୍ୟନ୍ତ କଷ୍ଟକର । ଏଠାରେ କୁହାଯାଇଛି, "କଣ୍ଡୁମୁନିଙ୍କର ତପସ୍ୟା କ୍ଷୀଣ ହୋଇସିବାପରେ ସେ (ମୁକ୍ତିପାଇଁ) ପୁରୁଷୋତ୍ତମ ନାମକ ଏକ ବିଷ୍ଣୁପୀଠ (ଆୟତନ ବା ମନ୍ଦିର ଅଥବା କ୍ଷେତ୍ର)କୁ ଗଲେ" । ଏଠି ପ୍ରଶ୍ନ ଆସୁଛି, ଏ ପୁରୁଷୋତ୍ତମ ନାମକ ବିଷ୍ଣୁଙ୍କର ଆୟତନଟି କିଏ ? ଏହା ଯଦି ପୁରୀ ବା ପୁରୁଷୋତ୍ତମ କ୍ଷେତ୍ର ହୁଏ, ତେବେ ବୁଝିବାକୁ ହେବ ଯେ, ବ୍ରହ୍ମପୁରାଣ (ପ୍ରଥମଭାଗ) ବେଳକୁ ଅର୍ଥାତ୍ ଖ୍ରୀ: ପୂ. ଦ୍ୱିତୀୟ ଶତକ ବେଳକୁ ପୁରୁଷୋତ୍ତମ କ୍ଷେତ୍ରରେ ପୁରୁଷୋତ୍ତମ ବିଷ୍ଣୁ ପୂଜିତ ହେଉଥିଲେ । ଏହି ସମ୍ଭାବନା କଦାପି ଏଡ଼ାଇ-ଦେବାର ନୁହେଁ । ପ୍ରଥମ ଶତାବ୍ଦୀବେଳକୁ ପଦ୍ମପୁରାଣ ଓ ପରେ ପରେ ମତ୍ସ୍ୟପୁରାଣ ମଧ୍ୟ ପୁରୁଷୋତ୍ତମକ୍ଷେତ୍ରରେ ପୁରୁଷୋତ୍ତମ ବିଷ୍ଣୁ ପୂଜାକୁ ସାବ୍ୟସ୍ତ କରିଛନ୍ତି । ଆଉ ଶହେ ଦୁଇଶହ ବର୍ଷ ଆଗରୁ ସେ ପୂଜା ଯେ ବ୍ରହ୍ମପୁରାଣର ପ୍ରଥମଭାଗ ବେଳକୁ ଥିବ; ଏଥିରେ ଅସମ୍ଭବ ବା କ'ଣ ଅଛି ? ତଥାପି ଏହାକୁ ଗ୍ରହଣ କରିବା ଆମପାଇଁ କଷ୍ଟକର ହୋଇପଡ଼ୁଛି । କାରଣ, ଏ ପୁରାଣର ଲେଖକ ଏକ ବ୍ୟକ୍ତି ନୁହନ୍ତି । ସେ ପୁଣି ଓଡ଼ିଶାର ମୋଟେ ନୁହନ୍ତି । ପୁଣି ଏହା ଏକ ବିଷ୍ଣୁସର୍ବସ୍ୱ ପୁରାଣ । ତଥାପି ସନ୍ଦେହ ହେଉଛି, ଯଦି ସେତେବେଳେ ପୁରୁଷୋତ୍ତମକ୍ଷେତ୍ରରେ ବିଷ୍ଣୁପୂଜା ଥିଲା, ତେବେ

---

୫୮ । ବ୍ରହ୍ମପୁରାଣ—ପ୍ରଥମ ଭାଗ—୧୫/୫୭—

"ସ ତୃପି ଭଗବାନ୍ କଣ୍ଡୁ କ୍ଷୀଣେ ତପସି ସତ୍ତମଃ
ପୁରୁଷୋତ୍ତମମାଖ୍ୟାତଂ ବିଷ୍ଣୋରାୟତନଂ ଯଯୌ"

ଦ୍ରଷ୍ଟବ୍ୟ—ଏଠାରେ ବିଷ୍ଣୁଙ୍କର ଆୟତନ ବା ନିବାସସ୍ଥାନରେ ନାମ ପୁରୁଷୋତ୍ତମ ବୋଲି କୁହାଯାଇଛି । ଏ ଉକ୍ତିକୁ ବିଚାରକୁ ନ ନେବା ଅର୍ଥ ଇତିହାସକୁ ଫାଙ୍କି ମାରିବା । ଅତଏବ ପୁରୁଷୋତ୍ତମକ୍ଷେତ୍ରର ପ୍ରାଚୀନତା ପାଇଁ ଏ ଉକ୍ତିର ଗୁରୁତ୍ୱ ରହିଅଛି ।

ଲେଖକ କାହିଁକି ତାହା ସଂକ୍ଷେପରେ ହେଲେ ବର୍ଣ୍ଣନା କଲେ ନାହିଁ ? ଏପରି ସନ୍ଦେହ ଆସିବା ସ୍ୱାଭାବିକ । ମାତ୍ର ଏହାର ଉତ୍ତର ମଧ୍ୟ ଦୁର୍ଲଭ ନୁହେଁ । ଆଗରୁ କହିଛୁ, ଯେ ଏ ପୁରାଣ ଜଣେ ଲେଖକଙ୍କ ଦ୍ୱାରା ଏକସମୟରେ ଲେଖାଯାଇ ନାହିଁ । ଏହାର ପ୍ରଥମ-ଭାଗ ଖ୍ରୀ. ପୂ. ଦ୍ୱିତୀୟ ଶତାବ୍ଦୀରେ ଲେଖାଯାଇଥିଲେ ମଧ୍ୟ ଚତୁର୍ଥଖଣ୍ଡ ପ୍ରାୟ ଗୁପ୍ତରାଜତ୍ୱ କାଳରେ ଲେଖାଯାଇଛି । ପଦ୍ମପୁରାଣ ଓ ମତ୍ସ୍ୟପୁରାଣରୁ ମିଳୁଥିବା ପ୍ରମାଣ ଅନୁସାରେ, ଗୁପ୍ତରାଜତ୍ୱବେଳକୁ ନିଶ୍ଚୟ ପୁରୁଷୋତ୍ତମ କ୍ଷେତ୍ରରେ ପୁରୁଷୋତ୍ତମଙ୍କର ପୂଜା ଚାଲୁଥିଲା । ତଥାପି ହରିବଂଶ ପୁରାଣର ଚତୁର୍ଥ ଖଣ୍ଡରେ ଓ ପଞ୍ଚମ ଖଣ୍ଡରେ କଳିଙ୍ଗର ନାମ ମିଳୁଥିଲେ ସୁଦ୍ଧା ପୁରୁଷୋତ୍ତମ କ୍ଷେତ୍ରର ଆଭାସ ନାହିଁ । ରୁକ୍ମିଣୀ ସ୍ୱୟଂବର ବେଳକୁ କଳିଙ୍ଗରାଜ ସେଠାକୁ ଯାଇଥିବାର କଥା ଏ ପୁରାଣର ପଞ୍ଚମଭାଗରେ ବର୍ଣ୍ଣିତ ହୋଇଛି । (୫୯) ଏହାଛଡ଼ା ଆହୁରି ଉଦାହରଣ କଳିଙ୍ଗର ପ୍ରସଙ୍ଗ ଏହି ପୁରାଣର ପଞ୍ଚମ ଭାଗରେ ଅଛି । (୬୦) ପୁଣି ଚତୁର୍ଥଭାଗରେ କୁହାଯାଇଛି, "କଳିଙ୍ଗ, ମାହିଷ, ଭୌମ ଆଦି ଦେଶକୁ ଗୁହନନ୍ଦଣ ଭୋଗ କରିବେ" । (୬୧) ଏହା ହୁଏତ ଗୁହଗଣଙ୍କ ରାଜତ୍ୱକାଳ ହୋଇପାରେ ! ଯେ ଯାହାହେଉ, ଏତେ କଥାର ଉଲ୍ଲେଖ ଥାଇ ମଧ୍ୟ ଲେଖକ ପୁରୁଷୋତ୍ତମ ପୂଜା ତଥା ପୁରୁଷୋତ୍ତମକ୍ଷେତ୍ର ବିଷୟରେ ନୀରବ । ମାତ୍ର ଏହାର ଅର୍ଥ କଦାପି ହୋଇନପାରେ ଯେ ପଞ୍ଚମ ଶତାବ୍ଦୀବେଳକୁ ଅର୍ଥାତ୍ ଗୁପ୍ତରାଜତ୍ୱର ଶେଷ ସମୟକୁ ପୁରୀରେ ପୁରୁଷୋତ୍ତମ ପୂଜିତ ହେଉନଥିଲେ । ହୁଏତ ସେକଥା ହରିବଂଶପୁରାଣରେ ବର୍ଣ୍ଣନା କରିବାପାଇଁ ଲେଖକଙ୍କର ପ୍ରତ୍ୟକ୍ଷ ବା ପରୋକ୍ଷ ଅନୁଭୂତି ନଥିଲା । ଅଥବା ପୁରୁଷୋତ୍ତମ ପୂଜା ଥିଲେ ମଧ୍ୟ, ଏ ପୁରୁଷୋତ୍ତମ ସାରାଭାରତରେ ସେତେବେଳକୁ ପ୍ରସିଦ୍ଧ ହୋଇନଥିଲେ । ତେଣୁ ସବୁ ପୁରାଣରେ ସ୍ଥାନ ପାଇପାରିଲେ ନାହିଁ । ଅଷ୍ଟମ ଶତାବ୍ଦୀ ବେଳକୁ ସ୍କନ୍ଦପୁରାଣର, ଉତ୍କଳଖଣ୍ଡରେ ଲେଖାଯିବାପରେ ପୁରୁଷୋତ୍ତମ ଜଗନ୍ନାଥ ସାରାଭାରତରେ ପ୍ରସିଦ୍ଧିଲାଭ କଲେ ଓ ପରେ ପରେ ସେଥିପାଇଁ ଅନେକ ଧର୍ମଗୁରୁ ପୁରୀକୁ ଆସିଲେ । (୬୨) ସେହି ଦୃଷ୍ଟିରୁ କୁହାଯାଇପାରେ ଯେ ହରିବଂଶପୁରାଣର ଲେଖକମାନେ କଳିଙ୍ଗ ବିଷୟରେ ସାମାନ୍ୟ ଜାଣିଥିଲେ ମଧ୍ୟ ସମ୍ପୂର୍ଣ୍ଣ ଅବହିତ ନ ଥିଲେ । କୁଳପର୍ବତ

---

୫୯ । ହରିବଂଶପୁରାଣ—୫ମ ଭାଗ—୨୮/୧୦—ପୃ ୪୫୭—
"କଳିଙ୍ଗରାଜପ୍ରମୁଖା ରୁକ୍ମିଣଂ ବାକ୍ୟମବ୍ରୁବନ୍" ॥

୬୦ । ହରିବଂଶପୁରାଣ—୫ମ ଭାଗ—୨୮/୧୫, ୧୭, ୨୪—ପୃ ୪୫୮ ।

୬୧ । ହରିବଂଶପୁରାଣ—୪ର୍ଥ ଭାଗ—୨୪/୬୫ ପୃ ୩୬୧ ।

୬୨ । ମୋର ପି. ଏଚ୍. ଡ଼ି ନିବନ୍ଧ ତଥା "The land of Vishun'—D. K. Publisher, Delhi, 1976. (ଶେଷ ଅଧ୍ୟାୟ—The date of Purusottama Mahatmyam) ଦ୍ରଷ୍ଟବ୍ୟ ।

କ୍ରମରେ ମହେନ୍ଦ୍ର ପର୍ବତ, କଳିଙ୍ଗଦେଶ; ଏ ସବୁର ଯାହା ଉଲ୍ଲେଖ କଲେ, ସେ ସବୁ କେବଳ ପୂର୍ବବର୍ତ୍ତୀ ଗ୍ରନ୍ଥ, ମହାଭାରତ ଆଦି ଗ୍ରନ୍ଥମାନଙ୍କର ଉଲ୍ଲେଖ ଉପରେ ପ୍ରତିଷ୍ଠିତ । ମହାଭାରତରୁ ଜଣାଯାଏ ଯେ, ମହାଭାରତଯୁଦ୍ଧରେ କଳିଙ୍ଗରାଜ ଦୁର୍ଯ୍ୟୋଧନଙ୍କ ପକ୍ଷରେ ଯୋଗ ଦେଇଥିଲେ ଓ ଉତ୍କଳରାଜ ନିରପେକ୍ଷ ଥିଲେ । ତେଣୁ ବୋଧହୁଏ ବିଷ୍ଣୁପୁରାଣର ଲେଖକଙ୍କର କଳିଙ୍ଗ ଉପରେ ପ୍ରତ୍ୟକ୍ଷ ଜ୍ଞାନ ନ ଥିଲେ ମଧ୍ୟ, କଳିଙ୍ଗ ବୋଲି ଗୋଟିଏ ଦେଶ ଅଛି ବୋଲି ତାଙ୍କୁ ଅଜଣା ନଥିଲା । ମାତ୍ର ପୁରୁଷୋତ୍ତମକ୍ଷେତ୍ର ସେତେ ପ୍ରସିଦ୍ଧ ନ ଥିବାରୁ ତାହା ବିଷୟରେ ଉଲ୍ଲେଖ କଲେ ନାହିଁ । ଯଦି ପୂର୍ବୋକ୍ତ "ପୁରୁଷୋତ୍ତମ ମାଖ୍ୟାତଂ ବିଷ୍ଣୋରାୟତନଂ ଯଯୌ ।" ଏହି ଉକ୍ତିରେ (୬୩) କ୍ଷେତ୍ରହିଁ ପୁରୁଷୋତ୍ତମକ୍ଷେତ୍ର ବୋଲି ଉଲ୍ଲେଖ ହୋଇଥାଏ, ତେବେ ତ ପୁରୁଷୋତ୍ତମକ୍ଷେତ୍ର ସେତେବେଳକୁ ପ୍ରତିଷ୍ଠିତ ହୋଇସାରିଥିଲା ବୋଲି ବୁଝିବାକୁ ହେବ । ଅତଏବ ଏତେ ଶଙ୍କା, ସନ୍ଦେହ, ବାଦାନୁବାଦର ଆଉ ଅବକାଶ ରହୁନାହିଁ ।

କେତେକ ସମାଲୋଚକ ପୁରୁଷୋତ୍ତମ-ଜଗନ୍ନାଥଙ୍କର ପୂଜା ବୈଦିକ ଯୁଗରୁ ପ୍ରତିଷ୍ଠିତ ବୋଲି ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି । ସେମାନେ ଋଗ୍‌ବେଦର ଦଶମ ମଣ୍ଡଳରେ ଥିବା ଏକ ସୂକ୍ତକୁ ଏଥିପାଇଁ ଯଥେଷ୍ଟ ବୋଲି ଧରିଛନ୍ତି । (୬୪) ତ୍ରୟୋଦଶ ଶତକ ବେଳକୁ ଶାୟଣାଚାର୍ଯ୍ୟ ଏହାର ବ୍ୟାଖ୍ୟା କରିବାକୁ ଯାଇ ଦୁଇପ୍ରକାର ଅର୍ଥ କରିଛନ୍ତି । ଗୋଟିଏ ଅର୍ଥ ଏହାର ଅଲକ୍ଷ୍ମୀନାଶକ ଏବଂ ଅନ୍ୟ ଅର୍ଥଟି 'ଅପର ଆହୁ' ବୋଲି କହି ପୁରୁଷୋତ୍ତମ ଜଗନ୍ନାଥଙ୍କର ସାଗରରେ ପ୍ଳବମାନ ଦାରୁ ବିଷୟରେ ଅର୍ଥ କରିଅଛନ୍ତି । ଏ ଉଭୟ ଅର୍ଥକୁ ବୁଝାଇବାରେ ଶାୟଣାଚାର୍ଯ୍ୟ ନିଜେ ମଧ୍ୟ ସନ୍ଦିହାନ । ତା'ଛଡ଼ା ତାଙ୍କ ବେଳକୁ ପୁରୀରେ ଜଗନ୍ନାଥ ପ୍ରସିଦ୍ଧ ହୋଇସାରିଥିଲେ । ତେଣୁ ସେ ଏପରି ଏକ ଅର୍ଥ ମୂଳ ଅର୍ଥ ସହିତ ଯୋଡ଼ିଦେଲେ । କିନ୍ତୁ ବେଦର ତାଙ୍କ ପୂର୍ବବର୍ତ୍ତୀ ଭାଷ୍ୟକାରମାନେ । ସେହି ଅଲକ୍ଷ୍ମୀନାଶକ ଅର୍ଥଟିକୁ ଗ୍ରହଣ କରିଛନ୍ତି । ଏଣୁ ଦାରୁଦେବତା ଜଗନ୍ନାଥଙ୍କର ବେଦର ଏ ଶ୍ଳୋକ ସହିତ କୌଣସି ସମ୍ପର୍କ ନାହିଁ । ଅତଏବ ନିର୍ବିବାଦରେ କୁହାଯାଇପାରେ ଯେ ଜଗନ୍ନାଥ ବୈଦିକ ଯୁଗରୁ ପ୍ରତିଷ୍ଠିତ ନୁହନ୍ତି ।

---

୬୩ । ବିଷ୍ଣୁପୁରାଣ—ପ୍ରଥମ ଭାଗ—୧୫/୫୨—ପୃ ୮୭ ।

୬୪ । ଋଗ୍—୧୦ମ ମଣ୍ଡଳ, ୧୫୫/୩—

ଅଦୋ ଯଦାରୁ ପ୍ଳବତେ ସିନ୍ଧୋଃ ପାରେ ଅପୁରୁଷମ୍ ।
ତଦାରଭସ୍ୱ ଦୁର୍ହଣୋ ତେନ ଗଚ୍ଛ ପରସ୍ତରମ୍ ॥

ପୁଣି କେତେକ ପଣ୍ଡିତ ମନେକରନ୍ତି ଯେ ରାମାୟଣ ଯୁଗରୁ ଜଗନ୍ନାଥଙ୍କ ପୂଜା ପ୍ରଚଳିତ । କାରଣ, ଉତ୍ତରକାଣ୍ଡରେ ବର୍ଣ୍ଣିତ ଅଛି, ଯେ ରାମଚନ୍ଦ୍ର ଅସୁରରାଜା ଲଙ୍କାଧିପତି ବିଭୀଷଣଙ୍କୁ କହିଛନ୍ତି, "ହେ ବିଭୀଷଣ ! ତୁମେ ଇକ୍ଷ୍ୱାକୁ ବଂଶର କୁଳ-ଦେବତା ଜଗନ୍ନାଥଙ୍କୁ ଉପାସନା କର (୭୫) । ମାତ୍ର, ଜଗନ୍ନାଥ ବୋଲି ଏଠାରେ ଇକ୍ଷ୍ୱାକୁ ବଂଶର କୁଳଦେବତାଙ୍କୁ ଏଠାରେ ଯାହା କୁହାଯାଇଛି, ତାହା ଏକ ବିଶେଷଣାତ୍ମକ ପଦ ହୋଇପାରେ । ଏହି କୁଳଦେବତାଙ୍କୁ ଜଗନ୍ନାଥ ବା ଜଗତର ପ୍ରଭୁ ବୋଲି କୁହାଯାଇଛି । ତା'ଛଡ଼ା ଏହି ଦେବତା ଯେ ପୁରୁଷୋତ୍ତମକ୍ଷେତ୍ରର ଦେବତା; ଏପରି କିଛି ଉଲ୍ଲେଖ ନାହିଁ । ଅତଏବ ଉପଯୁକ୍ତ ପ୍ରମାଣ ଅଭାବରୁ ଏହା ବର୍ତ୍ତମାନ ଅବସ୍ଥାରେ ଗ୍ରହଣୀୟ ନୁହେଁ । ବାଲ୍ମୀକି ରାମାୟଣରେ ରାମଚନ୍ଦ୍ରଙ୍କୁ ମର୍ଯ୍ୟାଦା ପୁରୁଷୋତ୍ତମ ବୋଲି କୁହାଯାଇଛି । ମାତ୍ର ପୁରୁଷୋତ୍ତମକ୍ଷେତ୍ରରେ ପୁରୁଷୋତ୍ତମଙ୍କର ଉପାସନାର କଥା ସେଥିରେ କେଉଁଠି ହେଲେ ନାହିଁ ।

ମହାଭାରତ ସମୟବେଳକୁ ପୁରୀ ଅଞ୍ଚଳ କଳିଙ୍ଗ ସାମ୍ରାଜ୍ୟର ଅନ୍ତର୍ଗତ ଥିଲା । ସେତେବେଳକୁ କଳିଙ୍ଗ ବୈତରଣୀ ନଦୀ ପର୍ଯ୍ୟନ୍ତ ନିଜର ସୀମାକୁ ସାବ୍ୟସ୍ତ କରୁଥିଲା । (୭୬) ଏଥିରେ ଲେଖାଅଛି—"ଏତେ କଳିଙ୍ଗ କୌନ୍ତେୟ ଯତ୍ର ବୈତରଣୀ ନଦୀ ।" କଳିଙ୍ଗର ଉଲ୍ଲେଖ ଏହିପରି ରହିଲେ ମଧ୍ୟ, ସେଥିରେ କେଉଁଠିହେଲେ ପୁରୁଷୋତ୍ତମ-କ୍ଷେତ୍ର, ପୁରୁଷୋତ୍ତମ ଜଗନ୍ନାଥଙ୍କ ବିଷୟରେ ଆଲୋଚନା କରାଯାଇ ନାହିଁ । କେବଳ ବନପର୍ବରେ ଏକ 'ବେଦୀ' (୭୭)ର କଥା ଆସୁଛି । ଯୁଧିଷ୍ଠିର ଯେତେବେଳେ ଭାଇ-ମାନଙ୍କ ସହିତ ଲୋମଶ ଋଷିଙ୍କୁ ସାଙ୍ଗରେ ନେଇ ଆସି କଳିଙ୍ଗରେ ପହଞ୍ଚିଲେ, ସେତେବେଳେ ପ୍ରଥମେ ପବିତ୍ର ବୈତରଣୀ ନଦୀରେ ସ୍ନାନ କଲେ । ସେହି ସମୟରେ ଲୋମଶ ଋଷି ଯୁଧିଷ୍ଠିରଙ୍କୁ କଳିଙ୍ଗର ତୀର୍ଥସ୍ଥାନମାନଙ୍କ ବିଷୟରେ ଅବହିତ କରାଇବାକୁ ଯାଇ ତାଙ୍କୁ ସାଗରତୀରସ୍ଥ ଏକ ବେଦୀ ବିଷୟରେ ବୁଝାଇଛନ୍ତି । ସେ କହିଛନ୍ତି, ଏହି ବେଦୀ ଏକ 'ସତ୍ସ୍ଥାନ' ସ୍ୱରୂପ ଓ ଏହାକୁ ଆରୋହଣ କଲେ ଲୋକେ ବୀର୍ଯ୍ୟବାନ୍ ଓ ବଳବାନ୍ ହୁଅନ୍ତି ।

---

୭୫ । ବାଲ୍ମୀକି ରାମାୟଣ—ଉତ୍ତରାକାଣ୍ଡ—୧୦୮/୨୮—
"କିଂ ଚାନ୍ୟଦ୍ ବକ୍ତୁମିଚ୍ଛାମି ରାକ୍ଷସେନ୍ଦ୍ର ମହାବଳଃ ।
ଆରାଧୟ ଜଗନ୍ନାଥଂ ଇକ୍ଷ୍ୱାକୁ କୁଳଦୈବତମ୍" ॥

୭୬ । ସଂସ୍କୃତ ମହାଭାରତ—୩/୧୧୪/୩-୫, ୧୨ ।

୭୭ । ମହାଭାରତ—(ସଂସ୍କୃତ)—ବନପର୍ବ—ଅ ୧୧୪/୩-୨୪ ।

ମହାଭାରତର ଏହି ବେଦୀକୁ ଅନେକ ସମାଲୋଚକ ପୁରୁଷୋତ୍ତମକ୍ଷେତ୍ରସ୍ଥ ମହା-ବେଦୀ ବୋଲି ବିଚାର କରନ୍ତି । କେତେକଙ୍କ ମତରେ ଏହା ସ୍କନ୍ଦପୁରାଣ ବର୍ଣ୍ଣିତ ଯଜ୍ଞ-ବେଦୀ ହୋଇପାରେ ଓ ଅନ୍ୟ କେତେକଙ୍କ ମତରେ ଏହା ବଡ଼ଦେଉଳର ସେହି ଉର୍ତ୍ତ୍ରୁଙ୍ଗ ବିଶାଳ ଆୟତନ ବା ଆବାସଭୂମି ହୋଇପାରେ । ସେ ଯାହାହେଉ, ଏ ଉଭୟସ୍ଥିତି ସମୁଦ୍ର କୂଳରେ ଅବସ୍ଥିତ । ଯଦି କୁହାଯାଏ, ଏହା ସମୁଦ୍ର କୂଳରୁ କିଛି ଦୂରରେ ଅବସ୍ଥିତ ବୋଲି, ତେବେ ତାହା ହୁଏତ ଠିକ୍ ହେବ ନାହିଁ । କାରଣ ତ୍ରୟୋଦଶ ଶତାବ୍ଦୀରେ କୋଣାର୍କ ମନ୍ଦିର ନିର୍ମାଣ କରାଗଲାବେଳେ ସମୁଦ୍ର ସେ ମନ୍ଦିରର ଅତି ନିକଟରେ ଥିଲା । କିନ୍ତୁ ଏଇ ସାତଶହ ବର୍ଷ ମଧ୍ୟରେ ସମୁଦ୍ର ବେଶ୍ କିଛି ଦୂରକୁ ଘୁଞ୍ଚିଯାଇଛି । ତେବେ, ସାତଶହ ଭିତରେ ଯେବେ ସମୁଦ୍ର ଏତେ ଘୁଞ୍ଚିଯାଇପାରେ, ତେବେ ମହାଭାରତଯୁଗରୁ ଆଜି ଭିତରେ ଅର୍ଥାତ୍ ପ୍ରାୟ ଅଢ଼େଇହଜାର ବର୍ଷ ଭିତରେ ସମୁଦ୍ର କାହିଁକି ପୁରୀରେ ଶ୍ରୀମନ୍ଦିରଠାରୁ ଅନ୍ତତଃ ଏକ କିଲୋମିଟର ଘୁଞ୍ଚି ନଥିବ ? ଆମ ହାତରେ ଏତେ ପ୍ରମାଣ ଥାଇ ମଧ୍ୟ ମହାଭାରତରେ ବର୍ଣ୍ଣିତ 'ବେଦୀ'କୁ 'ମହାବେଦୀ' ବୋଲି କହିବାରେ ଟିକିଏ ଅନ୍ତରାୟ ଆସୁଛି । କାରଣ, ଏ ବେଦୀ ଏକ 'ମହାବେଦୀ' ବା 'ବିଶାଳ ବେଦୀ' ହୋଇପାରେ । ଯେହେତୁ ଏହା ଏକ 'ସସ୍ଥାନ' ସ୍ୱରୂପ । କିନ୍ତୁ ମହାଭାରତରେ ଏହାକୁ 'ମହାବେଦୀ' ବୋଲି ଅଭିହିତ କରାଯାଇନାହିଁ । ତା'ଛଡ଼ା ଏହି ସଂସ୍କୃତ ମହାଭାରତର ବନପର୍ବର ଅନ୍ୟ ଏକ ସ୍ଥାନରେ ଇନ୍ଦ୍ରଦ୍ୟୁମ୍ନ ରାଜା ଯଜ୍ଞ କରାଇବା କଥା ଓ ଯଜ୍ଞଦାନ ପାଇଁ ଅଣାଯାଇଥିଲା ଗୋଖୁରାରେ ଖୋଦିତ ହୋଇଥିବା ଏକ ପୁଷ୍କରିଣୀ କଥା ବର୍ଣ୍ଣିତ ଅଛି (୬୮) । ମାତ୍ର ଏ ଦୁଇଟି ପ୍ରସଙ୍ଗରେ ପୁରୁଷୋତ୍ତମକ୍ଷେତ୍ର, ପୁରୁଷୋତ୍ତମପୂଜା ଅଥବା ଜଗନ୍ନାଥଙ୍କ ସମ୍ପର୍କରେ କିଛି-ହେଲେ ଉଲ୍ଲେଖ ନାହିଁ । ଇନ୍ଦ୍ରଦ୍ୟୁମ୍ନ ଉପାଖ୍ୟାନରେ ବର୍ଣ୍ଣିତ ପୁଷ୍କରିଣୀ ଯେ ପୁରୀର ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ; ସେପରି ମଧ୍ୟ ଠୋକ୍‌ଠାକ୍ କହିହେବ ନାହିଁ । ଅତଏବ ମହାଭାରତ ଯୁଗରେ ଜଗନ୍ନାଥପୂଜା ପୁରୀରେ ହେଉଥିଲା କି ନା କହିବା ବଡ଼ କଠିନ କଥା । କିନ୍ତୁ ଏତିକି ମାତ୍ର କୁହାଯାଇପାରେ ଯେ, ଦାରୁନିର୍ମିତ ଜଗନ୍ନାଥ ସେତେ-ବେଳେ ନଥିଲେ ।

ପୁରୀରେ ଯେତେବେଳେ ଚତୁର୍ଦ୍ଧା ମୂର୍ତ୍ତି ଦାରୁବିଗ୍ରହଙ୍କର ପୂଜା ଚାଲିଲା, ସେତେବେଳକୁ ଲୋକଶ୍ରୁତିରେ ଏତିକିମାତ୍ର କିମ୍ବଦନ୍ତୀ ଶୁଣାଯାଉଥିଲା ଯେ, ନୀଳମାଧବଙ୍କୁ ଏକ ଶବର ପୂଜା କରୁଥିଲା । ପରେ ଜଣେ ହିନ୍ଦୁରାଜା (୬୮A) ତାଙ୍କୁ

---

୬୮ । ମହାଭାରତ—ବନପର୍ବ—୧୯୮ ଅଧ୍ୟାୟ । (ଇନ୍ଦ୍ରଦ୍ୟୁମ୍ନ ଉପାଖ୍ୟାନ)

୬୮ (A) । **ଦ୍ରଷ୍ଟବ୍ୟ**—ଏଠାରେ ହିନ୍ଦୁରାଜା ବୋଲି ଲେଖିବାର ଉଦ୍ଦେଶ୍ୟ ହେଉଛି— ଇନ୍ଦ୍ରଦ୍ୟୁମ୍ନଙ୍କ ସମ୍ବନ୍ଧରେ ଏପର୍ଯ୍ୟନ୍ତ କୌଣସି ଐତିହାସିକ ତଥ୍ୟ

ପୂଜା କରିବାକୁ ଇଚ୍ଛାକଲେ । ମାତ୍ର କେହି ତାହା ଲୁଚାଇଦେବାରୁ ହୁଏତ ସେ ବିଷ୍ଣୁ-ପ୍ରତିମାଙ୍କୁ ପାଇଲେ ନାହିଁ । ଫଳରେ ଦୈବବାଣୀ ବା ସ୍ୱପ୍ନାଦିର ବଶବର୍ତ୍ତୀ ହୋଇ ସମୁଦ୍ରରେ ଭାସୁଥିବା ଏକ କାଷ୍ଠକୁ ଆଣି ସେ ଏହି ବିଗ୍ରହ ନିର୍ମାଣ କରିଛନ୍ତି । ଏ କିମ୍ବଦନ୍ତୀକୁ ବିଶ୍ୱାସ କରି ଲୋକେ ଚାରୋଟି ମୂର୍ତ୍ତି ଦାରୁବିଗ୍ରହଙ୍କୁ ନିଶ୍ଚୟ ମାନୁଥିଲେ । ଏହି କିମ୍ବଦନ୍ତୀକୁ ନେଇ ପୁରାଣକାରମାନେ ତହିଁରେ ପ୍ରକାରାନ୍ତରେ ମହାଭାରତର ବନପର୍ବରେ ଥିବା ମହାବେଦି ଓ ଇନ୍ଦ୍ରଦ୍ୟୁମ୍ନ ଉପାଖ୍ୟାନକୁ ଯୋଡ଼ି ପୌରାଣିକ ଶୈଳୀରେ ବର୍ଣ୍ଣନା କରିବସିଲେ । ଏ ବର୍ଣ୍ଣନା ଲୋକରେ ପ୍ରଚଳିତ କିମ୍ବଦନ୍ତୀକୁ ବିରୋଧ ନ କରି; ବରଂ ପୁଷ୍ପିତ ପଲ୍ଲବିତ କରୁଥିବାରୁ, ଲୋକେ ତାହାକୁ ଆନନ୍ଦରେ ଗ୍ରହଣ କଲେ । ନୋହିଲେ ସେତେବେଳର ରକ୍ଷଣଶୀଳ ଜନତା ଏହାକୁ ବିରୋଧ ନ କରି ଛାଡ଼ି ନଥାନ୍ତେ । ସେହି ଦୃଷ୍ଟିରୁ ପୁରାଣ ବର୍ଣ୍ଣିତ ଜଗନ୍ନାଥଙ୍କ ଉତ୍ପତ୍ତି ସମ୍ବନ୍ଧରେ ଥିବା କାହାଣୀର ସମସ୍ତ କଥା ସତ୍ୟ ନ ହେଲେ ମଧ୍ୟ ଅନ୍ତର୍ନିହିତ କିମ୍ବଦନ୍ତୀଟିର ମୂଳତତ୍ତ୍ୱ ଯେ ଅନେକାଂଶରେ ସତ୍ୟ, ଏକଥା ନିଶ୍ଚିତ ଭାବରେ କୁହାଯାଇପାରେ । ସେହି ତତ୍ତ୍ୱସାର ହେଲା, ବିଷ୍ଣୁପୂଜାର ରୂପାନ୍ତର କ୍ରମଶଃ ଜଗନ୍ନାଥ ମୂର୍ତ୍ତିରେ ହୋଇଛି । ତେଣୁ ଜଗନ୍ନାଥଙ୍କୁ ବିଷ୍ଣୁଦେବତା ବା ମହାବିଷ୍ଣୁ ଭାବରେ ଗ୍ରହଣ କରାଯାଉଛି । ଅତଏବ ଏହି ପରିପ୍ରେକ୍ଷୀରେ ଦେଖିବାର କଥା ଯେ, ମହାଭାରତ ପରେ ପରେ ପୁରାଣ ଯୁଗବେଳକୁ, ଅର୍ଥାତ୍, ବିଷ୍ଣୁପୁରାଣ, ପଦ୍ମପୁରାଣ, ମତ୍ସ୍ୟପୁରାଣ ଆଦି ପୁରାଣ-ଗ୍ରନ୍ଥଗୁଡ଼ିକ ରଚନା କରାଗଲାବେଳକୁ ଭାରତରେ ବିଷ୍ଣୁପୂଜାର ପରମ୍ପରା ଥିଲା କି ନା ? ଯଦି ଥିଲା, ତେବେ ବିଷ୍ଣୁ କିପରି ଭାବରେ ବା କେଉଁ କେଉଁ ନାମରେ ପୂଜିତ ହେଉଥିଲେ ? ଏହି ପରିଚ୍ଛେଦରେ ପୁରାଣରୁ ମିଳୁଥିବା ପ୍ରମାଣମାନଙ୍କ ସାହାଯ୍ୟରେ ଆମର ବିଶ୍ଳେଷଣ ଚାଲିବା ଆବଶ୍ୟକ; ମାତ୍ର ପରବର୍ତ୍ତୀ ପରିଚ୍ଛେଦମାନଙ୍କରେ ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିରୁ ଓ ଶିଳାଲେଖାଦି ପ୍ରମାଣାବଳୀ ସାହାଯ୍ୟରେ ଆମର ଆଲୋଚନା

---

ମିଳିନାହିଁ । ପୁଣି ସବୁ ପୁରାଣ ମଧ୍ୟ ଇନ୍ଦ୍ରଦ୍ୟୁମ୍ନଙ୍କ କଥା କହୁନାହାନ୍ତି । ଏହା ଏକ ପୌରାଣିକ ନାମ । ପଦ୍ମପୁରାଣ ପ୍ରଣେତାଙ୍କ ମତରେ, ପୁରୀକୁ ଆସିଥିବା ରାଜାଙ୍କ ନାମ ରତ୍ନଗ୍ରୀବ । ସେ ଇନ୍ଦ୍ରଦ୍ୟୁମ୍ନ ହୁଅନ୍ତୁ ବା ରତ୍ନଗ୍ରୀବ ହୁଅନ୍ତୁ, ସାରକଥା ହେଲା, ସେ ଜଣେ ହିନ୍ଦୁ ରାଜା । ସେହିପରି ଶବର 'ବିଶ୍ୱାବସୁ' ହୁଅନ୍ତୁ, 'ବସୁ' ହୁଅନ୍ତୁ ବା ଯେ କେହି ହୁଅନ୍ତୁ, ଜଣେ ଶବର ବୋଲି ଧରିନେବା ହିଁ ଠିକ୍ । ସେହିପରି, ସେ ମୂର୍ତ୍ତି 'ନୀଳମାଧବ' ହୁଅନ୍ତୁ ବା 'ନୀଳାଖ୍ୟ ଦେବ' ହୁଅନ୍ତୁ, ତାଙ୍କୁ ଏକ ପଥର ନିର୍ମିତ ଚତୁର୍ବାହୁ ବିଷ୍ଣୁମୂର୍ତ୍ତି ବୋଲି ଗ୍ରହଣ କରିବା ବିଧେୟ । ଅର୍ଥାତ୍ ଜଣେ ଶବର ହିନ୍ଦୁଙ୍କର ଏକ ସୁନ୍ଦର ମୂର୍ତ୍ତିଟିଏ ପାଇ ପୂଜା କରୁଥିଲା । ଏତିକିମାତ୍ର ଗ୍ରହଣୀୟ ।

ସତ୍ୟର ଅନୁସନ୍ଧାନ ପଥରେ ଆଗେଇ ଚାଲିବ । ଏଣୁ, ବର୍ତ୍ତମାନ ପୁରାଣମାନଙ୍କୁ ଅନୁଧ୍ୟାନ କରାଯାଉ ।

## ପୁରାଣରେ ବିଷ୍ଣୁ ପୂଜାର ପରମ୍ପରା—

ମହାଭାରତ ପରେ ଶ୍ରୀକୃଷ୍ଣଙ୍କର ଅଲୌକିକ କାର୍ଯ୍ୟକଳାପ ତାଙ୍କୁ ପରଂବ୍ରହ୍ମ ପଦବୀରେ ଅବସ୍ଥାପିତ କଲା । ଦେଶରେ ବାସୁଦେବ ପୂଜା ନାମରେ ଏବଂ ଶ୍ରୀକୃଷ୍ଣଙ୍କ ପୂଜା ଚାଲିଲା । ଗ୍ରନ୍ଥୋପଯୋଗୀପଦ ପାଣିନିଙ୍କ ଅଷ୍ଟାଧ୍ୟାୟୀ ସୂତ୍ର, The Indica of Megasthenes, ତୈତ୍ତିରୀୟ ଆରଣ୍ୟକ, ପାତଞ୍ଜଳ ମହାଭାଷ୍ୟ ପ୍ରଭୃତି ପ୍ରାଚୀନ ଗ୍ରନ୍ଥରାଜି ଉପୋଦ୍ଘାତ ଭାରତବର୍ଷରେ କୃଷ୍ଣବାସୁଦେବ ପୂଜାର ପରମ୍ପରା ସମ୍ବନ୍ଧରେ ଆଲୋକପାତ କଲେ । ଏହାଛଡ଼ା ଘୋଷୁଣ୍ଡି ଶିଳାଲିପି, ବେସ୍ ନଗର ସ୍ତମ୍ଭଲିପି, ନାନାଘାଟ ଗୁମ୍ଫାଲିପି ଆଦି ଅନେକ ଶିଳାଲିପି ଏହି କୃଷ୍ଣବାସୁଦେବ ରୂପରେ ବିଷ୍ଣୁ ପୂଜାକୁ ସ୍ୱୀକାର କରେ । ଫଳରେ ଦେଖାଯାଏ, ଏ ପ୍ରକାର ବିଷ୍ଣୁ ପୂଜା ଭାରତରେ ବୌଦ୍ଧଧର୍ମର ପ୍ରଚାର ପୂର୍ବରୁ ଚାଲିଆସୁଛି (୬୯) । ମହାଭାରତ, ଶ୍ରୀମଦ୍ ଭଗବଦ୍ ଗୀତା ପ୍ରଭୃତି ପ୍ରାଚୀନ ଗ୍ରନ୍ଥମାନେ ଶ୍ରୀକୃଷ୍ଣଙ୍କୁ ବିଷ୍ଣୁ ଓ ପୁରୁଷୋତ୍ତମ ଭାବରେ ପ୍ରତିଷ୍ଠା କରି ପୁରାଣମାନଙ୍କ ପାଇଁ ସେ ପ୍ରତିଷ୍ଠାକୁ ପୁଷ୍କଳ କରିଦେବାକୁ ଛାଡ଼ିଦେଇଥିଲେ । ବିଷ୍ଣୁ ପୁରାଣ ଲେଖାହେଲା-ବେଳକୁ ଦେଶରେ ଏପ୍ରକାର ଚିନ୍ତାଧାରା ବଳବତୀ ହୋଇଉଠିଥିଲା । ଏଣୁ ସେହି ଚିନ୍ତାଧାରାକୁ ଅଙ୍ଗୀକାର କରି ବିଷ୍ଣୁପୁରାଣକାର ପୁରୁଷୋତ୍ତମଙ୍କର ପରାକାଷ୍ଠା ପ୍ରତିପାଦନ କରିବାକୁ ବହୁଳ ଭାବରେ ଚେଷ୍ଟା କଲେ । ଏହା ପ୍ରାୟ ଖ୍ରୀ: ପୂ: ଦ୍ୱିତୀୟଶତକ ସମୟର ପ୍ରଚେଷ୍ଟା ।

## ବିଷ୍ଣୁ ପୁରାଣରେ ପୁରୁଷୋତ୍ତମ—

ବିଷ୍ଣୁପୁରାଣର ବିଚାରଧାରା ଅନୁସାରେ ନାରାୟଣ, କାଳ, ବାସୁଦେବ, ପରମାତ୍ମା, ବିଷ୍ଣୁ, ଜଗନ୍ନାଥ, ପୁରୁଷୋତ୍ତମ, ବ୍ରହ୍ମ, ବୈକୁଣ୍ଠ, ବାମନ, ସଙ୍କର୍ଷଣ, ଅନନ୍ତ, ଶ୍ରୀକୃଷ୍ଣ ହେଉଛନ୍ତି ଏକ ପର୍ଯ୍ୟାୟବାଚୀ ଶବ୍ଦ । ଅର୍ଥାତ୍, ଏମାନେ ସମସ୍ତେ ଗୋଟିଏ ଦେବତା ଅଟନ୍ତି । ସେ ହିଁ ବିଷ୍ଣୁ, ରୁଦ୍ର । ସେ ବିଷ୍ଣୁରୂପରେ ସଂସାରକୁ ରକ୍ଷାକରନ୍ତି ଓ ରୁଦ୍ର ରୂପରେ ସଂହାର କରନ୍ତି । ଅତଏବ ବିଷ୍ଣୁ ହେଉଛନ୍ତି ରୁଦ୍ରାତ୍ମକ (୭୦) । ସେହି

---

୬୯ । Vaisnavism in Orissa—P. Mukherjee,—pp. 18. and Orissa and her Remains—pp. 406-407 (Particularly pp. 399), of M. M. Ganguli.

୭୦ । ବିଷ୍ଣୁପୁରାଣ—ତୃତୀୟ ଭାଗ—୧୬/୨୭—

"ନୃତ୍ୟତ୍ୟନ୍ତେ ଚ ସଦ୍‌ରୂପସଂତସ୍ଥେ ରୁଦ୍ରାତ୍ମନେ ନମଃ ॥"

ବିଶ୍ବରେ ସାର୍ବବର୍ଣ୍ଣ, ମନୁଷ୍ୟ, ସ୍ଥାବରଜଙ୍ଗମ ସବୁକିଛି ହୋଇଛନ୍ତି ପରମାତ୍ମା ପୁରୁଷୋତ୍ତମ ବିଷ୍ଣୁଙ୍କର ସ୍ୱରୂପ । ଏହା ବିଷ୍ଣୁପୁରାଣର ପରମ ପ୍ରତିପାଦିତ ବସ୍ତୁ ହୋଇଅଛି(୭୯) ।

ପ୍ରଥମେ ଦେଶରେ ଖାଲି ବାସୁଦେବଙ୍କର ପୂଜା ଚାଲିଥିଲା । ସେତେବେଳେ ବାସୁଦେବଙ୍କୁ ସର୍ବମୟ ଓ ପରେ ପରେ ସେ ହିଁ ଅନନ୍ତମୂର୍ତ୍ତି ବୋଲି ପରିକଳ୍ପନା କରାଗଲା । (୭୨) କିନ୍ତୁ ସେ ତତ୍ତ୍ୱ ସାଧାରଣ ଲୋକେ ବୁଝିବାରେ କଷ୍ଟକର ହେବାରୁ ସ୍ୱତନ୍ତ୍ର ଅନନ୍ତ ମୂର୍ତ୍ତି ନିର୍ମାଣ କରାଯାଇ ବାସୁଦେବଙ୍କ ସହିତ ପୂଜା କରାଗଲା । ଫଳରେ ଦେଖାଯାଏ ସେ ଅନନ୍ତ ବାସୁଦେବ ପୂଜା ବହୁ ପ୍ରାଚୀନ ଯୁଗରୁ ଏ ଦେଶରେ ଚାଲିଆସୁଛି ।

ସେତେବେଳେ ଦେଶରେ ଅନନ୍ତ ବାସୁଦେବଙ୍କ ପୂଜାପାଠଙ୍କୁ ଚତୁର୍ବ୍ୟୂହର ପୂଜା ମଧ୍ୟ ପ୍ରତିଷ୍ଠିତ ଥିଲା । ଆଉମଧ୍ୟ ସ୍ଥାନେ ସ୍ଥାନେ ଲକ୍ଷ୍ମୀନାରାୟଣଙ୍କର ପୂଜା ଚାଲିଥିଲା । ଚତୁର୍ବ୍ୟୂହ ପୂଜାରେ ବାସୁଦେବ, ସଂକର୍ଷଣ (ବଳରାମ), ପ୍ରଦ୍ୟୁମ୍ନ (ଶ୍ରୀକୃଷ୍ଣଙ୍କ ପୁତ୍ର), ଅନିରୁଦ୍ଧ (ପ୍ରଦ୍ୟୁମ୍ନଙ୍କ ପୁତ୍ର)ଙ୍କର ଉପାସନା କରାଯାଉଥିଲା । ଏଥିରୁ ଜଣାଯାଉଛି, ମହାଭାରତର ପ୍ରଭାବ ପ୍ରବଳଭାବରେ ସମାଜ ଉପରେ ଥିଲା ଓ ସେଥିପାଇଁ ଯଦୁବଂଶର ଏହି ଚାରିଜଣ ବୀର ପୂଜିତ ହେଉଥିଲେ । ପୁଣି ପ୍ରକାରାନ୍ତରେ ଏ ଚାରିଜଣ ଚତୁର୍ଦ୍ଧା-ମୂର୍ତ୍ତିଙ୍କ କେବଳ ବାସୁଦେବଙ୍କ ସ୍ୱରୂପ ବା ଏକ ମୂର୍ତ୍ତି ଭାବରେ କଳ୍ପନା କରାଯାଉଥିଲା । ପୁଣି ଅନ୍ୟ ଏକ ସମ୍ପ୍ରଦାୟରେ କୃଷ୍ଣ ଓ ବଳରାମ (ଶେଷ)ଙ୍କ ମଧ୍ୟରେ କିଛି ପ୍ରଭେଦ ନଥିଲା । ଦୁହେଁ ଥିଲେ ଏକ ବିଷ୍ଣୁ ମୂର୍ତ୍ତି । ତା'ପରେ ମଧ୍ୟ କୁହାଗଲା, କୃଷ୍ଣ ଓ ବଳରାମ ଉଭୟ ଦୁଇଜଣ ହେଲେ ମଧ୍ୟ, ସେ ଦୁହେଁ ହେଉଛନ୍ତି ସେହି ଚତୁର୍ଦ୍ଧା ମୂର୍ତ୍ତି ଚତୁର୍ବ୍ୟୂହ । ଏକଥା ଅକ୍ରୁରଙ୍କ ମୁଖରେ କୃଷ୍ଣ ବଳରାମଙ୍କୁ ସ୍ତୁତି କରିବା ପ୍ରସଙ୍ଗରେ କୁହାଯାଇଛି । (୭୩) ଏହିପରି ଅନେକରେ ଏକ ଓ ଏକରେ ଅନେକର ସମ୍ପ୍ରଦାୟ ଭାରତର ବୈଷ୍ଣବ ଧର୍ମ ରାଜ୍ୟରେ ପ୍ରଚଳିତ ଥିଲା ।

---

ଆଉ ମଧ୍ୟ:—

(ବ୍ରହ୍ମପୁରାଣେ)—ଯୋ ରୁଦ୍ରଃ ସ ସ୍ୱୟଂ ବିଷ୍ଣୁର୍ଯୋ ବିଷ୍ଣୁଃ ସ ମହେଶ୍ୱରଃ
ଉଭୟୋରନ୍ତରଂ ନାସ୍ତି ପବନାକାଶୟୋରିବ ॥

୭୧ । ବିଷ୍ଣୁପୁରାଣ—ତୃତୀୟ ଭାଗ—୧୭/୧୫-୧୮

୭୨ । ବିଷ୍ଣୁପୁରାଣ—ଷଷ୍ଠ ଭାଗ—୫/୮୧—ପୃ ୫୧୭—
ନାମ ବ୍ୟାଖ୍ୟାମନନ୍ତସ୍ୟ ବାସୁଦେବସ୍ୟ ତତ୍ତ୍ୱତଃ ।

୭୩ । ବିଷ୍ଣୁପୁରାଣ—ପଞ୍ଚମ—୧୮/୫୮—ପୃ ୪୨୯—
"ଓଁ ନମଃ ବାସୁଦେବାୟ ନମଃ ସଂକର୍ଷଣାୟ ଚ ।
ପ୍ରଦ୍ୟୁମ୍ନାୟ ନମସ୍ତୁଭ୍ୟମନିରୁଦ୍ଧାୟ ତେ ନମଃ ॥

ଅନନ୍ତବାସୁଦେବ ପୂଜା ବା ଚତୁର୍ବ୍ୟୂହ ପୂଜାରେ ବାସୁଦେବ ହିଁ ପ୍ରଧାନ ଦେବତା ଥିଲେ । କାରଣ ଅନନ୍ତବାସୁଦେବ ଉଭୟଙ୍କୁ ବାସୁଦେବଙ୍କର ସ୍ୱରୂପ ଓ ଚତୁର୍ବ୍ୟୂହର ସମସ୍ତ ଦେବତାଙ୍କୁ ମିଶାଇ ବାସୁଦେବଙ୍କର ଚତୁର୍ଦ୍ଧା ମୂର୍ତ୍ତି ବୋଲି କୁହାଯାଇଛି । ପୁଣି ଏହି ବାସୁଦେବଙ୍କୁ ହିଁ ପୁରୁଷୋତ୍ତମ ବୋଲି ଚିହ୍ନିତ ହୋଇଛି । ସେ ପୁରୁଷୋତ୍ତମ ପୁଣି ବ୍ରହ୍ମସ୍ୱରୂପ (୭୪) । ସେ ନିର୍ଗୁଣ ହେଲେହେଁ ଭ୍ରମ (ମାୟା) ବଶରୁ ସଗୁଣ ବୋଲି ଜଣାଯାଆନ୍ତି (୭୫) । ସେ ହେଉଛନ୍ତି ଅନନ୍ତ ଓ ଅନାଦି (୭୬) । ତାଙ୍କୁ ଚିନ୍ତାରେ କଳନା କରିବା ଅସମ୍ଭବ । ସମ୍ପୂର୍ଣ୍ଣ ସ୍ୱର ପ୍ରତିଷ୍ଠିତ ହେଉଥିବା ପୁରୁଷୋତ୍ତମ-ବିଷ୍ଣୁଙ୍କର ନେତ୍ର ହୋଇଛି ପ୍ରାୟ ଗୋଲ । ତାହା ଦେଖିବାକୁ ପଦ୍ମ ପରି । ତେଣୁ ପୁଣ୍ଡରୀକାକ୍ଷ ବୋଲି କୁହାଯାଏ । ହିରଣ୍ୟକଶିପୁ ପ୍ରହ୍ଲାଦଙ୍କୁ କଷ୍ଟ ଦେଲାବେଳେ ପ୍ରହ୍ଲାଦ ଏହିପରି ଭଗବାନ ବିଷ୍ଣୁଙ୍କୁ ସ୍ମରଣ କରିଛନ୍ତି (୭୭) । ଅନନ୍ତଶାୟିନ ବିଷ୍ଣୁ ଓ ପୁରୁଷୋତ୍ତମ ହେଉଛନ୍ତି ଏକ ଓ ଅଭିନ୍ନ (୭୮) ।

ବୈଦିକଯୁଗ ପରେ ପରେ ଭାରତରେ ଯେତେ ଯେତେ ଦେବତା ପୂଜିତ ହେଲେ, ସେମାନଙ୍କ ମଧ୍ୟରେ ବୈକୁଣ୍ଠ ପୂଜା ଅନ୍ୟତମ । ବିଷ୍ଣୁପୁରାଣଠାରୁ ଆହୁରି ଅନେକ ପ୍ରାଚୀନ ଶୌନକଙ୍କର ଅମୂଲ୍ୟ ଗ୍ରନ୍ଥ ବୃହଦ୍ଦେବତାରେ ଋଗ୍‌ବେଦର ଦେବତାମାନଙ୍କର ଅନୁକ୍ରମଣୀ କ୍ରମରେ ଏହି ବୈକୁଣ୍ଠଙ୍କର ଆରାଧନା ବିଷୟରେ ଆଲୋକପାତ କରାଯାଇଛି । ପ୍ରଥମେ ଏହି ବୈକୁଣ୍ଠ ନିଜ ଶରୀରରେ ଚାରିଗୋଟି ମୂର୍ତ୍ତି ତଳ ଉପର କରି ଧାରଣ କରିଥିଲେ ଓ ତାଙ୍କୁ ଚତୁର୍ଦ୍ଧା ମୂର୍ତ୍ତି ବୋଲି କୁହାଯାଉଥିଲା । ଏପରି ଏକ ବୈକୁଣ୍ଠମୂର୍ତ୍ତି ମଥୁରା ସଂଗ୍ରହାଳୟରେ ସଂରକ୍ଷିତ ହୋଇଛି । (୭୯) ପରେ ଅବଶ୍ୟ

---

୭୪ । ବିଷ୍ଣୁପୁରାଣ—୧ମ—୧୪/୩୬-୩୯—ପୃ ୮୧

୭୫ । ବିଷ୍ଣୁପୁରାଣ—୧ମ—୧୪/୩୭—ପୃ । ୧ ,

୭୬ । ବିଷ୍ଣୁପୁରାଣ—୧ମ—୧୪/୧୬—ପୃ ୮୦—

ଆରାଧନୀୟୋ ଭଗବାନନାଦି ପୁରୁଷୋତ୍ତମଃ ।

,, —୧ମ—୨୦/୮—ପୃ ୧୧୯—

ତୁଷ୍ଟାବ ଚ ପୁନର୍ଧୀମାନନାଦିଂ ପୁରୁଷୋତ୍ତମମ୍

୭୭ । ବିଷ୍ଣୁପୁରାଣ—୧ମ—୧୯/୬୪—ପୃ ୧୧୬—

ନମସ୍ତେ ପୁଣ୍ଡରୀକାକ୍ଷ ନମସ୍ତେ ପୁରୁଷୋତ୍ତମ ।

୭୮ । ବିଷ୍ଣୁପୁରାଣ— ୪ର୍ଥ ୩/୬

୭୯ । Iconography of Vishnu—Kalpa Desai—Delhi-1973 Fig. No.31. (Here after I. V.) ଦ୍ରଷ୍ଟବ୍ୟ ।

ଗୁପ୍ତଯୁଗବେଳକୁ ସଂଯୁକ୍ତ ଶ୍ୱରମୂର୍ତ୍ତି ବଦଳିଯାଇ ବୈକୁଣ୍ଠଙ୍କର ଗୋଷ୍ଠିଗୋଟି ମୁଣ୍ଡରେ ସୀମିତ ହୋଇଗଲା । ସେଥିରୁ ସମ୍ମୁଖରେ ଥିବା ତିନିଗୋଟି ମୁଖ ହେଉଛି ଯଥାକ୍ରମେ ନୃସିଂହ, ବାସୁଦେବ, (୮୦) ବରାହ । ଆଉ, ପଛପଟରେ ଥିବା ରାକ୍ଷସ ଆକୃତିର ମୁଖଟି ହେଉଛି କପିଳ । ଏହି ବୈକୁଣ୍ଠ ହେଉଛନ୍ତି ପ୍ରଜାପତିଙ୍କର ଅସୁରୀକନ୍ୟା ବିକୁଣ୍ଠାର ପୁତ୍ର । ବୃହଦ୍‌ଦେବତାର ବିବରଣୀ ଅନୁସାରେ ଏହି ପୁତ୍ର ହେଉଛନ୍ତି ଇନ୍ଦ୍ର । ସେ ବୈକୁଣ୍ଠ ରୂପରେ ଜାତ ହେଲେ (୮୧) । କିନ୍ତୁ ଏହି ବିଶ୍ୱରଧାରା ବିଷ୍ଣୁପୁରାଣ ବେଳକୁ ବଦଳିଯାଇଥିଲା । ସ୍ୱୟଂ ପୁରୁଷୋତ୍ତମ-ବିଷ୍ଣୁ ନିଜ ଇଚ୍ଛାରେ ବିକୁଣ୍ଠାଙ୍କର ଗର୍ଭରୁ ଜାତ ହେଲେ ବୋଲି ପ୍ରଥମକରି ବିଷ୍ଣୁପୁରାଣ ସୂଚାଇଛି (୮୨) । ବୈଦିକ ଯୁଗରେ ଇନ୍ଦ୍ର ଶକ୍ତିଶାଳୀ ଦେବତା ଥିବାରୁ ତାଙ୍କୁ ପ୍ରଥମେ 'ବୈକୁଣ୍ଠ' ବୋଲି କୁହାଗଲା । ମାତ୍ର ପୁରାଣ ଯୁଗବେଳକୁ ବିଷ୍ଣୁ ଶକ୍ତିଶାଳୀ ହୋଇଉଠିବାରୁ ସେ ଇନ୍ଦ୍ରଙ୍କ ସ୍ଥାନରେ ରହିଲେ ଓ ତାଙ୍କୁ 'ବୈକୁଣ୍ଠ' ବୋଲି କୁହାଯାଉଛି । ସେହି ଦୃଷ୍ଟିରୁ ବିଚାରକଲେ ବିଷ୍ଣୁଙ୍କୁ ଇନ୍ଦ୍ରଙ୍କର ସାନଭାଇ ବୋଲି ବିଚାର କରାଯାଇପାରେ ଓ ପୁରାଣରେ ମଧ୍ୟ ବିଷ୍ଣୁଙ୍କର ଅନ୍ୟନାମ 'ଉପେନ୍ଦ୍ର' (୮୩) ବୋଲି କୁହାଯାଇଛି । ବୈକୁଣ୍ଠ ଯେପରି ସ୍ୱୟଂ ଚତୁର୍ମୂର୍ତ୍ତି ଓ ଚତୁର୍ଦ୍ଧାସ୍ୱରୂପ, ସେହିପରି ଆମର ବିଷ୍ଣୁ ଜଗନ୍ନାଥ ମଧ୍ୟ ଚତୁର୍ଦ୍ଧାମୂର୍ତ୍ତି ରୂପରେ ପୂଜିତ । ଅନ୍ୟାର୍ଥରେ ଜଗନ୍ନାଥଙ୍କର ଚତୁର୍ଦ୍ଧାମୂର୍ତ୍ତି ହେଉଛନ୍ତି ସମସ୍ତେ ଜଗନ୍ନାଥଙ୍କର ଅଙ୍ଗୀଭୂତ; ଅର୍ଥାତ୍ ଅନେକରେ ସେ ଏକ ମୂର୍ତ୍ତି । ଯଦିଓ ବିଷ୍ଣୁପୁରାଣ-ବେଳକୁ ଜଗନ୍ନାଥଙ୍କ ସ୍ଥିତି ବିଷୟରେ ପ୍ରତ୍ୟକ୍ଷ ପ୍ରମାଣ ଆମର ନାହିଁ ତଥାପି ଚତୁର୍ବ୍ୟୂହ ଚିନ୍ତାଧାରା ଓ ପୁରୁଷୋତ୍ତମ ବୈକୁଣ୍ଠ ଉପାସନାର ପ୍ରଭାବ ଏହି ଚତୁର୍ଦ୍ଧାମୂର୍ତ୍ତି ପୁରୁଷୋତ୍ତମ ଜଗନ୍ନାଥଙ୍କଠାରେ ରହିଅଛି, ଏହା ଅନସ୍ୱୀକାର୍ଯ୍ୟ ।

---

୮୦ । I. V.—pp-39

୮୧ । ବୃହଦ୍‌ଦେବତା—ସମ୍ପାଦନା—ମ୍ୟାକ୍‌ଡୋନାଲ—A. A. Harvard Oriental series—1904·

ପ୍ରଜାପତ୍ୟାସୁରୀ ହ୍ୟାସୀଦ୍ ବିକୁଣ୍ଠାନାମ ନାମତଃ × × ×
× × × ତସ୍ୟାଂ ଚେନ୍ଦ୍ରଃ ସ୍ୱୟଂ ଜଜ୍ଞେ ଜିଘାଂସୁର୍ଦୈତ୍ୟ ଦାନବାନ୍—

୭ମ/୪୯-୫୦

୮୨ । ବିଷ୍ଣୁପୁରାଣ—ଗୀତା—୨/୨୪ ପୃ ୨୦୮—

ଚାକ୍ଷୁଷେ ଚାନ୍ତରେ ଦେବୋ ବୈକୁଣ୍ଠଃ ପୁରୁଷୋତ୍ତମଃ
ବିକୁଣ୍ଠାୟାମସୌ ଜଜ୍ଞେ ବୈକୁଣ୍ଠୈ ଦେବତୈଃ ସହ ।

୮୩ । Student's Sanskrit English dictionary—V.S. Apte pp—116.

ବିଷ୍ଣୁପୁରାଣରେ ପୁରୁଷୋତ୍ତମଙ୍କୁ 'ମହାବିଭୂତି ସଂସ୍ଥାନ' ଓ ସର୍ବକର୍ମର ପ୍ରବର୍ତ୍ତକ ବୋଲି କୁହାଯାଇଛି (୮୪) । ତା'ଛଡ଼ା ବାସୁଦେବକୃଷ୍ଣ ଓ ବିଷ୍ଣୁ ହେଉଛନ୍ତି ଏକ ଓ ଅଭିନ୍ନ ଏବଂ ସେ ହିଁ ପୁରୁଷୋତ୍ତମ, ଏ କଥା ବସୁଦେବ କଂସବଧ ପରେ ଶ୍ରୀକୃଷ୍ଣଙ୍କୁ ସ୍ତୁତିକରିବା ପ୍ରସଙ୍ଗରେ କହିଛନ୍ତି (୮୫) । ଅର୍ଜ୍ଜୁନ ମଧ୍ୟ ଶ୍ରୀକୃଷ୍ଣଙ୍କୁ ପୁରୁଷୋତ୍ତମ ବୋଲି କହିଛନ୍ତି । (୮୬) ବାଣାସୁର ସହିତ ଯୁଦ୍ଧ ସମୟରେ ଶ୍ରୀକୃଷ୍ଣଙ୍କୁ ଜଗନ୍ନାଥ ଓ ପୁରୁଷୋତ୍ତମ ବୋଲି ଭଗବାନ ଶିବସ୍ତୁତି କରିଥିବାର ପ୍ରମାଣ ବିଷ୍ଣୁପୁରାଣରୁ ମିଳିଥାଏ (୮୭) । ଏଥିରୁ ଜଣାଯାଏ, ସେତେବେଳକୁ ଶ୍ରୀକୃଷ୍ଣଙ୍କୁ ବିଷ୍ଣୁ, ପୁରୁଷୋତ୍ତମ ଓ ଜଗନ୍ନାଥ ବୋଲି କୁହାଯାଉଥିଲା । ଅଷ୍ଟାବକ୍ର ଋଷିଙ୍କୁ ଯେତେବେଳେ ଦେବାଙ୍ଗନାମାନେ ବର ମାଗିଲେ, "ହେ ଋଷିଶ୍ରେଷ୍ଠ ! ଆମେ ପୁରୁଷୋତ୍ତମଙ୍କୁ ପତିରୂପରେ ପାଇବାକୁ ଇଚ୍ଛା କରୁଛୁ"; ସେତେବେଳେ ଏହି 'ପୁରୁଷୋତ୍ତମ' ଶବ୍ଦ ଶ୍ରୀକୃଷ୍ଣଙ୍କ ପାଇଁ ହିଁ ବ୍ୟବହୃତ ହୋଇଥିଲା । ଶ୍ରୀକୃଷ୍ଣଙ୍କର ଅଷ୍ଟପାଟବଂଶୀଙ୍କ ଛଡ଼ା ଅନ୍ୟ ଯେଉଁ ଶତାଧିକ ରାଣୀମାନେ ଥିଲେ, ସେ ସବୁ ହେଉଛନ୍ତି ଏହି ଦେବକନ୍ୟା । ସେ ଯାହାହେଉ, ବିଷ୍ଣୁପୁରାଣ ବେଳକୁ ଅର୍ଥାତ୍ ଦ୍ୱିତୀୟ ଶତକ ବେଳକୁ ଶ୍ରୀକୃଷ୍ଣଙ୍କୁ ବିଷ୍ଣୁ, ଜଗନ୍ନାଥ, ପୁରୁଷୋତ୍ତମ ବୋଲି କୁହାଯାଉଥିଲା । ଫଳରେ ସମାଜରେ ଶ୍ରୀକୃଷ୍ଣ ଏକ ଶକ୍ତିଶାଳୀ ଦେବତାଂ ଭାବରେ ପ୍ରତିଷ୍ଠିତ ହୋଇସାରିଥିଲେ । ଧୀରେଧୀରେ ବାସୁଦେବଙ୍କର ଉପାସନା ଲାଗିରହିଥିଲା । ଅନ୍ୟ ପକ୍ଷରେ ବୌଦ୍ଧଧର୍ମ ଲୋକପ୍ରିୟତା ଅର୍ଜନ କରିଥିଲେ ମଧ୍ୟ ହିନ୍ଦୁଧର୍ମ ଦବିଯାଇ

---

୮୪ । ବିଷ୍ଣୁପୁରାଣ—୫ମ—୧/୬୩ ପୃ ୩୭୧—
ଚକାର ଯାନି କର୍ମାଣି ଭଗବାନ୍ ପୁରୁଷୋତ୍ତମଃ । ଏବଂ—
ବିଷ୍ଣୁପୁରାଣ—୫ମ—୧/୪୯—ମହାବିଭୂତି ସଂସ୍ଥାନ ନମସ୍ତେ ପୁରୁଷୋତ୍ତମ ।

୮୫ । ବିଷ୍ଣୁପୁରାଣ—୫ମ—୨୦/୧୦୫ ପୃ ୪୪୧—
ତ୍ୱଂ ବିଷ୍ଣୁରୀଶ ଜଗତାମୁପକାର ହେତୋଃ
ପ୍ରାପ୍ତୋ ଽସି ନଃ ପରିଗତୋ ବିଗତୋ ହି ମୋହଃ ।। ଏବଂ—
ବିଷ୍ଣୁପୁରାଣ—୫ମ—୨୦/୧୦୩—ପୃ ୪୪୦—
ତ୍ୱଦ୍ଭକ୍ତୋ ବିମୋହୟସି କଂ ପୁରୁଷୋତ୍ତମାତ୍ମାନ୍ ।

୮୬ । ବିଷ୍ଣୁପୁରାଣ—୫ମ—୩୮/୪୫ ପୃ ୪୯୭—
ଧାରିତା ଯାଭବନ୍ ମୂର୍ତ୍ତିଃ ସ ଗତଃ ପୁରୁଷୋତ୍ତମଃ ।।

୮୭ । ବିଷ୍ଣୁପୁରାଣ—୫ମ—୩୩/୪୧—ପୃ ୪୭୭—
କୃଷ୍ଣ କୃଷ୍ଣ ଜଗନ୍ନାଥ ଜାନେ ତ୍ୱାଂ ପୁରୁଷୋତ୍ତମମ୍
ପରେଶଂ ପରମାତ୍ମାନମନାଦି ନିଧନମ୍ ହରିମ୍ ।।

ନଥିଲା । ବାସୁଦେବଙ୍କୁ ଇଷ୍ଟଦେବ ମଣି ଯଜ୍ଞକାର୍ଯ୍ୟ ଅବାରିତ ଭାବେ ଚାଲିଥିଲା । ସେଥିପାଇଁ ବାସୁଦେବ-ପୁରୁଷୋତ୍ତମଙ୍କୁ ଯଜ୍ଞେଶ୍ୱର, ଯଜ୍ଞପତି ବୋଲି କୁହାଯାଇଛି (୮୮) ।

ପ୍ରଥମେ ଶ୍ରୀମଦ୍ ଭଗବଦ୍ ଗୀତାରେ ଶ୍ରୀକୃଷ୍ଣଙ୍କୁ ପୁରୁଷୋତ୍ତମ ବୋଲି କୁହାଗଲା । (୮୯) ପରେ ପରେ ବହୁଳଭାବରେ ବିଷ୍ଣୁ ପୁରାଣରେ ତାଙ୍କୁ ପୁରୁଷୋତ୍ତମ ବୋଲି ପ୍ରଚାର କରାଯାଇ ଜଗନ୍ନାଥ ବୋଲି ପ୍ରତିପାଦନ କରାଗଲା । ଜଗନ୍ନାଥ ଶବ୍ଦ ଥରେଅଧେ ବ୍ୟବହାର ହୋଇଥିଲେ ଆମେ ଭାବନ୍ତେ ଯେ ଲେଖକଙ୍କର ଶ୍ରୀକୃଷ୍ଣଙ୍କୁ ଜଗନ୍ନାଥ ବୋଲି ପ୍ରତିପାଦନ କରିବାର ଉଦ୍ଦେଶ୍ୟ ନଥିଲା; ମାତ୍ର ବର୍ଣ୍ଣନା କରୁ କରୁ ସ୍ୱାଭାବତଃ ବିଶେଷଣ ଭାବରେ ଏ ଶବ୍ଦକୁ ଜଗତର ନାଥ ଅର୍ଥରେ ଥରେ ଦୁଇଥର ବ୍ୟବହାର କରିଦେଇଛନ୍ତି । କିନ୍ତୁ, ଏ ପୁରାଣରେ ତାହା ହୋଇନାହିଁ । ଏଠେ ଅବା ଲେଖକ ଉଦ୍ଦେଶ୍ୟମୂଳକ ଭାବେ ଶ୍ରୀକୃଷ୍ଣଙ୍କୁ ପୁରୁଷୋତ୍ତମ ବୋଲି କହିବା ସଙ୍ଗେ ସଙ୍ଗେ ବାରମ୍ବାର ଜଗନ୍ନାଥ ବୋଲି ସଂଜ୍ଞା ବା ନାମକରଣ କରି ସେହି ନାମକୁ ଲୋକପ୍ରିୟ କରିଦେବେ ବୋଲି ପ୍ରୟାସ କରିଛନ୍ତି । ନୋହିଲେ ବେଳେ ବେଳେ ତ 'ଜଗତଃ ନାଥଃ'; ଏହା ଲେଖିପାରି-ଥାଆନ୍ତେ । କିନ୍ତୁ ତାହା ନ ଲେଖି ଖାଲି 'ଜଗନ୍ନାଥ, ଜଗନ୍ନାଥ' ବୋଲି ଲେଖିଅଛନ୍ତି । ମାତ୍ର ପୁରୁଷୋତ୍ତମକ୍ଷେତ୍ର ବିଷୟରେ କିଛି ନ ଲେଖିଥିବାରୁ, ସେତେବେଳେ ପୁରୀର ଏ ଜଗନ୍ନାଥ ପ୍ରସିଦ୍ଧ ହୋଇଥିଲେ କି ନା; ଅଥବା ଜଗନ୍ନାଥ ପୂଜା ଆରମ୍ଭ ହୋଇଥିଲା କି ନା; ସେ ବିଷୟରେ ଆମପାଖରେ ସେପରି ସ୍ପଷ୍ଟ ପ୍ରମାଣ ନାହିଁ । ତଥାପି, ଏ କଥା ସତ୍ୟ ଯେ, ଏହି ପୁରାଣ ସମୟରେ ଶ୍ରୀକୃଷ୍ଣଙ୍କୁ ପୁରୁଷୋତ୍ତମ-ଜଗନ୍ନାଥ ବୋଲି ପ୍ରତିପାଦନ କରିବାକୁ ଗଭୀର ପ୍ରଚେଷ୍ଟା କରାଯାଇଛି ।

## ବିଷ୍ଣୁ ପୁରାଣରେ ଜଗନ୍ନାଥ—

ଜଗନ୍ନାଥ ଏ ପୁରାଣରେ ବ୍ରହ୍ମଙ୍କୁ କୁହାଯାଇନାହିଁ, ଜୀନଙ୍କୁ କୁହାଯାଇ ନାହିଁ, ଶିବଙ୍କୁ ବା ଅନ୍ୟ କେଉଁ ଦେବତାଙ୍କୁ କୁହାଯାଇନାହିଁ; ସେହି ମୋକ୍ଷଦାୟକ, ପୁନର୍ଜନ୍ମ ନାଶକ ଜଗତ୍‌ପାବନ ଜନାର୍ଦ୍ଦନ ବିଷ୍ଣୁଙ୍କୁ କୁହାଯାଇଛି ଜଗନ୍ନାଥ (୯୦) । ସେହି

---

୮୮ । ବିଷ୍ଣୁ ପୁରାଣ—୬ଷ୍ଠ—୮/୪୨—ପୃ ୫୨୦—

ଯଜ୍ଞେଶ୍ୱରୋ ଯଜ୍ଞପୁମାନ୍ ପୁରୁଷୈଃ ପୁରୁଷୋତ୍ତମଃ ।

୮୯ । ଗୀତା—(୧୫) ପଞ୍ଚଦଶ ଅଧ୍ୟାୟ ।

୯୦ । ବିଷ୍ଣୁ ପୁରାଣ—୧ମ—୧୨/୯୩ ପୃ ୭୦—

ଏବଂ ପୂର୍ବଂ ଜଗନ୍ନାଥାଦ୍ ଦେବଦେବାଜ୍ଜନାର୍ଦ୍ଦନାତ୍ ।

ବରଂ ପ୍ରାପ୍ୟ ଧ୍ରୁବଃ ସ୍ଥାନମଧ୍ୟାସ୍ତେ ସ ମହାମତେ ।।

ଜଗନ୍ନାଥ-କୃଷ୍ଣ ହିଁ ହେଉଛନ୍ତି ପରମେଶ୍ୱର ପୁରୁଷୋତ୍ତମ (୯୧) । ନାରାୟଣ ସିଏ ଜଗନ୍ନାଥ ମଧ୍ୟ ସିଏ । ଲକ୍ଷ୍ମୀ ହେଉଛନ୍ତି ତାଙ୍କର ଶକ୍ତି (୯୨) । ବରୁଣ, ଯମ ପ୍ରଭୃତି ଦେବଗଣ ହେଉଛନ୍ତି ତାଙ୍କର ସତ୍ତା । ପୁଣି, ସେହି ଦେବତାମାନଙ୍କର ପତ୍ନୀମାନେ ହେଉଛନ୍ତି ବିଷ୍ଣୁଶକ୍ତି ଲକ୍ଷ୍ମୀରୂପା (୯୩) । ବିଷ୍ଣୁ-କୃଷ୍ଣ ଆଦ୍ୟପୁରୁଷ ହେଉଛନ୍ତି ଜଗନ୍ନାଥ-ପୁରୁଷୋତ୍ତମ (୯୪) । ସେହି ଜଗନ୍ନାଥଙ୍କୁ ମହାପୁରୁଷ ଓ ଭୁବନେଶ ବୋଲି ମଧ୍ୟ ସ୍ତୁତି ପ୍ରସଙ୍ଗରେ କୁହାଯାଇଛି (୯୫) । ବ୍ରଜବାସୀ ଶ୍ରୀକୃଷ୍ଣଙ୍କର କାଳୀୟ ଦଳନ ବେଳେ ନାଗକନ୍ୟାମାନଙ୍କର ସ୍ତୁତି ସୂଚନା ଦିଏ ଯେ, ଲେଖକ ଶ୍ରୀକୃଷ୍ଣଙ୍କୁ ପୁରୁଷୋତ୍ତମ, ବିଷ୍ଣୁ ଓ ଜଗନ୍ନାଥ ବୋଲି ପ୍ରମାଣ କରିବାକୁ ଆପ୍ରାଣ ପ୍ରଚେଷ୍ଟା ଚଳାଇଛନ୍ତି ଓ ଫଳରେ ଶ୍ରୀକୃଷ୍ଣଙ୍କର ଏହି ସ୍ୱରୂପରେ ପୂଜା ଉପାସନା ଦେଶରେ ସ୍ଥାନ ପାଇଛି । ଶ୍ରୀକୃଷ୍ଣଙ୍କୁ ଦାରୁବ୍ରହ୍ମ ଜଗନ୍ନାଥ ବୋଲି ଚିନ୍ତା କରାନଯାଇ ଖାଲି ବ୍ରହ୍ମ ବୋଲି ଏ ପୁରାଣରେ କଳ୍ପନା କରାଯାଇଛି (୯୬) । ସେହି ଗୋପାଳକୃଷ୍ଣ ଜଗନ୍ନାଥ ହେଉଛନ୍ତି ଅନନ୍ତ ଆଉ ଅଚ୍ୟୁତ । ତାଙ୍କର କ୍ଷୟ ନାହିଁ । ତାଙ୍କୁ ଅକ୍ଷୟ ନିତ୍ୟ ଜଗନ୍ନାଥ ବୋଲି କେଶୀ ବଧପରେ ଗୋପାଳମାନେ ସ୍ତୁତି କରିଛନ୍ତି (୯୭) । କଂସବଧ ପରେ ବସୁଦେବ ପ୍ରୀତ ହୋଇ ପୁତ୍ର ଶ୍ରୀକୃଷ୍ଣଙ୍କୁ ସଚରାଚର ବିଶ୍ୱର ନିୟନ୍ତା ଜଗନ୍ନାଥ ବୋଲି ସ୍ତୁତି କରିଛନ୍ତି (୯୮) ।

---

୯୧ । ବିଷ୍ଣୁପୁରାଣ—୧ମ—୧୨/୩୩ ପୃ ୬୪—
ଦେବ ଦେବ ଜଗନ୍ନାଥ ପରେଶ ପୁରୁଷୋତ୍ତମ ।

୯୨ । ବିଷ୍ଣୁପୁରାଣ—୧ମ—୮/୩୩ ପୃ ୪୩—
ତୁଷ୍ଟା ଲକ୍ଷ୍ମୀ ର୍ଜଗନ୍ନାଥୋ ଲୋକେ ନାରାୟଣଃ ପରଃ ।

୯୩ । ବିଷ୍ଣୁପୁରାଣ—୧ମ—୮/୨୬-୨୭—ପୃ ୪୨—

୯୪ । ବିଷ୍ଣୁପୁରାଣ—୪ର୍ଥ—୧୩/୨୦ ପୃ ୩୨୯—

୯୫ । ବିଷ୍ଣୁପୁରାଣ—୫ମ—୭/୫୮—
ଭୁବନେଶ ଜଗନ୍ନାଥ ମହାପୁରୁଷ ପୂର୍ବଜ ।

୯୬ । ବିଷ୍ଣୁପୁରାଣ—୧ମ—୧୫/୫୮ ପୃ ୮୮—
ବ୍ରହ୍ମାକ୍ଷରମଜଂ ନିତ୍ୟଂ ଯଥାସୌ ପୁରୁଷୋତ୍ତମଃ ।

୯୭ । ବିଷ୍ଣୁପୁରାଣ—୫ମ—୧୬/୧୯—ପୃ ୪୨୯—
ସାଧୁ ସାଧୁ ଜଗନ୍ନାଥ ଲୀଳୟୈବ ଯଦଚ୍ୟୁତ ।
ନିହତୋଽୟଂ ତ୍ୱୟା କେଶୀ କ୍ଲେଶଦସ୍ତ୍ରିଦିବୌକସାଂ ॥

୯୮ । ବିଷ୍ଣୁପୁରାଣ—୫ମ—୨୦/୧୦୧—ପୃ ୪୪୦—
ଜଗଦେତଜ୍ଜଗନ୍ନାଥ ସମ୍ଭୂତମଖିଳଂ ଯତଃ ॥

ଗୀତାରେ ଶ୍ରୀକୃଷ୍ଣଙ୍କୁ ଯେପରି ସମସ୍ତ ବିଶ୍ୱର ମୂଳାଧାର ବୋଲି କଳ୍ପନା କରାଯାଇ ତାଙ୍କୁ ପୁରୁଷୋତ୍ତମ ବୋଲି କୁହାଯାଇଛି, ବିଷ୍ଣୁପୁରାଣବେଳକୁ ସେହି ପୁରୁଷୋତ୍ତମ ସହିତ ଜଗନ୍ନାଥ ଶବ୍ଦକୁ ସେହି ଏକାର୍ଥରେ ବାସୁଦେବ କୃଷ୍ଣଙ୍କ ପାଇଁ ଯୋଡ଼ି ଦିଆଯାଇଛି । (୯୯) ପାରିଜାତ ହରଣ କାଳରେ ଶ୍ରୀକୃଷ୍ଣଙ୍କୁ ଇନ୍ଦ୍ର ଯେଉଁ ସ୍ତୁତି କରିଛନ୍ତି, ସେଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି, ଶ୍ରୀକୃଷ୍ଣ ମାନବ ନୁହନ୍ତି । ସେ ଅତିମାନବ । ଅର୍ଥାତ୍ ଦ୍ୱିତୀୟ ଶତକରେ ବିଷ୍ଣୁପୁରାଣବେଳକୁ ଶ୍ରୀକୃଷ୍ଣ ଅତିମାନବ ବା ଦେବତା ଭାବରେ ପରିଗଣିତ ହୋଇସାରିଥିଲେ । ସେ ଦେବତା ପୁଣି କେଶବ, ବିଷ୍ଣୁ, ମହାବାହୁ, ଜଗନ୍ନାଥଙ୍କ ଭିନ୍ନ ଅନ୍ୟ କେହି ନୁହନ୍ତି (୧୦୦) । ଶ୍ରୀକୃଷ୍ଣଙ୍କର ଦେହ ତ୍ୟାଗ କାଳରେ ବାସୁଦେବତା ତାଙ୍କୁ ତାଙ୍କର ବିଷ୍ଣୁତ୍ୱକୁ ମନେପକାଇଦେବାକୁ ଯାଇ ତାଙ୍କୁ ଜଗନ୍ନାଥ ବୋଲି ସମ୍ବୋଧନ କରିଛନ୍ତି (୧୦୧) । ଏଥିରୁ ଜଣାଯାଉଛି, ସେତେବେଳକୁ ବିଷ୍ଣୁ ଓ ଜଗନ୍ନାଥ; ଏହି ଦୁଇଟି ଶବ୍ଦ ହେଉଛି ଏକ ପର୍ଯ୍ୟାୟବାଚୀ । ଅର୍ଥାତ୍, ବିଷ୍ଣୁଙ୍କର ଅନ୍ୟ ନାମ ଜଗନ୍ନାଥ । ଏଣେ କୃଷ୍ଣବିଷ୍ଣୁଙ୍କୁ ମଧ୍ୟ ପୁରୁଷୋତ୍ତମ ବୋଲି କୁହାଯାଇଛି । ସେହି ଦୃଷ୍ଟିରୁ ଜଗନ୍ନାଥ ଓ ପୁରୁଷୋତ୍ତମ ହେଉଛନ୍ତି ଏକ ଦେବତାଙ୍କର ଦୁଇଟି ନାମ ।

ଶ୍ରୀକ୍ଷେତ୍ରରେ ଯେତେବେଳେ ବ୍ରହ୍ମରୂପରେ ମହାବିଷ୍ଣୁଙ୍କର ଉପାସନା ହେଲା, ସେତେବେଳେ ସେହି ମହାବିଷ୍ଣୁ ମୂର୍ତ୍ତିକୁ ପୁରୁଷୋତ୍ତମ-ଜଗନ୍ନାଥ ବୋଲି ନାମକରଣ ଛଡ଼ା ଅନ୍ୟ କିଛି ନାମ ସଙ୍ଗତ ହୋଇନଥାନ୍ତା । ସାଂଖ୍ୟ ଆଉ ବେଦାନ୍ତ ଦର୍ଶନର ବୀଜକୁ ନେଇ ଯେଉଁ ଅବ୍ୟକ୍ତ ମୂର୍ତ୍ତି ଗଢ଼ାଗଲା, ତାହାର ନାମକରଣ ଜଗନ୍ନାଥ ହେବା ଛଡ଼ା ଆଉ ଅନ୍ୟ ବାଟ ନ ଥିଲା । ଯେ ଜଗତର ବିଶ୍ୱାମକ, ସେ ହିଁ ଜଗତର ନାଥ ଜଗନ୍ନାଥ । ବିଷ୍ଣୁପୁରାଣ ବେଳକୁ ବିଷ୍ଣୁଙ୍କୁ ଏହି ଭାବରେ ଗ୍ରହଣ କରାଯାଇଛି ଓ ଶ୍ରୀକୃଷ୍ଣଙ୍କ ଉପରେ ବିଷ୍ଣୁତ୍ୱ ଆରୋପିତ ହୋଇଛି । ଶ୍ରୀକୃଷ୍ଣ ଜଣେ ସାଧାରଣ ମନୁଷ୍ୟରୂପେ ଜନ୍ମଗ୍ରହଣ କରି ମନୁଷ୍ୟଭଳି ଇହଲୀଳାସମ୍ବରଣ କରିଥିଲେହେଁ ତାଙ୍କୁ ଅଲୌକିକ

---

୯୯ । ବିଷ୍ଣୁପୁରାଣ—୫ମ—୨୧/୨୨—ପୃ ୪୬୧—

ଉପତସ୍ଥେ ଜଗନ୍ନାଥଂ ବାକ୍ୟଂ ଚେଦମଥାବ୍ରବୀତ୍ ।। ୨

୧୦୦ । ବିଷ୍ଣୁପୁରାଣ—୫ମ—୩୦/୩୨—ପୃ ୪୬୪—

ପାରିଜାତଂ ଜଗନ୍ନାଥଃ କେଶବଃ କେଶିସୂଦନଃ ।

,, —୫ମ—୩୧/୮—ପୃ ୪୬୯—

ଦେବ ଦେବ ଜଗନ୍ନାଥଃ କୃଷ୍ଣବକ୍ଷୋ ମହାଭୁଜଃ ।

୧୦୧ । ବିଷ୍ଣୁପୁରାଣ—୫ମ—୩୭/୨୦—ପୃ ୪୮୮—

ତଦତୀତଂ ଜଗନ୍ନାଥ ବର୍ଷାଣାମଧିକଂ ଶତମ୍ ।

ଶକ୍ତିମାନ ବୋଲି ମନେକରାଯାଇ ନିର୍ଗୁଣ ବ୍ରହ୍ମଙ୍କ ସହିତ ସମାନ ବୋଲି କୁହାଯାଇଛି ।
ସେ ହେଉଛନ୍ତି ବିଷ୍ଣୁ । ସେ ମଧ୍ୟ ପରଂବ୍ରହ୍ମ । ଏହି ଭାବନା ବିଷ୍ଣୁପୁରାଣର ଛନ୍ଦେ ଛନ୍ଦେ
ପ୍ରକଟିତ ।

## ପରଂବ୍ରହ୍ମ-ବିଷ୍ଣୁ-ଜଗନ୍ନାଥ—

ଜଗନ୍ନାଥ ପୁରୁଷୋତ୍ତମ, ବିଷ୍ଣୁ-କୃଷ୍ଣରୂପରେ ସଂସାରରେ ଅବତୀର୍ଣ୍ଣ ହେଲେ ମଧ୍ୟ ସେ ଜଗନ୍ମୟ ପରଂବ୍ରହ୍ମ ଓ ପରମାତ୍ମାଭାବରେ ସକଳ ଘଟରେ ଅବସ୍ଥାନ କରନ୍ତି (୧୦୨) । ଏହି କଥା ପ୍ରହ୍ଲାଦ ହିରଣ୍ୟକଶିପୁଙ୍କୁ ବୁଝାଇ ବିଷ୍ଣୁପୁରାଣରେ କହିଛନ୍ତି । ସେ ହେଉଛନ୍ତି ନିତ୍ୟ, ଅଜନ୍ମା ଓ ବ୍ରହ୍ମସ୍ୱରୂପ (୧୦୩) । ତାଙ୍କ ଦୃଷ୍ଟିରେ ସମସ୍ତେ ସଚରାଚର ସମାନ । ସେଥିପାଇଁ ତାଙ୍କୁ ବର୍ଣ୍ଣନାସ୍ୱନ୍ତା ବୋଲି ବୋଲାଯାଇପାରେ । ସେ ହେଉଛନ୍ତି । ସାଂଖ୍ୟର ପୁରୁଷ । ତେଣୁ ବିଷ୍ଣୁପୁରାଣରେ ତାଙ୍କୁ 'ପୁରୁଷାତ୍ମନ୍' ବୋଲି କୁହାଯାଇଛି; ଆଉ ସେ ଶ୍ରେଷ୍ଠ ପୁରୁଷ ହୋଇଥିବାରୁ ତାଙ୍କୁ ପୁରୁଷୋତ୍ତମ ଓ ସେ ସନ୍ତୁଷ୍ଟ ହେଲେ ସମସ୍ତଙ୍କୁ ମୋକ୍ଷ ମିଳିପାରେ ବୋଲି ତାଙ୍କୁ ପରଂବ୍ରହ୍ମ ବା ପରମାତ୍ମାଭାବରେ ନାମିତ କରାଯାଏ (୧୦୪) । ତେଣୁ ବିଷ୍ଣୁପୁରାଣ ଜନସମାଜକୁ ଆହ୍ୱାନ ଦେଇଛି, ହେ ମୁମୁକ୍ଷୁଗଣ ! ତୁମ୍ଭେମାନେ ଆସ । ବାସୁଦେବ (କୃଷ୍ଣ)ଙ୍କ ଉପାସନା କର । ସେ ପରମାତ୍ମା ତୁମ୍ଭଙ୍କୁ ନିଶ୍ଚୟ ମୁକ୍ତି ପ୍ରଦାନ କରିବେ (୧୦୫) । ଏଇଠି ପ୍ରଶ୍ନ ଆସେ, ବ୍ରହ୍ମ ତ ଅନିର୍ବଚନୀୟ, ଅଦୃଶ୍ୟ,

---

୧୦୨ । ବିଷ୍ଣୁପୁରାଣ—ପ୍ରଥମ ଭାଗ—୧୯/୩୭—ପୃ ୧୧୪—

ସର୍ବଭୂତାତ୍ମକେ ତାତ ଜଗନ୍ନାଥେ ଜଗନ୍ମୟେ ।
ପରମାତ୍ମନି ଗୋବିନ୍ଦେ ମିତ୍ରାମିତ୍ର କଥା କୁତଃ ।।

୧୦୩ । ବିଷ୍ଣୁପୁରାଣ—୧ମ—୧୫/୫୮—ପୃ ୮୮—

ବ୍ରହ୍ମାକ୍ଷରମଜଂ ନିତ୍ୟଂ ଯଥାସୌ ପୁରୁଷୋତ୍ତମଃ ।

୧୦୪ । ବିଷ୍ଣୁପୁରାଣ—୧ମ—୪/୧୪—

ନମସ୍ତେ ପରମାତ୍ମନ୍ ପୁରୁଷାତ୍ମନ୍ ମସ୍ତୁତେ ।

,, ,,—୧ମ—୪/୧୮—

ତ୍ୱାମାରାଧ୍ୟ ପରଂବ୍ରହ୍ମ ଯାତା ମୁକ୍ତିଂ ମୁମୁକ୍ଷବଃ

,, ୧ମ—୧୧/୪୭—ପୃ ୭୧—

ପରଂବ୍ରହ୍ମ ପରଂଧାମଯୋଽସୌ ବ୍ରହ୍ମ ତଥା ପରଂ ।
ତମାରାଧ୍ୟ ହରିଂ ଯାତି ମୁକ୍ତିମପ୍ୟତି ଦୁର୍ଲଭମ୍ ।।

୧୦୫ । ବିଷ୍ଣୁପୁରାଣ—୧ମ—୪/୧୮—

ବାସୁଦେବମନାରାଧ୍ୟ କୋ ମୋକ୍ଷ ସମବାପ୍ସ୍ୟତି ।

ନିର୍ଗୁଣ; ତେବେ ସଂସାରରେ ତାହାର ଦର୍ଶନ କିପରି ସୁଲଭ ? ତେଣୁ ବିଷ୍ଣୁପୁରାଣରେ କୁହାଯାଇଛି, 'ସେ ବ୍ରହ୍ମରୂପୀ କୃଷ୍ଣ-ବିଷ୍ଣୁ ନିର୍ଗୁଣ ହେଲେ ମଧ୍ୟ ଭ୍ରମବଶରୁ ସଗୁଣ ବୋଲି ଜଣାଯାଆନ୍ତି (୧୦୬)। ତେଣୁ ସଂସାରରେ ତାଙ୍କର ଦର୍ଶନ ସୁଲଭ ହୁଏ। ପ୍ରଥମେ ସଗୁଣ ବ୍ରହ୍ମଙ୍କୁ ଦର୍ଶନ କଲାପରେ ଶୁଦ୍ଧଚୈତନ୍ୟ ଉଦ୍ରେକ ହେବାରୁ ପରବର୍ତ୍ତୀ ଅବସ୍ଥାରେ ନିର୍ଗୁଣ ବ୍ରହ୍ମ ସାଯୁଜ୍ୟ ହୋଇପାରେ। ଏହି ବାଟରେ ମୂର୍ତ୍ତିପୂଜା ମାଧ୍ୟମରେ ମୁକ୍ତି ସୁଲଭ ହୁଏ। ତେଣୁ ହିନ୍ଦୁ ସମାଜରେ ମୂର୍ତ୍ତିପୂଜାର ପ୍ରଚଳନ ହୋଇଅଛି। ସଗୁଣବ୍ରହ୍ମଙ୍କୁ ଆଖି ଆଗରେ ରଖି ପୁରୁଷୋତ୍ତମ ମୂର୍ତ୍ତିର ପରିକଳ୍ପନା କରାଯାଇଅଛି। ତାଙ୍କୁ ଦର୍ଶନ କରିବା ପରେ ପରେ ମୁକ୍ତି ମିଳେ, ଏହି ବିଶ୍ୱାସ ବିଷ୍ଣୁପୁରାଣ ଯୁଗ ପୂର୍ବରୁ ମଧ୍ୟ ଏ ଦେଶରେ ପ୍ରଚଳିତ ହୋଇଆସୁଛି।

ବ୍ରହ୍ମସ୍ୱରୂପୀ ପୁରୁଷୋତ୍ତମଙ୍କର ସ୍ୱରୂପ ଚିନ୍ତା କଲାବେଳେ ତାଙ୍କୁ ପ୍ରଥମେ ସଗୁଣ ଓ ବିଷ୍ଣୁଭାବରେ ପରିକଳ୍ପନା କରାଯିବା ଦରକାର। ଏଥିରେ ଭକ୍ତ ମନରେ ତାଙ୍କର 'ନୀଳାମ୍ବୁଜ ଶ୍ୟାମଳ କୋମଳାଙ୍ଗ' ରୂପ ଉଦ୍‌ଭାସିତ ହୋଇଉଠେ। ଏହାଫଳରେ ସଗୁଣ ପୁରୁଷୋତ୍ତମ ବିଷ୍ଣୁଙ୍କର ଚତୁର୍ଭୁଜ ବା ଅଷ୍ଟଭୁଜରୂପ ମାନସଚକ୍ଷୁରେ ପ୍ରତିଫଳିତ ହୁଏ। ବିଷ୍ଣୁପୁରାଣବେଳକୁ ବିଷ୍ଣୁଙ୍କର ମୂର୍ତ୍ତି ଚତୁର୍ଭୁଜ ବା ଅଷ୍ଟଭୁଜ ଭାବରେ ନିର୍ମିତ ହେଉଥିଲା (୧୦୭)। ତେଣୁ ବିଷ୍ଣୁପୁରାଣ କହୁଛି, ବିଷ୍ଣୁଙ୍କର ଏହି ମୂର୍ତ୍ତି ପ୍ରଥମେ ଧ୍ୟାନରେ ପ୍ରତିଫଳିତ ହେବ। ତାହାପରେ ପ୍ରକୃତ ନିର୍ଗୁଣ ସ୍ୱରୂପ ଧ୍ୟାନରେ ଦର୍ଶନ କରାଯାଇପାରିବ।

ଏହି ପୁରାଣମତରେ ପୁରୁଷୋତ୍ତମଙ୍କର ବ୍ରହ୍ମସ୍ୱରୂପ ହେଉଛି, ସେ ଅକ୍ଷୟ। ତାଙ୍କର କ୍ଷୟ ବା ବୃଦ୍ଧି ନାହିଁ। ସେ ନିତ୍ୟ ତଥା ଚିରନ୍ତନ। ତା' ଛଡ଼ା ସେ ନିର୍ବିକାର ଭାବରେ କଳ୍ପିତ। ତେଣୁ ବିଷ୍ଣୁପୁରାଣରେ କୁହାଯାଇଛି, "ଯାହାଙ୍କର କ୍ଷୟ, ବୃଦ୍ଧି ନାହିଁ, ସେହି ନିତ୍ୟ ନିର୍ବିକାର ପୁରୁଷୋତ୍ତମଙ୍କୁ ମୁଁ ନମସ୍କାର କରୁଛି (୧୦୮)। କୃଷ୍ଣଙ୍କୁ ବିଷ୍ଣୁ

---

୧୦୬। ବିଷ୍ଣୁପୁରାଣ—୧ମ—୧୪/୩୬-୩୯—ପୃ ୮୧—

"ଶୁଦ୍ଧଃ ସଲକ୍ଷ୍ୟତେ ଭ୍ରାନ୍ତ୍ୟା ଗୁଣବାନିବ ଯୋ ଗୁଣଃ।
ତମାତ୍ମରୂପିଣଂ ଦେବଂ ନତାଃ ସ୍ମ ପୁରୁଷୋତ୍ତମମ୍ ॥" ୧୪/୩୬

୧୦୭। ବିଷ୍ଣୁପୁରାଣ—୬ଷ୍ଠ—୭/୮୦-୮୩—ପୃ-୫୩୯—

ପ୍ରଲମ୍ବାଷ୍ଟଭୁଜଂ ବିଷ୍ଣୁମଥବାପି ଚତୁର୍ଭୁଜମ୍।

୧୦୮। ବିଷ୍ଣୁପୁରାଣ—୬ଷ୍ଠ—୮/୫୯ ପୃ ୫୪୬—

ନାପକ୍ଷୟଂ ଚ ସମୁପେତ୍ୟ ବିକାର ବସ୍ତୁ
ଯସ୍ତଂ ନତୋଽସ୍ମି ପୁରୁଷୋତ୍ତମମୀଶମୀଡ୍ୟମ୍ ॥

ଆଦ୍ୟ ବ୍ରହ୍ମସ୍ୱରୂପରେ ତଥା ଆଦିପୁରୁଷ ରୂପେ ସ୍ୱୀକାର କରିବାର ତତ୍ତ୍ୱ ହରିବଂଶ (୧୦୯) ସମୟରୁ ତଥା ଶ୍ରୀମଦ୍‌ଭଗବଦ୍ ଗୀତା (୧୧୦) ସମୟରୁ ଏ ଦେଶରେ ପ୍ରଚଳିତ । ପରେ ସେହି ତତ୍ତ୍ୱ ବିଷ୍ଣୁପୁରାଣରେ ପରିବୃଂହିତ ହୋଇଅଛି । ହରିବଂଶରେ ଶ୍ରୀକୃଷ୍ଣଙ୍କୁ ଏକାକ୍ଷରବ୍ରହ୍ମ, ପ୍ରଣବ, ଆଦିପୁରୁଷ, ବ୍ୟକ୍ତ ଆଉ ତତ୍ ସଙ୍ଗେ ସଙ୍ଗେ ଅବ୍ୟକ୍ତ ଅଚିନ୍ତ୍ୟନୀୟ ରୂପ, ଏବଂ ସନାତନ-ନିତ୍ୟ ରୂପରେ ପରିକଳ୍ପନା କରାଯାଇଛି (୧୧୧) । ନାରାୟଣ ଶ୍ରୀକୃଷ୍ଣଙ୍କୁ ସନାତନ ବ୍ରହ୍ମ ବୋଲି ଚିନ୍ତାକରିବା ସଙ୍ଗେ ସଙ୍ଗେ (୧୧୨) ତାଙ୍କୁ ବେଦର ସେହି ସହସ୍ରଶୀର୍ଷା ପୁରୁଷ ବୋଲି ମଧ୍ୟ ସ୍ୱୀକାର କରାଯାଇଛି । ଏଥିରେ ଉପନିଷଦର କଳ୍ପିତ 'ଅଣୋରଣୀୟାନ୍ ମହତୋ ମହୀୟାନ୍ (୧୧୩) । ପରମାତ୍ମାଙ୍କର ସ୍ୱରୂପ ପ୍ରତିଫଳିତ ହୋଇଛି । ହରିବଂଶରେ କୁହାଯାଇଛି, "ସନାତନ-ବ୍ରହ୍ମ-ନାରାୟଣଙ୍କର ଶିର, ମୁଖ, ନେତ୍ର ପ୍ରଭୃତି ଅବୟବ ସାରା ବିଶ୍ୱକୁ ବ୍ୟାପି ରହିଛି (୧୧୪) । ଏଥିରେ ଗୀତାରେ ଥିବା ଅର୍ଜ୍ଜୁନଙ୍କର ବିଶ୍ୱରୂପଦର୍ଶନ ଯୋଗ ସମ୍ପୂର୍ଣ୍ଣରୂପେ ପ୍ରତିଫଳିତ ହୋଇଛି । ବ୍ରହ୍ମଙ୍କର ଯେଉଁ ରୂପ ଅଣୁଠାରୁ କ୍ଷୁଦ୍ର, ତାହା ନିଶ୍ଚୟ ଅଦୃଶ୍ୟ । ପୁଣି ଯାହା ଅତି ବିଶାଳରୂପ, ଯାହା ସାରା ବିଶ୍ୱକୁ ବ୍ୟାପିରହିଛି, ତାହା ସମ୍ପୂର୍ଣ୍ଣତଃ ନ ହେଲେ ହେଁ ଆଂଶିକ ଦୃଶ୍ୟମାନ । ଅତଏବ ବ୍ରହ୍ମର ସ୍ୱରୂପ ଏକ ପକ୍ଷରେ ଦୃଶ୍ୟ, ଆଉ ଅନ୍ୟପକ୍ଷରେ ଅଦୃଶ୍ୟ । ଉପନିଷଦର ଏହି ଚିନ୍ତାଧାରାକୁ ଅଙ୍ଗୀକାର କରି ହରିବଂଶ ପ୍ରଚାର କରିବାକୁ ଭୁଲି ନାହିଁ ଯେ, ବ୍ରହ୍ମସନାତନ ନାରାୟଣଙ୍କର ବିଶ୍ୱବ୍ୟାପ୍ତ ଅବୟବ ଥିବା ସଙ୍ଗେ ସଙ୍ଗେ ସେ ଅରୂପ ବା ରୂପହୀନ (୧୧୫) । ଏପରି ପରସ୍ପର ବିରୁଦ୍ଧ ଚିନ୍ତାଧାରା ବିଷ୍ଣୁଙ୍କ ରୂପତତ୍ତ୍ୱରେ ପୁରାଣ ଯୁଗ ବେଳକୁ ଏକୀଭୂତ ହୋଇ ଏକ ଅକଳ୍ପନୀୟ ରୂପରାଜି ସୃଷ୍ଟି କରିଅଛି । ପରବର୍ତ୍ତୀ ଯୁଗରେ ଏହି ଅକଳ୍ପନୀୟ ରୂପର ସମାଧାନ ହୋଇଛି ସ୍ୱୟଂସମ୍ପୂର୍ଣ୍ଣ ବିଚିତ୍ରରୂପ ପୁରୁଷୋତ୍ତମ-ଜଗନ୍ନାଥଙ୍କ ମୂର୍ତ୍ତିରେ ।

---

୧୦୯ । ହରିବଂଶ—ବଙ୍ଗେଶ୍ୱରସଂସ୍କରଣ—୧ମ ଭାଗ—୧୯୭୭—Introduction (ମୁଖବନ୍ଧ) ପୃ ୭ ।

୧୧୦ । ଭଗବଦ୍ ଗୀତା—ପୁରୁଷୋତ୍ତମ ଯୋଗ, ପଞ୍ଚଦଶ ଅଧ୍ୟାୟ ।

୧୧୧ । ହରିବଂଶ—ପ୍ରଥମ ଭାଗ—୧/୯ ପୃ ୫୨—
ଋତମେକାକ୍ଷରଂ ବ୍ରହ୍ମ ବ୍ୟକ୍ତାବ୍ୟକ୍ତଂ ସନାତନମ୍ ।

୧୧୨ । ହରିବଂଶ—୨ୟ ଭାଗ—୨୧/୪-୫ ପୃ ୧୮୮ ।

୧୧୩ । କଠୋପନିଷଦ୍

୧୧୪ । ହରିବଂଶ-୨ୟ—୨୧/୪-୫ ପୃ ୧୮୮ ।

୧୧୫ । ହରିବଂଶ-୨ୟ—୨୧/୮ ପୃ ୧୮୮—
"ହ୍ୟରୂପୀ ପରମାର୍ଥତଃ ।"

ପୁରୁଷୋତ୍ତମଙ୍କଠାରେ ବେଦର 'ସହସ୍ରଶୀର୍ଷା ପୁରୁଷଃ'ର ପରିକଳ୍ପନା ଥିବାରୁ ବିଷ୍ଣୁପୁରାଣ ତାଙ୍କୁ 'ଯଜ୍ଞେଶ୍ୱର' (୧୧୬) ବୋଲି ବର୍ଣ୍ଣନା କରିଛି । ଆମର ଜଗନ୍ନାଥ ମଧ୍ୟ ସେହି ଯଜ୍ଞରୁ ଜାତ ବୋଲି ସ୍କନ୍ଦପୁରାଣ ବର୍ଣ୍ଣନା କରିଛି (୧୧୭) । ତା'ଛଡ଼ା ପୁରାଣୋକ୍ତ ପୁରୁଷୋତ୍ତମ ବିଷ୍ଣୁଙ୍କ ମହିମା ଅଧିକ ବଢ଼ାଇବା ପାଇଁ ତାଙ୍କ ଅଧିକ ପ୍ରାଚୀନତା ତଥା ବୈଦିକତା ଭିତ୍ତିରେ ବିଚାର କରିବା ଦରକାର । ସେଥିପାଇଁ ବିଷ୍ଣୁ-ପୁରାଣ ତାଙ୍କୁ ପରମାତ୍ମା ବୋଲି ବୋଲିବା ସଙ୍ଗେ ସଙ୍ଗେ ସେ ଯେ ବେଦର ବର୍ଣ୍ଣିତ ବିଷ୍ଣୁଙ୍କଠାରୁ ଅଭିନ୍ନ, ତାହା ପ୍ରତିପାଦନ କରିଛନ୍ତି । (୧୧୮) ଆଉ ମଧ୍ୟ ବେଦୋକ୍ତ ପୁରୁଷସୂକ୍ତରେ ଥିବା 'ସହସ୍ରଶୀର୍ଷାପୁରୁଷଃ' ସ୍ପଷ୍ଟ ଭାବରେ ବିଷ୍ଣୁଙ୍କଠାରେ ବିଷ୍ଣୁପୁରାଣରେ ଆରୋପିତ ହୋଇଛି (୧୧୯) । ବେଦାନ୍ତ ଦର୍ଶନର ପ୍ରଭାବରେ ପ୍ରଭାବିତ ହୋଇ ବିଷ୍ଣୁଙ୍କୁ ବ୍ରହ୍ମ ବା ପରଂବ୍ରହ୍ମ ବୋଲି କୁହାଯାଉଥିବାବେଳେ ବୈଦିକ ଧର୍ମର ପ୍ରଭାବରେ ତାଙ୍କୁ ଯଜ୍ଞପୁରୁଷ (୧୧୯କ) ବା ସହସ୍ରଶୀର୍ଷା ପୁରୁଷବୋଲି କୁହାଯାଇଛି । ସମାଜରେ ବେଦକୁ ପ୍ରମାଣ ବୋଲି ଧରାଯାଉଥିବାରୁ ("ବେଦାଃ ପ୍ରମାଣାଃ") ବିଷ୍ଣୁଙ୍କର ସ୍ୱରୂପ ଓ ମହିମାକୁ ବେଦର ବିରାଟପୁରୁଷ ସହିତ ଯୋଡ଼ି-ଦିଆଯାଇଛି । ପୁଣି ପରଯୁଗରେ ଗୀତାର ପ୍ରାଧାନ୍ୟ ଭାରତୀୟ ସମାଜରେ ବଢ଼ିଉଠିଛି । ଲୋକେ ଗୀତାରେ ଥିବା ଦର୍ଶନ ଓ ବାଣୀକୁ ପ୍ରମାଣ ଭାବରେ ବ୍ୟବହାର କରିଛନ୍ତି । ସେଥିରେ ଯେଉଁ ପୁରୁଷ, ଉତ୍ତମପୁରୁଷ ବା ପୁରୁଷୋତ୍ତମଙ୍କର ବର୍ଣ୍ଣନା ଦିଆଯାଇଛି, ତାହାକୁ ବିଷ୍ଣୁପୁରାଣ ମଧ୍ୟ ପୁରୁଷୋତ୍ତମ-ବିଷ୍ଣୁଙ୍କର ସ୍ୱରୂପ ସୂଚାଇବାକୁ ଯାଇ ବ୍ୟବହାର

---

୧୧୬ । ବିଷ୍ଣୁପୁରାଣ—୨ୟ—୪/୪୨ ପୃ ୫୨୦—
ଯଜ୍ଞେଶ୍ୱରୋ ଯଜ୍ଞପୁମାନ୍ ପୁରୁଷୈଃ ପୁରୁଷୋତ୍ତମଃ ।'

୧୧୭ । ସ୍କନ୍ଦପୁରାଣ—ପୁରୁଷୋତ୍ତମ ମାହାତ୍ମ୍ୟ ।

୧୧୮ । ବିଷ୍ଣୁପୁରାଣ—୨ୟ—୪/୪୦—ପୃ ୫୨୦—
ବିଷ୍ଣୁନାମା ସ ବେଦେଷୁ ବେଦାନ୍ତେଷୁ ଚ ଗୀୟତେ ।

୧୧୯ । ବିଷ୍ଣୁପୁରାଣ—୧ମ—୧୨/୫୮—ପୃ ୬୭—
ସହସ୍ରଶୀର୍ଷାପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍ ।

୧୧୯କ । ବିଷ୍ଣୁପୁରାଣ—୧ମ—୧୧/୪୮—ପୃ ୬୧

ଯୋ ଯଜ୍ଞପୁରୁଷୋ ଯଜ୍ଞୋ ଯୋଗେଶଃ ପରମଃପୁମାନ୍
ତସ୍ମିଂସ୍ତୁଷ୍ଟେ ଯଦପ୍ରାପ୍ୟଂ କିଂତଦସ୍ତି ଜନାର୍ଦ୍ଦନେ ।

(୧୨୦) କରିଛନ୍ତି । ଏହି ପୁରାଣରେ ପୁରୁଷୋତ୍ତମଙ୍କୁ କ୍ଷୟଶୀଳମାନଙ୍କ ମଧ୍ୟରେ ଅକ୍ଷୟପୁରୁଷ ବୋଲି କୁହାଯାଇଛି । ପରବର୍ତ୍ତୀ ଯୁଗରେ ଅନ୍ୟାନ୍ୟ ପୁରାଣମାନେ ବିଷ୍ଣୁଙ୍କୁ ବ୍ରହ୍ମ ବୋଲି କହିବା ସଙ୍ଗେ ସଙ୍ଗେ ତାଙ୍କୁ ପୁରୁଷୋତ୍ତମ ବା ଶ୍ରେଷ୍ଠପୁରୁଷ ବୋଲି ବିସ୍ତାର କରିଛନ୍ତି (୧୨୧) । ସେମାନେ ମଧ୍ୟ ବିଷ୍ଣୁଙ୍କ ସହିତ କୃଷ୍ଣଙ୍କୁ ଏହି ପୁରୁଷୋତ୍ତମ ବା ଉତ୍ତମ ପୁରୁଷ ଭାବନାରେ ପରିପ୍ରକାଶ କରିଛନ୍ତି (୧୨୨) । ଫଳରେ ପୁରାଣ ସାହିତ୍ୟରେ ଗତାନୁଗତିକ ଭାବରେ ବିଷ୍ଣୁଙ୍କୁ ବା କୃଷ୍ଣ-ବିଷ୍ଣୁଙ୍କୁ ପୁରୁଷୋତ୍ତମ, ବ୍ରହ୍ମ, ପରଂବ୍ରହ୍ମ, ପରମାତ୍ମା ବୋଲି ଏକାଧାରରେ ଧାରଣା କରାଯାଇଛି ।

## ପୁରୁଷ ଓ ପୁରୁଷୋତ୍ତମ ଶବ୍ଦର ତାତ୍ପର୍ଯ୍ୟ—

ପୁରୁଷୋତ୍ତମ କେବଳ କୃଷ୍ଣ ଓ ବିଷ୍ଣୁଙ୍କ ପାଇଁ ପ୍ରୟୋଗ କରାଯାଇଛି । ଅନ୍ୟ-ଦେବତାଙ୍କ ପାଇଁ ଏ ଶବ୍ଦର ପ୍ରୟୋଗ ନାହିଁ । କାରଣ ଏ ଶବ୍ଦର ଏକ ମହତ୍ତ୍ୱ ଅଛି । ଆଜିକାଲି କଲି ବଙ୍ଗଳାର ଅନୁକୂଳଚନ୍ଦ୍ର (ଠାକୁର)ଙ୍କ ଉଦ୍ଦେଶ୍ୟରେ ଏ ଶବ୍ଦ ବ୍ୟବହାର କରାଯିବାପରେ କେହି କେହି କହିପାରନ୍ତି, ଏହା ବିଷ୍ଣୁଙ୍କର ପର୍ଯ୍ୟାୟବାଚୀ ନୁହେଁ । ଏହା ଯାହା କାହାପାଇଁ ମଧ୍ୟ ବ୍ୟବହାର କରାଯାଇପାରେ । ମାତ୍ର, ଏପରି ଯୁକ୍ତି ଜନସମାଜକୁ ବିଭ୍ରାନ୍ତ କରିବା ଛଡ଼ା ଅନ୍ୟକିଛି ହୋଇନପାରେ । ଜଣେ ଜଣେ ଲୋକଙ୍କପାଇଁ ଏ ଶବ୍ଦ ବିଶେଷଣ ଭାବରେ ବା ସଂଜ୍ଞା ଭାବରେ ବ୍ୟବହୃତ ହୋଇ ଏ ଶବ୍ଦର ମାନ ଯେତିକି କମିଛି, ଲୋକେ ମଧ୍ୟ ସେତିକି ବିଭ୍ରାନ୍ତ ହୋଇଛନ୍ତି । ସେଥିପାଇଁ ଲୋକଙ୍କୁ ଏ ଶବ୍ଦର ଅର୍ଥ ବୁଝାଇବା କଷ୍ଟକର ହୋଇପଡ଼ୁଛି । ତେବେ ଯେଉଁମାନେ ଶ୍ରୀମଦ୍ ଭଗବଦ୍ ଗୀତା, ଉପନିଷଦ ଆଦି ପ୍ରାଚୀନ ଦାର୍ଶନିକ ତଥା ଧାର୍ମିକ ଗ୍ରନ୍ଥମାନ ପଢ଼ିଛନ୍ତି, ଅଧ୍ୟୟନ କରିଛନ୍ତି, ସେମାନଙ୍କ ପାଇଁ ଏ ଶବ୍ଦର ଗୁରୁତ୍ୱ, ଉଦ୍ଦେଶ୍ୟ ଓ ମୌଳିକତା ବୁଝିବା କଷ୍ଟକର ନୁହେଁ ।

---

୧୨୦ । ଶ୍ରୀମଦ୍ ଭଗବଦ୍ ଗୀତା—୧୫ ଅଧ୍ୟାୟ—

ଯସ୍ମାତ୍ କ୍ଷରମତୀତୋଽହମକ୍ଷରାଦପି ଚୋତ୍ତମଃ ।
ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ ॥

ଆଉମଧ୍ୟ—

ବିଷ୍ଣୁପୁରାଣ—୧ମ—୧୨/୭୧—ପୃ ୭୮

ବିଶ୍ୱବ୍ୟତୋଽନନ୍ତକରଣେ ପୁରୁଷୋତ୍ତମସ୍ୟୋ ଭବାନ୍ ।

୧୨୧ । ଭବିଷ୍ୟପୁରାଣ—୨ୟ—୫୦/୩୨—ପୃ ୪୬୬ (ବରେଲି-୧୯୭୪)

ପୁରୁଷ ଉତ୍ତମ ବା ଶ୍ରେଷ୍ଠ ହେଲେ ପୁରୁଷୋତ୍ତମ ହୁଏ । ଏହା ହେଉଛି ପୁରୁଷୋତ୍ତମ ଶବ୍ଦର ଏକ ସରଳ ଅର୍ଥ । ସାଧାରଣରେ ଏହି ଅର୍ଥ ପ୍ରଚଳିତ । କିନ୍ତୁ ଜଣେ ଲୋକକୁ ଉତ୍ତମ ପୁରୁଷ ବୋଲି କହିଲେ କିଛି ଅର୍ଥଗତ ଅସୁବିଧା ନାହିଁ । ମାତ୍ର ପୁରୁଷୋତ୍ତମ ବୋଲି କହିଦେଲେ, କିଛି ଅସୁବିଧା ସୃଷ୍ଟି ହୁଏ । କାରଣ, ପୂର୍ବୋକ୍ତ ଆଲୋଚନାମାନଙ୍କରୁ ପ୍ରମାଣିତ ହୋଇଛି ଯେ, ଏହା ବିଷ୍ଣୁ ବା କୃଷ୍ଣ- ବିଷ୍ଣୁଙ୍କର ସଂଜ୍ଞା ଏବଂ ଶ୍ରୀଜଗନ୍ନାଥ ଶ୍ରୀକୃଷ୍ଣ ବା ବିଷ୍ଣୁ ରୂପରେ ପୂଜିତ ହୋଇଥିବାରୁ ଏହା କେବଳ ଏ ଯୁଗରେ ତାଙ୍କର ନାମ । ଏହି ଗତାନୁଗତିକ ଚଳିଆସିବା ଧାରାକୁ ବାଦ୍‌ଦେଇ ମନଇଚ୍ଛା କିଛି କହିଗଲେ ତାହା ବୁଝିବାରେ ନିଶ୍ଚୟ ଅସୁବିଧା ସୃଷ୍ଟି ହେବ । ଯେପରିକି 'ପଙ୍କଜ', 'ଜଳଜ', ବୋଲି କହିଲେ ପଦ୍ମ ବୋଲି ଆମେ ବୁଝୁ । କଇଁଫୁଲ, ଶୈବାଳ ଆଦି ଅନ୍ୟାନ୍ୟ ଅନେକ କିଛି ଜଳରୁ ଜାତ ହେଲେହେଁ, ଆମେ ତାହାସବୁ 'ଜଳଜ' ଅର୍ଥରେ ବୁଝୁ ନାହିଁ । କାରଣ, ଗତାନୁଗତିକ ବ୍ୟବହାର ଫଳରେ ଏହାହିଁ ହୋଇଛି । ଏହି ଗତାନୁଗତିକ ଧାରାକୁ ଆମକୁ ମାନିବାକୁ ହେବ । ଯଦି କେହି ଏ କ୍ଷେତ୍ରରେ କହେ, "କୁମୁଦ ଜଳରୁ ଜାତ" ଏଥିରେ କାହାର ଆପତ୍ତି ନାହିଁ । କିନ୍ତୁ କୁମୁଦର ସଂଜ୍ଞା କଦାପି ଜଳଜ ହୋଇନପାରେ । ତେଣୁ ଏହାକୁ ବୈୟାକରଣମାନେ 'ରୂଢ଼ି ପ୍ରୟୋଗ' ବୋଲି କହିଥାନ୍ତି । ସେହିପରି ପୁରୁଷୋତ୍ତମ ବୋଲି କହିଲେ ବିଷ୍ଣୁ ବା ବିଷ୍ଣୁଭାବାତ୍ମକ କୃଷ୍ଣ, ଜଗନ୍ନାଥଙ୍କୁ ହିଁ ବୁଝାଏ ।

**ବ୍ୟାକରଣାନୁସାରେ—**

ବୈଦିକ ଯୁଗରେ ପୁରୁଷର ଅର୍ଥ ଭିନ୍ନ ଥିଲା । ମାତ୍ର ପରଯୁଗରେ ବିଭିନ୍ନ ଦର୍ଶନ ମଧ୍ୟରେ ଏ ଶବ୍ଦର ଅର୍ଥ ବଦଳି ଗ୍ଲଲିଛି । ବ୍ୟାକରଣରେ ପୁରୁଷର ଅର୍ଥ ପୁରାପୁରି ଅଲଗା । ସଂସ୍କୃତ ବ୍ୟାକରଣରେ ଏହି ପୁରୁଷ ତିନିପ୍ରକାର ଭାବରେ ବ୍ୟବହାର କରାଯାଇଛି । ଯଥା —ପ୍ରଥମ ପୁରୁଷ ମଧ୍ୟମପୁରୁଷ, ଉତ୍ତମପୁରୁଷ । ଇଂରାଜୀ ଓ ଓଡ଼ିଆ ପ୍ରଭୃତି ବ୍ୟାକରଣରେ ଥିବା ତୃତୀୟ ପୁରୁଷ (ସେ, ରାମ, ବା ମନୁଷ୍ୟ, ବ୍ୟାଘ୍ର ଇତ୍ୟାଦି ) ହେଉଛି ସଂସ୍କୃତରେ ପ୍ରଥମ ପୁରୁଷ । ଅନ୍ୟାନ୍ୟ ବ୍ୟାକରଣରେ ଦ୍ୱିତୀୟପୁରୁଷ ହେଉଛି ସଂସ୍କୃତ ବ୍ୟାକରଣର ମଧ୍ୟମପୁରୁଷ । ଯଥା—ତୁମେ, ତୁମ୍ଭେ ତୁହେଁ ଓ ତୁମ୍ଭେମାନେ । ଅନ୍ୟାନ୍ୟ ବ୍ୟାକରଣର ପ୍ରଥମପୁରୁଷ (ମୁଁ)କୁ ସଂସ୍କୃତରେ ଉତ୍ତମ-ପୁରୁଷ ଭାବରେ ଗ୍ରହଣ କରାଯାଇଛି * । ଯଥା—ମୁଁ ଆମ୍ଭେ ତୁହେଁ, ଆମ୍ଭେମାନେ

---

* ଦ୍ରଷ୍ଟବ୍ୟ—ବ୍ୟାକରଣରେ Person ବା ପୁରୁଷ କ୍ରମରେ ଉତ୍ତମପୁରୁଷର ଦାର୍ଶନିକ ବ୍ୟାଖ୍ୟା ହେଉଛି, ପରଂବ୍ରହ୍ମ—ଅଦ୍ୱୈତ—ନିର୍ଗୁଣ । ତେଣୁ ସେ ଉତ୍ତମପୁରୁଷ । ତ୍ୱଂ—ସଗୁଣ ବ୍ରହ୍ମ । ଜୀବବ୍ରହ୍ମ । ଅହଂ ଗୀତାର ଶ୍ରୀକୃଷ୍ଣ

(ଅହଂ, ଆନାଂ, ଦସ୍ୟୁମ୍) । ଏହି ତିନୋଟି ଶବ୍ଦକୁ ଉତ୍ତମପୁରୁଷ ବୋଲି କୁହାଯାଇଛି ସିନା; 'ପୁରୁଷୋତ୍ତମ' ବୋଲି ଆଦୌ କୁହାଯାଇନାହିଁ । କୁହାଯାଇଥିଲେ ପ୍ରମାଦ ସୃଷ୍ଟି ହୋଇଥାନ୍ତା । ତା'ଛଡ଼ା ଆହୁରି ମଧ୍ୟ ଦେଖିବାର କଥା ଯେ, ଏହି ପୁରୁଷ (Person) (ବା ଉତ୍ତମପୁରୁଷ) ଅର୍ଥରେ ପୁରୁଷ (Male) ଓ ସ୍ତ୍ରୀ (Female) (Man and Woman) ଉଭୟଙ୍କୁ ଗ୍ରହଣ କରାଯାଇଛି । ପରଯୁଗରେ ପୁରୁଷ (Male)ର ବ୍ୟବହାର ଭିନ୍ନ ଅର୍ଥରେ କରାଯାଇଥିଲେ ମଧ୍ୟ ଏହା ହେଉଛି ପରଂପରାର ଏକ ସୋପାନ । ଏହାକୁ କଦାପି ଅସ୍ୱୀକାର କରାଯାଇପାରେନା ।

## ବୈଦିକ ଯୁଗରେ ଓ ବେଦାଙ୍ଗ କାଳରେ—

ଉପନିଷଦ ଯୁଗରେ ବା ବେଦାଙ୍ଗର ରଚନା କାଳରେ ମୋଟାମୋଟି ଖ୍ରୀ:ପୂ: ୭୫୦ ବେଳକୁ ଯାସ୍କ (୧୨୩) ତାଙ୍କ ନିରୁକ୍ତ ନାମକ ଏକ ବୈଦିକ ଶବ୍ଦତତ୍ତ୍ୱ ଗ୍ରନ୍ଥରେ 'ପୁରୁଷ' ଶବ୍ଦର ବିଭିନ୍ନ ଅର୍ଥ କରିଛନ୍ତି । ସେଗୁଡ଼ିକ ହେଲା ପୁରଷାଦଃ, ପୁରିଶୟଃ, 'ପୃ' ବା ପୂର୍ ଧାତୁରୁ ପୂର୍ଣ୍ଣଯୁକ୍ତ ଅର୍ଥରେ (୧୨୪) । ଅର୍ଥାତ୍, ପୁର ବା ଦୁର୍ଗରେ ('ସଦ୍') ରହୁଥିବା, ଦୁର୍ଗ ବା ପୁରରେ ('ଶୀ') ଶୋଉଥିବା, ପୂର୍ଣ୍ଣ କରୁଥିବା, ଏହି ତିନୋଟି ଭାବ ଯଥାକ୍ରମେ ଉପରୋକ୍ତ ତିନୋଟି ବିବକ୍ଷାରୁ ନିଷ୍ପନ୍ନ ହେଉଛି । ଏଥିମଧ୍ୟରୁ ପ୍ରଥମ ଦୁଇଟି ହେଉଛି ପୁରବାସୀ ରାଜାଙ୍କ ଅର୍ଥରେ ବା ନାଗରିକ ଅର୍ଥରେ । ଶେଷୋକ୍ତ ବିବକ୍ଷାର ଅର୍ଥଟି ହେଉଛି ଆତ୍ମା । ଆତ୍ମା ହେବାର ଯାଥାର୍ଥ୍ୟ ଶ୍ୱେତାଶ୍ୱତର ଉପନିଷଦରେ ସୂଚାଇ ଦିଆଯାଇଛି (୧୨୫) । ପରେ ଏ ଅର୍ଥ ବଦଳିଯାଇଛି । କେତେକ ଶବ୍ଦତତ୍ତ୍ୱବିତ୍ 'ପୁରୁଷ' ଶବ୍ଦର ବ୍ୟୁତ୍ପତ୍ତି 'ପୁରୁ' ବା 'ପୁରୁ'; ଏହି ମୂଳ ଧ୍ୱନିରୁ ଆସିଛି ଏବଂ ଏହା 'ପୁଷ୍' ଧାତୁରୁ

---

ପୁରୁଷୋତ୍ତମ ହେଲେ, 'ହ୍ରୀଂ' ହେଉଛି ଜୀବବ୍ରହ୍ମ ବା ଅର୍ଜ୍ଜୁନ । ଆଉ ପ୍ରଥମ ପୁରୁଷ' 'ସଃ' ଇତ୍ୟାଦି ହେଉଛି ଦୃଶ୍ୟମାନ ଜଗତ୍ । ଏହା ଏକ ଦାର୍ଶନିକ ବ୍ୟାଖ୍ୟାହେଲେହେଁ କିଛି ପାର୍ଥକ୍ୟ ମଧ୍ୟ ଅଛି ।

୧୨୩ । ସଂସ୍କୃତ ସାହିତ୍ୟକା ଇତିହାସ—ବଳଦେବ ଉପାଧ୍ୟାୟ-ପୃ: ୯୮, ୭୭୮,-ତାଙ୍କ ମତରେ ଯାସ୍କଙ୍କର ସମୟ ହାରାହାରି ବିକ୍ରମ ପୂର୍ବ ସାତଶହବର୍ଷ ।

୧୨୪ । ନିରୁକ୍ତ—୨ୟ-୧,୩,—"ପୁରୁଷଃ, ପୁରଷାଦଃ, ପୁରିଶୟଃ, ପୂରୟତେର୍ବା ପୂରୟତି ଅନ୍ତଃ ଇତି ଅନ୍ତଃପୁରୁଷ ଅଭିପ୍ରେତ୍ୟ 'ଯସ୍ମାତ୍ ପରଂ ନାପରଂ ଅସ୍ତି କିଂଚିତ୍......

୧୨୫ । ଶ୍ୱେତାଶ୍ୱେତର ଉପନିଷଦ—୩/୯ "ତେନ ଇଦଂ ପୂର୍ଣ୍ଣମ୍ ପୁରୁଷେଣ ସର୍ବମ୍ ।"

ନିଷ୍ପନ୍ନ ହୋଇଛି ବୋଲି କହନ୍ତି । 'ପୁଷ୍'ର ଅର୍ଥ ବଢ଼ିବା (ସାଫଁ୍ୟ) । ଏହାକୁ ନେଇ କାଳ-କ୍ରମେ ମନୁବଂଶୀୟ ମାନବମାନଙ୍କୁ ବା ନରମାନଙ୍କୁ ଏହା ବୁଝାଉଛି (୧୬) । ଏହି 'ପୁମାନ୍' ଅର୍ଥରେ ପୁରୁଷଶବ୍ଦ ବୈଦିକ ଯୁଗରେ ବ୍ୟବହୃତ ହେଉଥିଲା । କିନ୍ତୁ ପୁରୁଷୋତ୍ତମ ଶବ୍ଦ ସେତେବେଳେ ନ ଥିଲା । ପୁରୁଷ ସୂକ୍ତର ପୁରୁଷ କଳ୍ପନା ମଧ୍ୟ ଏକ ପୁମାନ୍‌ର କଳ୍ପନା । କିନ୍ତୁ ଏହା ମାନବୀୟ (ମନୁଷ୍ୟର) ଅର୍ଥ ପ୍ରକାଶ କରୁନାହିଁ ।

**ବେଦାନ୍ତ ବା ଉପନିଷଦ ମତରେ—**

ଉପନିଷଦ ସମସ୍ତଙ୍କୁ ସୀମିତ କରୁଥିବା ଶେଷୋକ୍ତ ଅର୍ଥଟି (ପୁରୁଷ୍ଟେତ ବା) ଅଧିକତର ଭାବରେ ପ୍ରକାଶିତ ହୋଇଛି । ଏହି ଅର୍ଥରେ ଆତ୍ମାକୁ ଗ୍ରହଣ କରାଯାଇଛି । ମନୀଷୀର ଆତ୍ମା ହେଉଛି ସବୁକିଛି ତାର ପରିଚୟର ମୂଳ । ଆତ୍ମା ବିନା ଶରୀରର କୌଣସି ମୂଲ୍ୟ ନାହିଁ କି ପରିଚୟ ନାହିଁ । ତେଣୁ ଆତ୍ମାକୁ ବେଦାନ୍ତ ଦର୍ଶନରେ ପୁରୁଷ ଅର୍ଥରେ ନିଆଯାଇଛି । ମାତ୍ର ଅନ୍ୟ ଦୃଷ୍ଟିରେ ଦେଖିଲେ, ଏହା କେବଳ 'ପୁମାନ୍'କୁ ବୁଝାଏ ନାହିଁ । ସ୍ତ୍ରୀମାନଙ୍କୁ ମଧ୍ୟ ବୁଝାଉଛି । ଏହା ବୋଲି ଯେ ନର ଅର୍ଥରେ ଉପନିଷଦରେ ପୁରୁଷ ଶବ୍ଦ ବ୍ୟବହୃତ ହୋଇନାହିଁ, ଏପରି ନୁହେଁ । ବେଦାନ୍ତ ଗ୍ରନ୍ଥରେ (୧) ନର, (୨) ଆତ୍ମା, (୩) ସ୍ୱର୍ଗର ବିଭିନ୍ନ ସ୍ତରର ଦେବତା କିମ୍ବା ଅତିମାନୁଷ, ଏବଂ (୪) ଅନନ୍ୟ ଅବ୍ୟକ୍ତ ବ୍ରହ୍ମ; ଏହି ଚାରି ପ୍ରକାର ଭାବରେ ପୁରୁଷର ଅର୍ଥ ଦେଖିବାକୁ ମିଳେ (୧୭) । ଦେବତା ବୋଲି ଯେଉଁ ପୁରୁଷର ଆଲୋଚନା ଉପନିଷଦ କରିଛି, ସେମାନେ ଅମର, ଶ୍ରେଷ୍ଠ ଓ ଶାଶ୍ୱତ ନିୟନ୍ତ୍ରଣକାରୀ ଭାବରେ ପ୍ରତିଷ୍ଠିତ । ମନୁଷ୍ୟ (ନର), ତା'ଠାରୁ ଶ୍ରେଷ୍ଠ ଆତ୍ମା, ତା'ଠାରୁ ଶ୍ରେଷ୍ଠ ଦେବତା; ଏହିପରି ଉପରକୁ ଉପର ଆଲୋଚନା କରି ପରିଶେଷରେ ଉପନିଷଦରେ 'ବ୍ରହ୍ମ'କୁ ହିଁ ଦେବତାଙ୍କ ଠାରୁ ଉପରେ ଶ୍ରେଷ୍ଠତମ ପୁରୁଷ

---

୧୬ । The Cult of Jagannath and the Regional Tradition of Orissa. Here after—C.J.R.T.O.—1978-pp. 31. (Paper of G. C. Tripathi)

୧୭ । ଛାନ୍ଦୋଗ୍ୟ—(୧ମ ପ୍ରକାର) ୧ ୧/୧, ୩ ୨/୪, ୩ ୬/୧, ୪ ୧୫/୧, ୧୪/୧, ତୈତ୍ତିରୀୟ ୨/୬, ୫/୩, ବୃହଦାରଣ୍ୟକ-୧ ୧୩/୧୫ ମୁଣ୍ଡକ ୧ ୧/୭ ଇତ୍ୟାଦି । (୨ୟ ପ୍ରକାର) ବୃହଦାରଣ୍ୟକ ୪/୩,୮,୯ ଇତ୍ୟାଦି । (ତୃତୀୟ ପ୍ରକାର)-ଛାନ୍ଦୋଗ୍ୟ-୪-୧୫-୫; ୫-୧୦-୨; ବୃହଦାରଣ୍ୟକ-୬—୧.୧୫; ଛାନ୍ଦୋଗ୍ୟ-୨/୧.୧-୧୩ । ୩/୯ ୧୦-୧୭ ।
ଦ୍ରଷ୍ଟବ୍ୟ—C.J.R.T.O.— ପୃ ୩୩ (ତ୍ରିପାଠୀ) ବିସ୍ତୃତ ବିବରଣୀ ପାଇଁ ।

ଭାବରେ ବର୍ଣ୍ଣନା କରାଯାଇଛି । 'ବ୍ରହ୍ମସ୍ୱରୂପ' ଠାରୁ ସଂସାରରେ ଆଉ ଅଧିକ କିଛି ନାହିଁ । ତାହା ବାହାରେ ମଧ୍ୟ ଆଉ କିଛି ନାହିଁ । ଏହିପରି ଆଲୋଚନା ଉପନିଷଦରେ ସ୍ଥାନ ପାଇଛି । କୁହାଯାଇଛି, ବ୍ରହ୍ମସ୍ୱରୂପ ହେଉଛି ଅବ୍ୟକ୍ତଠାରୁ ମଧ୍ୟ ଶ୍ରେଷ୍ଠ । ଏହାଠାରୁ ଅଧିକ ଶ୍ରେଷ୍ଠ ଆଉ କିଛି ନାହିଁ (୧୨୮) । ବ୍ରହ୍ମପ୍ରାପ୍ତି ପରେ ଜୀବ ଆଉ ସଂସାରକୁ ପୁନର୍ଜନ୍ମ ପାଇଁ ଫେରିଆସେନା । ଏହି ବ୍ରହ୍ମ ହେଉଛି ଶ୍ରେଷ୍ଠତମ ଠାରୁ ଅଧିକ ଶ୍ରେଷ୍ଠ । ତାଙ୍କୁ ଜାଣିଲେ ମନୁଷ୍ୟ ନିଜର ନାମ, ରୂପ ତାଙ୍କଠାରେ ହଜେଇଦିଏ । ଆଉ ତାକୁ (ନିଜକୁ) ଫେରି ପାଏ ନାହିଁ । ଏ କ୍ଷେତ୍ରରେ ଉଦାହରଣ ଛଳରେ କୁହାଯାଇଛି, ଯେପରି ନଦୀମାନେ ସମୁଦ୍ରରେ ପଡ଼ି ନିଜର ସତ୍ତା ହରାନ୍ତି । ସେହିପରି ଜୀବ ବ୍ରହ୍ମରେ ଲୀନ ହୋଇ ନିଜର ସତ୍ତା ହରାଇଥାଏ (୧୨୯) । ଏହି ବ୍ରହ୍ମ କେବଳ ଅକ୍ଷୟ ନୁହନ୍ତି; ଯେ ଅକ୍ଷୟ' ତନ୍ମଧ୍ୟରେ ପୁଣି ଯାହା ସର୍ବୋତ୍ତମ ଅକ୍ଷୟ, ତାହାଠାରୁ ଶ୍ରେଷ୍ଠତମ କ୍ଷୟସ୍ଥାନ ହେଉଛନ୍ତି ଏହି ବ୍ରହ୍ମ । ତେଣୁ ତାଙ୍କୁ କୁହାଯାଇଛି "ଅକ୍ଷରାତ୍ ପରତଃ ପରଃ" ଏବଂ ପ୍ରାଣ, ମନ, ଇନ୍ଦ୍ରିୟ, ସବୁକିଛିର ସେ ସ୍ରଷ୍ଟା (୧୩୦) । ଆଉ ସେ ଜ୍ଞାନାତ୍ମକ ।

**ଗୀତା ମତରେ—**

ଏହିସବୁ ଆଲୋଚନାରୁ ଜଣାପଡ଼ୁଛି, ଉପନିଷଦ ବେଳକୁ ପୁରୁଷ ଶବ୍ଦ ଏକ ଦାର୍ଶନିକ ତାତ୍ତ୍ୱିକ ଶବ୍ଦରେ ପରିଣତ ହୋଇସାରିଛି ଓ ଏହାର ଅର୍ଥ ଅକ୍ଷର 'ବ୍ରହ୍ମ' ବୋଲି ଗୃହୀତ ହୋଇଛି । ଗୀତାରେ ପୁରୁଷ ଶବ୍ଦ ସାଧାରଣ 'ନର' ଅର୍ଥରେ ବ୍ୟବହୃତ ହୋଇ ନାହିଁ । ଏହା ମୁଖ୍ୟତଃ ଦାର୍ଶନିକ ଅର୍ଥରେ ବ୍ୟବହୃତ ହୋଇଅଛି । ଜଗତରେ 'କ୍ଷର ଓ ଅକ୍ଷର', ଏହି ଦୁଇଟି ଭାବରେ ପୁରୁଷ ପ୍ରସିଦ୍ଧ ଅଟନ୍ତି । ଭୂତସହମୂହଙ୍କୁ କ୍ଷର' ବା କ୍ଷୟଶୀଳ ପୁରୁଷ ଓ ଜୀବାତ୍ମାକୁ (ଅଥବା ମାୟା ଶକ୍ତିକୁ) ଅକ୍ଷର ପୁରୁଷ ବା ଅକ୍ଷୟ ପୁରୁଷ ବୋଲି କୁହାଯାଏ (୧୩୧) । ଯାସ୍କଙ୍କର ବ୍ୟାଖ୍ୟାରେ ଯେପରି ପୁରୁଷର ଅର୍ଥ ପୁର ବା ଦୁର୍ଗରେ ରହୁଥିବା ଲୋକକୁ ବୁଝାଏ, ସେହିପରି ଶରୀର ନାମକ ଦୁର୍ଗରେ ଯେଉଁ ଆତ୍ମା ବାସକରେ ତାହାକୁ ପୁରୁଷ କୁହାଯାଏ । ଦାର୍ଶନିକ ମତରେ ଏହି ହେତୁରୁ ଆତ୍ମାକୁ ପୁରୁଷ ବୋଲି କୁହାଯାଇଛି । ୧. କର୍ମେନ୍ଦ୍ରିୟ (ବାକ୍, ପାଣି, ପାଦ, ପାୟୁ, ଉପସ୍ଥ),

---

୧୨୮ । କଠଉପନିଷଦ—୧-୩-୧୧—

ଅବ୍ୟକ୍ତାତ୍ ପୁରୁଷଃ ପରଃ । ପୁରୁଷାନ୍ ନ ପରଂ କିଂଚିତ୍ । ସା କାଷ୍ଠା···

୧୨୯ । ମୁଣ୍ଡକ ଉପନିଷଦ—୩-୨-୮

୧୩୦ । ଶ୍ୱେତାଶ୍ୱେତର ଉପନିଷଦ—୩/୮, ୯, ୧୨, ୧୯,

୧୩୧ । ଶ୍ରୀମଦ୍ ଭଗବଦ୍ ଗୀତା—୧୫/୧୬—

ଦ୍ୱାବିମୌ ପୁରୁଷୌ ଲୋକେ କ୍ଷରଶ୍ଚାକ୍ଷର ଏବ ଚ ।
କ୍ଷରଃ ସର୍ବାଣି ଭୂତାନି କୂଟସ୍ଥୋଽକ୍ଷର ଉଚ୍ୟତେ ॥

୨. ଜ୍ଞାନେନ୍ଦ୍ରିୟ (ଶ୍ରୋତ୍ର, ନେତ୍ର, ନାସିକା, ଜିହ୍ୱା, ଚର୍ମ), ୩ ଅନ୍ତଃକରଣ (ମନ, ବୁଦ୍ଧି, ଚିତ୍ତ, ଅହଂକାର) ୪. ପ୍ରାଣ (ପ୍ରାଣ, ଅପାନ, ସମାନ, ଉଦାନ, ବ୍ୟାନ) ୫. ପଞ୍ଚ ମହାଭୂତ (କ୍ଷିତି, ଅପ୍, ତେଜ୍, ମରୁତ୍, ବ୍ୟୋମ) ୬. କାମ, ୭. କର୍ମ, ୮. ତମଃ (ଅବିଦ୍ୟା) ଏହି ଅଷ୍ଟପ୍ରକାର ପଦାର୍ଥ ନିର୍ମିତ ପୁରରେ ଅର୍ଥାତ୍ ଶରୀରରେ ଯେ ବାସ କରନ୍ତି ତାହାଙ୍କ ନାମ ପୁରୁଷ, ଅର୍ଥାତ୍ ଆତ୍ମା । ସେ ଏ ପୁରର କୌଣସି ବିଷୟରେ ଲିପ୍ତ ନ ହେଲେ ମଧ୍ୟ ଲିପ୍ତ ଭଳି ବାହ୍ୟତଃ ଜଣାଯାଆନ୍ତି ଏବଂ ସେ ପୁରୁଷ ହେଉଛନ୍ତି ସ୍ୱପ୍ରକାଶ । (୧୩୨)

କର୍ମେନ୍ଦ୍ରିୟାଣି ଖଳୁ ପଞ୍ଚତଥାପରାଣି, ଜ୍ଞାନେନ୍ଦ୍ରିୟାଣି ମନ ଆଦି ଚତୁଷ୍ଟୟଂ ଚ ।
ପ୍ରାଣାଦି ପଞ୍ଚକମଥୋ ବିୟଦାଦିକଂ ଚ, କାମଶ୍ଚ କର୍ମ ଚ ତମଃ ପୁନରଷ୍ଟମୀପୂଃ ।।

ଏହି ଅଷ୍ଟପୁରରେ ବାସକରୁଥିବା ପୁରୁଷ ସର୍ବଦା ଶ୍ରଦ୍ଧାମୟ (୧୩୩) । ଏପରି, 'ଆତ୍ମା' ନାମକ ପୁରୁଷଙ୍କୁ ଶ୍ରଦ୍ଧାମୟ ବୋଲି ବିଚାର ଗୀତା ସମୟରେ କରାଯାଇଛି । ଏହି ଆତ୍ମପୁରୁଷ ପ୍ରକୃତି ସହିତ ଯୁକ୍ତ ହେଲେ ସୁଖ, ଦୁଃଖ ଭୋଗ କରନ୍ତି (୧୩୪) । ସେହି ଭାବରେ ବିଚାର କଲେ ଦେଖାଯାଏ ଜଗନ୍ନାଥ ମଧ୍ୟ ପ୍ରକୃତି ସହିତ ଯୁକ୍ତ ହେବାରୁ ତ୍ରିଗୁଣ ଜଡ଼ିତ ହୋଇ ସଂସାରରେ ଜ୍ୱର ଆଦି ରୋଗରେ ଆକ୍ରାନ୍ତ ହୁଅନ୍ତି । ଗୀତାର ଏହି ଚିନ୍ତାଧାରାରେ ଜଗନ୍ନାଥ ହେଉଛନ୍ତି ଅକ୍ଷରପୁରୁଷ । ଏହା ତାଙ୍କର ସଗୁଣ ସ୍ୱଭାବରେ ସିଦ୍ଧ ; ମାତ୍ର ଏହାଛଡ଼ା ତାଙ୍କର ନିର୍ଗୁଣ ସ୍ୱଭାବ ମଧ୍ୟ ଅଛି । ସେତେବେଳେ ତାଙ୍କୁ ଖାଲି ପୁରୁଷ ବୋଲି ନ ବୋଲିଯାଇ ପୁରୁଷଠାରୁ ଅଧିକ ବୋଲି ବିଚାର କରାଯାଇଛି । ଏହି ସ୍ୱଭାବ, ହେଲା, ତାଙ୍କର ଜଗତ ପାଳନ । ଜଗତକୁ ପାଳନ କରିବା ହେତୁ ସେ (୧୩୫) ଈଶ୍ୱର ଓ ଅକ୍ଷରପୁରୁଷଠାରୁ ଶ୍ରେଷ୍ଠ ହୋଇଥିବାରୁ ସେ

---

୧୩୨ । ବିହାରୀଲାଲ ଗୀତା—୧୯୬୯—ପୃ ୫୧—ଉଦ୍ଧୃତ ।

୧୩୩ । ଗୀତା—୧୭/୩—

ସତ୍ତ୍ୱାନୁରୂପା ସର୍ବସ୍ୟ ଶ୍ରଦ୍ଧା ଭବତି ଭାରତ ।
ଶ୍ରଦ୍ଧାମୟୋଽୟଂ ପୁରୁଷୋ ଯୋଯଚ୍ଛ୍ରଦ୍ଧଃ ସ ଏବ ସଃ ।।

୧୩୪ । ଗୀତା—୧୩/୨୧—

ପୁରୁଷଃ ପ୍ରକୃତିସ୍ଥୋହି ଭୁଂକ୍ତେ ପ୍ରକୃତିଜାନ୍ ଗୁଣାନ୍ ।
କାରଣଂ ଗୁଣସଙ୍ଗୋଽସ୍ୟ ସଦସଦ୍ ଯୋନି ଜନ୍ମସୁ ।।

୧୩୫ । ଗୀତା—୧୫/୧୭—

ଯୋ ଲୋକତ୍ରୟମାବିଶ୍ୟ ବିଭର୍ତ୍ତ୍ୟବ୍ୟୟ ଈଶ୍ୱରଃ ।

ପୁରୁଷୋତ୍ତମ (୧୩୬), ଅର୍ଥାତ୍ ବ୍ରହ୍ମ (ବା ଦାରୁବ୍ରହ୍ମ) । ଏହି ବ୍ରହ୍ମର ଆରୋପ ପୁରାଣମାନଙ୍କରେ ବିଷ୍ଣୁଙ୍କ ପାଇଁ କରାଯାଇଛି । ଅର୍ଥାତ୍ ବିଷ୍ଣୁ ହିଁ ସେହି ବ୍ରହ୍ମ । ପରବର୍ତ୍ତୀ ଯୁଗରେ ଏହା ବିଷ୍ଣୁଦେବତା-ଜଗନ୍ନାଥଙ୍କଠାରେ, ଆରୋପିତ ହୋଇଛି । ଫଳରେ ସେ ପୁରୁଷୋତ୍ତମ ଓ ଦାରୁବ୍ରହ୍ମ; ଏହି ଉଭୟ ନାମରେ କଥିତ ହୁଅନ୍ତି; ଖ୍ୟାତ ହୁଅନ୍ତି । ଏହାଛଡ଼ା ଜଗତପାଳନ ପୁରୁଷୋତ୍ତମ (ବିଷ୍ଣୁ)ଙ୍କର ପ୍ରଧାନ କାର୍ଯ୍ୟ ହୋଇଥିବାରୁ ଏହି ଦାରୁବ୍ରହ୍ମଙ୍କୁ 'ଜଗନ୍ନାଥ' ବୋଲି ମଧ୍ୟ କୁହାଯାଉଛି ।

**ସାଂଖ୍ୟ ମତରେ—**

ଅଦ୍ୱୈତ ବେଦାନ୍ତ ମତରେ ପୁରୁଷ ଓ ପୁରୁଷୋତ୍ତମ ଶବ୍ଦକୁ ଆତ୍ମନ୍ ଓ ବ୍ରହ୍ମନ୍ ଅର୍ଥରେ ଯଥାକ୍ରମେ ନିଆଯାଇଥିବାବେଳେ, ନ୍ୟାୟ ଓ ଯୋଗ ଦର୍ଶନରେ ଏହାକୁ ଜୀବ ଓ ଈଶ୍ୱର ଅର୍ଥରେ ନିଆଯାଇଛି (୧୩୭) । ମାତ୍ର ସାଂଖ୍ୟ ଦର୍ଶନରେ ପୁରୁଷ ଶବ୍ଦ ଆତ୍ମା ଅର୍ଥରେ ଗ୍ରହଣ କରାଯାଇଛି । ହେଲେ, ସେ ଆତ୍ମା ଏହି ଦର୍ଶନ ମତରେ ଏକ ନୁହେଁ ଅନେକ । ତେଣୁ କୁହାଯାଇଛି, "ପୁରୁଷବହୁତ୍ୱଂ ସିଦ୍ଧମ୍ " (୧୩୮) । ଏହାର କାରଣ ହେଉଛି, ଯଦି ଆତ୍ମା ଏକ ହୋଇଥାନ୍ତା—ତେବେ ଜଣେ ମରିଗଲେ ସମସ୍ତେ ମରିଯାଆନ୍ତେ । ମାତ୍ର ତାହା ହେଉନାହିଁ । ପୁଣି ଗୋଟାଏ କଥା ଜଣଙ୍କୁ ଭଲ ଲାଗିଲେ ସମସ୍ତଙ୍କୁ ଭଲ ଲାଗନ୍ତା; ଖରାପ ଲାଗିଲେ ସମସ୍ତଙ୍କୁ ଖରାପ ଲାଗନ୍ତା; କିନ୍ତୁ ସେପରି ନ ହେଉଥିବାରୁ ଆତ୍ମା ଅନେକ ବୋଲି ସିଦ୍ଧ ହୋଇଛି । 'ଆତ୍ମା' ରୂପ ପୁରୁଷ ହେଉଛି ଭୋକ୍ତା ଓ ସେ ଚେତନ (୧୩୯) । ତେଣୁ ତାଙ୍କୁ କେବଳ ସାକ୍ଷୀ ହିସାବରେ ଗ୍ରହଣ କରାଯାଇଛି । ସେ ସବୁ ଦେଖନ୍ତି; ମାତ୍ର କିଛି କରନ୍ତି ନାହିଁ (୧୪୦) । ଏହି ହେତୁରୁ ତାଙ୍କୁ 'ଉଦାସୀନ' ବୋଲି ମଧ୍ୟ କୁହାଯାଇଛି (୧୪୧) । କିନ୍ତୁ ପୁରୁଷ ଉଦାସୀନ ହେଲେ ମଧ୍ୟ ତାଙ୍କର ସହ ଯୁକ୍ତହେଲେ ଜଡ଼ ପ୍ରକୃତି—ମାତା କାର୍ଯ୍ୟକ୍ଷମା ହୋଇପାରନ୍ତି । ଯେପରି ପଙ୍ଗୁ ଓ

---

୧୩୬ । ଗୀତା—୧୫/୧୮—

ଯସ୍ମାତ୍ କ୍ଷରମତୀତୋଽହମକ୍ଷରାଦପି ଚୋତ୍ତମଃ ।
ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ ॥

୧୩୭ । C. J. R. T. O—pp-34—(Paper of G. C. Tripathi)

୧୩୮ । ସାଂଖ୍ୟକାରିକା—ଈଶ୍ୱରକୃଷ୍ଣ—ଶ୍ଳୋକ-୧୮

୧୩୯ । ସାଂଖ୍ୟକାରିକା—ଶ୍ଳୋକ—୧୭

"ପୁରୁଷୋଽସ୍ତି ଭୋକ୍ତୃଭାବାତ୍ କୈବଲ୍ୟାର୍ଥଂ ପ୍ରବୃତ୍ତେଶ୍ଚ" ।

୧୪୦ । ସାଂଖ୍ୟକାରିକା—ଶ୍ଳୋକ—୧୯—"ସାକ୍ଷିତ୍ୱମସ୍ୟ ପୁରୁଷସ୍ୟ......"

୧୪୧ । ସାଂଖ୍ୟକାରିକା—ଶ୍ଳୋକ—୨୦—"କର୍ତ୍ତୈବ ଭବତ୍ୟୁଦାସୀନଃ" ॥

ଅନ୍ଧ ମିଶି ବାଟ ଚାଲିପାରନ୍ତି, ସେହିପରି ପ୍ରକୃତି ଓ ପୁରୁଷଙ୍କର ମିଳନ ପ୍ରଚେଷ୍ଟାରେ ସଂଜି ସୃଷ୍ଟି ସମ୍ପନ୍ନ ହୁଏ (୧୪୨) । ସାଂଖ୍ୟ ଦର୍ଶନର ଏହି କେତୋଟି କଥା ଜଗନ୍ନାଥଙ୍କ-ଠାରେ ସମାବିଷ୍ଟ ହୋଇଥିବାର ଦେଖାଯାଏ । ସାଂଖ୍ୟରେ ଉଲ୍ଲିଖିତ କୈବଲ୍ୟମୁକ୍ତି (ଶ୍ଳୋକ-୨୧) ଜଗନ୍ନାଥଙ୍କର 'କୈବଲ୍ୟ ବେଦୀରେ'ରେ ହିଁ ମିଳେ ବୋଲି ଅନେକ ତତ୍ତ୍ୱସମ୍ବନ୍ଧୀୟ ଗ୍ରନ୍ଥରେ ଉଲ୍ଲେଖ ଅଛି । ଜଗନ୍ନାଥ ଏହି କ୍ଷେତ୍ରରେ ଚତୁର୍ଦ୍ଧା ମୂର୍ତ୍ତି (୧୪୩) ହୋଇ ପୂଜା ହେଉଥିବାରୁ ତାଙ୍କୁ ଏକ ପୁରୁଷ ବୋଲି ସ୍ୱୀକାର କରାଗଲେ ସଙ୍ଗେ ସଙ୍ଗେ ବହୁପୁରୁଷ ମତବାଦ ମଧ୍ୟ ଏଠାରେ ପ୍ରତିଫଳିତ ହେଲାପରି ମନେହୁଏ । ସ୍କନ୍ଦପୁରାଣ ଉତ୍କଳଖଣ୍ଡ, ନୀଳାଦ୍ରିମହୋଦୟ ଇତ୍ୟାଦି ଗ୍ରନ୍ଥରେ ଜଗନ୍ନାଥଙ୍କୁ ପୁରୁଷ ଓ ସୁଭଦ୍ରାଙ୍କୁ ପ୍ରକୃତି (୧୪୪) ବୋଲି ବର୍ଣ୍ଣନା କରାଯାଇ, ଏ ବିଶ୍ୱର ସମସ୍ତ କାର୍ଯ୍ୟ ତାଙ୍କର ଦ୍ୱାରା ସମାପନ୍ନ ହେଉଛି ବୋଲି କୁହାଯାଇଛି । ତେଣୁ ସାଂଖ୍ୟଦର୍ଶନର ପ୍ରକୃତି-ପୁରୁଷତତ୍ତ୍ୱ ଜଗନ୍ନାଥ ଉପାସନାରେ ପ୍ରତିଫଳିତ ।

ବେଦର 'ପୁରୁଷସୂକ୍ତ'ରୁ ଜଣାଯାଏ ଯେ, ଏଥିରେ ବର୍ଣ୍ଣିତ 'ପୁରୁଷ' ବା 'ବିରାଟ ପୁରୁଷ' ହେଉଛନ୍ତି ମୁଖ୍ୟତଃ ଦୁଇପ୍ରକାରର (୧୪୫) । ଯଜ୍ଞ ପାଇଁ ଯଜ୍ଞରେ ବଳିଦିଆଯିବା ପୁରୁଷ ହେଉଛନ୍ତି ଏକପ୍ରକାର କଳ୍ପନା ଓ ବିରାଜରୁ ଉଦ୍ଭବ ବିଶ୍ୱବ୍ୟାପୀ ବିରାଟ ପୁରୁଷ ହେଉଛନ୍ତି ଅନ୍ୟପ୍ରକାରର ଚିନ୍ତାଧାରା । ସେହିପରି ସାଂଖ୍ୟର ବହୁପୁରୁଷ ମତବାଦ ଓ ଗୀତାର ଦୁଇଟି ପୁରୁଷର ପରିକଳ୍ପନା (୧୪୬) ପ୍ରାଚୀନ ଯୁଗରୁ ଭାରତବର୍ଷରେ ରହିଅଛି । ତେଣୁ ଗୋଟିଏ ପୁରୁଷର ପରିକଳ୍ପନାରେ ବିଶ୍ୱର ସମସ୍ତ କାର୍ଯ୍ୟ ସମାହିତ ହେବାରେ ଅନ୍ତରାୟ ପରିଦୃଷ୍ଟ ହେଉଥିବାର ହୃଦୟଙ୍ଗମ କରି ଦୁଇପୁରୁଷ ମତବାଦ ମୁଣ୍ଡଟେକିଥିଲା । ଏବଂ ତାଙ୍କୁ ଆତ୍ମା ଓ ଈଶ୍ୱର ବୋଲି ଭାବୁଥିଲେ ତ ଏବଂ ପୁଣି ଜୀବ ଓ ବ୍ରହ୍ମ ବୋଲି ଚିନ୍ତା କରିବସିଲେ । ସେପରି ଏକ ଚିନ୍ତାଧାରାର ଚାପ ପଡ଼ିଗଲା କାଳକ୍ରମେ ଜଗନ୍ନାଥ କ୍ଷେତ୍ରରେ ଜଗନ୍ନାଥ ଓ ବଳଭଦ୍ର ଦୁଇଟି ପୁରୁଷର ପୂଜାଅର୍ଚ୍ଚନା ଚାଲିଲା ।

---

୧୪୨ । ସାଂଖ୍ୟକାରିକା—ଶ୍ଳୋକ—୨୧—

ପୁରୁଷସ୍ୟ ଦର୍ଶନାର୍ଥଂ କୈବଲ୍ୟାର୍ଥଂ ତଥା ପ୍ରଧାନସ୍ୟ ।
ପଙ୍ଗ୍ୱନ୍ଧ ବଦୁଭୟୋରପି ସଂଯୋଗଃ ତତ୍କୃତଃ ସର୍ଗଃ ॥

୧୪୩ । ସ୍କନ୍ଦପୁରାଣ—ପୁରୁଷୋତ୍ତମ ମାହାତ୍ମ୍ୟମ୍—୧୧/୮—

"ତବାନୁଗ୍ରହତଃ ଶୀଘ୍ରଂ ଚତୁର୍ଦ୍ଧା ସଦ୍ୟସ୍ଥିତମ୍" ।

୧୪୪ । ସ୍କନ୍ଦପୁରାଣ— ପୁ: ମା:—୧୯/୧୦-୧୭ ॥

୧୪୫ । ଋଗ୍‌ବେଦ—ପୁରୁଷସୂକ୍ତ—୧୦/୯୦ ।

୧୪୬ । ଶ୍ରୀମଦ୍‌ଭଗବଦ୍ ଗୀତା—୧୫/୧୬—ଦ୍ୱାବିମୌ ପୁରୁଷୌ ଲୋକେ···

ସୁଭଦ୍ରାଙ୍କୁ ପ୍ରକୃତରୂପା ଲକ୍ଷ୍ମୀସ୍ୱରୂପା (୧୪୭) ବୋଲି ସ୍ୱୀକାର କରି କୃଷ୍ଣ ଓ ବଳଭଦ୍ରଙ୍କୁ ବିଷ୍ଣୁଙ୍କ ସ୍ୱରୂପ ଓ ଉଭୟଙ୍କୁ ଏକ ପୁରୁଷ ରୂପେ ସ୍ୱୀକାର କରାଗଲା । ସ୍କନ୍ଦପୁରାଣ ପୁରୁଷୋତ୍ତମ ମାହାତ୍ମ୍ୟରେ ଅଷ୍ଟମ ଶତକ ବେଳକୁ ଘୋଷଣା କରିଦିଆଗଲା ଯେ, କୃଷ୍ଣ ଓ ବଳଭଦ୍ର ହେଉଛନ୍ତି, ଏକ ଓ ଅଭିନ୍ନ । ଏ ଦୁହିଁଙ୍କ ମଧ୍ୟରେ କିଛି ପ୍ରଭେଦ ନାହିଁ (୧୪୮) । ମହାଭାରତ ଟୀକାଧାରୀରେ ସୁଭଦ୍ରା ଜଗନ୍ନାଥ ଓ ବଳଭଦ୍ରଙ୍କର ଭଗ୍ନୀ ଏବଂ ଶକ୍ତିପୂଜା ତଥା ସାଂଖ୍ୟାଦି ଦର୍ଶନର ପ୍ରଭାବରେ ସେ ହେଉଛନ୍ତି ତାହାଙ୍କର ଶକ୍ତିରୂପା 'ଶ୍ରୀ' ବା 'ସ୍ତ୍ରୀ' ୧୪୯ ।

ସାଂଖ୍ୟ ବର୍ଣ୍ଣିତ ପୁରୁଷ ହେଉଛନ୍ତି ସତ୍, ଚିତ୍ ଓ ଆନନ୍ଦର ସ୍ୱରୂପ । ସେହିପରି ଜଗନ୍ନାଥଙ୍କୁ ମଧ୍ୟ ସଚ୍ଚିଦାନନ୍ଦ ବିଗ୍ରହ ବୋଲି ସ୍ୱୀକାର କରାଯାଏ । ତା'ଛଡ଼ା ସାଂଖ୍ୟର ପୁରୁଷ ଯେପରି ପଙ୍ଗୁ ସଦୃଶ ଚିତ୍ରିତ ହୋଇଛନ୍ତି (୧୫୦) । ସେହିପରି ଜଗନ୍ନାଥ ମଧ୍ୟ ହସ୍ତର ପାପୁଲିବିହୀନ ଓ ପଦହୀନ ପଙ୍ଗୁ । ଏଥିରୁ ସେ ନିଜେ କିଛି ନ କରି ଅନ୍ୟଦ୍ୱାରା କରାଉଥିବାର ପ୍ରମାଣ ସିଦ୍ଧ ହେଉଛି । ପୁଣି ତାଙ୍କର ସେହି କୃଷ୍ଣକାୟ ମୂର୍ତ୍ତିକୁ ନିରୀକ୍ଷଣ କଲେ ପ୍ରଥମେ ଆମର ଦୃଷ୍ଟି ଆକର୍ଷଣ କରେ ସେହି ଚକା ଚକା ବଡ଼ ବଡ଼ ଆଖି ଦୁଇଟି । ଏଥିରୁ ବୁଝାଯାଏ, ସତେ ଅବା ସେ ବିଶ୍ୱର ସବୁ କିଛି ଦେଖୁଛନ୍ତି ଓ କିଛି ବାସ୍ତବରେ ନ କଲେ ମଧ୍ୟ ସାକ୍ଷୀ ହୋଇ ବସିଛନ୍ତି । ସାଂଖ୍ୟରେ ପୁରୁଷଙ୍କୁ 'ସାକ୍ଷୀ' ବୋଲି ହିଁ କୁହାଯାଇଛି (୧୫୧) । ପୁଣି ଦେଖିବାର କଥା; ଜଗନ୍ନାଥଙ୍କ ନିକଟରେ ବହୁତ ଭୋଗ ବଢ଼ାଯାଉଛି, ଅନେକ ସେବକ ଖଟୁଛନ୍ତି; ମାତ୍ର ସେ ଏସବୁ ଭୋଗବିଳାସକୁ ବାସ୍ତବରେ ଗ୍ରହଣ ନ କରି ନିର୍ବିକାର ଭାବରେ ସ୍ଥାଣୁପରି ଉଦାସୀନ ହୋଇ ବସିଛନ୍ତି ।

---

୧୪୭ । ସ୍କନ୍ଦପୁରାଣ—ପୁରୁଷୋତ୍ତମ ମାହାତ୍ମ୍ୟମ୍—୧୯/୧୧—

ସୁଭଦ୍ରା ଗୌରବଦନା ବରାଭୟ ଧାରିଣୀ ।
ଲକ୍ଷ୍ମୀ ପ୍ରାଦୁର୍ଭବେତ୍ୟଂ ସର୍ବ ଚୈତନ୍ୟ ରୂପିଣୀ ॥

୧୪୮ । ସ୍କନ୍ଦପୁରାଣ—ପୁ: ମା—୧୯/୧୩

"ନ ଭେଦୋଽସ୍ତୀହ କୋ ବିପ୍ରାଃ କୃଷ୍ଣସ୍ୟ ଚ ବଳସ୍ୟ ଚ" ॥

୧୪୯ । ସ୍କନ୍ଦପୁରାଣ—ପୁ: ମାଃ—୧୯/୧୭—

ତସ୍ୟ ଶକ୍ତିସ୍ୱରୂପେୟଂ ଭଗିନୀ ଶ୍ରୀଃ ପ୍ରକୀର୍ତ୍ତିତା ।

୧୫୦ । ସାଂଖ୍ୟକାରିକା—ଶ୍ଳୋକ-୨୧—

ପଙ୍ଗ୍ୱନ୍ଧବଦୁଭୟୋରପି ସଂଯୋଗଃ ତତ୍କୃତଃ ସର୍ଗଃ ।

୧୫୧ । ସାଂଖ୍ୟକାରିକା—ଶ୍ଳୋକ-୧୯—ସାକ୍ଷିତ୍ୱମସ୍ୟ ପୁରୁଷସ୍ୟ···

ସାଂଖ୍ୟର ପୁରୁଷ ମଧ୍ୟ କ୍ରେସନ୍ତପର ଉଦାସୀନ (୧୫୬) । ଏସବୁ ଦେଖିଲେ ମନେହୁଏ, ଯେପରି ଜଗନ୍ନାଥ ଦର୍ଶନରେ ବହୁଭାବରେ ସାଂଖ୍ୟ ଦର୍ଶନ ଜଡ଼ିତ ।

ଭାରତୀୟ ଧାର୍ମିକ ଚେତନାକୁ ବିଶ୍ଳେଷଣ କଲେ ଜଣାଯାଏ, ବେଦର ପୁରୁଷସୂକ୍ତରେ ବର୍ଣ୍ଣିତ ପୁରୁଷ, ବେଦାନ୍ତର ବ୍ରହ୍ମ ଓ ସାଂଖ୍ୟର ପୁରୁଷ ପରଯୁଗରେ ବିଷ୍ଣୁଙ୍କ ଉପରେ ଆରୋପିତ ହୋଇଛି । ପୁରାଣ ଓ ଧର୍ମଗ୍ରନ୍ଥମାନଙ୍କରେ ବିଷ୍ଣୁଙ୍କୁ 'ଯଜ୍ଞପୁରୁଷ' ବୋଲି ବର୍ଣ୍ଣନା କରାଯାଇଛି । ଏହା ବୈଦିକ ଯଜ୍ଞ ସହିତ ବିଷ୍ଣୁଙ୍କର ସମ୍ପର୍କର ସୂଚନା ଦିଏ । ପରବର୍ତ୍ତୀ କାଳରେ ରଚିତ ବୈଷ୍ଣବଗ୍ରନ୍ଥ ଓ ପାଞ୍ଚରାତ୍ରଗ୍ରନ୍ଥମାନ ପୁରୁଷସୂକ୍ତକୁ ବିଷ୍ଣୁଙ୍କର ଏକି ପ୍ରଶଂସାମୂଳକ ସ୍ତବ ବୋଲି ବର୍ଣ୍ଣନା କରିଛନ୍ତି (୧୫୩) । କାଳକ୍ରମେ ଏହି ବୈଦିକ ସୂକ୍ତ ଏପରି ଲୋକପ୍ରିୟ ହୋଇଉଠିଲା ଯେ, ବିଷ୍ଣୁଙ୍କୁ ସନ୍ତୁଷ୍ଟ କରିବାପାଇଁ ତାଙ୍କର ପୂଜା ଓ ଅର୍ଚ୍ଚନାରେ ଏହି ପୁରୁଷସୂକ୍ତର ବ୍ୟବହାର କରାଗଲା । ବିଷ୍ଣୁଙ୍କର ଶୋଡ଼ଷ ଉପଚାର ପୂଜାରେ ପୁରୁଷସୂକ୍ତର ଷୋଳଗୋଟି ସୂକ୍ତର ଆବୃତ୍ତି ଥର ଥର କରି କରାଗଲା । ପୁରୀରେ ଏହି ଦୃଷ୍ଟିରୁ ଜଗନ୍ନାଥଙ୍କର ମଧ୍ୟ ପୁରୁଷସୂକ୍ତ ମାଧ୍ୟମରେ ଷୋଡ଼ଶ ଉପଚାର ପୂଜାବିଧି ରହିଅଛି । କାରଣ, ସେ ମୂଳତଃ ବିଷ୍ଣୁ ବା ମହାବିଷ୍ଣୁ । ସ୍କନ୍ଦପୁରାଣ ମଧ୍ୟ ମହାବିଷ୍ଣୁ ଶ୍ରୀ ଜଗନ୍ନାଥଙ୍କର ପୁରୁଷସୂକ୍ତରେ ପୂଜାବିଧିର ସୂଚନା ଦିଏ (୧୫୪)।

ବେଦବର୍ଣ୍ଣିତ ପୁରୁଷସୂକ୍ତର ପୁରୁଷ ତଥା ବିବିଧ ଦର୍ଶନର ଆତ୍ମବାଦ, ପୁରୁଷବାଦ ଓ ବ୍ରହ୍ମବାଦ ଗତାନୁଗତିକ ଧାରାରେ ଗତିକରି ଯେତେବେଳେ ବିଷ୍ଣୁଙ୍କଠାରେ ଏକୀଭୂତ ହୋଇଗଲା, ସେତେବେଳେ ବିଷ୍ଣୁ ବା କୃଷ୍ଣ-ବିଷ୍ଣୁ ଏକ ବିଶ୍ୱରୂପ ମୂର୍ତ୍ତିରେ ପରିକଳ୍ପିତ ହେଲେ । ଏ ଦିଗରେ ପ୍ରଥମେ ନେତୃତ୍ୱ ନେଲା ଶ୍ରୀମଦ୍ ଭଗବଦ୍ ଗୀତା (୧୫୫)। ପୁରୁଷ-

---

୧୫୨ । ସାଖ୍ୟକାରିକା—ଶ୍ଳୋକ-୨୦—କର୍ତ୍ତେବ ଭବତ୍ୟୁଦାସୀନଃ ।।

୧୫୩ । C. J. R. T. O—(The paper of Tripathi),—pp-35

୧୫୪ । ସ୍କନ୍ଦପୁରାଣ—ବମ୍ବେ ସଂସ୍କରଣ—୬/୨୩୯ ।

୧୫୫ । ଶ୍ରୀମଦ୍ ଭଗବଦ୍ ଗୀତା—ବିଶ୍ୱରୂପ ଦର୍ଶନ ଯୋଗ—ଅଧ୍ୟାୟ—୧୧ । (ମହାଭାରତ ଉଦ୍ୟୋଗ ପର୍ବ ଅ: ୧୨୯ରେ ମଧ୍ୟ ଶ୍ରୀକୃଷ୍ଣ ତାଙ୍କର ଏହିରୂପ ଦୁର୍ଯୋଧନଙ୍କର ସଭାସଦ୍‌ଙ୍କୁ ଦେଖାଇଥିବାର ବର୍ଣ୍ଣନା ଅଛି । ଭଗବତ୍ ଗୀତା ତ ମ. ଭା. ର ଭୀଷ୍ମପର୍ବର ଅନ୍ତର୍ଗତ । ଗୀତାରେ ବିଶ୍ୱରୂପ ଦର୍ଶନ ଛଡ଼ା ଭଗବାନ 'ଉତ୍ତଙ୍କଙ୍କୁ' ମଧ୍ୟ ମ. ଭା. ର ଆଶ୍ୱମେଧିକ ପର୍ବ, ଅ: ୫୪ରେ ନିଜର ବିଶ୍ୱରୂପ ଦେଖାଇଛନ୍ତି ।)

ସୂକ୍ତର ବିରାଟ ପୁରୁଷ ଭଳି ତାଙ୍କର ସ୍ୱରୂପ କଳ୍ପିତ ହେଲ ଓ ସେ ସାରା ବିଶ୍ୱକୁ ବ୍ୟାପି ଅର୍ଜୁନଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲେ । ବିଷ୍ଣୁଙ୍କର ଏହି ବିଶ୍ୱରୂପ ଚିନ୍ତାଧାରାରେ ସମଗ୍ର ବିଶ୍ୱ ହେଉଛି ବିଷ୍ଣୁଙ୍କର ବିଭିନ୍ନ ଅବୟବ (୧୫୬) । ଅବିନାଶୀ ପରଂବ୍ରହ୍ମ, ପରମାତ୍ମା ଓ ଜଗନ୍ନପାଳକ ଭାବରେ ସେ ଏହି ରୂପରେ ବିରାଜମାନ (୧୫୭) । ବିଶ୍ୱରୂପଧାରୀ ବିଷ୍ଣୁଙ୍କୁ ଆଦିପୁରୁଷ, ସନାତନ ପୁରୁଷ ଓ ପୁରାଣ ପୁରୁଷ ବୋଲି କୁହାଯାଇଛି (୧୫୮) । ଭଗବାନ୍ ବିଷ୍ଣୁଙ୍କର ଏହି ବିଶ୍ୱରୂପାତ୍ମକ ଅବୟବ କ'ଣ ସେ କଥା ଭାଗବତ ପୁରାଣରେ ପ୍ରାଞ୍ଜଳ ଭାବରେ ଏହିଭଳି ବୁଝାଇ ଦିଆଯାଇଛି । ସୂର୍ଯ୍ୟ ଓ ଚନ୍ଦ୍ର ହେଉଛନ୍ତି ତାଙ୍କର ଆଖି । ପୃଥିବୀ ତାଙ୍କର ପାଦ । ଆକାଶ ହେଉଛି ମସ୍ତକ । ବୃକ୍ଷରାଜି ହେଉଛନ୍ତି ତାଙ୍କର କେଶ (୧୫୯) । ଭାଗବତ ପୁରାଣର ଏହି ରୂପକଳ୍ପର ମୂଳ ବେଦର ସେହି ପୁରୁଷସୂକ୍ତରେ ରହିଅଛି ଓ ତାହାକୁ ଭିତ୍ତିକରି ବିଷ୍ଣୁ ବା ପୁରୁଷୋତ୍ତମଙ୍କର ବିଶ୍ୱରୂପ ଶରୀର ଉଣା-ଅଧିକେ ବର୍ଣ୍ଣନା କରାଯାଇଛି । ବେଦର ବିରାଟ ପୁରୁଷ ବା ଯଜ୍ଞପୁରୁଷଙ୍କର ମୁଖ, ଭୁଜ, ଜଙ୍ଘ, ପାଦ ଯଥାକ୍ରମେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଅଟନ୍ତି ବୋଲି ବର୍ଣ୍ଣନା କରିବା ପରେ ଅପୌରୁଷେୟ ଶ୍ରୁତିର ରଚୟିତା କହୁଛନ୍ତି—"ଏହି ବିରାଟ ପୁରୁଷ ବିଶ୍ୱବ୍ୟାପୀ ମହାକାୟଙ୍କର ମନରୁ ଚନ୍ଦ୍ରମା ଜାତ ହୋଇଛନ୍ତି । ତାଙ୍କର ନେତ୍ରରୁ ସୂର୍ଯ୍ୟ, ମୁଖରୁ ଇନ୍ଦ୍ର ଓ ଅଗ୍ନି ଏବଂ ପ୍ରାଣରୁ ବାୟୁ ଉତ୍ପନ୍ନ ହୋଇଛନ୍ତି । ନାଭିଦେଶରୁ ଉତ୍ପନ୍ନ ହୋଇଛି ଅନ୍ତରୀକ୍ଷ, ମସ୍ତକରୁ ଜାତ ହୋଇଛି ସ୍ୱର୍ଗ । ସେହିପରି ତାଙ୍କର ଚରଣରୁ ପୃଥିବୀ, ଶ୍ରୋତ୍ରରୁ ବିଭିନ୍ନ ଲୋକ ଓ ଦିଗମାନେ ଜାତ ହୋଇଛନ୍ତି (୧୬୦) । କି ବିଶାଳ ପରିକଳ୍ପନା !

---

୧୫୬ । ଭଗବଦ୍ ଗୀତା—୧୧/୧୩

"ତତ୍ରୈକସ୍ଥଂ ଜଗତ୍ କୃତ୍ସ୍ନଂ ପ୍ରବିଭକ୍ତମନେକଧା ।"

୧୫୭ । ଭଗବଦ୍ ଗୀତା—୧୧/୧୮

ତ୍ୱମକ୍ଷରଂ ପରମଂ ବେଦିତବ୍ୟଂ, ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନମ୍ ।
ତ୍ୱମବ୍ୟୟଃ ଶାଶ୍ୱତ ଧର୍ମଗୋପ୍ତା, ସନାତନସ୍ତ୍ୱଂ ପୁରୁଷୋମତୋମେ ॥

୧୫୮ । ଭଗବଦ୍ ଗୀତା—୧୧/୩୮ ତ୍ୱମାଦିଦେବଃ ପୁରୁଷଃ ପୁରାଣ···

୧୫୯ । ଭାଗବତ ପୁରାଣ—୨ୟ ଭାଗ—୧/୨୬—୬୯ ।

୧୬୦ । ଋଗ୍‌ବେଦ—୧୦/୭/୯୦

ଚନ୍ଦ୍ରମା ମନସୋ ଜାତଶ୍ଚକ୍ଷୋ ସୂର୍ଯ୍ୟୋ ଅଜାୟତ ।
ମୁଖାଦିନ୍ଦ୍ରଶ୍ଚାଗ୍ନିଶ୍ଚ ପ୍ରାଣାଦ୍‌ବାୟୁରଜାୟତ ॥ ୧୩ ॥
ନାଭ୍ୟାଂ ଆସୀଦନ୍ତରୀକ୍ଷଂ ଶୀର୍ଷ୍ଣୋ ଦ୍ୟୌଃ ସମବର୍ତ୍ତତ ।
ପଦ୍‌ଭ୍ୟାଂ ଭୂମିର୍ଦିଶଃ ଶ୍ରୋତ୍ରାତ୍ତଥା ଲୋକାଁ ଅକଳ୍ପୟନ୍ ॥ ୧୪ ॥

ବେଦର ଏ ପ୍ରକାର ବିରାଟ ପୁରୁଷଙ୍କର ବିଶ୍ୱବ୍ୟାପୀ ଶରୀରର ବର୍ଣ୍ଣନା ପଛରେ ପ୍ରକୃତିର ଭଗବାନଙ୍କ ସହିତ ସଂଯୁକ୍ତ ବା 'ସାମ୍ୟ ତନ୍ତ୍ରାଧାରି' ମୁଖ୍ୟତଃ ରହିଅଛି । ତତ୍‌ସହିତ ପୃଥିବୀ ପାଦରୁ ସୃଷ୍ଟି ଓ ଶୂଦ୍ର ହେଉଛି ତାଙ୍କର ପାଦ; ଏପରି କହିବା ପଛରେ ଶୂଦ୍ର ଓ ପୃଥିବୀର କର୍ଷଣଜନିତ ନିଗୂଢ଼ ସମ୍ପର୍କ ସ୍ଥାପନ କରାଯାଇଛି । ସେହିପରି ବ୍ରାହ୍ମଣ ହେଉଛି ତାଙ୍କର ମୁଖ, ଆଉ ଇନ୍ଦ୍ର, ଅଗ୍ନି ତାଙ୍କର ମୁଖରୁ ସୃଷ୍ଟି; ଏପରି କହିବାର ଉଦ୍ଦେଶ୍ୟ ହେଉଛି, ବ୍ରାହ୍ମଣ ଯଜ୍ଞ କରିବ ଓ ଇନ୍ଦ୍ର ଏବଂ ଅଗ୍ନିଙ୍କୁ 'ସ୍ୱାହା' ବୋଲି କହି ଆହୁତି ଅର୍ପଣ କରିବ, ସେମାନଙ୍କର ତୃପ୍ତି ବିଧାନ କରିବ । ସେ ଯାହା-ହେଉ, ଯେଉଁ ଉଦ୍ଦେଶ୍ୟରେ ବେଦର ଏହି ସୂକ୍ତ ଲେଖାଯାଇଥାଉ ପଛେ, ପୁରାଣ ଯୁଗରେ ସେହି ବିରାଟ ପୁରୁଷଙ୍କର ରୂପକୁ ବିଶ୍ୱରୂପ-ବିଷ୍ଣୁ-ପୁରୁଷୋତ୍ତମଙ୍କ ଉପରେ ଅଭେଦ ଆରୋପ କରାଯାଇଛି । ପରେ ବିଷ୍ଣୁଙ୍କୁ ସେହି ଭାବରେ ଚିନ୍ତା କଲାପରେ ବିଷ୍ଣୁଦେବତା ଜଗନ୍ନାଥଙ୍କୁ ମଧ୍ୟ ସେହି ଭାବରେ ଚିନ୍ତା କରି ନିର୍ମାଣ କରାଯାଇଛି । ଚୋଡ଼ଗଙ୍ଗଦେବ ଯଯାତିକେଶରୀଙ୍କ ନିର୍ମିତ ଜଗନ୍ନାଥଙ୍କର ଜୀର୍ଣ୍ଣ ତଥା ଭଗ୍ନ ମନ୍ଦିରକୁ ଭାଙ୍ଗିକୁ ନେଇ ନୂତନ ମନ୍ଦିର ନିର୍ମାଣ କରିଦେଲେ ଗଙ୍ଗଶିଳାଲେଖରେ କାହ୍ନଦାନ ପରେ ଯେଉଁ ପ୍ରଶସ୍ତି ଖୋଦିତ ହୋଇଥିଲା, ତହିଁରୁ ଜଣାଯାଏ ଯେ ଜଗନ୍ନାଥଙ୍କର ଅବୟବ ସେହି ବିଶ୍ୱରୂପ ବିଷ୍ଣୁଙ୍କର ଅବୟବ ତଥା ପୁରୁଷସୂକ୍ତର ଅନ୍ତର୍ଗତ ବିରାଟ ପୁରୁଷଙ୍କର ଅବୟବକୁ ଦୃଷ୍ଟିରେ ରଖି ଗଠିତ । ଗଙ୍ଗଶିଳାଲେଖରେ କୁହାଯାଇଛି (୧୬୧)—

"ପାଦୌ ଯସ୍ୟ ଧରାନ୍ତରୀକ୍ଷମଖିଳଂ ନାଭିସ୍ତୁ ସର୍ବାଦିଶଃ
ଶ୍ରୋତ୍ରେ ନେତ୍ରଯୁଗମ୍ ରବୀନ୍ଦୂ ଯୁଗଳଂ ମୂର୍ଦ୍ଧାପିଚ ଦ୍ୟୌରସୌ" ।।

ଅର୍ଥାତ୍—ଜଗନ୍ନାଥ ପୁରୁଷୋତ୍ତମଙ୍କର ଶରୀର ଜଗତକୁ ବ୍ୟାପିକରିଅଛି । ତାଙ୍କର ପାଦ ହେଉଛି ଧରା ବା ପୃଥିବୀ । ଅଖିଳ ଅନ୍ତରୀକ୍ଷ (space) ହେଉଛି ତାଙ୍କର ନାଭି । ସମସ୍ତ ଦିଗ ହେଉଛନ୍ତି ତାଙ୍କର କର୍ଣ୍ଣ । ଚନ୍ଦ୍ର ଓ ସୂର୍ଯ୍ୟ ହେଉଛନ୍ତି ଜଗନ୍ନାଥ ପୁରୁଷୋତ୍ତମଙ୍କର ନେତ୍ର । ତାଙ୍କର ମସ୍ତକ ହେଉଛି ସ୍ୱର୍ଗ (ଆକାଶ) । ଏ ପ୍ରକାର ଚିନ୍ତାଧାରା ଜଗନ୍ନାଥଙ୍କ ପାଇଁ ପ୍ରଶସ୍ତିକାରଙ୍କର ନିଜର ପରିକଳ୍ପନା ନୁହେଁ । ଏହା ଥିଲା ବିଷ୍ଣୁଦେବତା-ପୁରୁଷୋତ୍ତମଙ୍କ ସ୍ୱରୂପ ପ୍ରକାଶ ପାଇଁ ଗତାନୁଗତିକ ସର୍ବଜନାଦୃତ ପରମ୍ପରା । ଜଗନ୍ନାଥଙ୍କ ଚକାଆଖି ପଛରେ ସେହି 'ରବୀନ୍ଦୁଯୁଗଳ'ର ତତ୍ତ୍ୱ ନିହିତ ।

୧୬୧ । J. A. S. B.—Vol. LXV, 1896, Part 1—pp.229.;
O. H. R. J.—Vol. XVII—pp. 211-12.
ଏହି ଶିଳାଲେଖଟି ଚୋଡ଼ଗଙ୍ଗଦେବଙ୍କ ପରେ ଶ୍ରୀମନ୍ଦିର ନିର୍ମିତ ହେବାଉତ୍ତାରୁ ଖୋଦିତ ହୋଇଥିଲା ।

ଜୈନ ଦିଗମ୍ବରମାନଙ୍କର ଅମ୍ବର (ବସ୍ତ୍ର) ଭାବରେ ଦିଗମାନେ ରହିଥିବାରୁ ତାଙ୍କର ଯେପରି ଅମ୍ବର (ବସ୍ତ୍ର) ପରିଧାନର ଆବଶ୍ୟକତା ନଥାଏ, ସେହିପରି ଦିଗମାନେ କର୍ଣ୍ଣସ୍ୱରୂପ ଥିବାରୁ ପୁରୁଷୋତ୍ତମଙ୍କର କର୍ଣ୍ଣଥିବାର ଆବଶ୍ୟକତା ନାହିଁ । ଏହି ଶ୍ଳୋକଟିରେ ଜଗନ୍ନାଥଙ୍କର ମୂର୍ତ୍ତିତତ୍ତ୍ୱର ଅନେକ ଅଂଶ ପ୍ରତିଫଳିତ । ପ୍ରଶସ୍ତିକାର ନିଶ୍ଚିତ ଭାବରେ ,ଜଣେ ପଣ୍ଡିତ ଓ ସେ ଭାବଚନ୍ଦ୍ର ଏହି ଶ୍ଳୋକରେ ପୁରୁଷୋତ୍ତମଙ୍କର ରୂପକଳ୍ପର ଏକ ସ୍ପଷ୍ଟ ଆଭାସ ଦେଇଛନ୍ତି । ପ୍ରଶସ୍ତିଟି ଦ୍ୱାଦଶ ଶତକରେ ଲେଖାଯାଇଛି, ସତ; ମାତ୍ର ଏପରି ଏକ ବିଶ୍ୱରୂପ ଚକ୍ରାଧାରୀ ବିଷ୍ଣୁ ଦେବତା (ଜଗନ୍ନାଥ)ଙ୍କ ପାଇଁ ତାହାର ବହୁ ପୂର୍ବରୁ ଯେ ନଥିଲା, ତାହା ସାବ୍ୟସ୍ତ କରିବା ପାଇଁ କୌଣସି ପ୍ରମାଣ ନାହିଁ । ଦ୍ୱାଦଶ ଶତକ ବେଳକୁ ପରମ୍ପରା ଅନୁସାରେ ଜଗନ୍ନାଥଙ୍କୁ ଯେପରି ଜଗତ୍ ବ୍ୟାପକ ବିଶ୍ୱମୂର୍ତ୍ତି 'ଦାରୁବ୍ରହ୍ମ' ବୋଲି ବିଗ୍ଭର କରାଯାଉଥିଲା, ପ୍ରଶସ୍ତିକାର ସେତିକି ଲେଖିଛନ୍ତି ମାତ୍ର । ଅଯୌକ୍ତିକ ତଥା ଅମୂଳକ କଥା ଜଗନ୍ନାଥଙ୍କ ପାଇଁ ରଚନା କରିଥିଲେ, ହୁଏତ ରାଜାଦେଶରେ ତାଙ୍କର ଶିରଚ୍ଛେଦ ହୋଇଥାନ୍ତା । ଅତଏବ, ସେ ଜଗନ୍ନାଥଙ୍କୁ ଯେଉଁ ରୂପରେ ବର୍ଣ୍ଣନା କଲେ ତାହା ପ୍ରାସଙ୍ଗିକ ଓ ଯୁକ୍ତିଯୁକ୍ତ ତଥା ପରମ୍ପରା ସମ୍ବଳିତ । ଜଗନ୍ନାଥ ଅଦ୍ୟାବଧି ମଧ୍ୟ ସେହି ବିଶ୍ୱରୂପ-ମହାବିଷ୍ଣୁ-ଦାରୁବ୍ରହ୍ମ ରୂପେ ଅର୍ଚ୍ଚିତ ହେଉଛନ୍ତି ।

କେତେକ କହନ୍ତି, ଜଗନ୍ନାଥମୂର୍ତ୍ତି ଏକ ଶବର ପୂଜା କରୁଥିବା ମୂର୍ତ୍ତି । ପରେ ତହିଁରେ ଜଗନ୍ନାଥ ନାମ ଆରୋପିତ ହୋଇଛି । ପ୍ରଥମେ ଏହାକୁ ଶବରମାନେ ଜଗନ୍ତ ବୋଲି କହୁଥିଲେ । ପରେ ଏହି ନାମକୁ ସଂସ୍କୃତ କରି ଆର୍ଯ୍ୟମାନେ ଜଗନ୍ନାଥ ବୋଲି କହୁଥିଲେ (୧୬୨) । ଦାରୁଦେବତା ନାମକ ଗ୍ରନ୍ଥରେ ଆଲୋଚକ ଏତିକି କହିସାରି ପୁଣି କହିଛନ୍ତି; ନାହିଁ ନାହିଁ; ଜୈନମାନେ ଆସି ଆର୍ଯ୍ୟ ଓ ଶବରଙ୍କର ମଝିରେ ପଶିଯାଇ ଶବରମାନେ କହୁଥିବା 'ଜଗନ୍ତ' ଦେବତାଙ୍କୁ ନେଇଯାଇ ତାଙ୍କୁ 'ଜଗନ୍ନାଥ' ବୋଲି ଆଖ୍ୟା ଦେଲେ । କାରଣ ଜୈନ ଗୁରୁମାନେ 'ନାଥ' ସଞ୍ଜ୍ଞକ । ଯଥା, ନେମିନାଥ, ପାର୍ଶ୍ୱନାଥ ପ୍ରଭୃତି । ପୁଣି ସେମାନେ ମଧ୍ୟ ଜଗନ୍ତନାଥକୁ ବଦଳାଇଦେଇ ଜଗନ୍ନାଥ ବୋଲି ସେହି ଦେବତାଙ୍କୁ କହିଲେ (୧୬୩) । ଅର୍ଥାତ୍ ଜୈନମାନଙ୍କର ଏପରି ନାମକରଣ ପ୍ରକ୍ରିୟା ଖାଲି ଥରକୁ ଥର ବଦଳି ଗ୍ଭଲିଲା; ମାତ୍ର ଏ କଥା କୌଣସି ଜୈନ-ଗ୍ରନ୍ଥରେ ସ୍ଥାନ ପାଇଲା ନାହିଁ । ଏହି ଲେଖକଙ୍କର ଗ୍ରନ୍ଥରୁ ଜଣାଯାଏ ଯେ, ସେ ମହାଶୟ ଜଗନ୍ନାଥଙ୍କୁ ଶବର ଦେବତା ବୋଲି ପ୍ରମାଣ କରିବା ପାଇଁ ଆପ୍ରାଣ ଚେଷ୍ଟା କରିଛନ୍ତି । ତାଙ୍କର ଗ୍ରନ୍ଥଟିରେ ଅନେକ ଉପାଦାନ ସଂଗୃହୀତ ହୋଇଥିଲେ ମଧ୍ୟ ନିରପେକ୍ଷ ବିଗ୍ଭରକୁ

---

୧୬୨ । ଦାରୁ ଦେବତା—ବେଣୀମାଧବ ପାଢ଼ୀ—୧୯୬୪—ପୃ : ୫୭ ।
୧୬୩ । ଦାରୁଦେବତା— ,, ପୃ : ୧୯୩ ।

ସେଗୁଡ଼ିକ ନିଆଯାଇ ନାହିଁ । ଫଳରେ ଗ୍ରନ୍ଥଟିର ଅନେକ ସ୍ଥଳରେ ତାଙ୍କର କଥାକୁ ସେ କାଟି ଦେଇଛନ୍ତି ଓ ବଦଳାଇ ଦେଇଛନ୍ତି । ଶବରମାନେ ସେମାନଙ୍କ ଦେବତାଙ୍କୁ କେଉଁ ଅର୍ଥରେ ଜଗନ୍ତ ବୋଲି କହୁଥିଲେ ତାହା ସ୍ୱୀକାର କରାଯାଇ ନାହିଁ । ଶବର ଭାଷାରେ ଜଗନ୍ତର ଅର୍ଥ କ'ଣ ଜଗତର ନାଥ ଜଗନ୍ନାଥ ? ଏହା ଏକ ସ୍ୱତନ୍ତ୍ର ସାପେକ୍ଷ୍ୟ ପ୍ରଶ୍ନ । ପୁଣି ପରେ ଲେଖିଲେ, 'ଆର୍ଯ୍ୟମାନେ ଏହି ଜଗନ୍ତଦେବଙ୍କୁ ଆଣି ଜଗନ୍ନାଥ ବୋଲି ଡାକିଲେ' । ଏପରି ପ୍ରମାଣ କେଉଁ ଆର୍ଯ୍ୟ ଗ୍ରନ୍ଥରେ ହେଲେ ନାହିଁ । ପୁଣି ସେ ମହାଶୟ ଲେଖିଲେ, ମଝିରେ ଜୈନମାନେ ଆସି ସେହି ଜଗନ୍ତଦେବଙ୍କୁ ଗଜନ୍ତନାଥ ବୋଲି ଡାକୁ ଡାକୁ ଜଗନ୍ନାଥ ବୋଲି ଡାକିଲେ । ଏକଥା ମଧ୍ୟ କୌଣସି ଜୈନ ଗ୍ରନ୍ଥରେ ନାହିଁ । ସବୁ ମହାଶୟଙ୍କର କଳ୍ପନା । ତା' ଛଡ଼ା, ଜୈନମାନଙ୍କର ସେଉଁ ପାଲି ଭାଷାରେ ଗ୍ରନ୍ଥ ଓ ଶିଳାଲେଖ ଇତ୍ୟାଦି ଥିଲା । ସେହି ଭାଷାରେ କ'ଣ ଜଗନ୍ତନାଥର ଅର୍ଥ ଜଗତର ନାଥ ହୁଏ ? ପୁଣି ସେହି ଭାଷାରେ କ'ଣ ଜଗନ୍ନାଥ ଶବ୍ଦ ଗଠିତ ହୋଇପାରେ ? କେବେ ନୁହେଁ । ଏ ସବୁ ଭାଷାତତ୍ତ୍ୱ ଏଥିରେ କିଛି ଆଲୋଚିତ ହୋଇ-ନାହିଁ । ଫଳରେ ଆଲୋଚନା ସୁସଂବଦ୍ଧ ହୋଇପାରି ନାହିଁ ଓ ଅନେକ କ୍ଷେତ୍ରରେ ନିଜ କଥାକୁ ଲେଖକ ନିଜେ ଅଜଣାରେ କାଟି ଦେଇଛନ୍ତି (୧୭୩କ) । ସେ ସବୁ ଆଲୋଚନା କଲେ ଏକ ସ୍ୱତନ୍ତ୍ର ଗ୍ରନ୍ଥ ହେବ; ମାତ୍ର ବର୍ତ୍ତମାନ ଆମର ସେହି ଉଦ୍ଦେଶ୍ୟ ନାହିଁ । ଏଣୁ, ସେ ପ୍ରକାର ଆଲୋଚନା ହୁଏତ ଅପ୍ରାସଙ୍ଗିକ ହୋଇପାରେ ।

ଗୋଟିଏ ପଂକ୍ତିରେ ଦାରୁଦେବତାର ଲେଖକ କହନ୍ତି, ବେଦୋକ୍ତ ପୁରୁଷ ସହିତ ଗୀତାର ପୁରୁଷୋତ୍ତମଙ୍କର ଅଭେଦ କଳ୍ପନା ହେଲା । "ବେଦବର୍ଣ୍ଣିତ ପୁରୁଷୋତ୍ତମ ଅକ୍ଷରପୁରୁଷ" ଓ ନୀଳାଦ୍ରିନିଳୟ (ଜଗନ୍ନାଥ) ପୁରୁଷୋତ୍ତମ କ୍ଷର ପୁରୁଷ' ବୋଲି ପରିଚିତ ହୋଇସାରିଲେଣି । କ୍ଷର ରୂପଟି ଲୋକରେ ପୁରୁଷୋତ୍ତମ ଦାରୁବ୍ରହ୍ମ (ଜଗନ୍ନାଥ) ରୂପେ ପରିଚିତ ହେଲାବେଳେ, ଅକ୍ଷର ବା ଜ୍ଞାନରୂପୀ ପୁରୁଷୋତ୍ତମ ଅନ୍ତର୍ଜଗତରେ

---

୧୭୩କ । 'The Cult of Jagannath and Regional Tradition of Orissa' ନାମକ ପୁସ୍ତକରେ ମଧ୍ୟ କେଉଁଠି ଜଗନ୍ନାଥଙ୍କୁ ନୃସିଂହ ଉପାସନାର କ୍ରମବିକାଶ ବୋଲି ସ୍ୱୀକାର କରାଯାଇଛି ତ, କେଉଁଠି ତାଙ୍କୁ ଆଦିବାସୀଙ୍କ ପୂଜିତ ଦେବତାଙ୍କର ଏକ ରୂପାନ୍ତର ବୋଲି ପ୍ରମାଣ କରାଯାଇଛି । ତଦ୍ଦ୍ୱାରା ଆଲୋଚକ ମାନଙ୍କର ନିଜ ନିଜର ଇଚ୍ଛାନୁସାରେ ପ୍ରମାଣମାନ ଗଢ଼ କରିଛି । ଫଳରେ ପ୍ରକୃତ ସତ୍ୟ ଉଦ୍‌ଘାଟିତ ନ ହୋଇ ଆଲୋଚକମାନଙ୍କର 'ଇଚ୍ଛା' ହିଁ ପ୍ରକଟିତ ହୋଇଛି । ସେ ଇଚ୍ଛା ପୁଣି ପ୍ରବଳ ପ୍ରମାଣର ଅଭାବରେ ଅସଂବଦ୍ଧ ପ୍ରକାଶ ଭଙ୍ଗିରେ ପ୍ରମାଣମାନଙ୍କ ମଧ୍ୟରେ ସଂଘର୍ଷ ହୋଇ ଆପେ ଆପେ ଅମୂଳକ ହୋଇପଡ଼ିଛି । ସେ ସବୁ ଅନ୍ୟତ୍ର ଆଲୋଚନା ସାପେକ୍ଷ୍ୟ ।

ପ୍ରସିଦ୍ଧି ଲାଭ କଲା । ତେଣୁ ଗୀତାରେ କୁହାଗଲା, 'ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ' । ଏହି କ୍ଷର ପୁରୁଷ ହିଁ ଲୋକରେ ପ୍ରସିଦ୍ଧ ପୁରୁଷୋତ୍ତମ । (ବର୍ତ୍ତମାନ ପୁରୀର ଜଗନ୍ନାଥ, ଶବରଦେବତା ଦାରୁବ୍ରହ୍ମ'' (୧୬୪) ।

ଦାରୁଦେବତାର ଏହି ଗୋଟିକ ପଂକ୍ତି ବିଚାର କଲେ ଦେଖାଯାଏ, ଶେଷ ବାକ୍ୟଟିର ଉପରୋକ୍ତ ବାକ୍ୟ ସହିତ କିଛି ସମ୍ବନ୍ଧ ଥିଲା ପରି ଜଣାଯାଉ ନାହିଁ । ଅର୍ଥାତ୍, ଶେଷ ବାକ୍ୟଟି ଉପରୋକ୍ତ ବାକ୍ୟଗୁଡ଼ିକର ସାରକଥା ନୁହେଁ କି (Conclusion) ଶେଷ ନିଷ୍କର୍ଷ ନୁହେଁ । ଏହା 'ଲେଖକଙ୍କର ଏକ ମନଗଢ଼ା ବଦ୍ଧମୂଳ ଧାରଣା; ଦୃଢ଼ମୂଳ ହୋଇଥିବାରୁ ଯେଉଁଠି କେଉଁଠି ପ୍ରାସଙ୍ଗିକ ବା ଅପ୍ରାସଙ୍ଗିକ୍ ହେଲେହେଁ ଲଗି-ଯାଉଛି । ତା' ଛଡ଼ା ପୂର୍ବରୁ ଯାହାସବୁ ଲେଖକ କହିଦେଇ ଗଲେ, ସେ ସବୁ ତାଙ୍କର ଜ୍ଞାନର ପ୍ରତୀକ । ସେ ମହାଶୟ ଭଲକରି ବୁଝିଛନ୍ତି ଯେ ଗୀତାର ପୁରୁଷୋତ୍ତମ' ବିଷ୍ଣୁ କୃଷ୍ଣଙ୍କଠାରେ ଆରୋପିତ ହୋଇ ପରେ ନୀଳାଦ୍ରି ନିଳୟ ପୁରୁଷୋତ୍ତମ ଭାବରେ ପୂଜା ପାଇଲେ । ଏ କଥାର ଉଲ୍ଲେଖକରି ମଧ୍ୟ, ସେ ସେଥିପ୍ରତି ଯଥେଷ୍ଟ ଦୃଷ୍ଟି ଦେଲେ ନାହିଁ । ବେଦରେ କୃଷ୍ଣ-ବିଷ୍ଣୁଙ୍କୁ ପୁରୁଷୋତ୍ତମ କେବେହେଲେ କୁହାଯାଇ ନାହିଁ । ସେତେବେଳେ କୃଷ୍ଣ-ବିଷ୍ଣୁ ତ ମୋଟେ ନ ଥିଲେ; ମାତ୍ର ଗୀତା ଶ୍ରୀକୃଷ୍ଣଙ୍କୁ ପୁରୁଷୋତ୍ତମ ବୋଲି ପ୍ରମାଣ କରିବାପାଇଁ ତାଙ୍କୁ ବେଦରେ ବି ପୁରୁଷୋତ୍ତମ କୁହାଯାଏ ବୋଲି କହିବନ୍ତି । କାରଣ 'ବେଦାଃ ପ୍ରମାଣାଃ' । ଲୋକେ ଉକ୍ତିଟିକୁ ସହଜରେ ମାନିଯିବେ ବୋଲି ଏପରି କୁହାଯାଉଛି । ଏସବୁକୁ ବିଚାରକୁ ନ ନେଇ 'ବେଦବର୍ଣ୍ଣିତ ପୁରୁଷୋତ୍ତମ' ବୋଲି ଲେଖକ କହିବାର କିଛି ତାତ୍ପର୍ଯ୍ୟ ନାହିଁ । ସେ ଯାହାହେଉ, ଲେଖକ ଆମର ଏହି ଉଦ୍‌ଘାଟିତ ବିଷ୍ଣୁ ଦେବତା-ପୁରୁଷୋତ୍ତମ-ଦାରୁବ୍ରହ୍ମ-ଜଗନ୍ନାଥ ତଥ୍ୟକୁ ପ୍ରକାରାନ୍ତରେ ଅବଚେତନ ମନରେ ଅନେକ ସ୍ଥଳରେ ସ୍ପଷ୍ଟଭାବରେ ସ୍ୱୀକାର କରିଛନ୍ତି; ସେତିକ ଯଥେଷ୍ଟ । ତାଙ୍କର ତାଦୃଶ ତଥ୍ୟ ସମ୍ବଳିତ ଗ୍ରନ୍ଥକୁ କାଟିବା ଏ ଗ୍ରନ୍ଥର ଉଦ୍ଦେଶ୍ୟ ନ ହେବା ବାଞ୍ଛନୀୟ ।

---

୧୬୪ । ଦାରୁଦେବତା—ଡଃ ବେଣୀମାଧବ ପାଢ଼ୀ—ପୃ : ୧୯୪ । ପ୍ରଥମ ପାଦ । ଶବରଦେବତା ଓ ଦାରୁବ୍ରହ୍ମ; ଏ ଦୁହେଁ ଏକ ପର୍ଯ୍ୟାୟବାଚୀ ନୁହନ୍ତି । ତେଣୁ ଆଶ୍ଚର୍ଯ୍ୟ ଲାଗେ ଯେ ଡଃ ପାଢ଼ୀ ଏହି ଶେଷୋକ୍ତ ବାକ୍ୟଟିରେ କପରି ଯୋଡ଼ିକ-ଯାକ ଶବ୍ଦ ଏକାଠି ବସାଇଲେ ? ଜଗନ୍ନାଥଙ୍କୁ ପୁରାଣମାନଙ୍କରେ ଦାରୁବ୍ରହ୍ମ ବୋଲି ନାମକରଣ କରାଯାଇଥିଲେ ମଧ୍ୟ ଶବରଦେବତା ବୋଲି ନାମକରଣ କରାଯାଇ ନାହିଁ । (ଯଥା :—ସ୍କନ୍ଦ : ପୁ : ମା :—୫/୬୯—''ନ ଦାରୁ ପ୍ରତିମାଚେୟଂ ସାକ୍ଷାତ୍ ବ୍ରହ୍ମ ପ୍ରକାଶତେ ।'' ସେହି ଗ୍ରନ୍ଥ ୫/୭୨—

ଡଃ କାହ୍ନୁଚରଣ ମିଶ୍ର ତାଙ୍କର ନାନା ତଥ୍ୟ ସମ୍ବଳିତ ପୁସ୍ତକ "The Cult of Jagannath"ରେ ଅନେକ ସ୍ଥଳରେ ଜଗନ୍ନାଥଙ୍କୁ ନିର୍ଗୁଣ ବ୍ରହ୍ମର ଏକ ରୂପକଳ୍ପ ବୋଲି ସ୍ୱୀକାର କରିଛନ୍ତି । ସେ କହିଛନ୍ତି, ଲୋକେ ବ୍ରହ୍ମଙ୍କର ଏକ ରୂପ ଉପସ୍ଥାପନା କରିବାପାଇଁ ଜଗନ୍ନାଥଙ୍କ ମୂର୍ତ୍ତିଟିକୁ ଏପରି ଭାବରେ ଗଢ଼ିଛନ୍ତି । ତାଙ୍କ ଭାଷାରେ, (୧୬୫)—"Again the story about the partial completion of the images may in some way lay down the sense of imperfection and incompleteness in the attempts of human beings to give shape and form to the Nirguna-Brahma. ସେ ମହାଶୟ ମଧ୍ୟ ତାଙ୍କର ବିଭିନ୍ନ ମତବାଦ ମଧ୍ୟରେ ପ୍ରକାରାନ୍ତରେ ସ୍ୱୀକାର କରିଛନ୍ତି ଯେ, ଜଗନ୍ନାଥ ଧର୍ମ ହେଉଛି ସନାତନ ଧର୍ମ ବା ହିନ୍ଦୁଧର୍ମର ରୂପାନ୍ତର । ନୀଳଚକ୍ର, କଳ୍ପବଟ, ଯାହାକି ଜଗନ୍ନାଥତତ୍ତ୍ୱର ଭାବନାରେ ଦୃଷ୍ଟିପଥକୁ ଆସେ, ସବୁ ହେଉଛି ହିନ୍ଦୁମାନଙ୍କର । ମୁଖ୍ୟତଃ, ଏସବୁ ଭାରତର ବିଷ୍ଣୁମନ୍ଦିର-ମାନଙ୍କରେ ଦୃଷ୍ଟିଗୋଚର ହେଉଥିବାରୁ, ଏହା ସାଧାରଣତଃ ବୈଷ୍ଣବାତ୍ମକ । ତାଙ୍କ ଭାଷାରେ :—'Kalpavata and Nilachakra are to be found in almost all the Vaisnava temples in India and that they are not exclussively Jaina. Thus, there seems to be no valid reason in support of the contention that the non-sectarian cult of Jagannath cannot be a Hindu tradition simply because of this feature. × × ×. This is the Jagannath dharma and this is the Sanatana dharma × × (୧୬୬). Basically, the Indian culture is a true replica of Jagannath culture. (୧୬୭) ଏହାଛଡ଼ା, ସେ ମଧ୍ୟ ନିର୍ବିବାଦରେ

---

"ସତୁର୍ଦ୍ଧାରବଂବ୍ରହ୍ମ ପାର୍ଥିବଜଗତେଽସ୍ମିନ୍" । (ଦ୍ରଷ୍ଟବ୍ୟ—Land of Vishnu—PP.70-Footnote-No-8)

୧୬୫ । The Cult of Jagannath.
Dr. K. C. Mishra-1971-pp. 84.

୧୬୬ । The Cult of Jagannath—pp. 93.

୧୬୭ । The Cult of Jagannath—pp. 97.

ଗ୍ରହଣ କରିନେଇଛନ୍ତି ଯେ ଜଗନ୍ନାଥ ହେଉଛନ୍ତି, ପରମାତ୍ମା, ପରଂବ୍ରହ୍ମ । ତାଙ୍କ ମନ୍ଦିରର ଚାରିପଟେ ଘେରିରହିଛି ମୈଥୁନଚିତ୍ରଯୁକ୍ତ ମାୟା । ସ୍ୱୟଂ ପରଂବ୍ରହ୍ମ ମନ୍ଦିରର ଅଭ୍ୟନ୍ତରରେ ଜ୍ଞାନମୟ କୋଷରେ ବିଦ୍ୟମାନ । ଯେଉଁ ଭକ୍ତ ମାୟା ଆବରଣଯୁକ୍ତ ମନ୍ଦିରକୁ ପ୍ରଦକ୍ଷିଣ କରି, ତତ୍‌ପରେ ଭେଦ କରି ମନ୍ଦିର ମଧ୍ୟରେ ପ୍ରବେଶ କରେ ଓ ଆନନ୍ଦମୟ କୋଷରେ ସଚ୍ଚିଦାନନ୍ଦ ମୂର୍ତ୍ତି ପରଂବ୍ରହ୍ମଙ୍କୁ ଦର୍ଶନ କରେ ସେ ମୁକ୍ତି ଲାଭକରେ (୧୬୮) । ଫଳରେ ଡଃ ମିଶ୍ର ଜଗନ୍ନାଥଙ୍କୁ ବିଷ୍ଣୁ ଓ ଦାରୁବ୍ରହ୍ମ ବୋଲି ସ୍ୱୀକାର କରିଛନ୍ତି ଓ ଆମର ଉଦ୍‌ଘାଟିତ ସତ୍ୟକୁ ଗ୍ରହଣ କରିଛନ୍ତି ।

ଏପରି ବିଷ୍ଣୁତ୍ୱକୁ ସ୍ୱୀକାର କରି ମଧ୍ୟ ଅନେକ ଗବେଷକ ଭ୍ରମ ମରୀଚିକାରେ ପଡ଼ି ଜଗନ୍ନାଥଙ୍କୁ ଶବରଦେବତା ବୋଲି କହିବାକୁ ଚେଷ୍ଟା କରିଛନ୍ତି । ବିଶ୍ୱାବସୁଙ୍କର ନୀଳମାଧବ ଉପାସନା ଓ ଜଗନ୍ନାଥଙ୍କର ରୂପ ସେମାନଙ୍କୁ ଏହି ଭ୍ରାନ୍ତିରେ ପକାଇଛି । କେହି ଭାବିନାହାନ୍ତି ଯେ, ବିଶ୍ୱାବସୁ କ'ଣ ଏକ ଶାବରନାମ ? ପୁଣି ସେ ଯେଉଁ ନୀଳମାଧବଙ୍କୁ ପୂଜାକରୁଥିଲା, ତାହା କ'ଣ ସତ୍ୟ ? ଯଦି ସତ୍ୟ ହୋଇଥାଏ, ତେବେ ପଥର ନିର୍ମିତ ଚତୁର୍ଭୁଜ ବିଷ୍ଣୁପ୍ରତିମା କ'ଣ ଶବର ଦ୍ୱାରା ନିର୍ମିତ ? ଏସବୁ ଚିନ୍ତା ସେମାନଙ୍କ ମୁଣ୍ଡକୁ ଡୁକି ନାହିଁ । କେହି ହେଲେ ଚିନ୍ତା କରିନାହାନ୍ତି ଯେ, ନୀଳମାଧବ ଗୋଟିଏ ହିନ୍ଦୁଙ୍କର ବିଷ୍ଣୁପ୍ରତିମା ଓ କୌଣସି କାରଣରୁ ଏହା ଶବରଙ୍କ ହାତରେ ପଡ଼ିଯାଇଥିବ । ଆଉ ଏଡ଼େ ସୁନ୍ଦର ପ୍ରତିମା ଶବରଙ୍କ ପାଇଁ ବଡ଼ ଦୁଷ୍ପ୍ରାପ୍ୟ ଓ ଦୁର୍ଲଭ । ଏହା ଭାବି ରଙ୍କନିଧି ପାଇଲା ପରି ସେ ତାକୁ ଗୋପନରେ ପୂଜା କରିଥିବ । କାହାକୁ ଦେଖାଇବାକୁ ଚାହିଁ ନଥିବ । ପରେ ହୁଏତ ଜଣେ ହିନ୍ଦୁ ରାଜା (ଇନ୍ଦ୍ରଦ୍ୟୁମ୍ନ ?) ତାକୁ ଉଦ୍ଧାର କରିବାକୁ ଚେଷ୍ଟା କରିଥିବେ । ଫଳରେ ଶବରମାନେ ତାଙ୍କୁ ଲୁଚାଇଦେଇ ଅନ୍ତର୍ଦ୍ଧାନ ହେବାକଥା ପ୍ରଚାର କରିଥିବେ (୧୬୯) । ଏ ସବୁ କଥା ବା ସନ୍ଦେହ ତାହାର ମନକୁ ଛୁଇଁ ନାହିଁ । ବିଷ୍ଣୁମୂର୍ତ୍ତି ଅନ୍ତର୍ହିତ ହେବାବେଳକୁ ଭାରତରେ କୃଷ୍ଣବାସୁଦେବଙ୍କର ପୂଜା ଲୋକପ୍ରିୟ ହୋଇସାରିଥିବ । ବିଷ୍ଣୁ ସେତେବେଳକୁ ନିଷ୍କ୍ରିୟ ବ୍ରହ୍ମରୂପରେ କଳ୍ପିତ ହେଲେଣି । ଗୀତା ପ୍ରଭୃତି ଗ୍ରନ୍ଥ ସେତେବେଳକୁ ରଚିତ ହୋଇସାରିଲାଣି । ବିଷ୍ଣୁଙ୍କର ବିଶ୍ୱରୂପ ଲୋକରେ ପ୍ରସିଦ୍ଧ ହୋଇସାରିଲାଣି । ନ୍ୟଗ୍ରୋଧ ବୃକ୍ଷ ବିଷ୍ଣୁ ବୋଲି ଉପାସିତ ହେଲାଣି । ଏ ସବୁକୁ ଆଖି ଆଗରେ ରଖି ଦାରୁବ୍ରହ୍ମର ଉପାସନା ପୁରୁଷୋତ୍ତମ ଭାବରେ କରାଗଲା । ଗତାନୁଗତିକ ଧର୍ମଧାରାର ଆଲୋଚନା, ଇତିହାସର ବିଚାର, ବିଭିନ୍ନ ଦର୍ଶନର ବିକାଶ, ତଥା ପୁରୁଷୋତ୍ତମ ପୂଜାର ଇତିବୃତ୍ତ

---

୧୬୮ । The Cult of Jagannath—pp. 117.

୧୬୯ । The Land of Vishu—Dr. G. Mohapatra (ମତ୍କୃତ)—Delhi—ଅଧିକ ଆଲୋଚନା ପାଇଁ ଦ୍ରଷ୍ଟବ୍ୟ ।

ଆଲୋଚନା କଲେ ଉପରୋକ୍ତ ନିଷ୍କର୍ଷରେ ପହଞ୍ଚିବାକୁ ହୋଇଥାଏ । ପୁରୁଷୋତ୍ତମ—ଜଗନ୍ନାଥଙ୍କର ପୂଜା ନିଶ୍ଚୟ ବିଷ୍ଣୁପୁରାଣର ଜନ୍ମିତ ପୂର୍ବରୁ । ଅତଏବ ଖ୍ରୀ: ପୂ: ତ୍ରିଶହ ଶତକଠାରୁ ଆଉ ଅଧିକ ପୂର୍ବରୁ ନୁହେଁ । ସେତେବେଳକୁ ବୃଦ୍ଧମାନଙ୍କର ଦାର୍ଶନିକ ଚିନ୍ତାଧାରା ଯାହାଥିଲା, ବିଷ୍ଣୁଙ୍କର ସ୍ୱରୂପ ଯେପରି ବିକଶିତ ହୋଇଥିଲା, ବୃଦ୍ଧଧର୍ମର ଗତି ଯେଉଁ ଦିଗକୁ ସୂଅ ଛୁଟାଇଥିଲା, ସେ ସବୁକୁ ନେଇ ଜଗନ୍ନାଥ ମୂର୍ତ୍ତି ଏପରି ଗଠିତ ହେବା ବିଚିତ୍ର ନୁହେଁ । ବୃଦ୍ଧମାନେ ଏତେ ଉନ୍ନତ ଚିନ୍ତାର ଅଧିକାରୀ ଥାଇ କାହିଁକି ବା ଶବରଙ୍କର କାଠମୂର୍ତ୍ତି ଆଣି ପୂଜା କରିବେ ? ଏ କଥାର ପ୍ରମାଣ ବା ଆଭାସ କେଉଁ ଗ୍ରନ୍ଥରେ ହେଲେ ନାହିଁ । ଡଃ ପାଢ଼ୀ ମହାଶୟ ଯାହା କହିଛନ୍ତି, ଯେ ଜଗନ୍ନାଥ ବେଦ ପୂର୍ବରୁ ଅନାଦି କାଳରୁ ପୂଜା ପାଉଛନ୍ତି (୧୭୦) । ଏହା ମୋଟେ ସମ୍ଭବ ନୁହେଁ ଏବଂ ବେଦରଚନା ପୂର୍ବରୁ ଆର୍ଯ୍ୟମାନେ ଶବରଙ୍କର ଏହି ମୂର୍ତ୍ତିଟି ଆଣି ପୂଜା କରୁଥିବା କଥା ମଧ୍ୟ ସେହି ଦୃଷ୍ଟିରୁ ଗ୍ରହଣୀୟ ହୋଇନପାରେ ।

ବିଷ୍ଣୁପୁରାଣ ବେଳକୁ ପୁରୁଷୋତ୍ତମ ବିଷ୍ଣୁ ପୂଜା ପାଉଥିବା କଥା ବିଶିଷ୍ଟ ଗବେଷକ ଡଃ ଗଙ୍ଗାଚରଣ ତ୍ରିପାଠୀ ଜର୍ମାନୀର ଏକ ଗବେଷଣା ସଂସ୍ଥା 'Orissa Research Projcet'ର ଅବଦାନ 'The Cult of Jagannath and the Regional Tradition of Orissa' ନାମକ ପୁସ୍ତକରେ ପ୍ରକାଶ କରିଛନ୍ତି (୧୭୧) । କିନ୍ତୁ ତାଙ୍କର ଜର୍ମାନଗବେଷକଙ୍କ ସହକର୍ମୀମାନେ ସମସ୍ତେ ପ୍ରାୟ ଏ ସତ୍ୟକୁ ଗ୍ରହଣ ନ କରି ଜଗନ୍ନାଥଙ୍କୁ ଆଦିବାସୀ ଦେବତାରୂପରେ ପ୍ରମାଣ କରିବାକୁ ଲାଗିପଡ଼ିଥିବାରୁ, ଏ ପ୍ରକାର ଚିନ୍ତାଧାରା ଅନ୍ୟବନ୍ଧୁମାନଙ୍କୁ ବିରୋଧ କରିବ ବୋଲି ବିଚାରି ସେ ମହାଶୟ ନିଜେ ନିଜର ଏ ଉଦ୍‌ଘାଟିତ ସତ୍ୟଟିକୁ ଘୋଡ଼ାଇ ପକାଇବାକୁ ଚେଷ୍ଟା କରିଛନ୍ତି । ସେ ଲେଖିଛନ୍ତି, "ବିଷ୍ଣୁପୁରାଣର ଉଲ୍ଲିଖିତ ପୁରୁଷୋତ୍ତମଙ୍କ 'ଆୟତନ' ଯେ କାହିଁକି ପୁରୀର ପୁରୁଷୋତ୍ତମ ମନ୍ଦିର ନହେବ, ଏଥିରେ କିଛି କାରଣ ନାହିଁ । [ କିନ୍ତୁ ଏହା ଶେଷ ସିଦ୍ଧାନ୍ତ ହୋଇ ନପାରେ । ] "While There does not seem to be a priori any reason why this 'Purusottamakhyam Ayatanam' should not be identified with the Purusottama of Puri,—

---

୧୭୦ । ଦାରୁଦେବତା—୧୯୭୪—ପୃ. ୧୯୫—୨ୟ ଧାଡ଼ି ଏବଂ ପୃ. ୧ (ମୁଖବନ୍ଧ ସୂଚନା—"ଏକା ଜଗନ୍ନାଥ ହିଁ ଦାରୁଦେବତା ରୂପେ ଅନାଦି କାଳରୁ ପୂଜା ପାଇଆସୁଛନ୍ତି" ।

୧୭୧ । C. J. R. T. O.—PP. 37—Foot note No. 14. (A Visnuite Ayatana for Purusottama.) Tripathi.

an absolute certainty, of course, cannot be obtained in this regard." (୧୭୨) । କାହିଁକି ଏହା ଶେଷସିଦ୍ଧାନ୍ତ ନ ହେବ, ତା'ର କାରଣ ସେ ମହାଶୟ କହି ଦେଇନାହାନ୍ତି । ଯାହା ଜଣାଯାଉଛି, ବନ୍ଧୁମାନଙ୍କ ସହିତ ହାତ ମିଳାଇବା ପାଇଁ ସତ୍ୟକୁ ପ୍ରକାଶ କରି ପୁଣି ଘୋଡ଼ାଇଦେବା ଧର୍ମ୍ମାନୁମତ ତ୍ରିପାଠୀଙ୍କର ଠିକ୍ ହୋଇନାହିଁ । କିନ୍ତୁ ସେ ମହାଶୟ ସଂସ୍କୃତ,ଜର୍ମାନ, ଇତିହାସ ପ୍ରଭୃତିରେ ଜଣେ ବିଶିଷ୍ଟ ବିଦ୍ୱାନ ଥିବାରୁ ବେଳେ ବେଳେ ତାଙ୍କ ଦ୍ୱାରା ସତ୍ୟ ଉଦ୍‌ଘାଟିତ ହୋଇପାରିଛି ଓ ପାଶ୍ଚାତ୍ୟ ବନ୍ଧୁମାନଙ୍କ ମୋହବତ୍‌କୁ ଏଡ଼ାଇଦେଇ କୌଣସିମତେ ଚୁପି ଧରିଲେ ମଧ୍ୟ ବେଳେ ବେଳେ ଆତ୍ମପ୍ରକାଶ କରିଛି । ପୁରୁଷୋତ୍ତମ ହେଉଛନ୍ତି ବିଷ୍ଣୁ ଦେବତା ଓ ଏହା ଜଗନ୍ନାଥଙ୍କ ଉପରେ ଆରୋପିତ ହୋଇଛି ବୋଲି ସେ ମହାଶୟ ସ୍ପଷ୍ଟଭାବରେ ସ୍ୱୀକାର କରିଛନ୍ତି (୧୭୩) । ସେ କହିଛନ୍ତି, ପୁରୀରେ ପ୍ରଥମେ ପୁରୁଷୋତ୍ତମ ( ବିଷ୍ଣୁ ) ଓ ଲକ୍ଷ୍ମୀ ପୂଜିତ ହେଉଥିଲେ । ତାହାପରେ, ପୁରୁଷୋତ୍ତମ ଜଗନ୍ନାଥ କାଷ୍ଠମୂର୍ତ୍ତି ଥିବାରୁ ତାଙ୍କର ଶକ୍ତିରୂପେ ଏକ ଅନୁରୂପ କାଷ୍ଠମୂର୍ତ୍ତି ସୁଭଦ୍ରା ନାମରେ ପୂଜା ପାଇଲେ । ସୁଭଦ୍ରାଙ୍କୁ ସେତେବେଳେ 'ଲକ୍ଷ୍ମୀ' ବୋଲି କୁହାଯାଉଥିଲା । ପରେ ଅବଶ୍ୟ ବଳଭଦ୍ରମୂର୍ତ୍ତି ଏମାନଙ୍କ ସଙ୍ଗେ ପୂଜା ପାଇଲେ (୧୭୪) । ଡଃ ତ୍ରିପାଠୀଙ୍କ ମୁହଁରୁ ଏ ସତ୍ୟ ବାହାରିବାର ଅନେକ ପୂର୍ବରୁ ମୁଁ ମୋର ଇଂରାଜୀ ପୁସ୍ତକ 'The land of Vishnu (P.h.D. Thesis) ରେ ୧୯୭୪-୭୫ ମସିହାରେ ଏହି ତଥ୍ୟ ପ୍ରକାଶ କରିଥିଲି । ତାହା ହିଁ ପ୍ରକୃତ ତଥ୍ୟ । ତାହା ହିଁ ସତ୍ୟ । ଲକ୍ଷ୍ମୀଙ୍କୁ ପରଯୁଗରେ

---

୧୭୨ । Ibid.—PP. 37 Cf. See also, ବିଷ୍ଣୁପୁରାଣ—୧/୧୫/୫୨, ଭାଗବତ ପୁରାଣ—୪/୩୦/୧୩—"ସ ବୃଷିଭଗବାନ୍ କଶ୍ଚିତ୍···ବିଷ୍ଣୋରାଷ୍ଟ୍ରକଂ ଯଯୌ !'

୧୭୩ । I bid --PP.36--First Para.

୧୭୪ । I bid—PP-53--Para-No. 3 & 4. "but only two images were originaly there in the Puri temple, i.e. Those of Jagannath and Subhadra and that one of Balabhadra was introduced later in the temple. & "It is therefore only logical to assume that the wooden statue of Jagannath Purúsottama × × did not stand alone in the sanctum of the shrine of Purusottama × ×. There must have been one more, × × × The goddes Laksmi.' (Tripathi)

ସୁଭଦ୍ରା ବା ମଙ୍ଗଳମୟୀ ଭାବରେ ନାମିତ କରାଯାଇଛି । ଏକଥା ଏ ଲେଖକ ବିସ୍ତୃତ ଆଲୋଚନା କରିବା ପରେ ଡଃ ତ୍ରିପାଠୀ ମଧ୍ୟ ସ୍ୱାଧୀନ ଭାବରେ ଉଦ୍‌ଘାଟନ କରି-ପାରିଛନ୍ତି (୧୭୬) । ତଥାପି ସଙ୍ଗସ୍ରୋତରେ ଭାସି ଭାସି ପୁଣି ସେହି ଶବରଦେବତା କଥା ପ୍ରତିପାଦନ କରିବାକୁ ଚେଷ୍ଟା କରିଛନ୍ତି । ସେ ଯାହାହେଉ ଏଠାରେ ସମ୍ପୃକ୍ତ ସେ କୌଣସିମତେ ତାଙ୍କ ଭଳି ଜଣେ ବିଦ୍ୱାନ୍ ମଧ୍ୟ ଏ ସତ୍ୟକୁ ସ୍ୱୀକାର କରିଛନ୍ତି (୧୭୭) । ଫଳରେ, ଜଗନ୍ନାଥ ଯେ ମୂଳତଃ ବିଷ୍ଣୁଦେବତା ପୁରୁଷୋତ୍ତମ, ତାହା ପ୍ରତିପାଦିତ ହୋଇଛି । ପୁରୁଷୋତ୍ତମ ତତ୍ତ୍ୱ ସହିତ, ଜଗନ୍ନାଥ ଯେ ଦାରୁବ୍ରହ୍ମ; ସେ କଥା ମଧ୍ୟ ଡଃ ତ୍ରିପାଠୀ ପ୍ରକାରାନ୍ତରେ ସ୍ୱୀକାର କରିଛନ୍ତି (୧୭୮) । "ବେଦାନାଂ ସାରମୀଶଂ ସୁକନ ପରିବୃତଂ ବ୍ରହ୍ମଦାରୁଂ ନମାମି; ଏହା ହିଁ ଜଗନ୍ନାଥଙ୍କର ପ୍ରକୃତ ସ୍ୱରୂପ । ସେ ହେଉଛନ୍ତି ବାସ୍ତବିକ୍ ବ୍ରହ୍ମଦାରୁ ।

ଜର୍ମାନୀର ଗବେଷଣା ସଂସ୍ଥା ପକ୍ଷରୁ ଲକ୍ଷ ଲକ୍ଷ ଟଙ୍କା ବ୍ୟୟ କରି ସେଉଁମାନେ ଜଗନ୍ନାଥଙ୍କ ସମ୍ପର୍କରେ ନିକଟରେ ଡଃ ତ୍ରିପାଠୀଙ୍କ ସହିତ ଅନୁଧ୍ୟାନ କରିସାରିଛନ୍ତି, ସେମାନେ ହେଲେ, ଷ୍ଟିଟେନକ୍ରୋନ୍ H. Von. Steitencron, ଏସ୍ମାନ A. Eschmann ଏସ୍‌ମାନ୍, କୁଲକେ H. Kulke, ଲିଟ୍ J. Litt, ଫେଫର G.Pfeffer, ହେନ୍ E. Hein, ଶ୍ରୀଯୁକ୍ତ ପ୍ରଭାତ ମୁଖାର୍ଜୀ, ଶ୍ରୀଯୁକ୍ତ ଗଗନେନ୍ଦ୍ରନାଥ ଦାଶ ଓ ଅନ୍ୟମାନେ । ଏହି ଗବେଷଣା କରି ମଧ୍ୟ ଦଶମଶତକ ପୂର୍ବରୁ ଜଗନ୍ନାଥଙ୍କ ସ୍ଥିତି ବିଷୟରେ ତଥା ସ୍ୱରୂପ ଉପରେ ଏମାନଙ୍କ ମଧ୍ୟରୁ ଅନେକ ସ୍ପଷ୍ଟଭାବରେ ଆଲୋକ ପ୍ରଦାନ କରିପାରି ନାହାନ୍ତି । ଯାହା କରିଛନ୍ତି, ତାହା କେବଳ ଅନୁମାନ ଉପରେ

---

୧୭୫ । My Thesis—A 'Critical introduction to Purusottama Mahatmyam'—Submitted in 1974—ଦ୍ରଷ୍ଟବ୍ୟ—75 at Jabalpur University—approved in 1976—Published 1979-80 on the above title.

୧୭୬ । C. J. R. T. O—PP. 53. (Laksmi Re-named as Subhadhadra later)—Tripathi.

୧୭୭ । C. J. R. T. O.—PP.58—See Point. No. 5. (Tripathi) (Last Point )

୧୭୮ । C. J. R. T. O—PP. 486—"This would explain, at least partially, The term 'Darubrahma' which is applied to the statues of Jagannath, right since the

ପ୍ରତିଷ୍ଠିତ । ଏହି ସମ୍ପ୍ରଦାୟର ମତ ଅନୁସାରେ ନବକଳେବର ସମୟରେ ଜଗନ୍ନାଥଙ୍କର ପୂଜାରେ ନୃସିଂହ ମନ୍ତ୍ରର ବ୍ୟବହାର ଥିବାରୁ ସେ ନୃସିଂହ ଉପାସନାର କ୍ରମ ପରିଣତି ବୋଲି ତଥ୍ୟ ଉଦ୍‌ଘାଟିତ ହୋଇଛି (୧୭୯) । କିନ୍ତୁ ଦେଖିବାର କଥା, ଯେ ଏ ନୃସିଂହ ଉପାସନା କେବେଠାରୁ ଏ ଦେଶରେ ଚାଲିଛି ? ଉତ୍ତର ବଡ଼ ସ୍ପଷ୍ଟ । ଅବତାର କ୍ରମରେ ନୃସିଂହ ଖ୍ରୀଷ୍ଟପୂର୍ବ ଯୁଗରୁ ବା ପୁରାଣ କାଳରୁ ବିଷ୍ଣୁଙ୍କର ଅବତାର ଭାବରେ ସ୍ୱୀକୃତ । ଜଗନ୍ନାଥ ସ୍ୱୟଂ ମହାବିଷ୍ଣୁ ହୋଇଥିବାରୁ ତାଙ୍କ ପାଇଁ ଏ ମନ୍ତ୍ର ପ୍ରୟୋଗ କରାଯାଇଛି । ନୃସିଂହ ଓ ଜଗନ୍ନାଥ ଉଭୟ ବିଷ୍ଣୁ । ତେଣୁ ନୃସିଂହ ମନ୍ତ୍ରରେ ଜଗନ୍ନାଥଙ୍କୁ ପୂଜା କରିବା ତାଙ୍କର ବିଷ୍ଣୁତ୍ୱକୁ ସୂଚାଉଛି । ପୁରାଣମାନଙ୍କ ମତରେ ନୃସିଂହ ହେଉଛନ୍ତି ପୁରୁଷୋତ୍ତମ କ୍ଷେତ୍ରର ଆଦ୍ୟଦେବତା । ଏ କଥା ସ୍କନ୍ଦପୁରାଣର ଉତ୍କଳ ଖଣ୍ଡରେ ବର୍ଣ୍ଣିତ (୧୭୯କ) । କିନ୍ତୁ ଏହା ବୋଲି ଯେ ନୃସିଂହ ହେଉଛନ୍ତି ଜଗନ୍ନାଥଙ୍କର କ୍ରମ ପରିଣତି, ଏକଥା ଭାବିବା ଭୁଲ । ମତ୍ସ୍ୟ, କଚ୍ଛପ, ନୃସିଂହ; ଏ ସବୁ ବିଷ୍ଣୁଙ୍କର ଭିନ୍ନ ଭିନ୍ନ ରୂପ । ସେହିପରି ଜଗନ୍ନାଥ ମଧ୍ୟ ସେହି ବିଷ୍ଣୁଙ୍କର ଅନ୍ୟ ଏକ Aspect ଭାବିବ । ସ୍କନ୍ଦପୁରାଣରେ ବର୍ଣ୍ଣିତ ଅଛି ଯେ ଜଗନ୍ନାଥଙ୍କୁ ମଧ୍ୟ ପୁରୁଷସୂକ୍ତରେ ପୂଜା କରାଯାଏ । ତା'ଛଡ଼ା ନୃସିଂହଙ୍କୁ ମଧ୍ୟ ଅଥର୍ବବେଦାନ୍ତର୍ଗତ 'ଆଥର୍ବଣମନ୍ତ୍ର'ରେ ଉପାସନା କରିବାର ବିଧି ଅଛି (୧୮୦) । ଅତଏବ ପୂଜାରେ ବ୍ୟବହୃତ ମନ୍ତ୍ରକୁ ଧରି କିମ୍ବା ସିଧା କରି କୌଣସି ସମାଧାନ କରାଯାଇ ନପାରେ ବା ମତ୍ସ୍ୟାବତାରରୁ, କଚ୍ଛପାବତାରରୁ ଅଥବା ନୃସିଂହାଦି ଅବତାରରୁ ଜଗନ୍ନାଥଙ୍କର ସୃଷ୍ଟି ହୋଇ କୁହାଯାଇ ନ ପାରେ । ପୁରାଣମାନଙ୍କରେ ନବକଳେବର ବିଷୟ ବର୍ଣ୍ଣିତ ହୋଇନଥିବାରୁ ଏହା ସମ୍ଭବତ ପୁରାଣ ଯୁଗର ପରେ ହୋଇଥିବ ବୋଲି ଅନୁମାନ କରାଯାଏ । ତେଣୁ ନୃସିଂହମନ୍ତ୍ରର ପ୍ରୟୋଗ ମଧ୍ୟ ପରବର୍ତ୍ତୀ ପର୍ଯ୍ୟାୟରେ ହୋଇଛି । ସ୍କନ୍ଦପୁରାଣ ବେଳକୁ (ଅଷ୍ଟମ ଶତକ) ଜଗନ୍ନାଥଙ୍କ ଉପାସନା ପାଇଁ ପୁରୁଷ

---

beginnnig—not only in the Sanskrit but also in Oriya sources beginning with Saraladas.—(Tripathi)

୧୭୯ । C. J R. T. O—PP. (264. (point. 2. (Tripathi )

୧୭୯କ । ସ୍କନ୍ଦପୁରାଣ ପୁ. ମା. ଅ .୧୬ରୁ ଧ୍ୱନିତ ହୁଏ ଯେ, ପୁରୀକୁ ପ୍ରଥମେ ନୃସିଂହକ୍ଷେତ୍ର ବୋଲି କୁହାଯାଉଥିଲା ଓ ପରେ ପୁରୁଷୋତ୍ତମ ପୂଜା ଆରମ୍ଭ ହେବା ପରେ ଏହାକୁ ପୁରୁଷୋତ୍ତମକ୍ଷେତ୍ର ବୋଲି କୁହାଗଲା । କିନ୍ତୁ ଏହା ଯଦିବା ହୋଇଥାଏ, ତଥାପି ନୃସିଂହମୂର୍ତ୍ତିକୁ ଉଠାଇଦେଇ ତତ୍‌ସ୍ଥାନରେ ପୁରୁଷୋତ୍ତମ ପୂଜା ହେବା କଥା ଏଥିରେ ଉଲ୍ଲେଖ ନାହିଁ ।

୧୮୦ । ସ୍କନ୍ଦପୁରାଣ—ପୁ.ମା. ୩୧/୧୪ "ତମାଥର୍ବଣ ମନ୍ତ୍ରେଣ ଯଜେଚ ନରକେଶରୀମ୍ ।"

ସୂକ୍ତର ବ୍ୟବହାର ହୋଇମାଣଥିଲା । ଇନ୍ଦ୍ରଦ୍ୟୁମ୍ନ ଜଗନ୍ନାଥଙ୍କୁ 'ସହସ୍ରଶୀର୍ଷା ପୁରୁଷ, ବିଶ୍ୱରୂପ,, ପରଂବ୍ରହ୍ମ, ପରମାତ୍ମା ବୋଲି ସ୍ତୁତି କରିବାର କଥା ଏହି ଗ୍ରନ୍ଥରେ ଉଲ୍ଲେଖ ଅଛି (୯୮୧) । ଜଗନ୍ନାଥଙ୍କୁ ପ୍ରତିଷ୍ଠା କଲାବେଳେ ବ୍ରହ୍ମା ଶ୍ରୀସୂକ୍ତ ଓ ପୁରୁଷସୂକ୍ତ ଏବଂ 'ମନ୍ତ୍ରରାଜ ଆନୁଷ୍ଟୁଭ'ର ସାହାଯ୍ୟ ନେଇଥିଲେ (୯୮୨) । ଏହାଫଳରେ ଜଗନ୍ନାଥଙ୍କ ପୂଜାରେ ବୈଦିକତା ଥିଲାପରି ଅନୁଭୂତ ହୋଇଛି । 'ସେତେ ଅବା ସେ ବେଦର ବିରାଟ ପୁରୁଷ', ଏହି ଭାବ ଏଥିରେ ପ୍ରତିଫଳିତ ହେଉଛି । ପୁଣି ପୂଜାରେ ମନ୍ତ୍ରୋଚ୍ଚାରଣ କାଳରେ 'ଓଁ' ବା ପ୍ରଣବର ଆଦ୍ୟୋଚ୍ଚାରଣ ହେତୁ ତାଙ୍କୁ ଏପରିକି ବୈଦିକ ଦେବତା ବୋଲି ଭାବିବାକୁ ହୁଏ, ସେପରିକି ମଧ୍ୟ ନିରାକାର, ବ୍ରହ୍ମ ବା ଭାଷାନ୍ତରେ ଦାରୁବ୍ରହ୍ମ ବୋଲି ଚିନ୍ତା କରିବାକୁ ପଡ଼େ । ଅବଶ୍ୟ ପରେ ପରେ ଶକ୍ତିପୂଜା, ତନ୍ତ୍ର ଆଦିର ପ୍ରଭାବ ଜଗନ୍ନାଥଙ୍କ ପୂଜା ପଦ୍ଧତି ଉପରେ ପଡ଼ିଅଛି । ଅତଏବ ଜଗନ୍ନାଥଙ୍କର ସ୍ୱରୂପ ଅବଗତ ହେବାପାଇଁ ତାଙ୍କର ପୂଜା ପଦ୍ଧତି ଉପରେ ସମ୍ୟକ୍ ଦୃଷ୍ଟି ନିକ୍ଷେପ କରିବା ଆବଶ୍ୟକ ।

**ପୂଜାପଦ୍ଧତି—**

ଠାକୁରମାନଙ୍କ ପୂଜାପଦ୍ଧତିର ବିସ୍ତୃତ ବିବରଣୀ ପ୍ରସ୍ତୁତି କରିବା ଆମ୍ଭର ଏଠାରେ ଯେତେ ଉଦ୍ଦେଶ୍ୟ ନୁହେଁ, ସେତେ ଲକ୍ଷ୍ୟ, ତାଙ୍କୁ କିପରି ଭଲକରି ଚିହ୍ନିବା । ପ୍ରଥମେ ଯେଉଁ ପୂଜାପଦ୍ଧତି, ଯାନଯାତ୍ରା ପ୍ରଭୁଙ୍କ ପାଇଁ ଖଞ୍ଜାଯାଇଥିଲା, ପରଯୁଗରେ ସେଥିସହିତ ଅନେକ ନୂଆ ନୂଆ ଯାତ୍ରା, ପୂଜାପଦ୍ଧତି ଯୋଡ଼ାଯାଇଛି । ଉଦାହରଣତଃ, ସ୍କନ୍ଦପୁରାଣ କାଳରେ ଠାକୁରଙ୍କ ଚନ୍ଦନଯାତ୍ରା ନଥିଲା । ଯାହାପରି ଝୁଲଣ ପ୍ରଭୃତି ପଛରେ ଯାତ୍ରା ଭାବରେ ଯୋଡ଼ାଯାଇଛି । ମାତ୍ର ତାଙ୍କର ସେହି ପ୍ରସିଦ୍ଧ ଦ୍ୱାଦଶ ଯାତ୍ରା ହେଉଛି ପୁରାତନ । ତାହା ପୁଣି ସର୍ବପ୍ରାଚୀନ ନୁହେଁ । ଏ ସଂଖ୍ୟା ଦ୍ୱାଦଶରୁ ଆହୁରି କମ୍ ଥିଲା ।

---

୯୮୧ । ସ୍କନ୍ଦପୁରାଣ—ପୁ. ମା.—୨୪/୬ ୧୭—"ସହସ୍ରଶୀର୍ଷା ପୁରୁଷଃ······
　　,, 　— ,, —୨୭/୯୪-୯୮—ସୂକ୍ତାଭ୍ୟାଂ ଶ୍ରୀପୁରୁଷସ୍ୟୋଃ ଅଭିଷେକଙ୍କ ପିତାମହଃ" ॥୯୪॥

୯୮୨ । ସ୍କନ୍ଦପୁରାଣ—ପୁ:ମା:—୨୭/୯୮—
　　ଆନୁଷ୍ଟୁଭଂ ମନ୍ତ୍ରରାଜଂ ସହସ୍ରଂ ସ ଜଜାପହ ॥୯୮॥
　　ସ୍କନ୍ଦପୁରାଣ—ପୁ:ମା:—୨୦/୩୨—ଜଗନ୍ନାଥଙ୍କର ପ୍ରଥମରେ ତ୍ରିମୂର୍ତ୍ତି ଗଠନ ପରେ ପ୍ରାଣପ୍ରତିଷ୍ଠା ବେଳେ ପୁରୁଷସୂକ୍ତ ବ୍ୟବହୃତ ହେବାର ପ୍ରବାଦ ଅଛି ଯଥା:-
　　"ଶ୍ରୁତୌ ପ୍ରସିଦ୍ଧଂ ଯତ୍‌ସୂକ୍ତଂ ପାବନଂ ପୌରୁଷଂ ମହତ୍
　　ତେନ ନାରାୟଣଂ ଭୂୟଃ ପୂଜୟାମାସ ଭକ୍ତିତଃ ॥୨୦/୩୨ ॥
　　ସ୍କନ୍ଦ: ପୁ:ମା:—୨୯/୩୪—ସୂକ୍ତେନ ପୁରୁଷେଣୈନଂ ନାରାୟଣମନାମୟମ୍ ।

ଜଗନ୍ନାଥ ଯେତେବେଳେ ପ୍ରସିଦ୍ଧ ନଥିବେ, ସେତେବେଳେ ମନ୍ଦିରରେ ଧନ ପ୍ରାଚୁର୍ଯ୍ୟ ନିଶ୍ଚିତ କମ୍ ଥିବ । ଏତେ କମ୍ ଅର୍ଥରେ କ'ଣ ବା ଯାତ୍ରା ହୋଇପାରିବ ? ତେଣୁ ଜଗନ୍ନାଥ ପ୍ରସିଦ୍ଧ ହୋଇ ରାଜା ମହାରାଜାଙ୍କର ପୃଷ୍ଠପୋଷକତା ପାଇବା ପରେ ଏହି ବ୍ୟୟସାପେକ୍ଷ ଯାତ୍ରାମାନ ଗୋଟାକପରେ ଗୋଟେ ଗଢ଼ି ଉଠିଛି । ପଦ୍ମପୁରାଣର ପାତାଳଖଣ୍ଡ ବେଳକୁ ଆମେ ଯାହା ଦେଖୁ, 'ନୀଳାଖ୍ୟ' ଦେବଙ୍କର ଏତେ ଯାତ୍ରା ନଥିଲା । ସେ ଯେତେବେଳେ 'ନୀଳାଖ୍ୟଦେବ' (ନୀଳମାଧବ) ରୁ (ଜଗନ୍ନାଥ) ପୁରୁଷୋତ୍ତମ ହେଲେ, ତା'ପରେ ଯାଇ ଯାତ୍ରାମାନ, ଭୋଗମାନ ସ୍ଥାନ ପାଇଲା । ପ୍ରଥମେ ସେଗୁଡ଼ିକ କ୍ଷୁଦ୍ର ଆକାରରେ ଅନୁଷ୍ଠିତ ହେଉଥିଲା । ପରେ ପରେ ଠାକୁର ପ୍ରସିଦ୍ଧ ହେଲେ । ଲୋକ (ଯାତ୍ରୀ) ସମାଗମ ବଢ଼ିଲା । ପ୍ରଚୁର ଅର୍ଥ ଆଦାୟ ହେଲା । ଯାତ୍ରାମାନ ମହାସମାରୋହରେ ଅନୁଷ୍ଠିତ ହେଲା । ଅଷ୍ଟମଶତକ ବେଳକୁ (ଉତ୍କଳଖଣ୍ଡ ସ୍କନ୍ଦପୁରାଣ ସମୟରେ) ଦ୍ୱାଦଶ-ଯାତ୍ରା ସେହିପରି ନାନା ଆଡ଼ମ୍ବରରେ ଜନସାଗର ସମାଗମ ମଧ୍ୟରେ ଅନୁଷ୍ଠିତ ହେଉଥିଲା । ବ୍ରହ୍ମପୁରାଣ ମଧ୍ୟ ଅନୁରୂପ ସୂଚନା ଦିଏ । ଅଷ୍ଟମ (୧୮୩) ଶତକରେ ଯେତେବେଳେ ମୁରାରି ମିଶ୍ର ଓଡ଼ିଶାରେ ରହିଥାଇ ଅନର୍ଘରାଘବ ଲେଖିଲେ, ସେତେବେଳେ ପୁରୀରେ ତାହା ଅଭିନୀତ ହୋଇଥିଲା ଓ ଭଗବାନଙ୍କ ଯାତ୍ରା ଦେଖିବାପାଇଁ ରୁଣ୍ଡ ହୋଇଥିବା ଅଗଣିତ ଜନତା, ସେ ନାଟକ ଦେଖି ମୁଗ୍ଧ ହୋଇଥିଲେ । ଏକଥା ସେହି ନାଟକର ପ୍ରସ୍ତାବନାରୁ ଜଣାଯାଏ (୧୮୪) । ଏଥିରୁ ଜଣାଯାଏ, ପୁରୁଷୋତ୍ତମ (ଜଗନ୍ନାଥ)ଙ୍କର ଯାତ୍ରା ଗଙ୍ଗରାଜାମାନଙ୍କର ବହୁପୂର୍ବରୁ ଆଡ଼ମ୍ବରରେ ଅନୁଷ୍ଠିତ ହେଉଛି ଓ ଦୋଳ, ଶୟନ, ଆଦି ସମସ୍ତ ଯାତ୍ରା ପୁରୁଷୋତ୍ତମଙ୍କୁ କୃଷ୍ଣ-ବିଷ୍ଣୁ ବୋଲି ସ୍ୱୀକାର କରାଯାଇ ପାଳନ କରାଯାଇଛି ।

ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସୁଦର୍ଶନ; ଏହି ଚତୁର୍ଦ୍ଧାମୂର୍ତ୍ତିଙ୍କ ଛଡ଼ା ରତ୍ନ-ସିଂହାସନରେ ଭୂଦେବୀ, ଲକ୍ଷ୍ମୀ ଆଦି କେତୋଟି ମୂର୍ତ୍ତି ଅର୍ଚ୍ଚିତ ହୁଅନ୍ତି । ଶଙ୍କରାଚାର୍ଯ୍ୟଙ୍କର ମୂର୍ତ୍ତିଟିଏ ମଧ୍ୟ ସେଠାରେ ପୂଜିତ ହେଉଥିଲା; ମାତ୍ର ପରେ ତାହା ସେଠାରୁ ଉଠାଇ ଦିଆଗଲା । ଏସବୁକୁ ଦେଖିଲେ ଜଣାଯାଏ, ଚତୁର୍ଦ୍ଧାମୂର୍ତ୍ତିଙ୍କ ଛଡ଼ା ଅନ୍ୟ ସମସ୍ତେ ପରେ ରତ୍ନସିଂହାସନରେ ପୂଜିତ ହେଉଛନ୍ତି । ଚତୁର୍ଦ୍ଧାମୂର୍ତ୍ତି ମଧ୍ୟରେ ପ୍ରଥମେ ଜଗନ୍ନାଥ, ତା'ପରେ

---

୧୮୩ । ସଂ : ସା: ଇ:—ବଳଦେବ ଉପାଧ୍ୟାୟ—୧୯୬୮—ପୃ: ୫୯୮ ଓ ୭୭୮ ।

୧୮୪ । ଅନର୍ଘରାଘବ—ମୁରାରି—୧ମ ଅଙ୍କ—ନାନ୍ଦୀ ପାଠପରେ ପ୍ରସ୍ତାବନା-"ଭୋ ଭୋ ! ଲବଣୋଦବେଲାବନାଳୀ ତମାଲତରୁ କନ୍ଦଳସ୍ୟ ତ୍ରିଭୁବନ ମୌଳିମଣ୍ଡନ ମହାନୀଳମଣେଃ କମଳାକୁଚକଳସକେଳିକସ୍ତୁରିକାପତ୍ରାଙ୍କୁରସ୍ୟ ଭଗବତଃ ପୁରୁଷୋତ୍ତମସ୍ୟ ଯାତ୍ରାୟାଂ ଉପସ୍ଥାନୀୟାଃ ସଭାସଦ······!

ସୁଭଦ୍ରା (ତାଙ୍କର ଶକ୍ତି), [ଇଚ୍ଛାଶକ୍ତି], ତାପରେ ବଳଭଦ୍ର (ଧାର୍ଭ ବଳରାମ ଭାବରେ ଓ ଶିବ ଭାବରେ) ଏବଂ ତାହାପରେ ସୁଦର୍ଶନ (କ୍ରିୟାଶକ୍ତି) ଭାବରେ ପୂଜିତ ହେଲେ (୧୮୫)। ସ୍କନ୍ଦପୁରାଣ ବେଳକୁ ଚତୁର୍ଦ୍ଧାମୂର୍ତ୍ତି ଓ ଧର୍ମଦେବୀ ଏବଂ ଉମା ·ପୂଜିତ ହେବାର ପ୍ରମାଣ ଅଛି। କିନ୍ତୁ ବ୍ରହ୍ମପୁରାଣ ବେଳକୁ ତ୍ରିମୂର୍ତ୍ତିର ବିଶେଷ ବର୍ଣ୍ଣନା ରହିଛି। ବୋଧହୁଏ, ସେତେବେଳେ ଚତୁର୍ଦ୍ଧାମୂର୍ତ୍ତି ଅପେକ୍ଷା ତ୍ରିମୂର୍ତ୍ତି ବେଶି ପ୍ରସିଦ୍ଧ ଥିଲେ। ଏହି ପୁରାଣରେ କୁହାଯାଇଛି, ଗୁଣ୍ଡିଚା ମଣ୍ଡପକୁ, ରଥରେ ଯାତ୍ରା କଲାବେଳେ ଯେଉଁମାନେ କୃଷ୍ଣ, ବଳ ଓ ସୁଭଦ୍ରାଙ୍କୁ ଦର୍ଶନ କରନ୍ତି, ସେମାନେ ହରିଙ୍କର ବୈକୁଣ୍ଠ ଭବନକୁ ପ୍ରାପ୍ତ ହୁଅନ୍ତି। (୧୮୬) ଏଠାରେ ସୁଦର୍ଶନଙ୍କୁ ଦେଖିଲେ ମୁକ୍ତି ମିଳିବା ବିଷୟର ଉଲ୍ଲେଖ ନାହିଁ। ତେଣୁ ସୁଦର୍ଶନ ପରଯୁଗରେ ପ୍ରସିଦ୍ଧ ହେଲେ ବୋଲି କୁହାଯାଇପାରେ। ଏହି ଦୃଷ୍ଟିରୁ ବିଗ୍ରହ ପ୍ରସଙ୍ଗରେ ତ୍ରିମୂର୍ତ୍ତିଙ୍କର ପୂଜାବିଧିର ପର୍ଯ୍ୟାଲୋଚନା ଅଧିକ ଗୁରୁତ୍ୱପୂର୍ଣ୍ଣ।

ଯେଉଁ ଯେଉଁ ଗ୍ରନ୍ଥଗୁଡ଼ିକର ନିର୍ଦ୍ଦେଶମତେ ପୂଜାବିଧି ଅନୁଷ୍ଠିତ ହୁଏ, ସେଗୁଡ଼ିକ ହେଉଛନ୍ତି ମୁଖ୍ୟତଃ ବୈଦିକ କର୍ମକାଣ୍ଡ ଗ୍ରନ୍ଥ, ଆଗମଗ୍ରନ୍ଥ, ପୁରାଣଗ୍ରନ୍ଥ। ଯଥା:— ପୁରୁଷୋତ୍ତମଦେବଙ୍କର ଗୋପାଳାର୍ଚ୍ଚନ ବିଧି (୧୪୬୭—୧୪୯୭), ନୀଳାଦ୍ରିମହୋଦୟ ପୂଜାବିଧି (ଆନୁମାନିକ ଷୋଡ଼ଶ ଶତାବ୍ଦୀ), ନୀଳାଦ୍ରିନାଥସ୍ୟ ପୂଜାବିଧି (ପଞ୍ଚଦଶ ଶତକ, ଯେଣ୍ଣ ପୁରୁଷୋତ୍ତମ ଦେବଙ୍କ କୃତ), ବାସୁଦେବ ରଚିତ ଗୋପାଳାର୍ଚ୍ଚନ ପଦ୍ଧତି (ଅଷ୍ଟାଦଶ-

---

୧୮୫। ମତ୍କୃତ 'Land of Vishnu'—D. K. Publisher—Delhi—' ବିଶଦ ଆଲୋଚନା ପାଇଁ ଦ୍ରଷ୍ଟବ୍ୟ। ପୁଣି C. J. R. T. O.—Ch. II—Tripathi ମଧ୍ୟ ଅନୁଧ୍ୟାନର ଯୋଗ୍ୟ। Dr. K. C. Mishra କହନ୍ତି—(Cult of Jagannath—pp.144)—"In earlier times the deities were probable not taken as separate entities but simply as the variying symbols of one deity called 'Brahman or purusottama."—ପ୍ରଥମେ କେବଳ ପୁରୁଷୋତ୍ତମ—ବ୍ରହ୍ମ ଥିଲେ, ପରେ ଚତୁର୍ଦ୍ଧା ହେଲେ।

୧୮୬। ବ୍ରହ୍ମପୁରାଣ—ଅ ୬୬—ଗୁଣ୍ଡିଚାମଣ୍ଡପଂ ଯାନ୍ତଂ ଯେ ପଶ୍ୟନ୍ତି ରଥେ ସ୍ଥିତମ୍।
କୃଷ୍ଣଂ ବଳଂ ସୁଭଦ୍ରାଂ ଚ ତେ ଯାନ୍ତି ଭବନଂ ହରେଃ ।୧।
ଗୁଣ୍ଡିଚା ନାମ ଯାତ୍ରା ମେ ସର୍ବକାମ ଫଳପ୍ରଦା ।୮।
" —ଅ ୫୦/୪୮-୫୪· (ଏଥିରେ ତ୍ରିମୂର୍ତ୍ତିର ଗଠନ କଥା ମାତ୍ର ଅଛି। ସୁଦର୍ଶନଙ୍କର ଗଠନ ବିଷୟ ନାହିଁ।)

ଶତକ), ଜର୍ମାନୀ, ସଂସ୍କୃତ ଭାଷାରେ ପ୍ରକାଶିତ ଗ୍ରନ୍ଥ କ୍ରମଦୀପିକା (ଦଶମ ଶତାବ୍ଦୀ) (୯୮୭) ।, ଶାରଦାତିଲକମ୍, ଗୌତମୀୟ ତନ୍ତ୍ରମ୍ ଏବଂ ନୀଳମୂର୍ତ୍ତି ପ୍ରତିଷ୍ଠାବିଧି ଆଦି କେତେକ ପୋଥି । ଏ ମଧ୍ୟରୁ ଗୋପାଳାର୍ଚ୍ଚନ ପଦ୍ଧତି, ନୀଳାଦ୍ରି ମହୋଦୟ ଓ କ୍ରମଦୀପିକା ମନ୍ଦିରର ପୂଜା ପଣ୍ଡାମାନଙ୍କ ଦ୍ୱାରା ବେଶି ବ୍ୟବହୃତ ହୁଏ । ଅତଏବ, ଯାହା ଦେଖା-ଯାଉଛି, ଏହି ପୂଜାଗ୍ରନ୍ଥମାନଙ୍କ ମଧ୍ୟରୁ କେଉଁଟି ହେଲେ ସ୍କନ୍ଦପୁରାଣ (୯୮୮) ଉତ୍କଳଖଣ୍ଡ (ଅଷ୍ଟମଶତକ) ଠାରୁ ପ୍ରାଚୀନ ନୁହନ୍ତି ଓ ସମସ୍ତେ ପରଯୁଗରେ ଅନୁସୃତ ହୋଇ ଜଗନ୍ନାଥଙ୍କ ପୂଜା ପଦ୍ଧତି ଉପରେ ନିଜ ନିଜର ତାନ୍ତ୍ରିକ, କର୍ମକାଣ୍ଡୀ, ଆଦି ପ୍ରଭାବମାନ ପକାଇଛନ୍ତି । ତେଣୁ ପୂଜା ଓ ମନ୍ତ୍ର ପ୍ରୟୋଗ ବିଧିରୁ ଜଗନ୍ନାଥଙ୍କର ମୌଳିକତାକୁ ଜାଣିବାପାଇଁ ଉତ୍କଳଖଣ୍ଡ (ସ୍କନ୍ଦପୁରାଣ) ହିଁ ପ୍ରକୃତ ଦିଗ୍‌ଦର୍ଶକ ହୋଇପାରିବ । ଉତ୍କଳଖଣ୍ଡର ପୂଜାବିଧି ଦେଖିଲେ ଜଣାଯାଏ ଯେ, ଏ ତ୍ରିମୂର୍ତ୍ତିର ପୂଜା ହେଉଛି ବୈଦିକ ତଥା ବୈଷ୍ଣବାତ୍ମକ ଏବଂ ତତ୍‌ସହିତ ଦାରୁବ୍ରହ୍ମଙ୍କର ଉପାସନା । ମାତ୍ର ପରବର୍ତ୍ତୀ ଗ୍ରନ୍ଥମାନଙ୍କରେ ଶକ୍ତି ତଥା ତନ୍ତ୍ରର ପ୍ରଭାବ ପଡ଼ିଥିଲେ ମଧ୍ୟ ମୂଳତତ୍ତ୍ୱ ଯେ ଅକ୍ଷୁଣ୍ଣ ରହିଛି; ତାହାହିଁ ଦେଖିବାର କଥା ।

ପୂଜା କଲାବେଳେ ପୂଜାପଣ୍ଡା ଜଗନ୍ନାଥଙ୍କୁ କୃଷ୍ଣ ବୋଲି ଧରନେଇ ଦଶାକ୍ଷରୀ ମନ୍ତ୍ରରେ ପୂଜାଦ୍ରବ୍ୟ ଅର୍ପଣ କରନ୍ତି । ମନ୍ତ୍ରଟି ହେଉଛି "ଓଁ ଗୋପୀଜନ ବଲ୍ଲଭାୟ ସ୍ୱାହା" । ଶ୍ରୀକୃଷ୍ଣଙ୍କର ଗୋପୀମାନଙ୍କ ସହିତ ଯେଉଁ ପ୍ରେମ ଥିବାର ପୁରାଣମାନଙ୍କରୁ ଜଣାଯାଏ, ସେଥିର ଆଭାସ ଏହି ମନ୍ତ୍ରରୁ ମିଳୁଛି । ଏ ମନ୍ତ୍ରର ପ୍ରୟୋଗ ନିଶ୍ଚୟ ପୁରାଣକାଳରେ ହିଁ ହୋଇଛି । ବୈଦିକ ଯୁଗରୁ ଏପରି ମନ୍ତ୍ରର ପ୍ରୟୋଗ କଦାପି ହୋଇନପାରେ । କିନ୍ତୁ ଆଦ୍ୟରେ 'ଓଁ' ବା ପ୍ରଣବର ପ୍ରୟୋଗ ଠାକୁରଙ୍କୁ ଶ୍ରୀକୃଷ୍ଣ ବୋଲି ସୂଚାଇବା ସଙ୍ଗେ ସଙ୍ଗେ ଅବୈଦିକ ବା ଅଣହିନ୍ଦୁ ନୁହନ୍ତି ବୋଲି ଧାରଣା ଦେଉଅଛି । ହେଲେହେଁ ପୂଜା ହେବା ପରେ ତନ୍ତ୍ରଯୁଗ ବେଳକୁ ସେହି ମନ୍ତ୍ରରେ ଆହୁରି କେତୋଟି ଶବ୍ଦବ୍ରହ୍ମ ଯୋଡ଼ିହୋଇଆ-ସିବାର ପ୍ରମାଣ ଦେଖାଯାଏ । ଯଥା, ଜଗନ୍ନାଥଙ୍କର ପୂଜାବିଧିରେ ଯେଉଁ ଅଷ୍ଟାଦଶାକ୍ଷରୀ ମନ୍ତ୍ରର ପ୍ରୟୋଗ ଅଛି, ତାହା ହେଲା—" ଓଁ କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ ନମଃ ।" ପୂଜକ ଏତଦ୍ୱାରା ବୈଦିକ ଓଁକାର ସହିତ ତାନ୍ତ୍ରିକ କ୍ଲୀଂ ବୀଜମନ୍ତ୍ରକୁ ନେଇ ଏକୀକରଣ କରି, ପ୍ରଭୁ ଜଗନ୍ନାଥଙ୍କୁ ଗୋରକ୍ଷକ ଗୋବିନ୍ଦ ଓ ଗୋପୀମାନଙ୍କର ପ୍ରିୟ ଶ୍ରୀକୃଷ୍ଣ ରୂପେ ଅବଧାରଣା କରି ନମସ୍କାର କରୁଛନ୍ତି । ଫଳରେ ପୂଜାବିଧିରେ

୯୮୭ । ସଂ. ସା. ଇ—ବଳଦେବ ଉପାଧ୍ୟାୟ—ପୃ ୬୦୯ ।

୯୮୮ । ଉତ୍କଳଖଣ୍ଡର ସମୟ ନିରୂପଣ ପାଇଁ ମତ୍‌କୃତ 'The hand of Vishnu'—Delhi ଦ୍ରଷ୍ଟବ୍ୟ ଏବଂ ମତ୍‌କୃତ ସଂସ୍କୃତ ସାହିତ୍ୟର ଇତିହାସ ମଧ୍ୟ ଅବଲୋକନୀୟ ।

ବେଦ, ପୁରାଣ ଓ ତନ୍ତ୍ରର ପ୍ରଭାବ ଯଥାକ୍ରମେ କାଳକ୍ରମେ ପଡ଼ିଛି । ଓଁକାର ବା ପ୍ରଣବ ହେଉଛି ବ୍ରହ୍ମର ସ୍ୱରୂପ । ଏହି ମନ୍ତ୍ରର ପ୍ରୟୋଗ ଜଗନ୍ନାଥଙ୍କୁ ଦାରୁବ୍ରହ୍ମ ବୋଲି ସୂଚାଇବା ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣ ବୋଲି ମଧ୍ୟ ପ୍ରକାଶ କରୁଛି । ସ୍କନ୍ଦପୁରାଣରେ ଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ ବୋଲି କୁହାଯିବା ସଙ୍ଗେ ସଙ୍ଗେ ପ୍ରଣବରୂପୀ ବୋଲି ମଧ୍ୟ କୁହାଯାଇଛି (୧୮୯) । ଅର୍ଥାତ୍ ଅଷ୍ଟମଶତକ ବେଳକୁ ଜଗନ୍ନାଥ ଏହି ଭାବରେ ପୂଜିତ । ପରବର୍ତ୍ତୀ ଯୁଗରେ ନୀଳାଦ୍ରି ମହୋଦୟ ସେହି ଶବ୍ଦାଧାରକୁ ସ୍ୱୀକାର କରି ଜଗନ୍ନାଥ ଯେ ପ୍ରଣବରୂପୀ ଦାରୁବ୍ରହ୍ମ, ଏହା ସ୍ୱୀକାର କରିଛି (୧୯୦) ।

ପ୍ରଥମେ ବୈଦିକ ମନ୍ତ୍ରରେ ଦେଶରେ ପୂଜା ଅର୍ଚ୍ଚନା ଚାଲିଥିଲା । ପରଯୁଗରେ ତନ୍ତ୍ରର ପ୍ରାଧାନ୍ୟ ସମାଜରେ ବଢ଼ିବାରୁ ବୈଦିକବିଧି ସହିତ ତାନ୍ତ୍ରିକବିଧି ଯୋଗ କରାଯାଇ ପୂଜା ଉପାସନା ଚାଲିଲା । ଏହି ମିଶ୍ରିତ ପଦ୍ଧତିରେ ବିଷ୍ଣୁଙ୍କୁ ପୂଜାକଲେ ମୋକ୍ଷ ସୁଲଭ ହେବ ବୋଲି ଭାଗବତ ପୁରାଣ (୧୯୧) ପ୍ରଭୃତିରେ ଘୋଷଣା କରାଗଲା । ସେହି ଦୃଷ୍ଟିରୁ ବିଷ୍ଣୁ-ଜଗନ୍ନାଥଙ୍କର ପୂଜାବିଧିରେ ମିଶ୍ରିତ ପୂଜାପଦ୍ଧତି ଦେଖାଯାଏ । ମିଶ୍ରିତ ପୂଜାପଦ୍ଧତିର ପ୍ରଚଳନ ହେତୁ କାଳକ୍ରମେ ତାନ୍ତ୍ରିକମାନଙ୍କର 'ପଞ୍ଚମକାର'ର ପ୍ରଭାବ ମନ୍ଦିରର ଭୋଗ ସାମଗ୍ରୀ ଉପରେ ପଡ଼ିଛି । ହେଲେ, ପ୍ରକୃତ ମତ୍ସ୍ୟ, ମାଂସ, ମଦ୍ୟ, ମୁଦ୍ରା, ମୈଥୁନର ପ୍ରୟୋଗ ତ୍ରିମୂର୍ତ୍ତିଙ୍କର ପୂଜାରେ ହେଉନାହିଁ । ଖାଲି ତାନ୍ତ୍ରିକମାନଙ୍କର ମନବୁଝିବା ପାଇଁ ପଣିବା ଓ ହେଙ୍ଗୁ ତରକାରୀକୁ ମତ୍ସ୍ୟ, ଅଦାପାଚେଡ଼ିକୁ ମାଂସ, କଂସାପାତ୍ରରେ ପଇଡ଼ପାଣିକୁ ମଦ୍ୟ, କାନ୍ତି ନାମକ କାକରାପିଠାକୁ ମୁଦ୍ରା, ଦେବଦାସୀଙ୍କର ନୃତ୍ୟକୁ ମୈଥୁନ ବୋଲି ଧରାଯାଇଛି । ମାତ୍ର ଏହା ଏକ ଅହେତୁକ ମନବୁଝା ମନଗଢ଼ା କଥା । ଜଗନ୍ନାଥ ହେଉଛନ୍ତି ବୈଷ୍ଣବ । ସେ ମାଛ, ମାଂସ ଖାଇବେ କୁଆଡ଼ୁ ? ଯଦି ଖାଉଥାନ୍ତେ ତେବେ ପୁରୀରେ କ'ଣ ସେ ପଦାର୍ଥ ଅଭାବ ଥିଲା ଯେ କାଳ କାଳ ଧରି ଦେଉଳରେ ପଶିଲା ନାହିଁ । ଜଗନ୍ନାଥଙ୍କ ଭୋଜନବିଧି ଏପରି ସୁସମ୍ପନ୍ନ ଓ ନୈଷ୍ଠିକ ଯେ ଏ ପର୍ଯ୍ୟନ୍ତ ବଳଭଦ୍ରବାଇରଣ, ବଳଦିଆଳୁ ପ୍ରଭୃତି ସୁମିଷ୍ଟ

---

୧୮୯ । ସ୍କନ୍ଦପୁରାଣ--ପୁ: ମା:—୨୪/୧୪-୧୫=

"ଇତସ୍ତୁଷ୍ଟା ସୁରଗଣା ନାଂ ଦେବଂ ପ୍ରଣବରୂପିଣମ୍"

,, ପ୍ରଣତଂ ପ୍ରଣବଂ ମନ୍ତ୍ରଂ ଜଜାପ ପୁରତଃ ହରେଃ ॥

୧୯୦ । ନୀଳାଦ୍ରିମହୋଦୟମ୍—ଅ: ୩୦/—ପୃ-୪୦୦-୪୧୦ ।

୧୯୧ । ଭାଗବତ ପୁରାଣ—ଅ: ୧୧/-୨୭/୭

"ବୈଦିକସ୍ତାନ୍ତ୍ରିକୋ ମିଶ୍ର ଇତମେ ତ୍ରିବିଧୋ ମଖଃ ।"

—ଅ: ୮/୭/୯

ଭୂତକର ପଶବାରମାନ ମନ୍ଦରକୁ ଯାଇପାରନ୍ତି ନାହିଁ । ତେବେ ସେକାଳର ରକ୍ଷଣଶୀଳ ସମସ୍ତରେ ତାନ୍ତ୍ରିକମାନେ କପଶ ବା ମଦ୍ୟ, ମତ୍ସ୍ୟ, ମାଂସ ଆଦି ପୂଜାସାମଗ୍ରୀର ଅନ୍ତର୍ଭୁକ୍ତ କରାଇ ପାରିଥାନ୍ତେ ? ଦୁର୍ଗାପୂଜା ସମସ୍ତରେ ବିମଳାଙ୍କ ନିକଟରେ ଯେଉଁ ପଶୁବଳି ପଡ଼େ, ସେ ପଶୁକୁ ରାତ୍ରଅଧରେ ଜଗନ୍ନାଥ ଶୋଇବା ପରେ ପଛପଟରେ ଲୁଚାଇକରି ନିଆଯାଇ ବଳି କରାଯାଏ । ଜଗନ୍ନାଥ ଯଦି ମାଂସ ଭୋଜୀ ହୋଇଥାନ୍ତେ, ଏତେ ଲୁଚା ଚୋରା କଥା ଚାଲିଥାନ୍ତା କାହିଁକି ? ବିମଳା ହେଉ କ୍ଷେତ୍ରରେ ଜଗନ୍ନାଥଙ୍କର ଆଗରୁ ପୂଜିତା; କିନ୍ତୁ ଜଗନ୍ନାଥ—ବିଷ୍ଣୁ ଯେତେବେଳେ ସେଠି ଯାଇ ବସିଲେ ଓ ତାଙ୍କର ପ୍ରସିଦ୍ଧି ବଢ଼ିଲା, ସେତେବେଳେ ତାଙ୍କର ଅବସ୍ଥାନ ହେତୁ ବଳିର ଏ ଚୋରା କାରବାର ଚାଲିଲା । ତାହା ପୁଣି ବର୍ଷକେ ଥରେ ମାତ୍ର । ଏହି ପୀଠରେ ଜଗନ୍ନାଥଙ୍କ ଭଳି ନୃସିଂହ ଜଣେ ବିଷ୍ଣୁଦେବତା ହୋଇଥିବାରୁ ତାଙ୍କ ନିକଟରେ ମଧ୍ୟ ପଶୁବଳି ପ୍ରଥା ନାହିଁ ।

ଆଉରି ଏକ ଅନ୍ୟ ଦୃଷ୍ଟିରୁ ବିଚାରକଲେ ଜଣାଯାଏ ଯେ, ଆଗମ ଓ ତନ୍ତ୍ରଗ୍ରନ୍ଥ-ମାନଙ୍କରେ ଉଲ୍ଲିଖିତ ପଞ୍ଚମକାର ପ୍ରଥା ଜଗନ୍ନାଥଙ୍କ ପୂଜାବିଧିରେ ମୋଟେ ସ୍ଥାନ ପାଇ ନପାରେ । କାରଣ, ଏହି ପ୍ରଥା ତାନ୍ତ୍ରିକ ଦୃଷ୍ଟିରେ କେବଳ ସପ୍ତମ, ଯୋଗ ଓ ସାଧନା ପାଇଁ ଉଦ୍ଦିଷ୍ଟ । ଜଗନ୍ନାଥଙ୍କ ପୂଜାବିଧିରେ ଯୋଗ ସାଧନର କଥା ନ ଥିବାରୁ ଏହା ପୂଜାବିଧିରେ ପ୍ରୟୋଗ କରାଯାଉଥିବା କଥା (୧୧୬) ନିତାନ୍ତ ଅମୂଳକ । ଯେହେତୁ ମଦ୍ୟର ଅର୍ଥ ତନ୍ତ୍ରର ତାତ୍ତ୍ୱିକ ଦୃଷ୍ଟିରେ ଏହିପରି—

"ବ୍ୟୋମ-ପଙ୍କଜ-ନିଃସ୍ୟନ୍ଦ-ସୁଧାପାନରତୋ ନରଃ ।
ମଧୁପାୟୀ ସମଃ ପ୍ରୋକ୍ତଃ ଇତରେ ମଦ୍ୟପାୟିନଃ ।"

କୁଳାର୍ଣ୍ଣବତନ୍ତ୍ରରେ ଉକ୍ତ ଶ୍ଳୋକଟିରେ କୁହାଯାଇଛି, ଯୋଗସାଧନ କାଳରେ ବ୍ରହ୍ମରନ୍ଧ୍ରରେ ବିରାଜିତ ହୁଏ ଏକ ସହସ୍ରାର ପଦ୍ମ । ଏହି ସହସ୍ରଦଳକମଳରୁ ସ୍ରବିଯାଏ ଏକ ବ୍ରହ୍ମାମୃତ । ମଦ୍ୟ ହେଉଛି ସେଇ । ତେଣୁ ସାଧକ ସାଧାରଣ ମଦ୍ୟ ପାନ ନକରି ନିରନ୍ତର କୁଣ୍ଡଳିନୀଶକ୍ତିକୁ ସହସ୍ରାରରେ ଯୋଗକରାଇ ସେହି ସହସ୍ରଦଳପଦ୍ମର ଅମୃତା-ସବକୁ ପାନ କରିବା ଦରକାର । ଅର୍ଥାତ୍, ସେହି ଅମୃତାସବ ହେଲା ମଦ୍ୟ ଓ ଏହି ତନ୍ତ୍ରଭାଷାରେ ଯୋଗୀ ହେଉଛି ମଦ୍ୟପ । "ସହସ୍ରାରେ ପଦ୍ମେ ସହରହସି ପତ୍ୟା ବିହରସି" । ସେହିଭଳି ମାଂସର ଅର୍ଥ ମଧ୍ୟ ତାନ୍ତ୍ରିକ ଭାଷାରେ ଭିନ୍ନ । ଯଥା—

"ପୁଣ୍ୟାପୁଣ୍ୟ ପଶୁଂ ହତ୍ୱା ଜ୍ଞାନଖଡ୍‌ଗେନ ଯୋଗବିତ୍ ।
ପରେ ଲୟଂ ନୟେଚ୍ଚିତ୍ତଂ ମାଂସାଶୀ ସ ନିଗଦ୍ୟତେ ।"

୧୧୬ । The Cult of Jagannath—Dr. K. C. Mishra-pp. 152.

ଅର୍ଥାତ୍, ସେହି କୁଳାର୍ଣ୍ଣବ ତନ୍ତ୍ରରେ କୁହାଯାଇଛି, ଯେଉଁ ଯୋଗୀ ପୁଣ୍ୟ ଓ ପାପରୂପକ ପଶୁକୁ ଜ୍ଞାନଖଡ୍‌ଗ ଦ୍ୱାରା ଛିନ୍ନକରି ଚିତ୍ତକୁ ବ୍ରହ୍ମରେ ଲୀନ କରେ ସେ ହେଉଛି ମାଂସଭୋଜୀ । ଆଗମସାର ଏହି ତତ୍ତ୍ୱକୁ ଅନ୍ୟ ଅର୍ଥରେ ବ୍ୟବହାର କରିଛି । ସେଥିରେ ଲେଖାଅଛି—

"ମା' ଶବ୍ଦାଦ୍ ରସନା ଜ୍ଞେୟା ତଦଂଶାନ୍ ରସନାପ୍ରିୟାନ୍ ।
ସଦା ଯୋ ଭକ୍ଷୟେଦ୍ ଦେବି ସ ଏବ ମାଂସସାଧକ ।"

ଅର୍ଥାତ୍, ବାକ୍ୟ ବ୍ୟୟ ନକରି ଜିହ୍ୱାକୁ ସଂଯମ କରିବା ହେଉଛି ପ୍ରକୃତ ମାଂସାହାର । ଅତଏବ, କୁଳାର୍ଣ୍ଣବ ତନ୍ତ୍ର ଓ ଆଗମସାର ମଧ୍ୟରେ ତତ୍ତ୍ୱଭେଦ ରହିଛି । ତେଣୁ କୁହାଯାଇ ପାରେ ତନ୍ତ୍ରବାଦରେ ଭିନ୍ନତା ଥିବାରୁ, ଏହାକୁ ଏକ ସାର୍ବଜନୀନ ଗ୍ରାହ୍ୟବସ୍ତୁ ବୋଲି କୁହାଯାଇ ନପାରେ । ତା'ଛଡ଼ା, ଏକ ମତଦ୍ୱୈଧ ବସ୍ତୁକୁ ନେଇ ଜଗନ୍ନାଥଙ୍କ ପୂଜା ସହିତ ଯୋଡ଼ିବା ଅବାନ୍ତର ଛଡ଼ା ଅନ୍ୟକିଛି ହୋଇନପାରେ ।

ଭିନ୍ନ ଅର୍ଥରେ ଏପରି ପ୍ରୟୋଗର ବର୍ଣ୍ଣ ମଦ୍ୟ ମତ୍ସ୍ୟ, ମୁଦ୍ରା ଓ ମୈଥୁନ ପାଇଁ ତନ୍ତ୍ର ଗ୍ରନ୍ଥରେ ରହିଛି । ଆଗମସାର ମତରେ ଶରୀରରେ ଥିବା ଇଡ଼ା ଓ ପିଙ୍ଗଳା ନାଡ଼ୀକୁ ଗଙ୍ଗା ଓ ଯମୁନା କୁହାଯାଏ । ଏ ମଧ୍ୟଦେଇ ପ୍ରବାହିତ ଶ୍ୱାସ ଓ ପ୍ରଶ୍ୱାସକୁ ମତ୍ସ୍ୟ ଦୃଷ୍ଟି ବୋଲି ବର୍ଣ୍ଣିତ କରାଯାଇଛି । ଏହି ଶ୍ୱାସ ପ୍ରଶ୍ୱାସକୁ ସଂଯତକରି ଯେଉଁ ଯୋଗୀ ପ୍ରାଣାୟାମ ସାଧନ କରିପାରେ ସେ ତାନ୍ତ୍ରିକ ଭାଷାରେ ମତ୍ସ୍ୟଭୋଜୀ ବୋଲି ଗୃହୀତ ହୁଏ । ତେଣୁ ଆଗମସାରରେ ଲେଖାଯାଇଛି—

"ଗଙ୍ଗା ଯମୁନୟୋର୍ମଧ୍ୟେ ମତ୍ସ୍ୟୌ ଦ୍ୱୌ ଚରତଃ ସଦା ।
ତୌ ମତ୍ସ୍ୟୌ ଭକ୍ଷୟେଦ୍ ଯସ୍ତୁ ସ ଭବେତ୍ ମତ୍ସ୍ୟସାଧକଃ ।।"

ବଜ୍ରଯାନତନ୍ତ୍ରଗ୍ରନ୍ଥ ମୁଦ୍ରାସମ୍ପର୍କରେ ଏକ ସ୍ପଷ୍ଟୀକରଣ ଦେଇ କହିଛି—

"ସତ୍‌ସଙ୍ଗେନ ଭବେନ୍ମୁକ୍ତିରସତ୍‌ସଙ୍ଗେଷୁ ବନ୍ଧନମ୍ ।
ଅସତ୍‌ସଙ୍ଗ ମୁଦ୍ରଣଂ ଯତ୍ତୁ ତନ୍ମୁଦ୍ରା ପରିକୀର୍ତ୍ତିତା ।"

ଅର୍ଥାତ୍, ସତ୍‌ସଙ୍ଗ ଲାଭରେ ମୁକ୍ତି ଲାଭହୁଏ । ଅସତ୍‌ସଙ୍ଗରେ ବନ୍ଧନ ଜାତ ହୁଏ । ଅସତ୍‌ସଙ୍ଗତ୍ୟାଗକୁ ମୁଦ୍ରଣ ବୋଲି ବୋଲାଯାଏ ଓ ତାନ୍ତ୍ରିକ ଭାଷାରେ ଏହା ହେଉଛି ମୁଦ୍ରା । ତେଣୁ ଯୋଗୀ ମୁଦ୍ରାସାଧକ ହେବାକୁ ହେଲେ ଅସାଧୁ ସମ୍ପର୍କ ତ୍ୟାଗ କରିବ । ଏହି ହେଲା ଏକ ତାନ୍ତ୍ରିକ ଉପଦେଶ ।

ମେରୁତନ୍ତ୍ରରେ ମୈଥୁନର ତତ୍ତ୍ୱ ଆଲୋଚନା ହୋଇଛି । ଏଥିରେ କୁହାଯାଇଛି—

"ଇଡ଼ା ପିଙ୍ଗଲୟୋଃ ପ୍ରାଣାନ୍ ସୁଷୁମ୍ନାୟାଂ ପ୍ରବର୍ତ୍ତୟେତ୍ ।
ସୁଷୁମ୍ନାଶକ୍ତିରୁଦ୍ଦିଷ୍ଟା ଜୀବୋ ଯନ୍ତ୍ରା ପରଃ ଶିବଃ ।
ତୟୋସ୍ତୁ ସଙ୍ଗମୋ ଦେବ ସୁରତଂ ନାମ କୀର୍ତ୍ତିତମ୍ ।।"

ଅର୍ଥାତ୍, ସୁଷୁମ୍ନାନାଡ଼ୀ ଓ ପ୍ରାଣବାୟୁର ମିଳନକୁ ସଙ୍ଗମ ବା ମୈଥୁନ ବୋଲି କୁହା-ଯାଇଛି । ସ୍ତ୍ରୀ ସଙ୍ଗମଜନିତ ଆନନ୍ଦଠାରୁ ଏ ସଙ୍ଗମରେ କୋଟି ଗୁଣ ଆନନ୍ଦ ମିଳିଥାଏ । ସେହି ସଙ୍ଗମ ହେଉଛି ସୁରତ ବା ମୈଥୁନ ।

ପଞ୍ଚମକାର ଭୋଗ୍ୟବସ୍ତୁ ମନୁଷ୍ୟଙ୍କୁ ଆନନ୍ଦ ମଧ୍ୟରେ ପାଶବ ପ୍ରବୃତ୍ତିରେ ପରିଚାଳିତ କରୁଥିବାରୁ, ତାକୁ ପୁଣି ମୁକ୍ତିମାର୍ଗକୁ ଆଣିବାପାଇଁ ତନ୍ତ୍ରଗ୍ରନ୍ଥକାରମାନେ ଉପରୋକ୍ତ ଭାବରେ ସେହି ତତ୍ତ୍ୱକୁ ବ୍ୟାଖ୍ୟାନ କରି ସମାଜରେ ଯୋଗସାଧକ ସୃଷ୍ଟି କରିବାପାଇଁ ପ୍ରଯତ୍ନ କରିଛନ୍ତି (୧୯୩) । ଅତଏବ, ଏହି ଶରୀରରେ ପଞ୍ଚମକାରର ପୂର୍ବୋକ୍ତ ଭୋଗ୍ୟ-ବସ୍ତୁର ଅର୍ଥ ଭୋଗ ହେଉ, ବା ତ୍ୟାଗ ତଥା ଯୋଗାର୍ଥକ ତତ୍ତ୍ୱ ହେଉ; କେଉଁଟି ହେଲେ ଜଗନ୍ନାଥଙ୍କ ପୂଜାକୁ ପ୍ରଭାବିତ କରିଥିବା ଆମେ ଦେଖି ନାହୁଁ । ଏଣୁ କୁହାଯାଇପାରେ ଜଗନ୍ନାଥଙ୍କ ପୂଜା ପଦ୍ଧତି ପଞ୍ଚମକାରମୂଳକ ନୁହେଁ । ପରେ ତାଙ୍କ ପୂଜା ପଦ୍ଧତିରେ ତାନ୍ତ୍ରିକ ପ୍ରୟୋଗ ବିଧି ସଂଯୋଗ କରାଯାଇଥିଲେ ମଧ୍ୟ ଏହା କଦାପି ମୌଳିକ ପରଂପରା ନୁହେଁ ।

ବିଷ୍ଣୁଙ୍କୁ ଷୋଡ଼ଶ ଉପଚାରରେ ପୂଜାକରାଯିବାର ବିଧି ପୁରାଣଗ୍ରନ୍ଥ ମାନଙ୍କରେ ଅଛି । ଜଗନ୍ନାଥ ବିଷ୍ଣୁ ଦେବତା ହୋଇଥିବାରୁ ତାଙ୍କୁ ମଧ୍ୟ ସେହି ଷୋଡ଼ଶ ଉପଚାରରେ ପୂଜା କରାଯାଇଥାଏ । ଏହି ପୂଜା ଯେତିକି ବୈଷ୍ଣବାତ୍ମକ, ସେତିକି ବୈଦିକ । ଷୋଡ଼ଶ ଶବ୍ଦର ମଧ୍ୟ ବେଦରେ ଏକ ବିଶେଷ ମୂଲ୍ୟ ରହିଛି । ଯଜ୍ଞରେ ଷୋଡ଼ଶ ବ୍ରାହ୍ମଣ ବରଣ ହେବାର ବିଧି ଅଛି । ସେହି ଦୃଷ୍ଟିରୁ ଜଗନ୍ନାଥଙ୍କ ମନ୍ଦିରରେ ମୁକ୍ତିମଣ୍ଡପରେ ଷୋଡ଼ଶ ସଂଖ୍ୟକ ସ୍ତମ୍ଭ ରହିଛି । ଗୋଟିଏ ଗୋଟିଏ ସ୍ତମ୍ଭ ଗୋଟିଏ ଗୋଟିଏ ବ୍ରାହ୍ମଣ ଶାସନ ପାଇଁ ଉଦ୍ଦିଷ୍ଟ । ଏଣୁ ପରଯୁଗରେ ଷୋଡ଼ଶ ସଂଖ୍ୟକ ବ୍ରାହ୍ମଣ ଶାସନ ରାଜାଙ୍କୁ ପ୍ରତିଷ୍ଠା କରିବାକୁ ହୋଇଛି । ସେ ଯାହାହେଉ, ଷୋଡ଼ଶ ଉପଚାର ବିଧିରେ ବୈଦିକ ଚିନ୍ତାଧାରା ନିହିତ ।

ଜଗନ୍ନାଥଙ୍କ ପୂଜାପାଇଁ ଯେଉଁ ଅଷ୍ଟାକ୍ଷର ମନ୍ତ୍ର (ଓଁ ବାସୁଦେବାୟ ନମଃ), ଦ୍ୱାଦଶାକ୍ଷରମନ୍ତ୍ର (ଓଁ ନମୋ ଭଗବତେ ବାସୁଦେବାୟ) ଏବଂ ଅଷ୍ଟାଦଶାକ୍ଷରମନ୍ତ୍ର (ଓଁ କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନବଲ୍ଲଭାୟ ନମଃ)ର ପ୍ରୟୋଗ ବିଧି ଅଛି, ସେଗୁଡ଼ିକ

୧୯୩ । ନାଥ ଧର୍ମର ଜମବିକାଶ—ଡଃ ହୋଳଗୋବିନ୍ଦ ଶାସ୍ତ୍ରୀ–୧୯୭୧- ପୃ. ୮୧-୮୪,

ସବୁ ବୈଷ୍ଣବ ମନ୍ତ୍ର । ଏ ମନ୍ତ୍ରରେ ସକାଳଧୂପ, ମଧ୍ୟାହ୍ନ ଧୂପ ଓ ସନ୍ଧ୍ୟାଧୂପର ପୂଜା ହୋଇଥାଏ । ଏହାଛଡ଼ା ଧ୍ୟାନ ସମୟରେ ମଧ୍ୟ ଅର୍ଚ୍ଚକ ତାଙ୍କୁ ଶ୍ରୀକୃଷ୍ଣ ବୋଲି ଗ୍ରହଣ କରନ୍ତି । ସକାଳ ଧ୍ୟାନରେ ତାଙ୍କୁ ଗୋପର ବାଳଗୋପାଳ ଭାବରେ ଚିନ୍ତା କରାଯାଏ । ମଧ୍ୟାହ୍ନ କାଳରେ ଧ୍ୟାନରେ ସେ ବୃନ୍ଦାବନର କଳ୍ପବୃକ୍ଷରେ ବସିଥିବା ନବଯୁବକ ଶ୍ରୀକୃଷ୍ଣ ରୂପେ କଳ୍ପିତ ହୁଅନ୍ତି । ସନ୍ଧ୍ୟା ଧ୍ୟାନ ସମୟରେ ତାଙ୍କୁ ଦ୍ୱାରକାରେ ଏକ ଉଦ୍ୟାନରେ ମଣ୍ଡପ ଉପରେ ବସିଥିବା (ଚତୁର୍ଭୁଜ) ମହାରାଜ ଶ୍ରୀକୃଷ୍ଣ ରୂପେ ଭାବନା କରାଯାଏ । ପୁଣି ରାତ୍ରି କାଳରେ ତାଙ୍କୁ ରାସକ୍ରୀଡ଼ା ପ୍ରବୀଣ ପ୍ରେମିକ ଶ୍ରୀକୃଷ୍ଣ ଭାବରେ ଅର୍ଚ୍ଚକ ଧ୍ୟାନ କରନ୍ତି । ଏ ସମସ୍ତ ଧ୍ୟାନ ଜଗନ୍ନାଥଙ୍କର ବିଷ୍ଣୁତ୍ୱକୁ ସାବ୍ୟସ୍ତ କରିଥାଏ ।

ଅଷ୍ଟାକ୍ଷର, ଦ୍ୱାଦଶାକ୍ଷର, ଅଷ୍ଟାଦଶାକ୍ଷର ମନ୍ତ୍ରର ପ୍ରୟୋଗ ବ୍ୟତୀତ ଆଉ ଗୋଟିଏ ମନ୍ତ୍ର କୃଷ୍ଣ-ଜଗନ୍ନାଥଙ୍କ ପାଇଁ ବ୍ୟବହୃତ ହୁଏ । ଏହାକୁ ଦଶାକ୍ଷରମନ୍ତ୍ର ବୋଲି କୁହାଯାଏ । ମନ୍ତ୍ରଟି ହେଲା—"ଗୋପୀଜନବଲ୍ଲଭାୟ ସ୍ୱାହା ।" ଏହି ମନ୍ତ୍ରଟି ହେଉଛି ଅଷ୍ଟାଦଶାକ୍ଷର ମନ୍ତ୍ରର ଏକ ଅଂଶ । ଏଣୁ ପୂଜାରେ ମନ୍ତ୍ର ପ୍ରୟୋଗକୁ ଦେଖି ସ୍ପଷ୍ଟ କହିହେବ, ଜଗନ୍ନାଥ ଶ୍ରୀକୃଷ୍ଣଙ୍କର ପରବର୍ତ୍ତୀ ସ୍ୱରୂପ ଭାବରେ ପୂଜିତ । ସେହି ଦୃଷ୍ଟିରୁ ସେ ହେଉଛନ୍ତି ଗୋପିକା ମୋହନ ବୃନ୍ଦାବନଚନ୍ଦ୍ର ଶ୍ରୀକୃଷ୍ଣ । ଏ ତ ଗଲା ମନ୍ଦିର ଭିତରର ସକାଳଥା । ନବକଳେବର ସମୟରେ ଜଗନ୍ନାଥଙ୍କର କି ପ୍ରକାର ପୂଜା, ଯାଗ ଇତ୍ୟାଦି ଚାଲେ, ତାକୁ ମଧ୍ୟ ଟିକିଏ ଭଲକରି ଦେଖିବା କଥା । ତା' ଛଡ଼ା ଦାରୁର ରୂପ ମଧ୍ୟ ବିଚାରକୁ ନଆସିବା ଦରକାର । ଜଗନ୍ନାଥଙ୍କ ପାଇଁ ଯେଉଁ ଦାରୁକୁ (ବୃକ୍ଷକୁ) ନିର୍ବାଚନ କରାଯାଏ, ସେଥିରେ ଅନ୍ୟାନ୍ୟ ପ୍ରାସଙ୍ଗିକ ଲକ୍ଷଣ ସହିତ ବିଷ୍ଣୁଙ୍କର ଆୟୁଧ ଶଙ୍ଖ ଓ ଚକ୍ରର ଚିହ୍ନ ଥାଏ । ଏହି ବୃକ୍ଷରେ ଚାରିଗୋଟି ମୁଖ୍ୟ ଶାଖା ଥାଇ ବୃକ୍ଷରେ ଚତୁର୍ଭୁଜ ବିଷ୍ଣୁଙ୍କର ଆବିର୍ଭାବର ସୂଚନା ଦିଏ(୧୯୪) । ଏପରି ଏକ ବିଷ୍ଣୁବୃକ୍ଷ ନିର୍ବାଚିତ ହେବା ପରେ ତାକୁ କାଟିକରି ଆଣିବାର ଆବଶ୍ୟକତା ପଡ଼େ ଓ ସେଥିପାଇଁ ବନଯାଗ ହୁଏ । ଏ ବନଯାଗ ଦଇତାମାନେ କରନ୍ତି ନାହିଁ । କରନ୍ତି ବ୍ରାହ୍ମଣ ଆଚାର୍ଯ୍ୟ । ଏହା ଶାବର ପଦ୍ଧତିରେ ହୁଏ ନାହିଁ, ହୁଏ ବୈଦିକ ରୀତିରେ । ବୈଷ୍ଣବାଗ୍ନିରେ ଆନୁଷ୍ଟୁଭମନ୍ତ୍ରରେ ୧୦୮ ଥର ଘୃତାହୁତି ଦିଆଯାଏ । ଯଜ୍ଞରେ କୌଣସି ଶାବର ଭାଷାର ପ୍ରୟୋଗ ଦେଖାଯାଏ ନାହିଁ, କି ବୌଦ୍ଧ ବା ଜୈନଙ୍କର ପାଲି ବା ପ୍ରାକୃତ ଆଦି ଭାଷାର ପ୍ରୟୋଗ ହୁଏ ନାହିଁ । ହୁଏ ବୈଦିକ ସଂସ୍କୃତ ଭାଷାର ପ୍ରୟୋଗ । ଏତଦ୍‌ବ୍ୟତୀତ ବୈଷ୍ଣବ ନୃସିଂହମନ୍ତ୍ରର ପ୍ରୟୋଗ ବିଧି ମଧ୍ୟ ଅଛି । (୧୯୫) ଏହି ଯଜ୍ଞବେଦୀର ଚତୁର୍ଦ୍ଦିଗରେ ଯେଉଁ ବୃକ୍ଷମାନଙ୍କଦ୍ୱାରା ତୋରଣ ସ୍ଥାପିତ ହୁଏ,

---

୧୯୪ । C. J. R. T. O.—pp.236. (Tripathi

୧୯୫ । ସ୍କନ୍ଦପୁରା—ପୁରୁଷୋତ୍ତମମାହାତ୍ମ୍ୟମ୍—ଅ: ୨୮/୪୮-୨୪

ସେହି ବୃକ୍ଷମାନେ ହେଉଛନ୍ତି, ଅଶ୍ୱତ୍ଥ (ପୂର୍ବ) ଉଦୁମ୍ବର (ଦକ୍ଷିଣ) ପ୍ଲକ୍ଷ (ପଶ୍ଚିମ) ବଟ (ଉତ୍ତର) । ଏ ମଧ୍ୟରୁ ଅଶ୍ୱତ୍ଥ ହେଉଛି ଗୀତାର ସେହି "ଊର୍ଦ୍ଧ୍ୱମୂଳ ଅଧଃଶାଖ" ପୁରୁଷୋତ୍ତମ ବ୍ରହ୍ମ ବୃକ୍ଷ (୧୯୬) ଏବଂ ବଟ ହେଉଛି ସେହି ଉତ୍କଳଖଣ୍ଡରେ ବର୍ଣ୍ଣିତ ସାଗରରେ ଭାସୁଥିବା ମହାନ୍ ନ୍ୟଗ୍ରୋଧ ବୃକ୍ଷ ଯହିଁରୁ ପ୍ରଥମେ ଜଗନ୍ନାଥଙ୍କର ମୂର୍ତ୍ତି ନିର୍ମିତ ହୋଇଥିଲା ବୋଲି କୁହାଯାଇଛି । ଅତଏବ, ୪ ଉଭୟ ବୃକ୍ଷ ବିଷ୍ଣୁଙ୍କର ସ୍ୱରୂପ ଭାବରେ ବନଯାଗବେଦୀର ତୋରଣ ଭାବରେ ଶୋଭାପାଆନ୍ତି । ଏହି ସମୟରେ 'ଅଙ୍କୁରାରୋପଣ' ବିଧି କ୍ରମରେ ଯବ, ଶାଳି, ତିଳ, ଶୋରିଷ, ମୁଗ, ବିରି, କାଙ୍ଗୁଣୀଧାନ (ଶାମକ) ଆଦି ଉପରେ 'ବମ୍' (ଅମୃତ) ବୀଜ ମନ୍ତ୍ରରେ ଯେତେବେଳେ ଜଳଦାନ କରାଯାଏ, ସେତେବେଳେ ସଂସ୍କୃତ ଶ୍ଲୋକାରେ ମନ୍ତ୍ର ମାଧ୍ୟମରେ କୁହାଯାଏ, କ୍ରମେସବୁ ପୁଣ୍ଡରୀକାକ୍ଷ, ବିଶ୍ୱଭାବନ ମହାପୁରୁଷ ହୃଷୀକେଶଙ୍କର ପ୍ରସାଦରେ ବୀଜରୁହ (୧୯୭) । ଏହି ମନ୍ତ୍ରପ୍ରୟୋଗ ମଧ୍ୟ ବୈଷ୍ଣବାତ୍ମକ ।

ଯେତେବେଳେ ଯଜ୍ଞ ଶେଷକରି ବନଯାଗରେ ଯୋଗ ଦେଇଥିବା ସେବକମାନେ ଶୋଇବାକୁ ଯାଆନ୍ତି, ସେତେବେଳେ ସେମାନେ ସ୍ୱପ୍ନାବତୀ ମନ୍ତ୍ର ଜପକରନ୍ତି । ସେ ମନ୍ତ୍ର ମଧ୍ୟ ବୈଷ୍ଣବାତ୍ମକ । ଏ ମନ୍ତ୍ର ୧୦୮ଥର ଜପ କରାଯାଏ । ସେମାନେ ଜଗନ୍ନାଥଙ୍କୁ ବିଷ୍ଣୁ ଭାବରେ ସମ୍ବୋଧନ କରି କହନ୍ତି, ହେ ହରି ! (ହେ ମହାଲକ୍ଷ୍ମୀ !) ଆମକୁ ସ୍ୱପ୍ନରେ କହିଦିଅନ୍ତୁ । ଏ ବୃକ୍ଷର ନିର୍ବାଚନ ଆମର ଠିକ୍ ହୋଇଛି ତ ? ମନ୍ତ୍ରଟି ଏହିପରି (୧୯୮)

"ଓଁ ନମଃ ସକଳଲୋକାୟ ବିଷ୍ଣବେ
ବିଶ୍ୱାୟ ବିଶ୍ୱରୂପାୟ ସ୍ୱପ୍ନାଧିପତୟେ ନମଃ ।
ଆଚକ୍ଷ୍ୱ ଦେବଦେବେଶ ପ୍ରପନ୍ନୋ ୧ ସ୍ମି ତବାନ୍ତିକମ୍ ।
ସ୍ୱପ୍ନେ କାର୍ଯ୍ୟାଣି ସର୍ବାଣି ହୃଦସ୍ଥାନିହି ଯାନି ମେ ।
ଓଁ ଓଁ ହ୍ରୁଁ ଫଟ୍ ବିଷ୍ଣବେ ସ୍ୱାହା X X X
X X X ହରେ ହରିଃ ପ୍ରସାଦାତ୍ ସ୍ୱପ୍ନେ ଶୁଭାଶୁଭବ୍ୟକ୍ତିରସ୍ତୁ ।"
(ସ୍ୱପ୍ନମାଣବକ ମନ୍ତ୍ର)

ଏଠାରେ ବିଷ୍ଣୁଙ୍କୁ ବିଶ୍ୱରୂପ, ବିଶ୍ୱାତ୍ମକ ଭାବରେ ଚିହ୍ନଣ କରାଯାଇଛି । ତା' ଛଡ଼ା, ଦେଖିବାର କଥା ଯେ, ଜଗନ୍ନାଥଙ୍କ ପ୍ରତିଷ୍ଠାରେ ସ୍ୱପ୍ନର ଗୁରୁତ୍ୱ ଏ ପର୍ଯ୍ୟନ୍ତ ମଧ୍ୟ ବୈଜ୍ଞାନିକ ଯୁଗରେ ଅନୁସୃତ । ଇନ୍ଦ୍ରଦ୍ୟୁମ୍ନ ମଧ୍ୟ ଏହି ସ୍ୱପ୍ନକୁ ବିଶ୍ୱାସକରି ଯାଇ ସମୁଦ୍ରରେ

---

୧୯୬ । ଗୀତା—୧୫।୧

୧୯୭ । "ଜାତଂ ତେ ପୁଣ୍ଡରୀକାକ୍ଷ ଜାତଂ ତେ ବିଶ୍ୱଭାବନ ।
ଜାତଂ ତେଽସ୍ତୁ ହୃଷୀକେଶ ମହାପୁରୁଷ ପୂର୍ବଜ"

୧୯୮ । C. J. R. T. O ଉଦ୍ଧୃତ—ପୃ: ୬୦୫ । ପୁଣି ଦ୍ରଷ୍ଟବ୍ୟ—ପୃ: ୬୯୧ ।

ଭାସୁଥିବା ଦାରୁକୁ ଦେଖିଲେ ଓ ତାକୁ ଆଣି ମୂର୍ତ୍ତିନିର୍ମାଣ କରାଇଲେ । ବୋଧହୁଏ ସ୍ୱପ୍ନକୁ ସତ୍ୟବୋଲି ସେ ଯୁଗରେ ଭାବିବା ଯେପରି ବିରଳ ନଥିଲା । ହୁଏ ତ ସ୍ୱପ୍ନଦର୍ଶୀଙ୍କର ଏଥିରେ କିଛି ଭୂମିକା ଥାଇପାରେ । ସ୍ୱପ୍ନରେ ସତରେ ଦାରୁ ଭାସି ଆସିଥାଇପାରୁଛି କି ନା; ସେ କଥା ସେହି ସ୍ୱପ୍ନ ଦର୍ଶୀଙ୍କୁ ହିଁ ଜଣା । ଆମେ ତାହାର ସତ୍ୟାସତ୍ୟ ପ୍ରମାଣ କରିବା ସମ୍ଭବ ନୁହେଁ । ସେ ଯାହାହେଉ, ଏହି ସ୍ୱପ୍ନକୁ ବିଶ୍ୱାସ କରି ଯୁଗେ ଯୁଗେ ପୁରୀରେ ଜଗନ୍ନାଥଙ୍କ ବିଗ୍ରହ ପ୍ରତିଷ୍ଠା ହୋଇଛି, ରାଜ୍ୟନୈତିକ କଳହ ଦୂର ହୋଇ ପାରିଛି, ପୁରୁଷୋତ୍ତମଦେବ ରାଜଗାଦୀ ପାଇଛନ୍ତି; ଏମିତି ଅନେକ କିଛି ଘଟଣା ଘଟି-ଯାଇଛି । ଅତଏବ ଆମକୁ ଏହି ଗବେଷଣାବେଳେ ମଧ୍ୟ ସ୍ୱପ୍ନର ମହତ୍ତ୍ୱକୁ ଗୁରୁତ୍ୱ ଦେବାକୁ ହେବ ।

ଦ୍ୱିତୀୟ ଦିନ ବନଯାଗ କାଳରେ ପ୍ରଥମେ ଆଚାର୍ଯ୍ୟ (ବ୍ରାହ୍ମଣ) ବରୁଣପୂଜା କରନ୍ତି । ଏହା ଏକ ବୈଦିକ ପୂଜା । ତାହାପରେ 'ପୁଣ୍ୟାହ' ବାଚନ ବୈଦିକରୀତିରେ ଚାଲେ । ଚାରିବେଦର ଚାରିଜଣ ବ୍ରାହ୍ମଣ ବରଣ ହୋଇ ବନଯାଗରେ ନିଜ ନିଜର ବେଦମନ୍ତ୍ର ଉଚ୍ଚାରଣ କରନ୍ତି । ବୈଦିକମନ୍ତ୍ରର ପ୍ରୟୋଗରେ ଅଧିକ୍ରମେଣ ବିଷ୍ଣୁ ପୂଜା ଚାଲେ । ଆଚାର୍ଯ୍ୟ ଯାଇ ମନ୍ତ୍ରପୂତ ଜଳ (ନିମ୍ବ) ବୃକ୍ଷଉପରେ ସେଚନ କରନ୍ତି ଏବଂ ବିଷ୍ଣୁଭାବରେ ବୃକ୍ଷକୁ ସ୍ମରଣକରି ଧ୍ୟାନ କରନ୍ତି । ତାହାପରେ ସୁଦର୍ଶନଚକ୍ରକୁ ସୁଦର୍ଶନ ମନ୍ତ୍ରରେ ଧ୍ୟାନକରି ସେହି ବୃକ୍ଷ ଉପରେ କିଛି ଜଳ ସିଞ୍ଚିଦିଅନ୍ତି । ଏହାପରେ ବୈଷ୍ଣବାଗ୍ନି ପ୍ରଜ୍ୱଳିତ କରାଯାଇ ଅନୁଷ୍ଟୁଭ ନୃସିଂହ ମନ୍ତ୍ରରେ ଆହୁତି ଦିଆଯାଏ (୯୯) । ନୃସିଂହଙ୍କୁ ଏହି ମନ୍ତ୍ରରେ ମଧ୍ୟ ମହାବିଷ୍ଣୁ ବିଶ୍ୱରୂପ ବା ବିଶ୍ୱମୁଖ ବୋଲି ବର୍ଣ୍ଣନା କରାଯାଇଛି ଏବଂ ଏହା ବିଷ୍ଣୁଙ୍କ ଉପରେ ବ୍ରହ୍ମ-ଭାବ ଆରୋପର ଏକ ଜ୍ୱଳନ୍ତ ଉଦାହରଣ । ସେହି 'ବ୍ରହ୍ମ' ହିଁ 'ଦାରୁବ୍ରହ୍ମ' ଜଗନ୍ନାଥ ଭାବରେ ପୂଜିତ । ସେହି ଦୃଷ୍ଟିରୁ ମହାବିଷ୍ଣୁ, ନୃସିଂହ କୃଷ୍ଣବିଷ୍ଣୁ, ପୁରୁଷୋତ୍ତମ ଜଗନ୍ନାଥ; ସମସ୍ତେ ଏକ ଓ ଅଭିନ୍ନ । ତେଣୁ ନୃସିଂହ ଅବତାରରେ ବିଷ୍ଣୁ ଲକ୍ଷ୍ମୀଙ୍କ ସହିତ ମିଳିତ ନ ହୋଇଥିଲେହେଁ, ନୃସିଂହଙ୍କୁ ବିଷ୍ଣୁବୋଲି ବିଚାରକୁ ନିଆଯାଇ ପରଯୁଗରେ 'ଲକ୍ଷ୍ମୀନୃସିଂହ'ଙ୍କର ମିଳିତ ମୂର୍ତ୍ତିର ଉପାସନା ଆମେ ଦେଖିବାକୁ ପାଉ । ଏହି ବନଯାଗ କାଳରେ ମଧ୍ୟ ଲକ୍ଷ୍ମୀ-ନୃସିଂହ ଓ ସେ ଦୁହିଙ୍କ ମସ୍ତକରେ ଆବୃତ ଶେଷନାଗଙ୍କୁ ସ୍ତୁତିକରିବାର ବିଧି ରହିଛି (୧୦୦) ତୃତୀୟଦିନ ବନଯାଗରେ ହୋମ ସରିବା ପରେ ଆଚାର୍ଯ୍ୟ ବୃକ୍ଷ ପାଖକୁ ଯାଇ କହନ୍ତି, ହେ ବିଷ୍ଣୁ ! ତୁମ୍ଭର ମୂର୍ତ୍ତି ନିର୍ମାଣପାଇଁ ମୁଁ ଏ ଦାରୁ ନେଉଛି । ଏହା ପୁଣି

---

୯୯ । ଆନୁଷ୍ଟୁଭ ନୃସିଂହମନ୍ତ୍ର:—"ଉଗ୍ରମ ବୀରଂ ମହାବିଷ୍ଣୁଂ ଜ୍ୱଳନ୍ତଂ ସର୍ବତୋମୁଖମ୍
ନୃସିଂହଂ ଭୀଷଣଂ ଭଦ୍ରଂ ମୃତ୍ୟୁର୍ମୃତ୍ୟୁଂ ନମାମ୍ୟହମ୍
ନୃସିଂହପୂର୍ବତାପନୀୟ-ଉପନିଷଦ୍-ପୂର୍ବଭାଗ-୨/୩,୫ .

୧୦୦ । C. J. R. T. O.—pp.245. (Tripathi

ଶାବରଭାଷାରେ ନ କୁହାଯାଇ ସଂସ୍କୃତ ଭାଷାରେ କୁହାଯାଏ;—"ବକ୍ଷ୍ୟୋ ହ୍ୱଦ୍ ବସ୍ତ୍ୱାର୍ଥଂ ଦାରୁଂ ଗୃହାମି ।" ଏଠି ମଧ୍ୟ ସେହି ବିଷ୍ଣୁଙ୍କୁ କୁହାଯାଇଛି, ଅନ୍ୟ କେହି ଦେବତାଙ୍କୁ ନୁହେଁ ।

ଯଜ୍ଞଶାଳାର ଉତ୍ତର-ପଶ୍ଚିମ ପଟକୁ ଯେଉଁ ସୁନା, ରୂପା ଓ ଲୁହାର ଟାଙ୍ଗିଆ ବୃକ୍ଷ କଟାହେବା ଲାଗିଥାଏ, ତାକୁ ଆଗ୍ନେୟ ଯାଗ (୨୦୧) ମହାସୁଦର୍ଶନ ଅସ୍ତ୍ର ବୋଲି ବିଚାରି ପୂଜାକରନ୍ତି । ତାଙ୍କ ଦୃଷ୍ଟିରେ ସଡେଅବା ଇଏ ବିଷ୍ଣୁଙ୍କ ଅସ୍ତ୍ର ସୁଦର୍ଶନ ✻ । କୁରାଢ଼ୀକୁ ସୁଦର୍ଶନଚକ୍ର ବୋଲି ଏପରି ଭାବବାର ଶୂଳରେ ସେହି ବୈଷ୍ଣବଭାବ ନିହିତ ।

ତାହାପରେ ବନଯାଗ କୁଣ୍ଡରୁ ପବିତ୍ର ଭସ୍ମନେଇ ବୃକ୍ଷରେ ବୋଳି ଦିଆଯାଏ । ଯେପରି ପୁରାଣରେ ବର୍ଣ୍ଣନା ଅନୁଯାରେ ଜଗନ୍ନାଥ ଇନ୍ଦ୍ରଦ୍ୟୁମ୍ନଙ୍କ ଯଜ୍ଞରୁ ଜାତହେଲେ ସେପରି ଏହି ପବିତ୍ର ଭସ୍ମ ବୋଳିବା ଦ୍ୱାରା ଅନୁମିତ ହେଲା ଯେ ଉକ୍ତ ମହାବୃକ୍ଷଟି ହେଉଛି ସେହି ଯଜ୍ଞପୁରୁଷ ପୁରୁଷୋତ୍ତମ-ଜଗନ୍ନାଥ । ଏହାର ପରବର୍ତ୍ତୀ ହେଉଛି, ଜଣେ ସୁଦର୍ଶନ ମନ୍ତ୍ର ଉଚ୍ଚାରଣ କରି ଯେ ବୃକ୍ଷରେ ଏକ ପୁରୁଷ (ମନୁଷ୍ୟ)ର ଚିତ୍ର ଆଙ୍କିବ, ଯେପରିକି ତା'ର ଗୋଡ଼ଥିବା ଉପରକୁ ଓ ମୁଣ୍ଡଥିବା ତଳକୁ (୨୦୨) । ଏପରି ଏକ ଓଲଟରୂପ ପରିକଳ୍ପନା ଆମେ ଗୀତାରେ ସେହି ଓଲଟ ଅଶ୍ୱତ୍ଥ ବୃକ୍ଷରେ ହିଁ ଦେଖୁ (୨୦୩) ସେହି ଦୃଷ୍ଟିରୁ ଏହି ଯଜ୍ଞପୁରୁଷରୂପୀ ଦାରୁ (ନିମ୍ବବୃକ୍ଷ) ପରଂବ୍ରହ୍ମ ତଥା ଊର୍ଦ୍ଧ୍ୱମୂଳଂ

---

୨୦୧ । ଅସ୍ତ୍ରମନ୍ତ୍ର—"ଓ ନମୋ ଭଗବତେ ମହାସୁଦର୍ଶନାୟ ମହାଚକ୍ରାୟ ମହାଜ୍ୱାଳାୟ ଦୀପ୍ତରୂପାୟ ସର୍ବତୋ ରକ୍ଷ ରକ୍ଷ ସ୍ୱାହା ।"

✻ ସୁଦର୍ଶନ—ସୁଦର୍ଶନଚକ୍ର ହେଉଛି ବିଷ୍ଣୁଙ୍କର ମହାସ୍ତ୍ର । ବନଯାଗରେ ଯଜ୍ଞେଶ ହେଉଛନ୍ତି ବିଷ୍ଣୁ । "ଯଜ୍ଞେଶ ନାରାୟଣ କୃଷ୍ଣ ବିଷ୍ଣୁ" । ବୈଦିକ ଯୁଗରୁ ବିଷ୍ଣୁଙ୍କୁ ଯଜ୍ଞେଶ ବା ଅଧ୍ୱରେଶ ବୋଲି କୁହାଯାଇଛି ।

୨୦୨ । ଡଃ ଗସ୍ତାଚରଣ ତ୍ରିପାଠୀ ଦେଉଳକରଣଙ୍କ ଠାରୁ ଏକ ମାଦଳାପାଞ୍ଜୀ ପାଇ ତହିଁରୁ ଉପରୋକ୍ତ ପ୍ରମାଣ ପାଇଛନ୍ତି । ତା'ଛଡ଼ା ବନଯାଗ ବିଧି ସୂଚନା ନାମକ ପୋଥିରେ ଲେଖାଅଛି; "ଅସ୍ତ୍ରମନ୍ତ୍ରରେ କୁଶଦ୍ୱାରା ଚନ୍ଦନରେ ଗୋଟିଏ ମୂର୍ତ୍ତି ଅଙ୍କନ କରିବେ । ସେହି ମୂର୍ତ୍ତି ଗୋଟିଏ ମନୁଷ୍ୟ ଆକୃତ ହୋଇ ତାହାର ମୁଣ୍ଡ ତଳକୁ ହେବ । ଗୋଡ଼ ଉପରକୁ ହେବ ।"
Vide—C. J. R. T. O.—pp. 247 (Foot note.)

୨୦୩ । ଗୀତା—୧୫।୧

ଅଧଃଶାଙ୍ଗ' ଅଶ୍ୱତ୍ଥ ସହିତ ତୁଳନୀୟ । ଓଲଟ ପୁରୁଷର ମୂର୍ତ୍ତି ଅଙ୍କିତ ହେବାପରେ ଆଚାର୍ଯ୍ୟ, ବ୍ରାହ୍ମଣ ଆଦି ଅର୍ଚ୍ଚକମାନେ ବସ୍ତ୍ରମନ୍ତ୍ର ଓ ନାରାୟଣମନ୍ତ୍ର ଉଚ୍ଚାରଣ କରି ବୃକ୍ଷଟିକୁ ସ୍ପର୍ଶ କରିବେ ଏବଂ ପରେ ଏକ ଶୁକ୍ଳବସ୍ତ୍ରରେ ତାକୁ ଘୋଡ଼ାଇଦେବେ । ଏତିକବେଳେ ବାସୁଦେବ ମନ୍ତ୍ର "ଓଁ ନମୋ ଭଗବତେ ବାସୁଦେବାୟ' (ଦ୍ୱାଦଶାକ୍ଷରମନ୍ତ୍ର) ଉଚ୍ଚାରଣ କରାଯିବାର ବିଧି ରହିଛି । ପଞ୍ଚମହାପାତ୍ର ଏହାପରେ ଯେତେବେଳେ ବୃକ୍ଷର ମୂଳପଟ ପ୍ରଦକ୍ଷିଣ କରି ପ୍ରଥମ ଚୋଟ ସୁନାକୁରାଢ଼ୀ ସାହାଯ୍ୟରେ ବୃକ୍ଷରେ ଦିଅନ୍ତି, ସେତେବେଳେ ବେଦର ବିଷ୍ଣୁସୂକ୍ତ (୧୦୪) ଗାନ କରାଯାଏ । ତାହାପରେ ସୁଦର୍ଶନମନ୍ତ୍ର ବୋଲି ରୁପା ଟାଙ୍ଗିଆରେ ଦ୍ୱିତୀୟ ଚୋଟ ଲଗାନ୍ତି ଏବଂ ଶେଷରେ ଆଚାର୍ଯ୍ୟଙ୍କ ନିର୍ଦ୍ଦେଶରେ ସୁଦର୍ଶନ ମନ୍ତ୍ରରେ ଲୁହାକୁରାଢ଼ୀ ଗ୍ରହଣକରି ମହାରଣାମାନେ ହରି, ହରିବୋଲ, ଉଚ୍ଚାରଣ କରୁ କରୁ ବୃକ୍ଷଟିକୁ କାଟିଦିଅନ୍ତି । ଅନ୍ୟ ଏକ ସଂସ୍କୃତଗ୍ରନ୍ଥ 'ବନଯାଗବିଧି'ରୁ ଜଣାଯାଏ, ଯେ ସୁନା, ରୁପାର କୁରାଢ଼ୀର ଆବଶ୍ୟକତା କିଛି ନଥାଏ । ଆଚାର୍ଯ୍ୟ ନିଜେ ବେଦମନ୍ତ୍ର (ବସ୍ତ୍ରମନ୍ତ୍ର) ଉଚ୍ଚାରଣ କରି ନିଜେ ଲୁହାଟାଙ୍ଗିଆରେ କେତୋଟି ଚୋଟ ବୃକ୍ଷରେ ଦିଅନ୍ତି ଏବଂ ତାହାପରେ ମହାରଣା (ବିଶ୍ୱକର୍ମା) ମାନେ ବୃକ୍ଷଟିକୁ କାଟିଦିଅନ୍ତି (୧୦୫) । ଏଥିରୁ ଜଗନ୍ନାଥଙ୍କ ଦାରୁର ବିଷ୍ଣୁତ୍ୱ ଯେପରି ସିଦ୍ଧ ହେଉଛି, ବୈଦିକ ପୂଜାପଦ୍ଧତି ମଧ୍ୟ ସେପରି ସାବ୍ୟସ୍ତ ହେଉଛି । ବୃକ୍ଷ କଟାଯିବା ପରେ ଶଗଡ଼ ଉପରେ ଲଦାହେବା ବେଳେ ତଥା ଟାଣି ଟାଣି ମନ୍ଦିରକୁ ଅଣାଯିବାବେଳେ ଋଗ୍ ବେଦରୁ ମନ୍ତ୍ରମାନ (୧୦୬) ଉଚ୍ଚାରିତ ହୋଇଥାଏ ଏ ସବୁ ଜଗନ୍ନାଥଙ୍କ ହିନ୍ଦୁମାନଙ୍କର । ଦେବତା ବା ଆର୍ଯ୍ୟଦେବତା ବୋଲି ସୂଚନା ଦିଏ ।

ଶ୍ରୀମନ୍ଦିରରେ ପହଞ୍ଚିବାପରେ ଦାରୁମାନଙ୍କ ପାଇଁ ପୁଣିଥରେ 'ଅନ୍ତର୍ବନଯାଗ' ଅନୁଷ୍ଠିତ ହୁଏ । ଅର୍ଥାତ୍, ଯଜ୍ଞ, ହୋମ ଜଗନ୍ନାଥଙ୍କ ମୂର୍ତ୍ତି ପାଇଁ ବୈଦିକ ବିଧିରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଅନୁଷ୍ଠିତ ହେଉଥିବାର ଆମେ ଦେଖୁ । ତାହାପରେ ନିର୍ମାଣ ମଣ୍ଡପରେ ଲୁକ୍କାୟିତ ଭାବରେ ମୂର୍ତ୍ତିମାନଙ୍କର ନିର୍ମାଣ କାର୍ଯ୍ୟ ଚାଲେ । ମୂର୍ତ୍ତିଗୁଡ଼ିକ ଯେପରି ହେବା ଆବଶ୍ୟକ, ସେଥିରୁ କୌଣସି ପ୍ରକାର ପରିବର୍ତ୍ତନ ନ କରି ପୂର୍ବର ମୂର୍ତ୍ତି ଅନୁକ୍ରମରେ ଅବିକଳ ମୂର୍ତ୍ତି ନିର୍ମାଣ କରାଯାଏ । ଜଗନ୍ନାଥ, ବଳଭଦ୍ରଙ୍କର ଦୁଇ ଦୁଇଟି ହାତଥିବା ବେଳେ ସୁଭଦ୍ରାଙ୍କର ହାତ ନିର୍ମାଣ କରାଯାଏ ନାହିଁ । ବିଚାର କରାଯାଏ ଯେ,

---

୧୦୪ । ଋଗ୍‌ବେଦ—୧/୨୨—

୧୦୫ । C. J. R. T. O.—PP.249—(Foot note.80.) (Tripathi)

୧୦୬ । ଋଗ୍—୧/୪୦, ୬/୨୫. ୭—ଇତ୍ୟାଦି । ଏହା ସହିତ ଋଗ୍ ବେଦର ଶକୁନ-ସୂକ୍ତ ମଧ୍ୟ ଗାନ କରାଯାଏ । ଋଗ୍—୨/୪୨.୪୩.

ତାଙ୍କର ହାତ ଲୁକ୍କାୟିତ ଅବସ୍ଥାରେ ଅଛ (୨୦୭) । ଏହାପରେ, ମୂର୍ତ୍ତିରେ କିଛି ବଦଳା-ବଦଳି କରାଯାଏ ନାହିଁ । ବିଧି ଅନୁସାରେ ମୂର୍ତ୍ତି ନିର୍ମାଣ କରାଯାଇ ତନ୍ମଧ୍ୟରେ ବ୍ରହ୍ମପଦାର୍ଥ ପୁରାତନ ମୂର୍ତ୍ତିରୁ ଆଣି କୃଷ୍ଣ ଚତୁର୍ଦ୍ଦଶୀ ଦିନ ପାହାନ୍ତା ରାତରେ ଭର୍ତ୍ତି କରାଯାଏ । ଏ କାର୍ଯ୍ୟ ମଧ୍ୟ ଲୁଚାଇ କରି କରାଯାଏ ।

ଦାରୁ ଆସିବାଠାରୁ, ତା'ର ଅଭିଷେକ ଓ ନ୍ୟାସ ଆଦି ବିଧିବିଧାନ ସମ୍ପନ୍ନ ହେବାଠାରୁ, ମୂର୍ତ୍ତି ନିର୍ମାଣ ପର୍ଯ୍ୟନ୍ତ ସବୁ ପ୍ରକାର କାର୍ଯ୍ୟକ୍ରମକୁ ସାମାନ୍ୟ ଲକ୍ଷ୍ୟ କଲେ ଜଣାଯାଏ ଯେ ଏଥିରେ ସବୁକିଛି ବୈଦିକ ଓ ବୈଷ୍ଣବ । ବୈଦିକ ମନ୍ତ୍ରମାନଙ୍କର ପ୍ରୟୋଗ, ନୃସିଂହମନ୍ତ୍ର, ସୁଦର୍ଶନମନ୍ତ୍ରର ଉପଯୋଗ ଆମ ଆଗରେ ଜଗନ୍ନାଥଙ୍କୁ ଉପରୋକ୍ତ ହିନ୍ଦୁ ଦେବତା ଭାବରେ ଉପସ୍ଥାପନ କରେ । ଦାରୁମାନଙ୍କର ଅଭିଷେକ କାଳରେ ଜଗନ୍ନାଥଙ୍କ ଦାରୁ ପାଇଁ ପୁରୁଷ ସୂକ୍ତ (ଋକ୍—୧୦/୯୦), ରୁଦ୍ରାଧ୍ୟାୟ ନୀଳସୂକ୍ତ ବଳଭଦ୍ରଙ୍କ ଦାରୁ ନିମିତ୍ତ ଓ ଶ୍ରୀସୂକ୍ତ ବା ଲକ୍ଷ୍ମୀସୂକ୍ତ ସୁଭଦ୍ରାଙ୍କ ଦାରୁ ଲାଗି ପ୍ରୟୋଗ କରାଯାଏ । ଫଳରେ ଜଗନ୍ନାଥ ବେଦର ବିରାଟ ପୁରୁଷ ବୋଲି କଳ୍ପିତ ହେବାବେଳେ ବଳଭଦ୍ର ରୁଦ୍ର ବା ଶିବ ଭାବରେ ଓ ସୁଭଦ୍ରା ଲକ୍ଷ୍ମୀ ଭାବରେ ଆବିର୍ଭୂତ ହୁଅନ୍ତି । ସେହି ହେତୁ କାଳକ୍ରମେ ଜଗନ୍ନାଥଙ୍କ କ୍ଷେତ୍ର ଶୈବ, ବୈଷ୍ଣବ ଓ ଶାକ୍ତଙ୍କର ତୀର୍ଥଭୂମି ହୋଇ-ଉଠିଛି । ଜଗନ୍ନାଥ ସ୍ୱୟଂ ବିଷ୍ଣୁ ଭାବରେ ଅବତୀର୍ଣ୍ଣ ହେବା ସଙ୍ଗେ ସଙ୍ଗେ ସେ ପୁରୁଷସୂକ୍ତର ଯଜ୍ଞପୁରୁଷ, ଏଥିରେ କିଛି ସନ୍ଦେହ ନାହିଁ ।

ସ୍କନ୍ଦପୁରାଣ ପୁରୁଷୋତ୍ତମ ମାହାତ୍ମ୍ୟରୁ ଜଣାଯାଏ, ସ୍ୱୟଂ ବ୍ରହ୍ମା ଆସି ଜଗନ୍ନାଥ ମୂର୍ତ୍ତିଙ୍କର ପ୍ରାଣପ୍ରତିଷ୍ଠା ଶ୍ରୀସୂକ୍ତ ଓ ପୁରୁଷସୂକ୍ତରେ କରିଥିଲେ (୨୦୮) । କିନ୍ତୁ ବର୍ତ୍ତମାନ ସେହି ପଦ୍ଧତି ବଦଳିଯାଇଛି । ମନ୍ଦିର ଭିତରେ ପୂଜା ସମୟରେ ଓ ନବକଳେବର କାଳରେ ପ୍ରାଣପ୍ରତିଷ୍ଠା ବେଳେ ଯେଉଁ ମନ୍ତ୍ରର ବ୍ୟବହାର ହୁଏ, ତାହା ପରବର୍ତ୍ତୀ ଯୁଗରେ ରଚିତ ବାସୁଦେବ ପ୍ରଣୀତ ଗୋପାଳାର୍ଚ୍ଚନ ପଦ୍ଧତି ଅନୁସାରେ କରାଯାଉଛି । ନୀଳାଦ୍ରିନାଥସ୍ୟ ପୂଜାବିଧିରେ ମଧ୍ୟ ଠାକୁରଙ୍କ ପ୍ରାଣପ୍ରତିଷ୍ଠା ପାଇଁ ଅନୁରୂପ ମନ୍ତ୍ର ରହିଅଛି ।

---

୨୦୭ । C. J. R. T. O.—PP. 254

୨୦୮ । ସ୍କନ୍ଦପୁରାଣ—ପୁ. ମା. ୨୭/୪୪-୪୮—ସୂକ୍ତାଭ୍ୟାଂ ଶ୍ରୀପୁରୁଷୟୋଃ...
ରାଜା ଇନ୍ଦ୍ରଦ୍ୟୁମ୍ନ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ନାରଦଙ୍କ ଉପଦେଶରେ ଯେଉଁ ଯେଉଁ ସୂକ୍ତରେ ପୂଜାକଲେ ତାହା ଏହି—

ଦ୍ୱାଦଶାକ୍ଷର ମନ୍ତ୍ରେଣ ବଳଭଦ୍ରଂ ଅପୂଜୟତ୍
ଦେବ୍ୟା ପ୍ରସିଦ୍ଧଂ ଯତ୍ସୂକ୍ତଂ ପାବନଂ ପୌରୁଷଂ ମହତ୍
ତେନ ନାରାୟଣଂ ଭୂପଃ ପୂଜୟାମାସ ଶକ୍ତିତଃ ।

ମନ୍ତ୍ରଟି ହେଉଛି (୧୦୯)— 'ଓଁ ଆଂ, ହ୍ରୀଂ, କ୍ରୌଂ, ଯଂ, ରଂ, ଲଂ, ବଂ, ଶଂ, ସଂ, ଷଂ, ହଂ; ହଂସଃ, ସୋଽହଂ, ମମପ୍ରାଣା ଇହ ପ୍ରାଣାଃ ଏବଂ (ଓଁ, ଆଂ, ହ୍ରୀଂ, କ୍ରୌଂ, ଯଂ ଇତ୍ୟାଦି) ମମ ଜୀବ ଇହସ୍ଥିତଃ । ମମ ସର୍ବେନ୍ଦ୍ରିୟାଣି । ମମ ବାଙ୍‌ମାନସଚକ୍ଷୁ ଶ୍ରୋତ୍ର-ଘ୍ରାଣପ୍ରାଣା ଇହାଗତ୍ୟ ସୁଖଂ ଚିରଂ ତିଷ୍ଠନ୍ତୁ ସ୍ୱାହା ।''

ଏହି ମନ୍ତ୍ରର ପ୍ରୟୋଗ ପରବର୍ତ୍ତୀ ଯୁଗରେ ହେଲାଭଳି ଜଣାଯାଉଛି । କାରଣ ଏ ଯେଉଁ ବୀଜମନ୍ତ୍ରଗୁଡ଼ିକର ପ୍ରୟୋଗ ଏଥିରେ କରାଯାଇଛି, ଏଗୁଡ଼ିକ ସବୁ ତନ୍ତ୍ରର ପ୍ରଭାବ । କିନ୍ତୁ ଆରମ୍ଭରୁ ପ୍ରଣବ ବା ଓଁକାରର ପ୍ରୟୋଗ ରହିଅଛି । ଅତଏବ ତନ୍ତ୍ରର ପ୍ରଭାବ ପଡ଼ିଥିଲେ ମଧ୍ୟ ବୈଦିକ ଶବ୍ଦ ବ୍ରହ୍ମ ପ୍ରଣବ ବା ଅକାର, ଉକାର ଓ ମକାର (ଓଁ) ପ୍ରତି ଅବଜ୍ଞା ପ୍ରଦର୍ଶନ କରିବାକୁ ସାହସ କରାଯାଇ ପାରିନାହିଁ । ତା'ଛଡ଼ା ବେଦାନ୍ତର ସୋଽହଂ ବାଦକୁ ମଧ୍ୟ ଉପେକ୍ଷା ନ କରି ଏଠାରେ ପ୍ରାଧାନ୍ୟ ଦିଆଯାଇଛି । 'ସୋଽହଂ' ଓ 'ଅହଂ ସଃ' ହିନ୍ଦୁ ଦର୍ଶନରେ ଏକ ଅଭେଦ କଳ୍ପନା । ଏଥିରେ ବ୍ରହ୍ମବାଦ ପ୍ରତିଷ୍ଠିତ ହୋଇଛି । ଆତ୍ମାକୁ ହିନ୍ଦୁ ଦର୍ଶନର ଭାଷାରେ 'ହଂସ' କୁହାଯାଏ । ସେହି ଶବ୍ଦ ଏଠି ପ୍ରକଟିତ । ତା'ଛଡ଼ା ''ମୋର ଆତ୍ମା, ଇନ୍ଦ୍ରିୟ, ବାକ୍, ମାନସ, ଚକ୍ଷୁ, କର୍ଣ୍ଣ, ଘ୍ରାଣ ସବୁ ଏହି ଘଟକୁ ଆସି (ବ୍ରହ୍ମ [ଙ୍କର ଘଟକୁ] ପ୍ରାପ୍ତି ହୋଇ) ଶାନ୍ତିରେ ଚିରଦିନ ପାଇଁ ଅବସ୍ଥାନ କରୁ ।'' ଏହା ହେଉଛି ବେଦାନ୍ତର ତଥା ଗୀତାର ଚିନ୍ତାଧାରା । ଜୀବାତ୍ମାର ବ୍ରହ୍ମସାଯୁଜ୍ୟ ହେଲେ ପରଂବ୍ରହ୍ମ ବା ପରମାତ୍ମାଙ୍କର ସାନ୍ନିଧ୍ୟ ପାଇ ଜୀବ ଚିର ମୁକ୍ତି ବା ମୋକ୍ଷ ଲାଭ କରେ । ସେହି ଭାବ ଏହି ମନ୍ତ୍ରରେ ଉଦ୍ଦିଷ୍ଟ । ଅତଏବ ମନ୍ତ୍ରଟି ବେଦାନ୍ତ ଦର୍ଶନର ଏକ ପ୍ରତିଫଳନ । ଏହା ପୁଣି ଜଗନ୍ନାଥଙ୍କର ପ୍ରାଣପ୍ରତିଷ୍ଠାରେ ବ୍ୟବହୃତ । ସେ ଦୃଷ୍ଟିରୁ ଜଗନ୍ନାଥ ଦାରୁବ୍ରହ୍ମ ରୂପେ ବାସ୍ତବରେ ଆବିର୍ଭୂତ, ଏଥିରେ ସନ୍ଦେହ ବା କାହିଁ ?

---

ଦେବ୍ୟାଃସୂକ୍ତେନ ଭଦ୍ରାଂ ତାଂ ସୌଦର୍ଶନ୍ୟା ସୁଦର୍ଶନମ୍ ।।

ସ୍କନ୍ଦ : ପୁ : ମା—୧୦/୩୧-ଶ୍ଳୋ.

ଏଣୁ କୁହାଯାଇପାରେ, ଜଗନ୍ନାଥଙ୍କୁ ପୁରୁଷସୂକ୍ତ, ବଳଭଦ୍ରଙ୍କୁ ଦ୍ୱାଦଶାକ୍ଷର ମନ୍ତ୍ର, ସୁଭଦ୍ରାଙ୍କୁ ଦେବୀସୂକ୍ତ ଓ ସୁଦର୍ଶନଙ୍କୁ ସୁଦର୍ଶନୀ ମନ୍ତ୍ରରେ ପୂଜା କରିବା ପ୍ରାଚୀନ ବିଧି ଥିଲା । ଏମାନଙ୍କ ମଧ୍ୟରୁ ଜଗନ୍ନାଥ ଓ ସୁଭଦ୍ରା ଅପେକ୍ଷାକୃତ ପ୍ରାଚୀନ ଥିବାରୁ ବୈଦିକ ସୂକ୍ତରେ ଏପରି ପୂଜିତ ହେଉଥିଲେ ଓ ବଳଭଦ୍ର ଏବଂ ସୁଦର୍ଶନ ପରବର୍ତ୍ତୀରେ ବୈଷ୍ଣବମନ୍ତ୍ରରେ (ବାସୁଦେବ ଓ ସହସ୍ରାର ଭାବରେ) ଉପାସିତ ହେଲେ ।

୧୦୯ । ନୀଳାଦ୍ରିନାଥସ୍ୟ ପୂଜାବିଧି ଓ ଗୋପାଳାର୍ଚ୍ଚନ ବିଧି—ପୋଥି—ଉଦ୍ଧୃତ—
C. J. R. T. O.—ପୃ ୧୯୨

ଏହାଛଡ଼ା, ମୂଳରୁ ଜଗନ୍ନାଥ ପୁରୁଷସୂକ୍ତରେ ପୂଜିତ ହେବାର ବିଧି ଥିଲା ବୋଲି ପୁରାଣ-ମାନଙ୍କରୁ ଜଣାଯାଏ (୨୦୯କ)।

ସ୍କନ୍ଦପୁରାଣ ଉତ୍କଳଖଣ୍ଡ ଲେଖା ହେଲାବେଳେ (ଅଷ୍ଟମ ଶତକ) ନବକଳେବର ହେଉନଥିଲା । ପରେ ଯେତେବେଳେ ଏ ଉତ୍ସବ ଆରମ୍ଭ ହେଲା, ସେତେବେଳକୁ ଉତ୍କଳଖଣ୍ଡର ରଚନା ହେତୁ ଇନ୍ଦ୍ରଦ୍ୟୁମ୍ନ, ବିଦ୍ୟାପତି, ବିଶ୍ୱାବସୁ କାହାଣୀ ପ୍ରସିଦ୍ଧ ହୋଇ-ସାରିଥିଲା । ତେଣୁ ନବକଳେବର ସମୟରେ ଦୟିତାଙ୍କୁ ବିଶ୍ୱାବସୁ ଓ ପତିମହାପାତ୍ରଙ୍କୁ ବିଦ୍ୟାପତି ବୋଲି କୁହାଯାଇଛି । ଦୟିତାମାନେ ଶୁଦ୍ଧିକ୍ରିୟା କରିବାର କଥା କେଉଁ ପ୍ରାଚୀନ ଗ୍ରନ୍ଥ ବା ପୁରାଣରେ ଉଲ୍ଲେଖ ନାହିଁ । ଦୟିତା ଶବ୍ଦ ବି ପ୍ରାଚୀନ ସଂସ୍କୃତ ଗ୍ରନ୍ଥ-ମାନଙ୍କରେ ନାହିଁ । ତେଣୁ କୁହାଯାଇପାରେ ଯେ, ଏହା ପରବର୍ତ୍ତୀ ଯୁଗର ଏକ ନାଟକୀୟ ଅଭିନୟ । ଏ ସବୁର ମୂଳରେ ରହିଛି ଇନ୍ଦ୍ରଦ୍ୟୁମ୍ନ ଗଳ୍ପ । ଏହା ପ୍ରସିଦ୍ଧିଲାଭ କରିଛି ଅଷ୍ଟମ ଶତାବ୍ଦୀରେ । ଏପରି ନାଟକ ଅଭିନୀତ ହେଲେ ମଧ୍ୟ ମୂଳତଃ ଜଗନ୍ନାଥଙ୍କୁ ଯେପରି ବୈଦିକ ରୀତିରେ ବୈଦିକ ମନ୍ତ୍ରରେ ପୂଜା କରାଯାଉଥିଲା ତାହା ସବୁବେଳେ ସବୁ ପର୍ଯ୍ୟାୟରେ ଅତୁଟ ରହିଛି । କାଳକ୍ରମେ ଜଗନ୍ନାଥ ବ୍ରାହ୍ମଣ୍ୟ ଦେବତାରୁ ଗଣଦେବତା ହୋଇଛନ୍ତି ।

କାଳଚକ୍ରର ଗତି ସଙ୍ଗେ ସଙ୍ଗେ ସମାଜରେ ନାନା ନୂତନ ଧର୍ମଧାରା ସୃଷ୍ଟି ହେଉଛି । ସେଗୁଡ଼ିକର ପ୍ରଚଳନ ମଧ୍ୟ ଜଗନ୍ନାଥଙ୍କ ଉପରେ ବେଳେବେଳେ ପଡ଼ି-ଯାଉଛି । ଅଷ୍ଟମ ଶତକରେ ସ୍କନ୍ଦପୁରାଣ ଉତ୍କଳଖଣ୍ଡର ରଚନାବେଳକୁ ଜଗନ୍ନାଥଙ୍କୁ ତ ଶ୍ରୀକୃଷ୍ଣ ବୋଲି କୁହାଯାଉଥିଲା; ମାତ୍ର ତାଙ୍କର ପ୍ରେମିକା ରାଧିକାଙ୍କ ନାମ ମାତ୍ର ଏ ପୁରାଣରେ ନ ଥିଲା । କିନ୍ତୁ ଷୋଡ଼ଶ ଶତକରେ ଚୈତନ୍ୟଙ୍କର ଓଡ଼ିଶା ଆଗମନ ପରେ ରାଧାକୃଷ୍ଣ ଓଡ଼ିଶାରେ ଖୁବ ଲୋକପ୍ରିୟ ହୋଇଉଠିଲେ । ଜଗନ୍ନାଥଙ୍କୁ ଖାଲି କୃଷ୍ଣବିଷ୍ଣୁ

---

୨୦୯ (କ) ସ୍କନ୍ଦ: ପୁ: ମା—୨୯।୩-୪—

ସୂକ୍ତେନ ପୌରୁଷେଣୈବଂ ନାରାୟଣମନାମୟମ୍ ।
ଦ୍ୱିଷଡ଼କ୍ଷରମନ୍ତ୍ରେଣ ବଳଭଦ୍ରମପୂଜୟତ୍ ।
ଦେବୀସୂକ୍ତେନ ଚକ୍ରଂ ଚ ଦ୍ୱାଦଶାକ୍ଷରକେଣ ଚ ।। ଅର୍ଥାତ୍—

ରାଜା ଇନ୍ଦ୍ରଦ୍ୟୁମ୍ନ ପୁରୁଷସୂକ୍ତରେ ନାରାୟଣ (ଜଗନ୍ନାଥ)ଙ୍କୁ, ଦ୍ୱାଦଶାକ୍ଷର ମନ୍ତ୍ରରେ ବଳଭଦ୍ର ଓ ସୁଦର୍ଶନଙ୍କୁ ଏବଂ ଦେବୀସୂକ୍ତରେ ସୁଭଦ୍ରାଙ୍କୁ ପୂଜା କରିଥିଲେ । ଅନ୍ୟ ଭାଷାରେ କହିଲେ, ସ୍କନ୍ଦ ପୁରାଣ କାଳରେ (ଅଷ୍ଟମ ଶତାବ୍ଦୀରେ) ଏହି ଭାବରେ ମନ୍ଦିରରେ ପୂଜନ ବିଧି ଥିଲା ।

ଭାବରେ ପୂଜା କରନ୍ତି ସୁନ୍ଦର ଦର୍ଶିଲେ । ସେ ନଜେ ହିଁ ରାଧାକୃଷ୍ଣଙ୍କର ଏକ ଯୁଗଳ-ମୂର୍ତ୍ତି, ଏହି ଭାବରେ ସ୍ବୀକୃତ ହେଲେ (୨୧୦) । କୁହାଯାଏ, ସତେ ଅବା ରାଧା ଓ କୃଷ୍ଣ ପରସ୍ପର ଆଡ଼କୁ ମୁହଁ କରି ପରସ୍ପରଙ୍କୁ ଆଲିଙ୍ଗନ କରୁଛନ୍ତି (୨୧୧) । ତାହାପରେ ନବକଳେବର ବେଳେ ନ୍ୟାସ ଦାରୁ ଉପରେ ରାଧାଙ୍କୁ କଳ୍ପନା କରାଯାଇ ଜଗନ୍ନାଥଙ୍କ-ଠାରେ ଆରୋପ କରାଯିବାର ବିଧି (୨୧୨) ରହିଲା । କିନ୍ତୁ ଡଃ ସତ୍ୟନାରାୟଣ ତ୍ରିପାଠୀ ଯାହା କଳ୍ପନା କରିଛନ୍ତି ଯେ ଏହି ରାଧାତତ୍ତ୍ୱ ଜଗନ୍ନାଥଙ୍କଠାରେ ନିହିତ ହେବା ପୁରାତନ ଯୁଗରୁ ଚାଲିଆସୁଛି ତାହା ଆଦୌ ଯୁକ୍ତିସଙ୍ଗତ (୨୧୩) ନୁହେଁ ।

ଜଗନ୍ନାଥଙ୍କର ସ୍ନାନଯାତ୍ରା ପ୍ରାଚୀନ ଯୁଗରୁ ଚାଲିଆସୁଛି । ସେତେବେଳେ ଜଗନ୍ନାଥଙ୍କ ଉପରେ ପାଣି ଢାଳିବା ହେତୁ ଦାରୁମୂର୍ତ୍ତିରୁ ରଙ୍ଗ ଲିଭିଯାଏ ଓ ଦାରୁ ମଧ୍ୟ ଖରାପ ହୋଇଯିବାର ସମ୍ଭାବନା ଥାଏ । ତେଣୁ ତାଙ୍କୁ ଦର୍ଶକମାନଙ୍କଠାରୁ ଅଲଗା ରଖାଯାଏ ଓ ଜଗନ୍ନାଥଙ୍କୁ ଜ୍ୱର ହେଲା ବୋଲି କୁହାଯାଏ । ତାହାପରେ ପୁଣି ତାଙ୍କ ଦେହରେ ଉପଯୁକ୍ତ ଭାବରେ ରଙ୍ଗ ପ୍ରଲେପ ଦେଇ ନେତ୍ରୋତ୍ସବ ପରେ ଦର୍ଶନ କରିବାପାଇଁ ସୁବିଧା ଦିଆଯାଏ । ଏପରି ସମ୍ପାଦବିଧି ପ୍ରବର୍ତ୍ତିତ ହେଲେ । ସ୍କନ୍ଦପୁରାଣ ସମୟରେ ଏହି

---

୨୧୦ । ଜଗନ୍ନାଥାମୃତଗୀତା—ବିପ୍ର ଦିବାକର—୧୨/୮୨—

ଶ୍ରୀକୃଷ୍ଣ ପଶ୍ଚିମ ମୁଖେ ରାଧାମୁଖଂ ଚ ପୂର୍ବକେ ।
ପରସ୍ପରଂ କୃଷ୍ଣରାଧା ବିଳାସଃ ନୀଳକନ୍ଦରେ ॥

ଜଗନ୍ନାଥ ଚରିତାମୃତମ୍—ଦିବାକର ଦାସ—ଓଡ଼ିଆ ମଠ—ପୃ ୭୬

ଜଗନ୍ନାଥ ଶରୀରେଣ ରାଧାଚିହ୍ନିତ ସର୍ବଦା ।

୨୧୧ । The Land of Vishnu—Dr. G. Mohapatra—pp-55
(see for detail) (ମତ୍କୃତ)

୨୧୨ । ଏହିପରି ଭାବରେ ଜଗନ୍ନାଥଙ୍କ ଦାରୁର ନ୍ୟାସ ସମୟରେ ରାଧାଙ୍କୁ ଆଚାର୍ଯ୍ୟ (ବ୍ରାହ୍ମଣ ବା ପୂଜାପଣ୍ଡା) ସ୍ମରଣ କରନ୍ତି—

"ସ୍ମେରାସ୍ୟାଂ କୁଙ୍କୁମାଭାଂ ସ୍ଫୁରଦଧର ତଟପ୍ରାନ୍ତ କୃଷ୍ଣାବ ଗୁଣ୍ଠାମ୍
ରମ୍ୟାଂ ବେଶେନ ବେଣୀକୃତ ଚିକୁରଶିଖା ଲମ୍ବି ପଦ୍ମାଂ କଶୋଭାମ୍ ।
ତର୍ଜନ୍ୟାଙ୍ଗୁଷ୍ଠଯୁକ୍ତାଂ ହରିମୁଖକମଳେ ଯୁଞ୍ଜତୀଂ ନାଗବଲ୍ଲୀ-
ପର୍ଣ୍ଣଂ କର୍ଣ୍ଣାୟତାକ୍ଷୀଂ ତ୍ରିଭୁବନ ରୁଚିରାଂ ରାଧିକାଂ ଭାବୟାମି ॥

୨୧୩ । C. J. R. T. O.—pp-258—Foot note Dr. Tripathi

ସମସ୍ତରେ ମୂର୍ତ୍ତିର ମରାମତି ହୋଇପାଉଥିଲା (୨୧୪) ଓ ସେଥିପାଇଁ ନବକଳେବରର ଆବଶ୍ୟକତା ନଥିଲା । ଏବେ ପ୍ରତିବର୍ଷ ନେତ୍ରୋତ୍ସବ ହେଉଛି ଓ ନବକଳେବର ସମସ୍ତରେ ମଧ୍ୟ ନେତ୍ରୋତ୍ସବ ହେଉଛି । କିନ୍ତୁ ଦେଖିବାର କଥା ହେଲା, ଦଇତାପତିମାନେ ସବୁ କିଛି ରଙ୍ଗକାମ କରେ; ମାତ୍ର ଜଗନ୍ନାଥଙ୍କ ନେତ୍ରର କଳାଅଂଶ (ପୁତୁଳିକା)ଟି କରେନାହିଁ । ଏହାକୁ ତୁଳି ଧରି ଶେଷ କରନ୍ତି ବ୍ରାହ୍ମଣ ( ୨୧୫) ଆଚାର୍ଯ୍ୟ । ସେ ପୁଣି ସେତେବେଳେ ବୋଲନ୍ତି ବୈଦିକମନ୍ତ୍ର । "ତଚ୍ଚକ୍ଷୁର୍ଦେବହିତଂ ପୁରସ୍ତାତ୍ ଶୁକ୍ରଂ......।" (ଋଗ୍‌ବେଦ—୭।୬୬।୧୬ ।) ଯେଉଁ ଚକା ଆଖି ସୂର୍ଯ୍ୟଚନ୍ଦ୍ରଙ୍କର ପ୍ରତୀକ, ଯାହା କାଳକୁ ନିୟନ୍ତ୍ରଣ କରେ, ଯେଉଁଥିରେ କାଳରୂପୀ ଜଗନ୍ନାଥ ସର୍ବବିଶ୍ୱକୁ ଦେଖିପାରନ୍ତି, ସେହି ନେତ୍ରଦ୍ୱୟ ବ୍ରାହ୍ମଣ ଦ୍ୱାରା ବୈଦିକ ମନ୍ତ୍ରରେ ପ୍ରତିଷ୍ଠିତ ହେବା ଜଗନ୍ନାଥଙ୍କୁ ହିନ୍ଦୁଧର୍ମର ଶ୍ରେଷ୍ଠତମ ଉପାସନାର କେନ୍ଦ୍ର ଭାବରେ ଅବସ୍ଥାପିତ କରେ ।

ନବକଳେବର ଭଳି ବାହାରପୂଜାରେ ଯେପରି ଜଗନ୍ନାଥ ବୈଦିକ ରୀତିରେ ପୂଜିତ ହୁଅନ୍ତି, ବିଷ୍ଣୁ ଭାବରେ ଉପାସିତ ହୁଅନ୍ତି, ଭିତର ପୂଜା ବା ମନ୍ଦିରରେ ଅନୁଷ୍ଠିତ ପୂଜା ପଦ୍ଧତିରେ ମଧ୍ୟ ଅନୁରୂପ ଭାବରେ ଅର୍ଚ୍ଚିତ ହୋଇଥାଆନ୍ତି । ଉଭୟ ସ୍ଥାନର ପୂଜାରେ ବ୍ୟବହୃତ ମନ୍ତ୍ରମାନ ଆମ୍ଭଙ୍କୁ ସେହି ସୂଚନା ଦେଇଥାଏ । ଜଗନ୍ନାଥଙ୍କୁ ଦାରୁବ୍ରହ୍ମ, କୃଷ୍ଣ-ବିଷ୍ଣୁ ଭାବରେ ପୂଜାକରାଯିବା ସଙ୍ଗେ ସଙ୍ଗେ ବଳଭଦ୍ରଙ୍କୁ ବାସୁଦେବ ମନ୍ତ୍ରରେ (୨୧୬) ବାସୁଦେବ ଭାବରେ ଓ ପ୍ରକାରାନ୍ତରେ କାଳାଗ୍ନିରୁଦ୍ର ଭାବରେ ଏବଂ ସୁଭଦ୍ରାଙ୍କୁ ଭୁବନେଶ୍ୱରୀ ମନ୍ତ୍ରରେ (୨୧୭) ଦୁର୍ଗା ଭାବରେ ପୂଜା ଉପାସନା କରାଯାଏ । ଫଳରେ ଶ୍ରୀକ୍ଷେତ୍ର ହିନ୍ଦୁମାନଙ୍କର ତୀର୍ଥ ଓ ବୈଷ୍ଣବ, ଶୈବ, ଶାକ୍ତଙ୍କର ପବିତ୍ର ଭୂମି ଭାବରେ ପରିଗଣିତ ହୁଏ । ଯୁଗ ଯୁଗ ଧରି ଏ କ୍ଷେତ୍ର ସେଥିପାଇଁ ହିନ୍ଦୁ ମହାପୁରୁଷମାନଙ୍କୁ ଆକୃଷ୍ଟ କରିଛି । ଶୈବଗୁରୁ ଶଙ୍କରାଚାର୍ଯ୍ୟ ଏଠିକି ଆସି ଗୋବର୍ଦ୍ଧନ ମଠ ପ୍ରତିଷ୍ଠାକରି କିଛିଦିନ ଏଠାରେ ବାସ କରିଛନ୍ତି । ବୈଷ୍ଣବାଚାର୍ଯ୍ୟ ରାମାନୁଜ ମଧ୍ୟ ସମସ୍ତ ଧର୍ମଗତଭେଦ ଭୁଲି ଏହି ପୁଣ୍ୟଧାମରେ ଏମାର ମଠ ସ୍ଥାପନ କରି ବସବାସ କରିଛନ୍ତି । ସେହିପରି ମଧ୍ୱାଚାର୍ଯ୍ୟ,

---

୨୧୪ । ସ୍କନ୍ଦ—ପୁ: ମା:—୧୯।୨୪

"ବର୍ଷେ ବର୍ଷେ ଚ ସଂସ୍କାର୍ଯ୍ୟାଃ ପୂର୍ବସଂସ୍କାର ମୋଚନାତ୍ । × × ×

୨୧୫ । C. J. R. T. O pp-263

୨୧୬ । ବଳଭଦ୍ର ଦ୍ୱାଦଶାକ୍ଷର ମନ୍ତ୍ର "ଓଁ ନମୋ ଭଗବତେ ବାସୁଦେବାୟ"ରେ ଏବଂ ପୁରୁଷସୂକ୍ତରେ ଜଗନ୍ନାଥଙ୍କ ଭଳି ପୂଜିତ ହେବାର ବିଧି ଅଛି । = ପ୍ରପଞ୍ଚସାର ତନ୍ତ୍ର -ଅ: ୧୦।୧. (ଦ୍ରଷ୍ଟବ୍ୟ) The Cult of Jagannath —Dr. K. C. mishra-pp. 151.

୨୧୭ । ସୁଭଦ୍ରାଙ୍କ ମନ୍ତ୍ର—"ଓଁ ହ୍ରୀଂ ଭୁବନେଶ୍ୱର୍ଯ୍ୟୈ ନମଃ" । ଏହାଛଡ଼ା ସେ ମଧ୍ୟ

ନମ୍ବାର୍କ, ବଲ୍ଲଭାଚାର୍ଯ୍ୟ ପ୍ରଭୃତି ମନୀଷୀମାନେ ଆସି ଏହି ପାବନ କ୍ଷେତ୍ରରେ ନିଜ ନିଜର ଆସନ ପ୍ରତିଷ୍ଠା କରିଯାଇଛନ୍ତି ।

ମନ୍ତ୍ର ପ୍ରୟୋଗ ଭିନ୍ନ ଯାବ ପୂଜାରେ ବ୍ୟବହୃତ ସଂସ୍କାରବିଧି, ଭୂତଶୁଦ୍ଧି, ପ୍ରାଣାୟାମ, ମାତୃକାନ୍ୟାସ, ଦେବତାନ୍ୟାସ, ତତ୍ତ୍ୱନ୍ୟାସ, ଯୌଗିକ ଭାବନା, ମନ୍ତ୍ରନ୍ୟାସ ବଜ୍ରପଞ୍ଜର ନ୍ୟାସ, ମାନସପୂଜା, ଅର୍ଘ୍ୟସଂସ୍କାର, ଉପଚାରବିଧି, ଆସନପୀଠପୂଜା, ଦେବତା-ପୀଠପୂଜା, ପ୍ରାଣପ୍ରତିଷ୍ଠା, ଆବରଣପୂଜା, ବ୍ରହ୍ମାର୍ପଣବିଧି ଓ ରାଜୋପଚାରଣୀ ପ୍ରଭୃତିକୁ ଆଲୋଚନାକୁ ନିଆଯାଏ, ତେବେ ଦେଖାଯିବ ଯେ ଜଗନ୍ନାଥ ଛନ୍ଦେ ଛନ୍ଦେ ବୈଦିକ ଦେବତା ଭାବରେ ପରିଚିତ । ଉତ୍କଳଖଣ୍ଡରେ ଜଗନ୍ନାଥଙ୍କୁ ପ୍ରଣବରୂପୀ ବୋଲି କୁହାଯାଇଛି । ପୂଜାର ଆଲୋଚନାରେ ଏହି ତ୍ରିମୂର୍ତ୍ତି ପ୍ରଣବ ରୂପେ ରୂପାୟିତ ହେଉଥିଲେ ଜଣାଯାଆନ୍ତି (୨୧୮) ।

"ଓଁ ଅକାର ସତ୍ତ୍ୱଗୁଣଂ ଶୁକ୍ଳବର୍ଣ୍ଣଂ ନମଃ ନାଭୌ ।
ଓଁ ଉକାର ରଜୋଗୁଣଂ ରକ୍ତବର୍ଣ୍ଣଂ ନମଃ ହୃଦୟେ ।
ଓଁ ମକାର ତମୋଗୁଣଂ କୃଷ୍ଣବର୍ଣ୍ଣଂ ନମଃ ମୂର୍ଦ୍ଧ୍ନି ।"

ପ୍ରଣବନ୍ୟାସ ସମୟରେ ଏହି ମନ୍ତ୍ର ବୋଲାଯାଏ ଓ ଏଥିରେ ଯଥାକ୍ରମେ ବଳଭଦ୍ରଙ୍କୁ ଅକାର, ସୁଭଦ୍ରାଙ୍କୁ ଉକାର ଓ ଜଗନ୍ନାଥଙ୍କୁ ମକାର ବୋଲି ବିଚାର କରାଯାଇ ଅ+ଉ+ମ= ସମୁଦାୟ ଓଁ ବା ତ୍ରିମୂର୍ତ୍ତିଙ୍କୁ ପ୍ରଣବବୋଲି କୁହାଯାଇଛି ।

---

ବୈଦିକ ଦେବୀ ସୂକ୍ତରେ ଅଛିଁଥା । ବିମଳା ବି ମନ୍ଦିରରେ ଠିକ୍ ଏହି ଦୁଇ ମନ୍ତ୍ରରେ ପୂଜିତା ହୁଅନ୍ତି । ନୀଳାଦ୍ରି ମହୋଦୟଂ ସୁଭଦ୍ରା ଭୁବନେଶ୍ୱରୀ ବୋଲି ଉଲ୍ଲେଖ କରିଛି । (Please see for detail my work. The Land of Vishnu.)

ଦ୍ରଷ୍ଟବ୍ୟ—ସ୍କନ୍ଦ: ପୁ: ମା:—୨୧।୩-୪—"ପୁରୁଷସୂକ୍ତରେ ଜଗନ୍ନାଥ, ଦ୍ୱାଦଶାକ୍ଷର ମନ୍ତ୍ରରେ ବଳଭଦ୍ର ଓ ସୁଦର୍ଶନ, ଦେବୀସୂକ୍ତରେ ସୁଭଦ୍ରାଙ୍କୁ ରାଜା ଇନ୍ଦ୍ରଦ୍ୟୁମ୍ନ ପୂଜା କରିଥିଲେ ବୋଲି ଉଲ୍ଲେଖ ଅଛି ।"

୨୧୮ । ନୀଳାଦ୍ରିନାଥସ୍ୟ ପୂଜାବିଧି ପୋଥି ଦ୍ରଷ୍ଟବ୍ୟ ।
ସ୍କନ୍ଦପୁରାଣ—ପୁ: ମା:—୮।୩୪-୩୫—
ଇତିସ୍ତୁତ୍ୱା ସୁରେଶାନଂ ଦେବଂ ପ୍ରଣବରୂପିଣମ୍ ।
ପ୍ରଣତଃ ପ୍ରଣବଂ ମନ୍ତ୍ରଂ ଜଜାପ ପୁରତଃ ହରେଃ ॥

ଭୂତଶୁଦ୍ଧି କ୍ରମରେ ଅର୍ଚ୍ଚକ ମନ ମଧ୍ୟରେ ଏକ ଯୋଗ ସାଧନା କରି ନିଜର ହୃଦୟକୁ ଏକ ଅଷ୍ଟଦଳପଦ୍ମରେ ସନ୍ଦର୍ଶନ କରନ୍ତି । ଏ କଳ୍ପନାରେ 'ସଚ୍ଚିଦାନନ୍ଦ' ଚିନ୍ତାଧାରାର 'ଆନନ୍ଦ' ହୁଏ ସେ ପଦ୍ମର ମୂଳ । ("ଆନନ୍ଦକନ୍ଦସମ୍ଭବମ୍') । ଜ୍ଞାନ' ହୁଏ ନାଳ (ନାଡ଼) । ତାପରେ ପୂଜକ ଜୀବାତ୍ମାକୁ ଏକ ଦୀପଶିଖା ଭାବରେ ସେହି ପଦ୍ମ ଉପରେ ଉପସ୍ଥାପିତ କରେ । ତାହାପରେ ମସ୍ତକ ଦେଶରେ ଏକ ସହସ୍ରଦଳପଦ୍ମର ପରିକଳ୍ପନା-କରି ତତ୍ ସହିତ ସୁଷୁମ୍ନା ନାଡ଼ୀରେ ବାୟୁ ସଞ୍ଚାଳନ କରି ଜୀବାତ୍ମାକୁ ସହସ୍ରଦଳପଦ୍ମନିଭ ପରମାତ୍ମାଙ୍କ ସହିତ ଯୋଗ କରେ । ସେତିକିବେଳେ ମନ୍ତ୍ର ଉଚ୍ଚାରଣ କରେ "ହଂସଃ' । ସୋଽହଂ, ଅହଂ ସଃ" । ଏ ଚିନ୍ତାଧାରା ହିନ୍ଦୁଦର୍ଶନରେ ପ୍ରକଟିତ । ପୁଣି ଏହା ବ୍ୟବହୃତ ହେଉଛି ଜଗନ୍ନାଥଙ୍କ ପାଇଁ ପୂଜାକ୍ରମରେ ଜୀବାତ୍ମା ପରମାତ୍ମାଙ୍କ ସହିତ ମିଳିତ ହେବା । ପରେ ପୂଜକ ପଞ୍ଚମହାଭୂତକୁ ପଞ୍ଚମହାଭୂତରେ ଲୀନ କରାଇଦିଏ । ଯଥା 'କ୍ଷିତି'କୁ 'ଅପ୍'ରେ 'ଅପ୍'କୁ 'ତେଜ୍'ରେ ଇତ୍ୟାଦି । ପଞ୍ଚ ତନ୍ମାତ୍ର, ଅହଂକାର ଆଦି ସବୁକୁ ପରସ୍ପର ଠାରେ ଲୀନ କରାଇ ପ୍ରକୃତିକୁ ପରମାତ୍ମାରେ ମଧ୍ୟ ଲୀନ କରାଇଦିଏ । ଏହି ଉପାସନା ହିନ୍ଦୁଦର୍ଶନର 'ଯୋଗ' 'ସାଂଖ୍ୟ'ର ପ୍ରଭାବରେ ପ୍ରଭାବିତ । ଏପରି କରିସାରି ପୁଣି ପ୍ରଣବ-ମନ୍ତ୍ର ଜପକରି ଜୀବକୁ ତଳକୁ ଓହ୍ଲାଇ ଆଣି ତାହାଠାରେ ବିଷ୍ଣୁତ୍ୱ ଆରୋପ କରେ । ତାପରେ ତହିଁରେ ପ୍ରାଣପ୍ରତିଷ୍ଠା କରେ ଏବଂ ନିଜର ପ୍ରାଣ, ମନ, ଇନ୍ଦ୍ରିୟ ଇତ୍ୟାଦିଙ୍କୁ ନେଇ ବିଷ୍ଣୁଙ୍କଠାରେ ଯୋଗ କରେ (୧୧୯) ।

ପ୍ରାଣାୟାମ କ୍ରମରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କୁ ପୂଜକ ନିଜ ଶରୀରର ବିଭିନ୍ନ ଅବୟବରେ ସ୍ଥାନଦେଇ କୁମ୍ଭକ, ରେଚକ ପୂରକ, କ୍ରିୟା ସମ୍ପାଦନ କରେ । ମାତୃକା-ନ୍ୟାସ କ୍ରମରେ ନାଦ' ଓ ବାକ୍ ତଥା ଭାରତୀଙ୍କୁ ଶରୀରର ବିଭିନ୍ନ ଅବୟବରେ ସ୍ଥାନ ଦିଆଯାଏ । ଏହା ଏକ ଶବ୍ଦ ବ୍ରହ୍ମର ଆରାଧନା । ଦେବତାନ୍ୟାସ କ୍ରମରେ ଦେବତା ଓ ତାଙ୍କର ଶକ୍ତିଙ୍କୁ ଶରୀରର ବିଭିନ୍ନ ଅଙ୍ଗରେ ଅବସ୍ଥାନ କରାଯାଏ । ଏଥିରେ କେଶବାଦି ନ୍ୟାସ ଭାବରେ ବିଷ୍ଣୁଙ୍କୁ ଉପାସନା କରାଯାଏ । ତତ୍ତ୍ୱନ୍ୟାସ କ୍ରମରେ ନିର୍ଗୁଣ (ବ୍ରହ୍ମ)ଙ୍କୁ ଶରୀରରେ ପୂଜକ ସ୍ଥାନ ଦିଏ । ତାପରେ ଶବ୍ଦ, ମନ, ଅହଂକାର ବୁଦ୍ଧି ପ୍ରାଣଙ୍କୁ ଶରୀର ମଧ୍ୟକୁ ଆଣି ପ୍ରକୃତି ଓ ପୁରୁଷଙ୍କୁ ଯୋଗ କରାଏ । ଏହା କରିସାରିବା ପରେ ପରମ ପୁରୁଷଙ୍କୁ ଧ୍ୟାନ କରାଯାଏ । ଏଥିରେ ଛନ୍ଦେ ଛନ୍ଦେ ସାଂଖ୍ୟ ଦର୍ଶନର ଚିନ୍ତାଧାରା ପ୍ରତିଫଳିତ । ତାହାହିଁ ଜଗନ୍ନାଥଙ୍କଠାରେ ରୂପାୟିତ ।

ଭାବନାଚତୁଷ୍ଟୟ କ୍ରମରେ ଅର୍ଚ୍ଚକ ବିଷ୍ଣୁକୃଷ୍ଣଙ୍କୁ ଧ୍ୟାନକରି ନିଜ ଶରୀରକୁ ଏକ ଯନ୍ତ୍ର ରୂପେ କଳ୍ପନା କରେ ଓ ତହିଁରେ କୃଷ୍ଣଙ୍କୁ ଗୋପୀଜନବଲ୍ଲଭ ଭାବରେ ଅବସ୍ଥାନ କରାଏ । ତାହାପରେ ପ୍ରଣବମନ୍ତ୍ର ଜପ କରି ତହିଁରୁ ତେଜକୁ ସୃଷ୍ଟି କରେ ଓ ତେଜରୁ

୧୧୯ । C. J. R. T. O.—PP 292 (Tripathi)

ପ୍ରାଣର ସୃଷ୍ଟି କଳ୍ପନା କରେ । ପରେ ସେହି ତେଜକୁ ତେଜମନ୍ତ୍ରରେ ଗ୍ରହଣ କରି ନିଜର ଶରୀର ଉପରେ ସେଥିରେ ସୌଚ କରେ । ମନ୍ତ୍ରନ୍ୟାସକ୍ରମରେ ପୂଜକ ଇଷ୍ଟଦେବତାଙ୍କୁ ଧ୍ୟାନ କରେ । ଏଥିରେ କୃଷ୍ଣ, ସଙ୍କର୍ଷଣ-ଶିବ ଓ ଭୁବନେଶ୍ୱରୀ-ସୁଭଦ୍ରାଙ୍କୁ ଧ୍ୟାନ କରାଯାଏ । ତାହାପରେ ବିଷ୍ଣୁଙ୍କର ଦ୍ୱାଦଶ ନାମକୁ ଧ୍ୟାନ କରି ଦ୍ୱାଦଶ ଆଦିତ୍ୟଙ୍କ ସହିତ ଯୋଗ କରାଯାଏ । ଯଥା = କେଶବ = ଧାତୃ, ନାରାୟଣ = ଅର୍ଯମା, ମାଧବ = ମିତ୍ର, ଗୋବିନ୍ଦ = ବରୁଣ, ବିଷ୍ଣୁ = ଅଂଶ, ମଧୁସୂଦନ = ଭଗ, ତ୍ରିବିକ୍ରମ = ବିବସ୍ୱାନ୍, ବାମନ = ଇନ୍ଦ୍ର, ଶ୍ରୀଧର = ପୂଷନ୍ ହୃଷିକେଶ = ପର୍ଜନ୍ୟ ପଦ୍ମନାଭ = ତ୍ୱଷ୍ଟି, ଦାମୋଦର = ବିଷ୍ଣୁ । ଏହି ଚିନ୍ତାଧାରା ପରେ ପୂଜକ ଜଗନ୍ନାଥଙ୍କୁ ଗୋପାଳକୃଷ୍ଣ ଭାବରେ ଧ୍ୟାନ କରେ। ମାନସ ପୂଜାକ୍ରମରେ ପୂଜକ ହୃଦୟକୁ ବେଦୀ ବୋଲି କଳ୍ପନା କରି ମାନସାଗ୍ନିରେ ନିଜର ଗର୍ବ, ଅହଙ୍କାର ଆଦିକୁ ଆହୁତି ଦେଇଦିଏ । ତାହାପରେ ବୈଦିକ ଆବାହନ, ସ୍ଥାପନ, ସନ୍ନିରୋଧନ ସମ୍ମୁଖୀକରଣ ଅବଗୁଣ୍ଠନ ଧେନୁମୁଦ୍ରା ଅମୃତୀକରଣ, ପରମୀ-କରଣ ଆଦି ସଂସ୍କାରମାନ ପାଳିତ ହୋଇ ଜଗନ୍ନାଥଙ୍କୁ ବିଷ୍ଣୁ ଭାବରେ ତଥା ପରମ-ପୁରୁଷ ରୂପେ କଳ୍ପନା କରାଯାଇ ଷୋଡ଼ଶ ଉପଚାର ବିଧିରେ ପୂଜା କରାଯାଏ । ଷୋଡ଼ଶ ଉପଚାରରେ, ଆସନ, ସ୍ୱାଗତ, ପାଦ୍ୟ, ଅର୍ଘ୍ୟ ଆଚମନୀୟ, ମଧୁପର୍କ, ଆଚମନୀୟ, ସ୍ନାନ, ବସ୍ତ୍ର, ଆଭରଣ, ଗନ୍ଧ, ପୁଷ୍ପ ଧୂପ, ଦୀପ, ନୈବେଦ୍ୟ ଓ ବନ୍ଦନା ରାଜକୀୟ ଭାବରେ ଜଗନ୍ନାଥଙ୍କୁ ଉପାସନା କରାଯାଏ । ଆବରଣ ପୂଜାକ୍ରମରେ ଜଗନ୍ନାଥଙ୍କୁ ବୃନ୍ଦାବନଚନ୍ଦ୍ର ଶ୍ରୀକୃଷ୍ଣ ଭାବରେ ପୂଜା କରାଯାଏ । ରାଜୋପଚାରଶୀ କ୍ରମରେ ଶ୍ରୀଜଗନ୍ନାଥଙ୍କୁ ଜଗତର ନାଥ ବା ସମ୍ରାଟ ଭାବରେ ରାଜକୀୟ ରୀତିରେ ଛତିଶ ଉପଚାରର ସହିତ ଆରାଧନା କରାଯାଏ । ଏହିପରି ଜଗନ୍ନାଥଙ୍କର ପୂଜାବିଧିକୁ ଅନୁଧ୍ୟାନ କଲେ ଯେ କେହି ବ୍ୟକ୍ତିର ହୃଦ୍‌ବୋଧ ହେବ ଯେ, ଜଗନ୍ନାଥ ହେଉଛନ୍ତି ଶ୍ରୀକୃଷ୍ଣ, ପୁରୁଷୋତ୍ତମ, ଦାରୁବ୍ରହ୍ମ, ପରମପୁରୁଷ, ପ୍ରଣବରୂପୀ ତଥା ହିନ୍ଦୁମାନଙ୍କର ଦାର୍ଶନିକ ତତ୍ତ୍ୱର ପ୍ରତୀକ ଭାବେ ସର୍ବୋତ୍କୃଷ୍ଟ ଆରାଧ୍ୟ ଦେବତା । ଏସବୁ ତତ୍ତ୍ୱ ଜଗନ୍ନାଥଙ୍କଠାରେ ଏକୀଭୂତ ହୋଇଥିବାରୁ ଶ୍ରୀକୃଷ୍ଣ ପରି ସେ ବଂଶୀଧାରୀ ନୁହନ୍ତି, ବିଷ୍ଣୁଙ୍କ ପରି ଚତୁର୍ଭୁଜ ନୁହନ୍ତି, ବ୍ରହ୍ମପରି ଅଚିନ୍ତ୍ୟ, ଅବ୍ୟକ୍ତ ନୁହନ୍ତି, ପ୍ରଣବ ଭଳି ଅଦୃଶ୍ୟ ନୁହନ୍ତି । ଏହିସବୁ ବିଷୟକୁ ଏକୀକରଣ କରି ତାଙ୍କୁ ଏପରି ବିଚିତ୍ର ଭାବରେ ଦାରୁରେ ନିର୍ମାଣ କରାଯାଇଛି । ଏକଥା କେବେ ସତ୍ୟ ନୁହେଁ ଯେ ଲୋକେ ଲୁହା, ସୁନା ପ୍ରଭୃତି ଧାତୁ, ପଥର ଇତ୍ୟାଦିରେ ମୂର୍ତ୍ତିଗଢ଼ା ନ ଜାଣିଥିବାରୁ ତାଙ୍କୁ ଏପରି ଭାବରେ ଗଢ଼ିଲେ; ମାତ୍ର ସତ୍ୟ କଥା ହେଉଛି, ଏଣିକି ହିନ୍ଦୁମାନେ ଜାଣିଶୁଣି ସମସ୍ତ ହିନ୍ଦୁଦର୍ଶନକୁ ରୂପାୟିତ କରି ତାଙ୍କୁ ଏକ ସ୍ୱୟଂସମ୍ପୂର୍ଣ୍ଣ ମୂର୍ତ୍ତି ଭାବରେ ଗଠନ କରିଛନ୍ତି । ଯେଉଁମାନେ ଜଗନ୍ନାଥଙ୍କ ମୂର୍ତ୍ତିକୁ ଖଣ୍ଡିଆ ବୋଲି ଭାବୁଛନ୍ତି, ସେମାନେ ଭୁଲ୍ କରୁଛନ୍ତି । ଠିକ୍ ଏ ଦାର୍ଶନିକ ଦୃଷ୍ଟିରୁ ଚିନ୍ତା କରିଥିଲେ,

ସେମାନେ ଏପରି କେବେ କହନ୍ତେ ନାହିଁ । ଏହି ମୂର୍ତ୍ତି ତତ୍ତ୍ୱରେ ସାଙ୍ଖ୍ୟ ଦର୍ଶନ ଯେତିକି ଅଛି, ବେଦାନ୍ତର (୧୧୯କ) ଚିନ୍ତାଧାରା ଯେତିକି ଅଛି ଏବଂ ବୈଷ୍ଣବ ଓ ବେଦର ଚିନ୍ତାଧାରା ମଧ୍ୟ ସେହି ପରିମାଣରେ ରହିଅଛି; ଏହା ନିଃସନ୍ଦେହ ।

## କାହିଁକି ତେବେ ତଥାକଥିତ ଅସମ୍ପୂର୍ଣ୍ଣ ମୂର୍ତ୍ତି :

ପୂର୍ବରୁ ଆଲୋଚନା କରାଯାଇଛି, ଗୋଟିଏ ପର୍ଯ୍ୟାୟରେ ଗୋପାଳକୃଷ୍ଣଙ୍କୁ ବିଷ୍ଣୁ ବୋଲି ସ୍ୱୀକାର କରାଗଲା । ତାପରେ ତାଙ୍କୁ ମଧ୍ୟ ପୁରୁଷୋତ୍ତମ ବୋଲି କୁହାଗଲା । ଏଣୁ ବିଷ୍ଣୁଙ୍କର ଦଶାବତାର କ୍ରମରେ ଅଷ୍ଟମ ଅବତାର ଶ୍ରୀକୃଷ୍ଣଙ୍କ ସ୍ଥାନରେ କେତେକ ପୁରାଣ ପୁରୁଷୋତ୍ତମ ବୋଲି ଉଲ୍ଲେଖ କଲେ (୧୨୦) । ତାଙ୍କୁ ଆଦିତ୍ୟ (ସୂର୍ଯ୍ୟ) ବା ଅଦିତୀଙ୍କର ପୁତ୍ର ଭାବରେ ମଧ୍ୟ ଗ୍ରହଣ କରାଗଲା (୧୨୧) । ତେଣୁ ଜଗନ୍ନାଥଙ୍କ ପୂଜାପଦ୍ଧତିରେ 'ଜଗନ୍ନାଥ ହିଁ ବିଷ୍ଣୁ,' ଏପରି ସ୍ୱୀକାର କରାଯାଇ ବିଷ୍ଣୁଙ୍କ ଦ୍ୱାଦଶନାମ ସହିତ ଆଦିତ୍ୟଙ୍କର ବିବିଧ ନାମକୁ ଯୋଡ଼ି ଦିଆଗଲା । ତାହାପରେ କୃଷ୍ଣ-ବିଷ୍ଣୁଙ୍କୁ ବିଶ୍ୱରୂପ ବା ବିଶ୍ୱବ୍ୟାପ୍ତ ଭାବରେ ବିଚାର କରାଗଲା । ତାହା ମଧ୍ୟ ଜଗନ୍ନାଥଙ୍କ ପୂଜାରେ ପ୍ରତିଫଳିତ ହେଲା । ପୁରୁଷୋତ୍ତମ ସର୍ବରୂପ ବୋଲି ବ୍ରହ୍ମପୁରାଣରେ ପ୍ରମାଣ ରହିଛି (୧୨୨) । ତାହା ସହିତ ତାଙ୍କୁ ଅରୂପ, କ୍ଷର ଅକ୍ଷର ଆଦି ପରସ୍ପର ବିପରୀତ ବିଭାଗରେ ସଜାଇ ଦିଆଯାଇଛି (୧୨୩) । ଜଗନ୍ନାଥଙ୍କ ମୂର୍ତ୍ତିକୁ ବିଶ୍ଳେଷଣ କଲେ ସେ ମଧ୍ୟ ଅରୂପ, ସେ ହିଁ ବିଶ୍ୱରୂପ ବିରାଟ ପୁରୁଷ । ସେ ମଧ୍ୟ କ୍ଷର ପୁରୁଷ ଜୀବାତ୍ମା । ନବକଳେବର ଯାହା ଏହି ଆତ୍ମାଙ୍କର ସତ୍ତ ପରିବର୍ତ୍ତନର ଏକ ଜ୍ୱଳନ୍ତ ନିଦର୍ଶନ । ସେ ପୁଣି ନିର୍ଗୁଣ ବ୍ରହ୍ମ, ଯାହାଙ୍କୁ ଦର୍ଶନ କଲେ

---

୧୧୯ (କ) ସ୍କନ୍ଦପୁରାଣ—ପୁ: ମା:—୮/୪୮

ପଶ୍ୟସାକ୍ଷାତ୍ ଜଗନ୍ନାଥଂ ବେଦାନ୍ତ ପ୍ରତିପାଦିତମ୍ ।

୧୨୦ । ବ୍ରହ୍ମପୁରାଣ—ବରେଲି—୧୯୭୩—ପ୍ରଥମଭାଗ—୧୫/୧୬—ପୃ ୧୩୯—

"ନମୋନମସ୍ତେ ପୁରୁଷୋତ୍ତମାୟ ।"

୧୨୧ । ବ୍ରହ୍ମପୁରାଣ—ବରେଲି—୭୨/୭ ପୃ ୩୪୯—

ସ ଆଦିତ୍ୟ ମହାଭାଗଃ ଯୋଗୈଶ୍ୱର୍ଯ୍ୟ ସମନ୍ୱିତଃ ।।

୧୨୨ । ବ୍ରହ୍ମପୁରାଣ—୨ୟ ଭାଗ—୧୮୪ ଓ ୧୮୫/୧୦, ୧୫—ପୃ ୪୧୫, ୪୧୬ (ଯଥାକ୍ରମେ)

୧୨୩ । ବ୍ରହ୍ମପୁରାଣ—୨ୟ ଭାଗ—ପୃ ୪୧୫ (ସେହି ଉପରୋକ୍ତ ଶ୍ଳୋକ)

"କ୍ଷରମକ୍ଷରଂ ଧୃତରୂପ ଅରୂପମିତି
ନମୋ ପୁରୁଷୋତ୍ତମାଯେତି ।।"

ଜୀବ ଜୀବନ୍ମୁକ୍ତ ହୁଏ (୧୧୪)। ଅତଏବ ସେ ହିଁ କ୍ଷରପୁରୁଷ ଓ ଅକ୍ଷର ପୁରୁଷ । ସମଗ୍ର ବେଦର ଚିନ୍ତାଧାରା ତାଙ୍କଠାରେ ନିହିତ (୧୧୫)। ସେହି ଅକଳନୀୟ ପୁରୁଷଙ୍କୁ ହସ୍ତପଦବିହୀନ ବୋଲି ସ୍ୱୀକାର କରିବା ଛଡ଼ା ଉପନିଷଦ ତେଣୁ ଅନ୍ୟପନ୍ଥା ଦେଖାଇ-ନାହାନ୍ତି (୧୧୬)। ଅତଏବ ହସ୍ତପଦ ନଥାଇ ବିଷ୍ଣୁଙ୍କର ରୂପକୁ ଚିନ୍ତା କରିବା ସାଧାରଣ ଲୋକଙ୍କ ପକ୍ଷରେ କଷ୍ଟକର ହେଲେ ମଧ୍ୟ ଜ୍ଞାନୀମାନଙ୍କ ପକ୍ଷରେ ଏ ରୂପର କଳ୍ପନା କଷ୍ଟସାଧ୍ୟ ନୁହେଁ । ଏହା ହେଉଛି ଜ୍ଞାନର, ହିନ୍ଦୁ ସଂସ୍କୃତିର ଓ ମହାଯୋଗର ଚରମ ଓ ପରମ ପ୍ରକାଶ । ବିଷ୍ଣୁଙ୍କଠାରେ ବ୍ରହ୍ମଭାବର • ଆରୋପର ଏହି ଜଗନ୍ନାଥ ହିଁ ନିଖୁଣ ଚିହ୍ନ । ଏପରି ଏକ ଅଙ୍ଗହୀନ ବିଷ୍ଣୁଙ୍କର ପରିକଳ୍ପନା ଖ୍ରୀ. ପୂ. ଦ୍ୱିତୀୟ ଶତକରେ ବିଷ୍ଣୁ ପୁରାଣରେ ଲିପିବଦ୍ଧ ହୋଇଛି । ଏଥିରେ କୁହାଯାଇଛି, ବିଷ୍ଣୁପ୍ରାପ୍ତି ବା ବ୍ରହ୍ମରୂପୀ ବିଷ୍ଣୁଙ୍କର ସାଯୁଜ୍ୟ ନିମିତ୍ତ ପ୍ରଥମେ ବିଷ୍ଣୁଙ୍କର ଚତୁର୍ଭୁଜ ଓ ନବମେଘ ସୁନ୍ଦର ରୂପକୁ ଧ୍ୟାନ କରିବ । ଏ ଧ୍ୟାନ ସିଦ୍ଧ ହେଲେ, ତାହାପରେ ବିଷ୍ଣୁଙ୍କର ସେ ସୁନ୍ଦର ଅଙ୍ଗମାନ, ଅଳଙ୍କାର, ଆୟୁଧ ଆଦିକୁ ବାଦ୍‌ଦେଇ ଏକ କିମ୍ଭୂତ କିମାକାର (ଖଣ୍ଡିଆ) ମୂର୍ତ୍ତିଭାବରେ ତାଙ୍କୁ ମନ ମଧ୍ୟରେ ଦର୍ଶନ କରିବ । ଏହି ଅବୟବ ହୀନରୂପ ପ୍ରତ୍ୟକ୍ଷ ହେଲାପରେ ତାଙ୍କୁ ଅବୟବୀ ଭାବରେ ଧ୍ୟାନ କରିବ । ତାହାପରେ ସିଏ ବ୍ରହ୍ମରୂପୀ ବିଷ୍ଣୁପ୍ରାପ୍ତ ହେବେ (୧୧୭)। ଏଥିରେ ଯେଉଁ ଅବୟବହୀନ ମୂର୍ତ୍ତିଙ୍କୁ କଳ୍ପନା କରିବାକୁ କୁହାଗଲା, ତାହା ସାଧକ ପକ୍ଷରେ ଅବଧାରଣା କରିବା ନିଶ୍ଚୟ କଷ୍ଟକର । ତେଣୁ ଜନତାର ମଙ୍ଗଳ ବା ମୁକ୍ତି ପାଇଁ ସେହିଭଳି ଏକ ମୂର୍ତ୍ତିର ପରିକଳ୍ପନା ବିଷ୍ଣୁ-ଜଗନ୍ନାଥଙ୍କଠାରେ କରାଯାଇଛି । ଫଳରେ ମୁକ୍ତିପଥର ଯାତ୍ରୀଙ୍କ ପାଇଁ ଦର୍ଶନ ମାଧ୍ୟମରେ ହିଁ ସେ ପ୍ରକାର ଧ୍ୟାନ ସମ୍ଭବ ହୋଇପାରୁଛି । ତା' ନ ହେଲେ ଏପରି ଏକ ଦାରୁବିଗ୍ରହ ଗଢ଼ିବାର ଉଦ୍ଦେଶ୍ୟ କ'ଣ ? ପୁଣି ସେପରି ଏକ ଅସମ୍ପୂର୍ଣ୍ଣ ବିଗ୍ରହକୁ ଏତେ ସଂଖ୍ୟାରେ ହିନ୍ଦୁମାନେ ଗ୍ରହଣ କରନ୍ତେ

---

୧୧୪ । ସ୍କନ୍ଦପୁରାଣ—ପୁ: ମା: —୧୦/୬୧— "ପ୍ରପନ୍ନାମୃତ ମୁକ୍ତିଦଃ ॥"
,, ,, .—୨/୧୦—
"ସାକ୍ଷାତ୍ କୃତୋ ଭଗବତଃ କିଂ ଚାନ୍ୟଂ ମୁକ୍ତିମେତ ଯତ୍ ॥"

୧୧୫ । ସ୍କନ୍ଦ—ପୁ: ମା:—୮/୨୬—
"ନମସ୍ତେ ଦେବଦେବାୟ ଦାରୁରୂପାୟତେ ନମଃ ॥"

୧୧୬ । ଶ୍ୱେତାଶ୍ୱେତର ଉପନିଷଦ—୩/୧୯—
"ଅପାଣିପାଦୋ ଯବନୋଗ୍ରହୀତା, ପଶ୍ୟତ୍ୟଚକ୍ଷୁ ଶୃଣୋତ୍ୟ କର୍ଣ୍ଣଃ ।"

୧୧୭ । ବିଷ୍ଣୁପୁରାଣ—୬ଷ୍ଠ ଭାଗ—୭/୮—ପୃ ୫୪୦ (ବରେଲି) (୭/୮)।

କାହିଁକି ? ପାଦରେ ଗ୍ଭଲି ଗ୍ଭଲି ଜୀବନକୁ ପଣ କରି ସୁଦୂର ରାଜସ୍ଥାନ, ଗୁଜୁରାଟ ଆଦି ଭୂଖଣ୍ଡରୁ ଖାଲି ମୁକ୍ତି ଆଶାରେ ଏତେଦୂର ଆସୁଥିଲେ କାହିଁକି ? ନିଶ୍ଚୟ ଏହି ମୂର୍ତ୍ତିର ପଛପଟେ ସେହି ପୌରାଣିକ ତଥା ଦାର୍ଶନିକ ତନ୍ତ୍ରାଧାର ନିହିତ ଥିଲା । କାଠରେ ବିଗ୍ରହ ନିର୍ମାଣ କରିବା ଆଦିବାସୀମାନଙ୍କର ପରଂପରା ଥିଲେ ମଧ୍ୟ ହିନ୍ଦୁର ଯେ ଯେ ପରଂପରା ନ ଥିଲା; ଏହା କୁହାଯାଇପାରିବ ନାହିଁ । ଏପରି କେତେକ ପରମ୍ପରା ରହିଛି, ଯାହାକି ଯେ କୌଣସି ମଣିଷ ସମାଜରେ ଦୃଷ୍ଟିଗୋଚର ହୁଏ । ଯଥା, ଅଗ୍ନିପୂଜା, ସୂର୍ଯ୍ୟପୂଜା ଇତ୍ୟାଦି । ପ୍ରାଚୀନ ଇତିହାସକୁ ଆଖି ପକାଇଲେ ଦେଖାଯାଏ, ରାଜତନ୍ତ୍ରର ପରମ୍ପରା ପ୍ରାୟ ସବୁ ଦେଶରେ, ସାରା ପୃଥିବୀରେ ଥିଲା । ମାତ୍ର ଏହା ବୋଲି ଯେ ଗୋଟିଏ ଦେଶରୁ ଅନ୍ୟସବୁ ଦେଶ ଏହି ମତ ଗ୍ରହଣ କରିଥିଲେ; ଏକଥା କହିବା ସମୀଚୀନ ହେବନାହିଁ । ଏକ ସ୍ୱତନ୍ତ୍ର ଉପଲବ୍ଧ ପରିସ୍ଥିତିରୁ ଏପରି ସମାନ କଥା ଦେଶ ଦେଶାନ୍ତରରେ ଘଟିଥାଏ । ଯେପରି, ସତ୍ୟ କହିବା ମାନବଜାତି ପାଇଁ ଏକ ଧର୍ମ । ଏହାକୁ କିଏ କାହାଠାରୁ ଶିଖିଲା ବୋଲି କହିବା ଠିକ୍ ହେବ ନାହିଁ । ହିନ୍ଦୁମାନେ ସେହିପରି ବହୁପ୍ରାଚୀନ କାଳରୁ ମୂର୍ତ୍ତିପୂଜା କରୁଥିଲେ । ପ୍ରଥମେ ଦେବତାମାନଙ୍କୁ ମନରେ ଧ୍ୟାନ କରି ପୂଜା କଲେ । ତାହାପରେ ସେହି ଧ୍ୟାନରେ ବର୍ଣ୍ଣିତ ଲକ୍ଷଣମାନ ନେଇ ମୂର୍ତ୍ତିଗଢ଼ା ଗ୍ଭଲିଲା ଓ ସେହି ସେହି ଦେବତା ନିଜ ନିଜର ରୂପମାନ ଗ୍ରହଣ କରି ପିଣ୍ଡୁଳା ମାଧ୍ୟମରେ ପୂଜିତ ହେଲେ । ଅବଶ୍ୟ ଶିବଲିଙ୍ଗ ଭଳି ପ୍ରତୀକ ପୂଜାରୁ ।ପିଣ୍ଡୁଳାପୂଜା ଅଭିବୃଦ୍ଧି କ୍ରମରେ ସୃଷ୍ଟି ହେଲା ।

**ମୂର୍ତ୍ତିପୂଜା:—**

ହିନ୍ଦୁ ଧର୍ମର ପରମ୍ପରା ଅନୁସାରେ, ସୁବର୍ଣ୍ଣ, ବାଲୁକା, ମାଟି, ସୁନା, ରୂପା, ଦାରୁ, ଲୁହା, ଶଙ୍ଖ ଆଦି ବସ୍ତୁରେ ଦେବତାଙ୍କର ମୂର୍ତ୍ତି ନିର୍ମାଣର ବିଧି ଥିଲା (୨୨୮) ।

---

୨୨୮ । ପଣ୍ଡିତ ସର୍ବସ୍ୱଂ—ପୃ ୧୪—

ସୌବର୍ଣ୍ଣୀ ରାଜତୀ ବାପି ମାର୍ଦ୍ଦୀମଣିମୟୀ ତଥା
ସୀତା ଦାରୁମୟୀବାପି ଲୋହଶଂଖଂମୟୀ ନବାଂ

ଶୁକ୍ରନୀତଃ—ପୃ ୨୪୮ (ଚୌଖମ୍ବା)—

ପ୍ରତିମା ସୈକତୀ ପୈଷ୍ଟୀ ଲେଖ୍ୟା ଲେପ ଚ ମୃଣ୍ମୟୀ
ବାର୍କ୍ଷୀ ପାଷାଣ ଧାତୁସ୍ତଥାସ୍ଥି ରା ଜ୍ଞେୟା ଯଥୋତ୍ତରା ।

ବରାହପୁରାଣ—ବଙ୍ଗେଳୀ—୨ୟ ଭାଗ—୧୮୦-୧୮୧/୪-୫—ପୃ ୪୦୧—

କଥଂ ତଷ୍ଟସି କାଷ୍ଟେଷୁଶୈଳ ମୃଣ୍ମୟଜେଷୁ ଚ ।

ଶାଳଗ୍ରାମ ପର ପଥରଖଣ୍ଡେ, ଶିବଲିଙ୍ଗ ଭଳି ପଥରଖଣ୍ଡେ, ବୃକ୍ଷର ଭଳି କୁଣ୍ଢଖଣ୍ଡେ ବା ଗୁଆଟେ; ଏହିପରି କିଛି ଗୋଟାଏ ପ୍ରତୀକ ରଖି ତାଙ୍କଠାରେ ଭଗବାନଙ୍କୁ ବା ଆରାଧ୍ୟଙ୍କୁ ଆରୋପ କରି ଯେଉଁ ପୂଜାବିଧି ଚାଲୁଥିଲା, ତାହା ସାଧାରଣ ଲୋକଙ୍କର ସେପରି ହୃଦ୍‌ବୋଧ ନ ହେବାରୁ ସେମାନଙ୍କର ବିଶ୍ୱାସ ଉଦ୍ରେକ (୧୨୯) ଲାଗି ପ୍ରତିମାପୂଜାର ପ୍ରଚଳନ ହେଲା । ସେହି ପ୍ରତିମାଗୁଡ଼ିକ ସୁନା, ରୂପା, ମାଟିରେ ନିର୍ମିତ ହେବା ସଙ୍ଗେ ସଙ୍ଗେ କାଠରେ ମଧ୍ୟ ନିର୍ମିତ ହେଉଥିଲା । ହିନ୍ଦୁମାନଙ୍କର ଏପରି କାଠମୂର୍ତ୍ତି ନିର୍ମାଣର ପରମ୍ପରା ଥିବା ଭଳି ଜୈନ, ବୌଦ୍ଧ, ଆଦିମ ଅଧିବାସୀ, ଧର୍ମମାନଙ୍କର ଦାରୁମୂର୍ତ୍ତିର ପୂଜା ମଧ୍ୟ ପ୍ରଚଳିତ ଥିଲା । ତା' ଛଡ଼ା ଚୀନ, ମିଶର ପ୍ରଭୃତି ପ୍ରାଚୀନ ସଭ୍ୟ ଦେଶମାନଙ୍କରେ ମଧ୍ୟ କାଷ୍ଠମୂର୍ତ୍ତିର ପ୍ରଚଳନ ଥିଲା । ସେହି ଦୃଷ୍ଟିରୁ କିଏ କାହାଠାରୁ ଏହା ଶିଖିଥିବାର ପ୍ରଶ୍ନ ଉଠୁନାହିଁ ।

ସ୍କନ୍ଦପୁରାଣର ପୁରୁଷୋତ୍ତମ ମାହାତ୍ମ୍ୟରୁ ଜଣାଯାଏ ଯେ ସମୁଦ୍ରରେ ଯେଉଁ ଅପୌରୁଷେୟ ଦାରୁ ଭାସୁଥିଲା, ସେହି ନ୍ୟଗ୍ରୋଧ ବୃକ୍ଷରୁ ଆଣି ଜଗନ୍ନାଥଙ୍କ ଚତୁର୍ଦ୍ଧାମୂର୍ତ୍ତି ନିର୍ମିତ ହେଲା । ଅବଶ୍ୟ ସେ ନ୍ୟଗ୍ରୋଧ ବଦଳରେ ଆଜିକାଲି ନିମ୍ବ ବୃକ୍ଷରେ ମୂର୍ତ୍ତି ନିର୍ମାଣ ହେଉଛି । ସେ ଯାହାହେଉ, ଉଭୟେ ବିଷ୍ଣୁ ବୃକ୍ଷ । ତେଣୁ ଏଥିରେ ବିଷ୍ଣୁ ମୂର୍ତ୍ତି ନିର୍ମାଣ କରାଯିବା ସମୀଚୀନ । ଏତେଣେ କୁହାଯାଇଛି ନ୍ୟଗ୍ରୋଧ ବୃକ୍ଷରୁ ଜଗନ୍ନାଥ ମୂର୍ତ୍ତି ନିର୍ମିତ ହେଲେ, ତେଣେ ସେହି ପୁରୁଷୋତ୍ତମ ମାହାତ୍ମ୍ୟରେ ବର୍ଣ୍ଣିତ ହୋଇଛି, ଏହି ପୁରୁଷୋତ୍ତମ କ୍ଷେତ୍ରରେ ଥିବା କଳ୍ପବଟ ହେଉଛି ବିଷ୍ଣୁ ବୃକ୍ଷ । ଏହାକୁ ପୂଜା କରିବା ଯାହା ବିଷ୍ଣୁଙ୍କୁ ପୂଜା (୧୩୦) କରିବା ସେୟା । ତେଣୁ ଏକଥା କହିହେବ ଯେ, ପ୍ରଥମେ ବୃକ୍ଷପୂଜା ହେଉଥିଲା, ତା'ପରେ ସେହି ବୃକ୍ଷ ମରିଯିବାରୁ ବା ଅନ୍ୟ କୌଣସି କାରଣରୁ ସେହି ବୃକ୍ଷର କାଷ୍ଠରେ ମୂର୍ତ୍ତି ଗଢ଼ାଯାଇ ପୂଜିତ ହେଲା । ଅତଏବ ଦାରୁପୂଜାର ମୂଳ ହେଉଛି ବୃକ୍ଷପୂଜା । ଏହି ବୃକ୍ଷପୂଜା ମଧ୍ୟ ଭାରତରେ ଅତି ପ୍ରାଚୀନ କାଳରୁ

---

ତାମ୍ରେ କାଂସ୍ୟେ ଚ ରୌପ୍ୟେ ଚ ତ୍ୱଷ୍ଟପି ସ୍ଥାପିତଃ କଥଂ ।।
ସୌବର୍ଣ୍ଣେଷୁ ଚ ସର୍ବେଷୁ ତ୍ୱଷ୍ଟପି ସ୍ଥାପିତଃ କଥମ୍ ।।
(ପୃଥିବୀମାତା ବରାହ (ବିଷ୍ଣୁ)ଙ୍କୁ ଏପରି ପ୍ରଶ୍ନ କରୁଛନ୍ତି)

୧୨୯ । The Land of Vishnu—ପୃ ୪୦—Ref No 34—

ଶିବମାତ୍ମନି ପଶ୍ୟନ୍ତି ପ୍ରତୀକେଷୁ ନ ଯୋଗିନଃ
ଅଜ୍ଞାନାଂ ଭାବନାର୍ଥାୟ ପ୍ରତିମାଃ ପରିକଳ୍ପିତାଃ ।

୧୩୦ । ସ୍କନ୍ଦ. ପୁ: ମା: —୨୮।୫୬—"ନ୍ୟଗ୍ରୋଧମୂଳେ···

ହୋଇଆସୁଛୁ । ବୌଦ୍ଧ, ଜୈନ ଧର୍ମମାନଙ୍କରେ ବୃକ୍ଷପୂଜାର ପରମ୍ପରା ଅନେକ ପ୍ରାଚୀନ ଦିନରୁ ଚାଲିଆସୁଛୁ (୨୩୧) । ସେଗୁଡ଼ିକ ମଧ୍ୟରେ ନ୍ୟଗ୍ରୋଧ, ଜମ୍ବୁ, ପିପ୍ପଳ, ପ୍ଲକ୍ଷ, ଆଦି ପ୍ରଧାନ (୨୩୨) । ବୃକ୍ଷରେ ଯୁଦ୍ଧ ମାତ୍ର ଶାଖା ଥିଲେ ହିନ୍ଦୁମାନେ ତାଙ୍କୁ ଚତୁର୍ଭୁଜ ବିଷ୍ଣୁ ବୋଲି ଭାବି ଆରାଧନା କରୁଥିଲେ (୨୩୩) । ସେହି ବୃକ୍ଷରୁ କ୍ରମେ ସେମାନେ ଦାରୁମୂର୍ତ୍ତିରେ ପରିଣତ କରି ପୁରୁଷୋତ୍ତମ—ବିଷ୍ଣୁଭାବରେ ପୂଜା କରିବା ଅସୌକ୍ତିକ ନୁହେଁ । ଏଣୁ ଦାରୁମୂର୍ତ୍ତିର ପୂଜା ହିନ୍ଦୁସର୍ବସ୍ୱ ବୋଲି କୁହାଯାଇପାରେ ।

**ଚତୁର୍ଦ୍ଧା ଦାରୁମୂର୍ତ୍ତି—**

ବର୍ତ୍ତମାନ ଦେଖିବାର କଥା ଯେ ପୁରୁଷୋତ୍ତମ କ୍ଷେତ୍ରରେ ପୁରୁଷୋତ୍ତମଙ୍କର ପୂଜା ଅନ୍ତତଃ ଖ୍ରୀ:ଅ: ପ୍ରଥମଶତକର କତିପୟ ପୂର୍ବରୁ ଚାଲିଆସୁଛୁ । ବ୍ରହ୍ମପୁରାଣ, ସ୍କନ୍ଦପୁରାଣ ପ୍ରଭୃତି ବେଳକୁ ଚତୁର୍ଦ୍ଧାମୂର୍ତ୍ତି ପୂଜାର ପ୍ରମାଣ ମିଳୁଅଛି । କିନ୍ତୁ ପଦ୍ମପୁରାଣ (ପାତାଳଖଣ୍ଡ) ବେଳକୁ ତଥା ମତ୍ସ୍ୟପୁରାଣ ସମୟରେ ପୁରୁଷୋତ୍ତମଙ୍କ ପୂଜା ବା ନୀଳାଖ୍ୟଦେବଙ୍କର ପୂଜା ହେଉଥିବା କଥାର ଉଲ୍ଲେଖ ଥିଲେ ମଧ୍ୟ ଚତୁର୍ଦ୍ଧାମୂର୍ତ୍ତିଙ୍କ ବିଷୟରେ କିଛି ପ୍ରମାଣ ମିଳୁନାହିଁ । ଏଥିରୁ ଜଣାପଡ଼ୁଛି, ପ୍ରଥମେ ପ୍ରସ୍ତର ମୂର୍ତ୍ତି ଲକ୍ଷ୍ମୀନାରାୟଣ ପୂଜା ଏହି କ୍ଷେତ୍ରରେ ହେଉଥିଲେ । ତାହାପରେ ନାରାୟଣଙ୍କୁ ମହାବିଷ୍ଣୁ ରୂପେ କାଷ୍ଠମୂର୍ତ୍ତିରେ ପରିଣତ କରାଯାଇ ପୁରୁଷୋତ୍ତମ ପୂଜା ହେଲା । ସେତେବେଳେ ପଥର ମୂର୍ତ୍ତି ଲକ୍ଷ୍ମୀଙ୍କୁ ଅନ୍ୟତ୍ର ନିଆଯାଇ ବିଷ୍ଣୁଶକ୍ତି ରୂପେ ପୁଣି ଏକ ଅନୁରୂପ ଶ୍ରେଷ୍ଠ କାଷ୍ଠମୂର୍ତ୍ତି (ସୁଭଦ୍ରା) ତାଙ୍କ ସ୍ଥାନରେ ପୂଜିତ ହେଲେ । କ୍ରମେ ଅନନ୍ତବାସୁଦେବ ପୂଜାର ପ୍ରଭାବରେ ଅନନ୍ତ ବଳଭଦ୍ର ପୂଜିତ (୨୩୪) ହେଲେ । ତାହା ପରେ ବିଷ୍ଣୁଙ୍କର କ୍ରିୟାଶକ୍ତି ଭାବରେ ସୁଦର୍ଶନ ଏକ କାଷ୍ଠପ୍ରତୀକ ଭାବରେ ଉପସ୍ଥିତ ହେଲେ ।

ପୂଜାପଦ୍ଧତିରୁ ଦେଖାଯାଏ ଯେ, ଜଗନ୍ନାଥ ମନ୍ଦିରରେ ତିନିଜଣ ପଣ୍ଡା ତିନି ଠାକୁରଙ୍କୁ ପୂଜାକରନ୍ତି । ସୁଦର୍ଶନଙ୍କ ପାଇଁ ସ୍ୱତନ୍ତ୍ର ପଣ୍ଡା ନାହାନ୍ତି । ଜଗନ୍ନାଥଙ୍କ ପଣ୍ଡା

୨୩୧ । The land of Vishnu—ପୃ ୫—୭

୨୩୨ । The land of Vishnu ପୃ ୫—୭

୨୩୩ । ସ୍କନ୍ଦ ପୁ : ମା:—୩।୯-୧୦

୨୩୪ । The land of Vishnu—ପୃ ୧୦—୧୮ ।

ଓଡ଼ିଶାର ଧାର୍ମିକ ପରମ୍ପରାକୁ ଅନୁଧ୍ୟାନ କଲେ ଏଭଳି ବିଷୟର ସ୍ୱତଃ ମନକୁ ଆସିଥାଏ । ।

ସୁଦର୍ଶନଙ୍କୁ ପୂଜା କରନ୍ତୁ । ରଥଯାତ୍ରା ସମୟରେ ଦେଖାଯାଏ ଯେ ସୁଦର୍ଶନଙ୍କର ସ୍ୱତନ୍ତ୍ର ରଥ ନାହିଁ । ତାଙ୍କୁ ସୁଭଦ୍ରାଙ୍କ ରଥରେ ନେଇଥାଯାଏ । ଏହାର କାରଣ ହେଉଛି, ସୁଭଦ୍ରା ଓ ସୁଦର୍ଶନ ଉଭୟେ ଯଥାକ୍ରମେ ଜଗନ୍ନାଥଙ୍କର ଇଚ୍ଛା ଓ କ୍ରିୟା ଶକ୍ତି । ତଥାପି ଏଥିରେ ପ୍ରଶ୍ନ ପୁଣି ଉଠୁଛି, ଯଦି ଶକ୍ତି ବୋଲି ସୁଦର୍ଶନଙ୍କୁ ସୁଭଦ୍ରାଙ୍କ ରଥରେ ନିଆଗଲା, ତେବେ ମନ୍ଦିରରେ ପୂଜା କଲାବେଳେ ତାଙ୍କୁ ସୁଭଦ୍ରାଙ୍କ ପଣ୍ଡା ଦେବୀ ସୂକ୍ତରେ ପୂଜା ନକରି ଜଗନ୍ନାଥଙ୍କ ପଣ୍ଡା କାହିଁକି ପୂଜା କରନ୍ତି (୧୩୫) ? ତା'ଛଡ଼ା ସୁଦର୍ଶନଙ୍କ ପୂଜା କାହିଁକି ସଂକ୍ଷିପ୍ତ ଭାବରେ କରି ସାରଦିଆଯାଏ ? ଜଣାପଡ଼େ ସେତେ ଅବା ସେ ଜଣେ ଅଧିକା । ଉତ୍କଳଖଣ୍ଡ ସ୍କନ୍ଦପୁରାଣରେ ଚତୁର୍ଦ୍ଧାମୂର୍ତ୍ତି କ୍ରମରେ ସୁଦର୍ଶନଙ୍କର ବର୍ଣ୍ଣନା (୧୩୬) ଥିଲେ ମଧ୍ୟ ତାହାଠାରୁ ପୁରାତନ ବ୍ରହ୍ମପୁରାଣରେ କେବଳ ତିନିମୂର୍ତ୍ତିଙ୍କର ହିଁ ବର୍ଣ୍ଣନା ଅଛି (୧୩୭) । ଏଥିରୁ ଅନୁମିତ ହୁଏ ଯେ ବ୍ରହ୍ମପୁରାଣର ସମୟରେ ଚତୁର୍ଦ୍ଧାମୂର୍ତ୍ତି ନଥିଲେ ବା ସୁଦର୍ଶନ ନଥିଲେ । ପରେ ତାଙ୍କୁ ନିର୍ମାଣ କରାଯାଇ ଚତୁର୍ଦ୍ଧାମୂର୍ତ୍ତି ଭିତରେ ଅନ୍ତର୍ଭୁକ୍ତ କରାଗଲା । ଜଗନ୍ନାଥଙ୍କର ଏହି ଚତୁର୍ଦ୍ଧା ରୂପ ପୁରୁଷୋତ୍ତମ କ୍ଷେତ୍ରରେ ପୂଜିତ ହେବାପରେ ସମାଲୋଚକମାନେ ତାଙ୍କୁ ଚତୁର୍ବ୍ୟୂହ ବା (ପଞ୍ଚବ୍ୟୂହ) ଉପାସନାର କ୍ରମପରିଣତି ବୋଲି ସ୍ୱୀକାର କଲେ (୧୩୮) । ମାତ୍ର ଚତୁର୍ବ୍ୟୂହରେ ଥିବା ବାସୁଦେବ, ସଙ୍କର୍ଷଣ ତ ଜଗନ୍ନାଥ ଓ ବଳଭଦ୍ରଙ୍କ ସହିତ ମିଳିଗଲା । କିନ୍ତୁ ପ୍ରଦ୍ୟୁମ୍ନଙ୍କୁ ସୁଭଦ୍ରାଙ୍କ ସହିତ ସମାନ ବୋଲି ଭାବିବା କିପରି ? ସେହିପରି ଅନିରୁଦ୍ଧଙ୍କ ସହିତ ସୁଦର୍ଶନଙ୍କର କ'ଣ ବା ସାମ୍ୟ ? ବ୍ରହ୍ମପୁରାଣ, ସ୍କନ୍ଦପୁରାଣାଦିରେ ସୁଭଦ୍ରାଙ୍କର ଯେଉଁ ବର୍ଣ୍ଣନା ଦିଆଯାଇଛି, ତହିଁରୁ ଜଣାଯାଉଛି ସେ ଜଣେ (୧୩୯) ସ୍ତ୍ରୀ ମୂର୍ତ୍ତି । ଅନେକ ପରେ ଅବଶ୍ୟ ପଞ୍ଚଦଶଶତାବ୍ଦୀ ବେଳକୁ ଶୂଦ୍ରମୁନି ଶାରଳାଦାସ ତାଙ୍କର ଓଡ଼ିଆ ମହାଭାରତରେ ସୁଭଦ୍ରାଙ୍କୁ ପୁରୁଷମୂର୍ତ୍ତି ଓ ବ୍ରହ୍ମାମୂର୍ତ୍ତି ଭାବରେ ଚିତ୍ରଣ କଲେ (୧୪୦) । ତାହା ତାଙ୍କର

---

୧୩୫ । C.J.R.T.O– pp, 286, (First para)

୧୩୬ । ଉତ୍କଳଖଣ୍ଡ—ସ୍କୁ: ମା: —୧୯/୭

୧୩୭ । ବ୍ରହ୍ମପୁରାଣ—୫୦/୪୮-୫୪, ୬୭/୧-୮

୧୩୮ । The Land of Vishnu-pp. 11, (Cult of Jagannath—pp. 183, cited Vaisnavism in Orissa—P. Mukherji)

୧୩୯ । ସ୍କନ୍ଦ : ପୁ: ମା:—୧୯/୧୨ ସୁଭଦ୍ରା ଗୁରୁବଦନା ବରାଭୟାଭୟଧାରିଣୀ ।
ବ୍ରହ୍ମ—୫୦/୫୩-୫୪—ଭଗିନୀଂ ସ୍ୱର୍ଣ୍ଣବର୍ଣ୍ଣାଭଂ ପଦ୍ମପତ୍ରାୟତେକ୍ଷଣାମ୍ ।
ବିଚିତ୍ର ବସ୍ତ୍ର ସଞ୍ଛନ୍ନାଂ ହାରକେୟୂର ଭୂଷିତାମ୍ ।।୫୩।।

୧୪୦ । ସା: ମ: ମୁ: ପ:—ପୃ-୩୯-ବ୍ରହ୍ମା ବୋଇଲେ ମୁଁ କନ୍ୟା ରହିଥିବି ଏକ ।
ତୁମ୍ଭେ ଗଲେ ରହି ମୁହିଁ ଲଭିବିକ ସୁଖ ।।

ମନଗଢ଼ା ନଜର ପୁଞ୍ଜକଣ ପ୍ରତଷ୍ଠ । ମାଙ୍ଗ ଜାହା ପଛରେ ସତ୍ୟତା ନାହିଁ । ତଥାପି ପରେ ଅନେକ କବି ତାଙ୍କୁ ଅନୁସରଣ କରି ସୁଭଦ୍ରାଙ୍କୁ ବ୍ରହ୍ମା ବୋଲି କହିଛନ୍ତି (୨୪୧) । ତା'ବୋଲି ସେଥିରେ ସତ୍ୟତା ଅଛି ବୋଲି କହିହେବ ନାହିଁ । ଜଗନ୍ନାଥଙ୍କୁ ବିଷ୍ଣୁ ବୋଲି ବିଗ୍ଭର କରାଯାଇ କ୍ଷେତ୍ରଟିକୁ ପୁରୁଷୋତ୍ତମ କ୍ଷେତ୍ର ବୋଲି କୁହାଯାଇଥିଲା । ସେତେବେଳେ ଅଗ୍ରଜ ବଳଭଦ୍ର ନଥିବାରୁ ବଳଭଦ୍ରକ୍ଷେତ୍ର ବା ବଳଭଦ୍ର ମନ୍ଦିର ବୋଲି କୌଣସି ପ୍ରୟୋଗ କୁତ୍ରାପି ଦୃଷ୍ଟିଗୋଚର ହେଉନାହିଁ । ପୁଣି ଯେତେବେଳେ ବୈଷ୍ଣବ ଓ ଶୈବଙ୍କ ମଧ୍ୟରେ ବିବାଦ ହୋଇ ସମାଧାନ ଭାବରେ ଭୁବନେଶ୍ୱରରେ ଲିଙ୍ଗରାଜ (ଶିବ)ଙ୍କ ଠାରେ ବିଷ୍ଣୁତ୍ୱ ଆରୋପିତ ହୋଇ ତାଙ୍କୁ ହରିହର ବୋଲି କୁହାଗଲା, ଠିକ୍ ସେତେବେଳେ ବାସୁଦେବ ମନ୍ତ୍ରରେ ପୂଜିତ ବଳଭଦ୍ରଙ୍କଠାରେ ଶିବ ଭାବ ଆରୋପିତ ହେଲା । ତାଙ୍କର ଧବଳବର୍ଣ୍ଣ ଶିବଙ୍କର ଶାନ୍ତଭାବକୁ ପ୍ରକାଶକରି ଏ ଦିଗରେ ଖୋରାକ୍ ଯୋଗାଇଲା । ବଳଭଦ୍ର ଶିବ ଭାବରେ, ଜଗନ୍ନାଥ ବିଷ୍ଣୁ ଭାବରେ ଭାବିତ ହେବାପରେ ବାକି ରହିଲେ ବ୍ରହ୍ମା । ସାରଳାଦାସ ଦେଖିଲେ, ଉତ୍କଳଖଣ୍ଡରେ ଜଗନ୍ନାଥଙ୍କୁ ବିଷ୍ଣୁ ଓ ବଳଭଦ୍ରଙ୍କୁ ଶିବ ଭାବରେ ବର୍ଣ୍ଣନା କରିଛି (୨୪୨) । ତେଣୁ ତାଙ୍କ ସହିତ ସୁଭଦ୍ରାଙ୍କୁ ବ୍ରହ୍ମା ଭାବରେ ଯୋଡ଼ି ବ୍ରହ୍ମା, ବିଷ୍ଣୁ ମହେଶ୍ୱରଙ୍କର ଆରାଧନାର ପୀଠ ହେଉଛି ପୁରୁଷୋତ୍ତମ କ୍ଷେତ୍ର; ଏହା ସେ ଓଡ଼ିଆ ମହାଭାରତରେ ପ୍ରକାଶ କଲେ । ବାସ୍ତବିକ, କବି ଥିଲେ ଭାରି ପ୍ରତିଭାଶାଳୀ ।

ଅନ୍ୟଏକ ବିଗ୍ଭରଧାରାରେ ସୁଭଦ୍ରାଙ୍କୁ ଦୁର୍ଗା ବୋଲି କଳ୍ପନା କରାଗଲା । ସେ ଶ୍ରୀ (ଲକ୍ଷ୍ମୀ) (୨୪୩) ରୂପରେ ଯେପରି ବିଷ୍ଣୁ ଜଗନ୍ନାଥଙ୍କର ସ୍ତ୍ରୀ ବୋଲି କଳ୍ପିତ ହେଲେ, ସେପରି ଭୁବନେଶ୍ୱରୀ (ଦୁର୍ଗା) ଭାବରେ ଭୁବନେଶ୍ୱର ଶିବସ୍ୱରୂପ ବଳଭଦ୍ରଙ୍କର ଶକ୍ତି ରୂପରେ ମଧ୍ୟ ପରିକଳ୍ପିତ ହେଲେ । ଭୁବନେଶ୍ୱରୀ ମନ୍ତ୍ରରେ ତାଙ୍କର ପୂଜା ହେଉଛି ଏ ପରିକଳ୍ପନାର ପ୍ରମାଣ । ପୂର୍ବେ ସୁଭଦ୍ରାଙ୍କୁ ଦେବୀସୂକ୍ତରେ ବୈଦିକ

---

୨୪୧ । ପ୍ରେମଭକ୍ତି ବ୍ରହ୍ମଗୀତା—୫/୧୦୭ ମଧ୍ୟେ ସୁଭଦ୍ରା ବ୍ରହ୍ମାରୂପ, ରାଧାଙ୍କ ଅଙ୍ଗେ ତହିଁ ଗୋପ୍ୟ ।।

୨୪୨ । ସ୍କନ୍ଦ· ପୁ. ମା.—୫/୨୧,୧୯—

"ନାରାୟଣ ନମସ୍ତେଽସ୍ତୁ ପରମାତ୍ମାନ୍ ପରାତ୍ପର ।"'୧ ।।

ନାରାୟଣୋଽହ ତ୍ୱନ୍ନାମ··· । ୨୯ ।। ଇତ୍ୟାଦି । ଜଗନ୍ନାଥଙ୍କ ପାଇଁ)

ସ୍କନ୍ଦ. ପୁ. ମା.—୨୭/୪୫—

"ନମଃ କାଳାଗ୍ନିରୁଦ୍ରାୟ ମହାରୁଦ୍ରାୟ ତେ ନମଃ ।"(ବଳଭଦ୍ରଙ୍କ ପାଇଁ)

୨୪୩ । ସ୍କନ୍ଦ· ପୁ·ମା· —୧୯/୧୧—

ଲକ୍ଷ୍ମୀ, ପ୍ରାଦୁର୍ବଭୂବେସ୍ୟଂ ପର ଚୈତନ୍ୟ ରୂପୀଣୀ ।

ଶାଧରେ ଅର୍ଚ୍ଚନା କରାଯାଉଥିଲା । ପରଯୁଗରେ ଶାକ୍ତଧର୍ମର ପ୍ରଭାବହେତୁ ତଥା ଶିବରୂପୀ ବଳଭଦ୍ରଙ୍କର ଶକ୍ତିରୂପୀ ବୋଲି ଅବଧାରଣା ହେବାପରେ ତାଙ୍କୁ ଦେବୀସୂକ୍ତ ସହିତ ବିମଳାଙ୍କ ଭଳି ଭୁବନେଶ୍ୱରୀ ମନ୍ତ୍ରରେ ଆରାଧନା କରାଗଲା । ଫଳରେ ଶ୍ରୀମନ୍ଦିର ବେଢ଼ାରେ ଥିବା ଲକ୍ଷ୍ମୀ ଓ ବିମଳା ଉଭୟଙ୍କର ପ୍ରତିନିଧିତ୍ୱ କଲେ ରତ୍ନସିଂହାସନ ଉପରେ ସୁଭଦ୍ରା । ଧାତବ ମୂର୍ତ୍ତି ଭୂଦେବୀ ଓ ଲକ୍ଷ୍ମୀ, ଯାହା ରତ୍ନସିଂହାସନରେ ପୂଜିତ ହେଉଛନ୍ତି; ସେସବୁ ବହୁ ପଛରେ ସ୍ଥାପିତ ହୋଇଛନ୍ତି ।

ସୁଭଦ୍ରାଙ୍କୁ ଏପରି ଚିନ୍ତା କରାଯିବା ପରେ ସମାଜରେ ଥିବା ବୈଷ୍ଣବମାନେ ଲକ୍ଷ୍ମୀ ବୋଲି ମାନିଲେ, ଶୈବମାନେ ଦୁର୍ଗାବୋଲି ଧ୍ୟାନ କଲେ, ରକ୍ଷଣଶୀଳ ପ୍ରାଚୀନପନ୍ଥୀ ହିନ୍ଦୁମାନେ ମହାଭାରତର ଆଶ୍ରିତ ହୋଇ ତାଙ୍କୁ କୃଷ୍ଣ ବଳରାମଙ୍କର ଭଉଣୀ (୧୪୪) ଭାବରେ ଆରାଧନା କଲେ । ସ୍କନ୍ଦପୁରାଣ (ପୁ.ମା.) ରଚନା ବେଳକୁ (ଅଷ୍ଟମଶତକ) ଏହି ରୂପରେ ସୁଭଦ୍ରା କଳ୍ପିତ ହୋଇସାରିଥିଲେ । ବଳଭଦ୍ରଙ୍କଠାରେ ଶିବତ୍ୱ ଆରୋପିତ ହୋଇସାରିଥିଲା । ବିଷ୍ଣୁ ତ ପୁରୁଷୋତ୍ତମ ଜଗନ୍ନାଥ ଭାବରେ ବହୁ ଆଗରୁ ପୂଜା ପାଇ-ଆସୁଥିଲେ । ଏହାଫଳରେ ସମାଜର ପ୍ରତ୍ୟେକ ଲୋକପାଇଁ ଆରାଧନାର କ୍ଷେତ୍ର ହୋଇଉଠିଲା ପରମ ପାବନ ପୁରୁଷୋତ୍ତମ କ୍ଷେତ୍ର । ଆଉ ଦେଶରେ ଶୈବ, ବୈଷ୍ଣବ ଓ ଶାକ୍ତଙ୍କ ମଧ୍ୟରେ କଳହର କାରଣ ରହିଲା ନାହିଁ । ସବ ଧର୍ମ ସମନ୍ୱୟପୀଠ ହେଲା ଶ୍ରୀକ୍ଷେତ୍ର ବା ଲକ୍ଷ୍ମୀ-ନାରାୟଣଙ୍କର କ୍ଷେତ୍ର ପୁରୁଷୋତ୍ତମ କ୍ଷେତ୍ର ।

**ନୃସିଂହ-ନୀଳମାଧବ—**

ପ୍ରଥମେ ପୁରୁଷୋତ୍ତମ କ୍ଷେତ୍ରରେ ଦୁଇଟି ବିଷ୍ଣୁମୂର୍ତ୍ତି ପୂଜିତ ହେଉଥିଲେ । ଏହାର ସୂଚନା ପୁରାଣମାନଙ୍କରୁ ମିଳୁଅଛି । ତନ୍ମଧ୍ୟରୁ ଗୋଟିଏ ହେଉଛି ନୃସିଂହ ମୂର୍ତ୍ତି, ଅନ୍ୟଟି ନୀଳ (ମାଧବ) ନାମକ ମୂର୍ତ୍ତି । ଉଭୟ ଏକା ବିଷ୍ଣୁଙ୍କର ଦୁଇଟି ସ୍ୱରୂପ । ନୀଳାଖ୍ୟ ମୂର୍ତ୍ତି ବା ନୀଳମାଧବ ମୂର୍ତ୍ତି ଲକ୍ଷ୍ମୀଙ୍କ ସହିତ ପୂଜିତ ହେଉଥିଲେ (୧୪୫) । ନୃସିଂହ ଥିଲେ ବିଷ୍ଣୁଙ୍କର

---

୧୪୪ । ସ୍କନ୍ଦ. ପୁ. ମା.—୧୯/୧୧, ୧୪—

ଇୟଂ କୃଷ୍ଣବତାରେ ହି ରୋହିଣୀ ଗର୍ଭ ସମ୍ଭବା ।
ବଳଭଦ୍ରକୃତ କାନ୍ତା ବଳରୂପସ୍ୟ ଚନ୍ଦ୍ରନାତ୍ ।। ୧୧-୧୨ ।
ଭଗିନୀ ବଳଦେବସ୍ୟ ଇତ୍ୟେଷା ପୌରାଣିକୀ କଥା ।।୧୪ ।।

୧୪୫ । ସ୍କନ୍ଦ. ପୁ. ମା.—୨/୩୧—

ପାର୍ଶ୍ୱସ୍ଥାଂ ବଲ୍ଲଭୀହୟାଂ ନେତ୍ରାନ୍ତେନାବଲୋକୟନ୍ ଶ୍ରିୟମ୍ ।
ସ୍କନ୍ଦ· ପୁ· ମା·—୩୯/୫୯—
ଲକ୍ଷ୍ମୀମାଲିଙ୍ଗ୍ୟ ସବ୍ୟସ୍ଥାଂ କ୍ରୋଡ଼ସ୍ଥାଂ ବାମପାଣିନା ।।

ଏକ ଉଗ୍ରମୂର୍ତ୍ତି । କିନ୍ତୁ ପୁରୁଷୋତ୍ତମ ନୀଳମାଧବ ଥିଲେ ଏକ ପ୍ରେମର ପ୍ରତୀକ ସୌମ୍ୟ ମୂର୍ତ୍ତି । ଅବଶ୍ୟ ପରେ ନୃସିଂହଙ୍କୁ ମଧ୍ୟ ଲକ୍ଷ୍ମୀଙ୍କ ସହିତ ଅନୁରୂପ ଭାବରେ ଯୋଡ଼ି ପୁରୁଷୋତ୍ତମଙ୍କ ଭଳି ଏକ ସୌମ୍ୟ ମୂର୍ତ୍ତିରେ ପରିଣତ କରିଦିଆ ଯାଇଥିଲା । ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ବେଢ଼ାରେ ଥିବା ଲକ୍ଷ୍ମୀ ନୃସିଂହ (ମନ୍ଦିର) ତା'ର ଏକ ମୂକସାକ୍ଷୀ । ସେ ଯାହାହେଉ, ପରଂପରା କହେ ଯେ ଜଣେ ହିନ୍ଦୁରାଜା (ଇନ୍ଦ୍ରଦ୍ୟୁମ୍ନ) ସେ ନୀଳମାଧବଙ୍କୁ ଶବରମାନଙ୍କଠାରୁ ଉଦ୍ଧାର କରିବାକୁ ଆସି ଦେଖିଲେ ନୀଳମାଧବ ନାହାନ୍ତି । ଅର୍ଥାତ୍ ମଝିରେ ଏକ ସମୟରେ ସେ କ୍ଷେତ୍ରରେ ନୀଳମାଧବ ନଥିଲେ । ଥିଲେ କେବଳ ନୃସିଂହ । କିନ୍ତୁ ନୀଳମାଧବ ବିଷ୍ଣୁଙ୍କର ଅନ୍ତର୍ହିତ ହେବାର କାହାଣୀଟି ଖାଲି ବଞ୍ଚିରହିଥିଲା ସମାଜରେ । ତାପରେ ହୁଏତ ପ୍ରଥମେ ସେହି ଲକ୍ଷ୍ମୀନାରାୟଣଙ୍କ ସ୍ଥାନରେ ପୂଜା ପାଇଥିବେ ବିଷ୍ଣୁ ବୃକ୍ଷ (ନ୍ୟଗ୍ରୋଧ) ରେ ନିର୍ମିତ ପୁରୁଷୋତ୍ତମ । ପାଖରେ ଥିବେ ଲକ୍ଷ୍ମୀ । କାଷ୍ଠମୂର୍ତ୍ତି ପୁରୁଷୋତ୍ତମଙ୍କ ସହିତ ଶକ୍ତି ଲକ୍ଷ୍ମୀଙ୍କର ପ୍ରସ୍ତର ମୂର୍ତ୍ତି ସୁହାଦୃଶ୍ୟ ରକ୍ଷାକରି ପାରୁ ନ ଥିବ । ଏଣେ ମହାଭାରତର ପ୍ରଭାବରେ ବଳଭଦ୍ର ଜଗନ୍ନାଥଙ୍କର ଏକ ଅନୁରୂପ ମୂର୍ତ୍ତି ଭାବରେ ସ୍ଥାପିତ ହୋଇଥିବେ । ବଡ଼ ଭାଇ ବଳଭଦ୍ରଙ୍କ ପାଖରେ ଲକ୍ଷ୍ମୀ ବସିବାରେ ଅସୁବିଧା ସୃଷ୍ଟି ହୋଇଥିବ । ତେଣୁ ଲକ୍ଷ୍ମୀଙ୍କୁ ଅନ୍ୟାନ୍ୟ ସ୍ଥାନକୁ ନେଇ ସେ ସ୍ଥାନରେ ଏକ ଅନୁରୂପ କାଷ୍ଠପ୍ରତିମା ପୂଜା କରାଯାଇଥିବ । ଯାହାଙ୍କୁ ସୁଭଦ୍ରା ଓ ଲକ୍ଷ୍ମୀସ୍ୱରୂପା ବୋଲି ସ୍କନ୍ଦ-ପୁରାଣରେ ବର୍ଣ୍ଣନା କରାଯାଇଛି । ତଥାପି ଲକ୍ଷ୍ମୀ ଭାବରେ ଚିନ୍ତା କରିବା ତାଙ୍କ ପାଇଁ ଅସୁବିଧାର କାରଣ ହୋଇଥିବ । ଯେହେତୁ ପାଖରେ ରହିଲେ ପତ୍ୟଗ୍ରଜ (ଦେଢ଼ଶୁର) ବଳଭଦ୍ର । ତେଣୁ ଏକ ସମାଧାନ ଲାଗି ତାଙ୍କୁ ଦୁର୍ଗାଭାବରେ ମଧ୍ୟ କଳ୍ପନା କରାଗଲା ଓ ଶିବରୂପୀ ବଳଭଦ୍ରଙ୍କର ମଧ୍ୟ ଶକ୍ତି ବୋଲି ଘୋଷଣା କରାଗଲା । ଏଣିକି ଆଉ ସୁଭଦ୍ରାଙ୍କର ସେଠାରେ ବସିବାରେ, ଅସୁବିଧା ନାହିଁ । ତା'ଛଡ଼ା ତାଙ୍କ ନାମ ସୁଭଦ୍ରା ବୋଲି ଦେଇ ଏକ ଅର୍ଥରେ ସେ ମଙ୍ଗଳପ୍ରଦାୟିନୀ ଦେବୀ ପ୍ରକୃତିରୂପିଣୀ ବୋଲି ଗୃହୀତ ହେଲେ । ଯେହେତୁ ବିଷ୍ଣୁ ପ୍ରତିମା (ନୀଳ ମାଧବଙ୍କର)ଙ୍କର ପ୍ରତିନିଧି ଭାବରେ ଯେଉଁ ଜଗନ୍ନାଥ ପୁରୁଷୋତ୍ତମଙ୍କୁ ନିର୍ମାଣ କରାଗଲା, ତାଙ୍କୁ ଦାରୁବ୍ରହ୍ମ, ପରମ ପୁରୁଷ ଭାବରେ ଗ୍ରହଣ କରାଯାଇଥିଲା, ତେଣୁ ସୁଭଦ୍ରାଙ୍କୁ ପରିପୂରକ ଭାବେ ପ୍ରକୃତି ବୋଲି ଚିନ୍ତା କରାଗଲା । ପରେ ବଳଭଦ୍ରଙ୍କର ମୂର୍ତ୍ତି ଯୋଗ ହୋଇ ସେ ଯେତେବେଳେ ଜଗନ୍ନାଥ ଓ ବଳଭଦ୍ର ଉଭୟଙ୍କର ସ୍ତ୍ରୀ ଭାବରେ କଳ୍ପିତା ହେଲେ ତାହା ମଧ୍ୟ ଟିକିଏ ହିନ୍ଦୁ ସମାଜରେ ଅସୁବିଧା ସୃଷ୍ଟି କଲା । କାରଣ ଜଣେ ସ୍ତ୍ରୀର ଦୁଇଜଣ ସ୍ୱାମୀ ଏ ଦେଶରେ ଏକ ଅସୁନ୍ଦର କଥା । ଏଣୁ କୃଷ୍ଣ ଓ ବଳଭଦ୍ରଙ୍କୁ ଏକ ଓ ଅଭିନ୍ନ ବୋଲି ବିଗ୍ରହ କରାଗଲା (୨୪୬) । ଏହା ଫଳରେ ସବୁ ଅସୁବିଧା ସମାହିତ ହୋଇପାରିଲା ।

୨୪୬ । ସ୍କନ୍ଦ. ପୁ. ମା—୧୯/୧୦—

ବଳଭଦ୍ରଙ୍କ ବାସୁଦେବ ପୁରୁଷୋତ୍ତମଙ୍କ ସହିତ ପୂଜା କରାଯିବା ପରରେ ମହା-ଭାରତର ପ୍ରଭାବ ଯେତିକି ନାହିଁ, ତା'ଠାରୁ ଅଧିକ ଦେଖୁଛୁ ଏ ଦେଶରେ ଅନନ୍ତ ବାସୁଦେବ ମୂର୍ତ୍ତି ଉପାସନାର ପରମ୍ପରା । ଲିଙ୍ଗରାଜ ମନ୍ଦିର ବେଢ଼ାରେ ଭୁବନେଶ୍ୱରରେ ଅନନ୍ତ, ବାସୁଦେବ ଓ ସୁଭଦ୍ରାଙ୍କ ଉପାସନା ଅନେକ ପୂର୍ବରୁ ଚାଲିଛି । ତା'ଛଡ଼ା ହେଠାର ବିନ୍ଦୁସାଗର ପୋଖରୀ କୂଳରେ ପଥରକୁ ଖୋଦାଇ କରି ଅନନ୍ତ ବାସୁଦେବଙ୍କର ପୂଜା ହେଉଅଛି । ଭାରତରେ ମହାଭାରତ (୧୪୭) ସମୟରୁ ଚତୁର୍ବ୍ୟୂହ ପୂଜାର ପରମ୍ପରାରେ ବାସୁଦେବ ଓ ସଙ୍କର୍ଷଣଙ୍କର ପୂଜା ଚାଲିଛି । ଚତୁର୍ବ୍ୟୂହ ହେବା ପୂର୍ବରୁ, ପ୍ରଥମେ ଏକବ୍ୟୂହ ତା'ପରେ ଦ୍ୱିବ୍ୟୂହ, ତା'ପରେ ତ୍ରିବ୍ୟୂହ ଓ ଶେଷରେ ଚତୁର୍ବ୍ୟୂହର ଉପାସନା କରାଯାଉଥିଲା । ଏଣୁ ପ୍ରଥମେ ବାସୁଦେବଙ୍କର ପୂଜା ହେଉଥିଲା । ତାହାପରେ ବାସୁଦେବଙ୍କ ସହିତ ସଙ୍କର୍ଷଣ (ବଳଭଦ୍ର ବା ବଳରାମ) ଯୁକ୍ତ ହେଲେ । ମହାଭାରତ ଯୁଗରୁ ତଥା ଖ୍ରୀ: ପୂ: ପଞ୍ଚମ ଶତାବ୍ଦୀ ବେଳକୁ ଭାରତରେ ବାସୁଦେବପୂଜା ଓ ତା' ପରେ ପରେ ସଙ୍କର୍ଷଣଙ୍କର ପୂଜା ବହୁଳ ଭାବରେ ଚାଲିଥିବାର ଅନେକ ପ୍ରମାଣ (୧୪୮) ରହିଛି । ରାଜପୁତାନାର ଘୋସୁଣ୍ଡିରୁ ମିଳିଥିବା ଦ୍ୱିତୀୟ ଶତାବ୍ଦୀର ଏକ ଅଭିଲେଖରୁ ଜଣାଯାଏ ଯେ ସେତେବେଳକୁ ବାସୁଦେବଙ୍କ ପୂଜା ଖୁବ୍ ଜୋର୍‌ସୋର୍‌ରେ ଲୋକପ୍ରିୟ ହୋଇଯାଇଥିଲା । ବେଶନଗରରୁ ଉପଲବ୍ଧ ହେଲି ଓ ଡୋରସ୍‌ଙ୍କର ଅଭିଲେଖରୁ ଜଣାଯାଏ ଖ୍ରୀ: ପୂ: ଦ୍ୱିତୀୟ ଶତାବ୍ଦୀ ବେଳକୁ ଭାଗବତ ଧର୍ମ ଓ ବାସୁଦେବ ସଙ୍କର୍ଷଣଙ୍କର ପୂଜା ଦୃଢ଼ଭାବରେ ଆଗେଇ ଚାଲିଛି (୧୪୯) । ବୌଦ୍ଧାୟନଙ୍କ ଗୃହ୍ୟସୂତ୍ର ଓ ପାଣିନିଙ୍କ ଅଷ୍ଟାଧ୍ୟାୟୀରୁ ଜଣାଯାଏ, ଯଥାକ୍ରମେ ପ୍ରାୟ ଖ୍ରୀ: ପୂ: ୬ଷ୍ଠ ଓ ୫ମ

---

ନ ଭେଦୋଽସ୍ତୀହ କୋ ବପ୍ରାଃ କୃଷ୍ଣସ୍ୟ ଚ ବଳସ୍ୟ ଚ ।

ସ୍କନ୍ଦ· ପୁ. ମା.—୧୭/୪୮-୫୦—

ଯୋ ବୈ କୃଷ୍ଣଃ ସ ବୈ ରାମୋ ଯୋ ରାମଃ କୃଷ୍ଣ ଏବ ସ । ୫୦ ।।

ଯୁବୟୋରନ୍ତରଂ ନାସ୍ତି ପ୍ରସୀଦ ତ୍ୱଂ ଜଗନ୍ମୟ । ୫୧ ।।

୧୪୭ । ମ· ଭା:—୧୨/୩୩୬,୫୩—

ଏକ ବ୍ୟୂହ ବଭାଗୋ ବା କ୍ୱଚିଦ୍ ଦ୍ୱିବ୍ୟୂହସଂଜ୍ଞିତ ।

ତ୍ରିବ୍ୟୂହଶ୍ଚାପି ସଂଖ୍ୟାତ ଚତୁର୍ବ୍ୟୂହଶ୍ଚ ଦୃଶ୍ୟତେ ।।

୧୪୮ । Early history of Vaisnava Sect—H. C. Roy Chaudhuri—pp. 30

୧୪୯ । ଓଡ଼ିଶା ଇତିହାସ—ଡଃ ମହତାବ—ପୃ ୪୩୬

ଶତାବ୍ଦୀଠାରୁ ବାସୁଦେବ ଏ ଦେଶରେ ପୂଜିତ ହେଉଥିଲେ (୨୫୦) । ଖ୍ରୀ: ପୂ: ୨ୟ ଶତାବ୍ଦୀ ବେଳକୁ ଅନନ୍ତ ଗୁମ୍ଫା ଆଦି ଖାରବେଳଙ୍କ ଖଣ୍ଡଗିରି, ଉଦୟଗିରିର ଗୁମ୍ଫା-ମାନଙ୍କରୁ ଅନନ୍ତମୂର୍ତ୍ତି ପୂଜିତ ହେବାର ପ୍ରମାଣ ମିଳେ । ସପ୍ତଫଣାବିଶିଷ୍ଟ ଏହି ଅନନ୍ତପୂଜା ନାଗପୂଜାକୁ ଯେତିକି ପରମ୍ପରା ଦିଏ, ସେତିକି ଦିଏ ବଳଭଦ୍ର ପୂଜାକୁ । ବଳରାମ ଶେଷ (ଅନନ୍ତ) ଅବତାର ଥିଲେ ବୋଲି ମହାଭାରତ ଓ ପୁରାଣମାନଙ୍କରୁ ପ୍ରମାଣ ମିଳେ (୨୫୧) । ଫଳରେ କାଳକ୍ରମେ ଅନନ୍ତ-ବାସୁଦେବଙ୍କର ପୂଜା ଖୁବ ଲୋକପ୍ରିୟ ହୋଇ-ଉଠିଲା । ଏହି ଦୁଇ ଦେବତାଙ୍କୁ ମିଳାଇ (ଅନନ୍ତ ବା ଶେଷ, ବାସୁଦେବ ବା ନାରାୟଣ) ଶେଷନାରାୟଣ ଭାବରେ ପଦ୍ମନାଭ ସ୍ୱାମୀ ବା ଶେଷଶାୟୀ ବିଷ୍ଣୁ ମଧ୍ୟ ଅନେକ ଯାଗାରେ ପୂଜା ପାଇଲେ । ଅତଏବ ଶେଷନାରାୟଣଙ୍କର ଦୁଇଟି ରୂପ ହେଲା; (୧) ଶେଷଶାୟୀ, (୨) ଅନନ୍ତ-ବାସୁଦେବ । ତାହାର ପ୍ରଭାବରେ ଗଢ଼ି ଉଠିଲା ଭୁବନେଶ୍ୱରରେ ପୁରୀର ଅନତି ଦୂରରେ ବିନ୍ଦୁସାଗର ତୀରରେ ଅନନ୍ତ ବାସୁଦେବ ପୂଜା । ଅବଶ୍ୟ, ବର୍ତ୍ତମାନର ବିନ୍ଦୁସାଗର କୂଳରେ ଥିବା ଅନନ୍ତବାସୁଦେବ ମନ୍ଦିର ଚନ୍ଦ୍ରାଦେବୀଙ୍କ ଦ୍ୱାରା ତ୍ରୟୋଦଶ ଶତକରେ ନିର୍ମିତ । ତାହା ତ ବହୁ ପରର କଥା; ମାତ୍ର ଏହି ପୁଷ୍କରିଣୀର କାନ୍ଥରେ ଥିବା ମୂର୍ତ୍ତିଦ୍ୱୟ ଆମର ବିଶେଷ ପ୍ରଣିଧାନର ଯୋଗ୍ୟ ।ତାହା ସୋମବଂଶୀ ରାଜତ୍ୱ ସମୟରେ ଚନ୍ଦ୍ରକେଶରୀଙ୍କ ଦ୍ୱାରା କରାଯାଇଥିଲା (୨୫୨) ।

ଗୋଟିଏ ଦିଗରେ ଓଡ଼ିଶାରେ ଅନନ୍ତବାସୁଦେବ ପୂଜାର ପ୍ରଚଳନ, ଅନ୍ୟଦିଗରେ ଲକ୍ଷ୍ମୀ-ନାରାୟଣ ପୂଜାର ଲୋକପ୍ରିୟତା; ସବୁ ଆସି ମିଶିଗଲା କୃଷ୍ଣ, ବଳଭଦ୍ର ଓ ସୁଭଦ୍ରାଙ୍କ ଉପାସନାରେ । ନାରାୟଣ ତ ବାସୁଦେବ ଭାବରେ ଅନନ୍ତ-ବାସୁଦେବ ପୂଜାରେ ଉପାସିତ ହେଉଥିଲେ । ତତ୍‌ସହିତ ଯୁକ୍ତ ହେଲେ ଲକ୍ଷ୍ମୀ ଓ ଅନନ୍ତ । ଲକ୍ଷ୍ମୀ ରୂପାନ୍ତରିତ ହେଲେ ସୁଭଦ୍ରା ଭାବରେ ଏବଂ ଅନନ୍ତ ରୂପାନ୍ତରିତ ହେଲେ ବଳଭଦ୍ର ଭାବରେ । କେତେ ପୁରାଣମାନଙ୍କରେ ସୁଭଦ୍ରାଙ୍କୁ ଲକ୍ଷ୍ମୀ ବୋଲି କହିବାରେ ଆପତ୍ତି ରହିଲାନାହିଁ ଏବଂ

---

୨୫୦ । ଦାରୁଦେବତା—ପୃ ୧୮୨; (Early history of Vaisnava Sect—(ଉଦ୍ଧୃତ) Ancient Indian historical Tradition—F. E Pergiter—pp. 237. ଡଃ ପାଢ଼ୀ ଦାରୁଦେବତାରେ ଏ ସତ୍ୟକୁ ବା ବାସୁଦେବ ପୂଜାର ପ୍ରାଚୀନତା ଗ୍ରହଣ କରି ମଧ୍ୟ ଛାଡ଼ିଦେଇଛନ୍ତି ।

୨୫୧ । ମ: ଭ: —୧,୬୭, ୯୧

୨୫୨ । The Land of Vishnu—pp-31, 32, 201

ବଳଭଦ୍ର ହ ମୂଳରୁ ଶେଷନାଗର ଅବତାର (୧୫୩) । ଭୁବନେଶ୍ୱରରେ ଲିଙ୍ଗରାଜଙ୍କ ବେଢ଼ାରେ ପୂଜା ପାଇଲେ ଏହି ସମ୍ମିଳିତଭାବର ମୂର୍ତ୍ତି କୃଷ୍ଣ, ବଳରାମ, ସୁଭଦ୍ରା ପଥରରେ ସୁନ୍ଦର ଖୋଦିତ ମୂର୍ତ୍ତି ଭାବରେ । ପରେ ସେହି ଅନୁରୂପ ମୂର୍ତ୍ତି ସ୍ଥାପିତ ହେଲେ ଅନନ୍ତ ବାସୁଦେବ ମନ୍ଦିରରେ, ବିନ୍ଦୁସାଗର କୂଳରେ । କିନ୍ତୁ ପୁରୀରେ ସେହି ତିନମୂର୍ତ୍ତି ବ୍ରହ୍ମଜ୍ଞାନୀମାନଙ୍କ କୌଶଳର ପରାକାଷ୍ଠା ଭାବରେ ରୂପାୟିତ ହୋଇଥିଲେ ତଥାକଥିତ ବ୍ରହ୍ମମୟ ଦାରୁମୂର୍ତ୍ତି ଭାବରେ । ଏହା କଣ୍ଟିତ ଯେ ଦର୍ଶନତତ୍ତ୍ୱ ସମ୍ବଳିତ ବ୍ରହ୍ମମୟ ସେ ମୂର୍ତ୍ତିତ୍ରୟଙ୍କୁ ପୁରୁଷୋତ୍ତମ କ୍ଷେତ୍ରରେ ଦର୍ଶନ କରି କୃଷ୍ଣ, ବଳରାମ, ସୁଭଦ୍ରା ବୋଲି ଅବଧାରଣା କରିବା ଜ୍ଞାନୀମାନଙ୍କ ବ୍ୟତୀତ ଅନ୍ୟାନ୍ୟ ଜନସାଧାରଣଙ୍କ ପାଇଁ ଅସମ୍ଭବ ବା କଷ୍ଟକର ଥିଲା । ତେଣୁ ଭୁବନେଶ୍ୱରରେ କୃଷ୍ଣ, ବଳରାମ, ସୁଭଦ୍ରାଙ୍କର ମନୁଷ୍ୟ ଭଳି ମୂର୍ତ୍ତି ଲିଙ୍ଗରାଜ ମନ୍ଦିରବେଢ଼ାରେ ସ୍ଥାପନା କରାଯାଇ ତାଙ୍କୁ ଶିଳାବ୍ରହ୍ମ ବୋଲି କୁହାଗଲା । ଏହାଫଳରେ ପ୍ରାଚୀନ ଅନନ୍ତ ବାସୁଦେବ ପୂଜାର ପରଂପରାକୁ ସମ୍ମାନ ଦେଖାଇବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କର କୃଷ୍ଣ-ବଳରାମ-ସୁଭଦ୍ରାଙ୍କ ମୂର୍ତ୍ତିର ଅବଧାରଣା ସୁଗମ ଓ ସହଜ ହେଲା ।

ଡଃ. ଷ୍ଟିଟେନ୍‌କ୍ରୋନ୍ Dr. Stietencron କହିବାକୁ ଚାହିଁଛନ୍ତି ଯେ ଜଗନ୍ନାଥ ପ୍ରଥମେ ଶିବ-ଭୈରବ ଥିଲେ ଓ ପରେ ଶୈବପୀଠରୁ ଏହା ବୈଷ୍ଣବ ପୀଠ ହେଲା ଓ ଜଗନ୍ନାଥ ବିଷ୍ଣୁ ଦେବତା ହେଲେ (୧୫୪) । ସେଥିପାଇଁ ସେ ରୁଦ୍ରଯାମଳ ଓ ବ୍ରହ୍ମଯାମଳ ନାମକ ତାନ୍ତ୍ରିକ ଗ୍ରନ୍ଥମାନଙ୍କୁ ପ୍ରମାଣ ଭାବରେ ଗ୍ରହଣ କରିଛନ୍ତି । ମାତ୍ର ତାଙ୍କର ବୁଝିବା ଦରକାର ଥିଲା ଯେ ଏ ଗ୍ରନ୍ଥଗୁଡ଼ିକ ଖ୍ରୀ: ଅ: ୧୦୫୨ ବା ଏକାଦଶ ଶତକରେ ଲିଖିତ । ସେତେବେଳକୁ ଜଗନ୍ନାଥଙ୍କୁ ଭୈରବ, ବଳଭଦ୍ରଙ୍କୁ କାଳାଗ୍ନିରୁଦ୍ର ଓ ସୁଭଦ୍ରାଙ୍କୁ ମହାଶକ୍ତି ଭୁବନେଶ୍ୱରୀ ଭାବରେ ଗ୍ରହଣ କରାଯାଇପାରିଥିଲା (୧୫୫) । ଖ୍ରୀ: ପୂ: ୧ମ ଶତକ ବେଳକୁ ଜଗନ୍ନାଥଙ୍କର 'ନୀଳାଖ୍ୟ ରୂପ' ବିଷ୍ଣୁ ଦେବତା ଭାବରେ ଅର୍ଚ୍ଚିତ

---

୧୫୩ । ସ୍କନ୍ଦ . ପୁ: ମା.—୧୯/୧୧ ଲକ୍ଷ୍ମୀ ପ୍ରାଦୁର୍ବଭୂବେ ସ୍ୱଂ ସହ ଚୈତନ୍ୟ ରୂପିଣୀ ।

,, ,, —୧୨/୪୫ "ଫଣାମଣି ଫଣାକାର କ୍ଷିତିମଣ୍ଡଳଧାରଣେ ।୪୫।।

"ଭୋଗତଲ୍ପ ଫଣାଛତ୍ର ମଧ୍ୟସୁପ୍ତାୟତେ ନମଃ ।।୪୬।।

(ଶେଷନାଗସ୍ତୁତି)

,, —୧୨/୪୭ "ତ୍ୱମେବ ଶେଷୋ ଭଗବନ୍

ସହସ୍ର ଫଣମଣ୍ଡିତଃ ।।୪୭।।

୧୫୪ । C. J. R. T. O.--pp.121.

୧୫୫ । "ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବ ।" ଅଥବା—

"ଓଡ୍ରେଷୁ ବିମଳାଶକ୍ତିର୍ଜଗନ୍ନାଥସ୍ତୁ ଭୈରବଃ" ଉଦ୍ଧୃତ

ହୋଇସାରିଥିଲେ । ତେଣୁ ଏପରି ପରିକଳ୍ପନା ନିତାନ୍ତ ଅମୂଳକ ଓ ଅବାନ୍ତର । ଅଷ୍ଟମ-ନବମ ଶତାବ୍ଦୀ ବେଳକୁ ଶାକ୍ତଧର୍ମର ପ୍ରଭାବରେ ବିମଳାଙ୍କୁ ଭୈରବୀ ବୋଲି ସ୍ୱୀକାର କରାଯାଇ ଜଗନ୍ନାଥଙ୍କୁ ତାଙ୍କର ଭୈରବ ବୋଲି ସ୍ୱୀକାର କରାଗଲା । ଅତଏବ ଜଗନ୍ନାଥ ମୂଳତଃ ବିଷ୍ଣୁ ଦେବତା; ଏଥିରେ ଦ୍ୱିମତର ଅବକାଶ ନାହିଁ । ଷ୍ଟିଟେନ୍‌କ୍ରୋନ୍‌ଙ୍କର ଘନିଷ୍ଠ ବନ୍ଧୁ ଡଃ ତ୍ରିପାଠୀ ପ୍ରଭୃତି ମଧ୍ୟ ଜଗନ୍ନାଥଙ୍କୁ ମୂଳତଃ ଭୈରବ ବୋଲି ଗ୍ରହଣ ନକରି ଏହା ଏକ ଅମୂଳକ ପରିକଳ୍ପନା ବୋଲି ମନେକରନ୍ତି । ତାଙ୍କ ଭାଷାରେ :—
"A visnuism is more exclusive than Saivism, it is difficult to see how a deity originally worshipped as Bhairava should have been in corporated into Visnuism. But the opposite is easily possible. (୨୫୬) " ଏକଥା କହି ମଧ୍ୟ ଡଃ ତ୍ରିପାଠୀ, ଡଃ ଏସ୍‌ମାନ୍ A. Eschmann ଓ ଡଃ କୁଲ୍‌କେ Dr. Kulke ପୁଣି ଏକଯୁଗ୍ମଭାବରେ କଥାଟାକୁ ଓଲଟ ପାଲଟ କରିପକାଇଛନ୍ତି । ସେମାନେ କହୁଛନ୍ତି, ଜଗନ୍ନାଥ ପୂଜା ଯେଉଁ ନୃସିଂହ ପୂଜାରୁ ଉଦ୍‌ଗତ ହେଲା, ସେ ନୃସିଂହଙ୍କୁ କେତେକ ଭୈରବୋ-ପାସକମାନେ ଭୈରବ ବୋଲି କହୁଥିବେ ବା ଷ୍ଟିଟେନ୍‌କ୍ରୋନ୍ ଯାହା କହୁଛନ୍ତି, ଜଗନ୍ନାଥ--ନୃସିଂହ ଭୈରବ ଭାବରେ ଉପାସିତ ହେଉଥିଲେ; ତାହା ମଧ୍ୟ ଖୁବ୍ ସମ୍ଭବ ।
"—Thus it seems probable, as has also been suggested by V. Steitencron, that the original Jagannath figure, though ritually and iconographically identified with

---

(No Ref.) C. J. R. T. O.—p.p-୧୨୧—Footnote No. 3.—Stietencron.

ସ୍କ: ପୁ: ମା:—୨୭/୪୫—ନମଃ କାଳାଗ୍ନିରୁଦ୍ରାୟ ମହାରୁଦ୍ରାୟ ତେ ନମଃ ॥ (ଅଷ୍ଟମ ଶତକର ପରିକଳ୍ପନା) ।

" " —୨୭/୫୬-୫୭ =

"ତସ୍ୟ ସବସ୍ୟ ଶକ୍ତି ତ୍ୱଂ ସ୍ତୋତୁଂ ତ୍ୱାଂ କସ୍ତୁ ଶକ୍ତିମାନ୍ ।୫୬।
"ଭଦ୍ରାଭଦ୍ର ସ୍ୱରୂପେ ତ୍ୱଂ ଭଦ୍ରକାଳୀ ନମୋଽସ୍ତୁତେ ।୫୭।

Also see Land of visnu-pp-15.

୨୫୬ । C. J. R. T. O.—pp. 175. (Dr. A. Eschmann, Dr. Kulke, Dr. Tripathi).

Narasimha was simultaneously worshipped. Or at least referred to by other groups as Bhairava Ekapada. (୧୫୭) । ଏକା ପାରାଗ୍ରାଫ୍‌ରେ ପୂର୍ବରୁ କୁହାଯାଇଥିବା ବାଣୀ ସହିତ ପରେ କୁହାଯାଇଥିବା ଉକ୍ତିଟିର ସାଦୃଶ୍ୟ ତ ଦୂରର କଥା, ବିପରୀତ ଧର୍ମୀ ରହିଛି ବୋଲି କହିଲେ ଚଳେ । ଏହା ହୁଏତ ବନ୍ଧୁ ଷ୍ଟିଟେନ୍‌କ୍ରୋନ୍‌ଙ୍କ ସାଧନା ପ୍ରତି ଏକ ସହାନୁଭୂତିମୂଳକ ଉକ୍ତି ହୋଇପାରେ ଅଥବା ଏହି ବନ୍ଧୁମାନେ ନିଜ ଉକ୍ତିରେ ଦୃଢ଼ ନୁହନ୍ତି ବୋଲି ବୋଲି-ଯାଇପାରେ । ଯେ ଯାହାହେଉ; ଏହି ବିଜ୍ଞ ଗବେଷକମାନେ ପୂର୍ବୋକ୍ତ ଉକ୍ତିଟିରେ ଆମର (ଜଗନ୍ନାଥ ମୂଳତଃ ବିଷ୍ଣୁ) ପ୍ରମାଣିତ ତଥ୍ୟକୁ ଏଡ଼ାଇ ନଦେଇ ବରଂ ସ୍ୱୀକାର କରିବନ୍ତି ।

ଏହି ଗବେଷକମାନେ ଆମର ଆଉ ଏକ ତଥ୍ୟକୁ ମଧ୍ୟ ସ୍ଥିର ଚିତ୍ତରେ ଗ୍ରହଣ କରିଛନ୍ତି । ତାହା ହେଉଛି ପ୍ରଥମେ ଲକ୍ଷ୍ମୀନାରାୟଣ ପୂଜା ଓ ପରେ ପରେ ଜଗନ୍ନାଥ ଏବଂ ଲକ୍ଷ୍ମୀ-ସୁଭଦ୍ରାଙ୍କର ଏକାଠି ସ୍ୱରୂପରେ ଉପାସନା (୧୫୮) । ଏହି ତଥ୍ୟକୁ ଆମେ ୧୯୭୨ ପୂର୍ବରୁ ଅର୍ଥାତ୍ ୧୯୭୩ ମସିହାରେ ପି. ଏଚ୍‌ଡି. ଡିଗ୍ରୀ ପାଇଁ ପ୍ରସ୍ତୁତ କରି ପ୍ରସ୍ତୁତ କରୁଥିଲୁ (୧୫୯) । ୧୯୭୮ ମସିହାରେ ଜର୍ମାନ ଗବେଷଣା ସଂସ୍ଥାର ଏହି ପଣ୍ଡିତମାନେ ଆମର ତଥ୍ୟକୁ ନକାରି ମଧ୍ୟ ଉପରୋକ୍ତ ଉକ୍ତି ମାଧ୍ୟମରେ ସେ କଥାକୁ ପ୍ରକାରାନ୍ତରେ ସ୍ୱୀକାର କରିଗଲେ । ସେମାନଙ୍କର ସ୍ୱୀକାରକୁ ଆମେ ଗୁରୁତ୍ୱ ଦେବାର କାରଣ ହେଉଛି, ଆମଦେଶରେ ତଥା ଓଡ଼ିଶାରେ ସେହି ବରେଣ୍ୟ ପାଶ୍ଚାତ୍ୟ ପଣ୍ଡିତମାନଙ୍କୁ ବହୁତ ପ୍ରାଧାନ୍ୟ ଦିଆଯାଉଛି ଓ ଓଡ଼ିଶାର ବିଦ୍ୱାନ୍‌ଗଣ ସେମାନଙ୍କୁ ବହୁବାର ସମ୍ମାନିତ କରି ସେମାନଙ୍କ କଥାକୁ ଗୁରୁତ୍ୱ ଦେଇ ଶୁଣିଛନ୍ତି । ତେଣୁ ସେହି ପଣ୍ଡିତମାନଙ୍କର ମତାମତକୁ ଗୁରୁତ୍ୱ ଦେଇ ବିଷୟକୁ ନେବାପାଇଁ ଏଠାରେ ଆବଶ୍ୟକତା ପଡ଼ିଲା । ସେମାନଙ୍କର ଉଦ୍‌ଘାଟିତ ଉଦ୍ଦେଶ୍ୟମୂଳକ ମୂଲ୍ୟବାନ୍ ଅଭିମତ ସବୁ ଆଦୌ ଗ୍ରହଣୀୟ ନ ହେଲେ ମଧ୍ୟ ଅନେକ ସ୍ଥଳରେ ସେମାନେ ଅବଚେତନ ମନରେ ସତ୍ୟ ପ୍ରକାଶ କରିଥିବା ଉକ୍ତି ଗୁଡ଼ିକ ମୂଲ୍ୟବାନ୍ ଓ ଗ୍ରହଣର ଯୋଗ୍ୟ । ତନ୍ମଧ୍ୟରୁ ପୂର୍ବୋକ୍ତ ବିଷ୍ଣୁ-

୧୫୭ । C. J. R. T. O—pp. 175. Dr. A. Eschmann, Dr. Kulke, Dr. Tripathi,

୧୫୮ । C. J. R. T. O—pp. 175. " With the establishment of the figure Jagannath—(Nrisimha) and possibly also that Laksmi, Subhadra, the cult must have achieved···temple worship.

୧୫୯ । Land of Visnu— (Thesis for Ph.D.--of this writer) —pp. 15-16 ff.

ଜଗନ୍ନାଥ ଓ ଲକ୍ଷ୍ମୀ ସୁଭଦ୍ରାଙ୍କର 'ଏକାବ ପୂଜାଭଥ୍ୟ' ଅନ୍ୟତମ (୨୬୦)। ଡଃ ତ୍ରିପାଠୀ ଷ୍ପଷ୍ଟଭାବରେ ପ୍ରକାଶ କରିଛନ୍ତି ଯେ ପ୍ରଥମେ କେବଳ ଜଗନ୍ନାଥ ଓ ଲକ୍ଷ୍ମୀ-ସୁଭଦ୍ରା ପୂଜା-ପାଉଥିଲେ; ପରେ ପରେ ବଳଭଦ୍ର ଆସି ଯୋଗ ଦେଲେ। "But only two images were there originally in the Puri Temple, i,e those of Jagannath and Subhadra and that the one of Balabhadra was introduced later in the temple. (୨୬୧)।" ସେ କହୁଛନ୍ତି, କୃଷ୍ଣଙ୍କୁ ପୁରୁଷୋତ୍ତମ କୁହାଯାଉଥିଲା ଓ ତାଙ୍କ ସହିତ ଲକ୍ଷ୍ମୀ ପୂଜିତା ହେଉଥିଲେ। ପରେ ସେ ଲକ୍ଷ୍ମୀଙ୍କୁ ହିଁ ସୁଭଦ୍ରା ବୋଲି କୁହାଗଲା (୨୬୨)।

ଏପରି ଆମର ଅଭିମତକୁ ସମ୍ପୂର୍ଣ୍ଣ ଭାବରେ ସ୍ୱୀକାର କଲେ ମଧ୍ୟ କେବଳ ଏହାର ସମୟ ଦୃଷ୍ଟିରୁ ସେହି ଦୁଇ ବିଦ୍ୱାନ୍‌ମାନଙ୍କର ଅସମ୍ଭବିତ ମତଭେଦ ରହିଯାଇଛି। ସେମାନେ କହନ୍ତି ମୁରାରିମିଶ୍ରଙ୍କ ସମୟବେଳକୁ (ଡଃ ତ୍ରିପାଠୀଙ୍କ ମତରେ ଅଷ୍ଟମଶତକ ଓ ଡଃ ଷ୍ଟିଟେନ୍‌କ୍ରୋନ୍‌ଙ୍କ ମତରେ ମୁରାରିଙ୍କ ସମୟ ୧୧ଶ ଶତକ) (୨୬୩) କେବଳ ଲକ୍ଷ୍ମୀ ପୁରୁଷୋତ୍ତମଙ୍କର ପୂଜା ଚାଲିଥିଲା ଓ ତାଙ୍କ ସ୍ଥାନରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସୁଦର୍ଶନ ଅନେକ ପରେ ଅର୍ଚ୍ଚିତ ହେଲେ । ଦ୍ୱାଦଶ ଶତକରେ ଉତ୍କଳ-ଖଣ୍ଡରେ ଏହା ବର୍ଣ୍ଣିତ ହେଲା। ମାତ୍ର ଏସବୁ ଅଭିବ୍ୟକ୍ତି ମୋଟେ ଠିକ୍ ନୁହେଁ। ଉତ୍କଳଖଣ୍ଡ ସ୍କନ୍ଦପୁରାଣ ଅଷ୍ଟମଶତକ ବେଳକୁ ଲେଖା ସରିଥିଲା (୨୬୪)। ତେଣୁ ସେତେବେଳକୁ ଜଗନ୍ନାଥଙ୍କର ଚତୁର୍ଦ୍ଧାମୂର୍ତ୍ତି ଉପାସିତ ହୋଇସାରିଥିଲେ । ବ୍ରହ୍ମପୁରାଣରୁ (ଅ:୬୬୧)

---

୨୬୦। C. J. R. T. O—pp. 178. (4th paragraph.) There is an equally strong possibility that Subhadra--Laksmi was added to···Jagannath···
C. J. R. T. O---pp. 53 (Tripati).

୨୬୧। C. J. R. T. O--pp. 53

୨୬୨। C. J. R. T. O---pp. 53. ("Laksmi renamed as Subhadra later."); pp 54-to 58.

୨୬୩। C. J. R. T. O--pp, 16. ( ଆମେ ପୂର୍ବରୁ ମୁରାରିଙ୍କ ସମୟ ବିଷୟ ଆଲୋଚନା କରିଛୁ ଓ ଦେଖାଉଛୁ ଯେ ଷ୍ଟିଟେନ୍‌କ୍ରୋନ୍‌ଙ୍କ ମତ ନିତାନ୍ତ ଭୁଲ )

୨୬୪। Land of Vishnu---Last chapter---Date of Purusottama Mahatmyam-ଦ୍ରଷ୍ଟବ୍ୟ ।

ମଧ୍ଯ କୃଷ୍ଣ, ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ପୁରୁଷୋତ୍ତମକ୍ଷେତ୍ରରେ ଉପାସିତ ହେବାର୍ ଜଣାଯାଏ । ନାରଦ ପୁରାଣ, ଗରୁଡ଼ପୁରାଣାଦି ଅନେକ ଗ୍ରନ୍ଥ ଏ ଦିଗରେ ଉପଯୁକ୍ତ ସୂଚନା ଦିଅନ୍ତି । ତେଣୁ ପ୍ରାୟ ପଞ୍ଚଶତକ ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ରରେ ଚତୁର୍ଦ୍ଧା-ମୂର୍ତ୍ତିର ଉପାସନା ଥାଉ ଥାଉ, ଏହା ଗଙ୍ଗବଂଶୀ ରାଜାଙ୍କ ଦ୍ୱାରା ପରବର୍ତ୍ତୀ ଯୁଗରେ କରାଯାଇଥିଲା ବୋଲି କହିବା ହେଉଛି ଉଦ୍ଦେଶ୍ୟମୂଳକ ଭାବରେ ଓଡ଼ିଆ ସଂସ୍କୃତିକୁ ପ୍ରାଚୀନ ବୋଲି ନକହି ଅର୍ବାଚୀନ ବୋଲି ପ୍ରମାଣ କରିବା ସଙ୍ଗେ ସମାନ । ଗବେଷଣା କାଳରେ ପ୍ରାଚୀନ ବା ଅର୍ବାଚୀନ ବୋଲି ଉଦ୍ଦେଶ୍ୟମୂଳକ ଭାବରେ ପ୍ରମାଣ କରିବା ସର୍ବଥା ଦୋଷାବହ । ନିରପେକ୍ଷ ବିଚାର କରି ସତ୍ୟର ଅନୁସନ୍ଧାନ ସର୍ବଦା ସ୍ପୃହଣୀୟ । କିନ୍ତୁ ଦୁଃଖର କଥା ଅନେକ ସମୟରେ ପାଶ୍ଚାତ୍ୟ ଗବେଷକମାନେ ଭାରତୀୟ ସଂସ୍କୃତିକୁ ଆବଶ୍ୟକୀୟ ପ୍ରାଚୀନତା ଦେବାକୁ ପଛାଇଥାନ୍ତି । ମାତ୍ର, ଏହି ବିଦ୍ୱାନ ଗବେଷକମାନଙ୍କର ସେପରି ଉଦ୍ଦେଶ୍ୟ ନ ଥାଇପାରେ । ତଥାପି ଠିକଏ ଭଲ କରି ପ୍ରାଚୀନ ସଂସ୍କୃତ ଗ୍ରନ୍ଥମାନଙ୍କୁ ଅନୁଧ୍ୟାନ କରିଥିଲେ ହୁଏତ ସେମାନଙ୍କ ମତ ଭିନ୍ନ ପ୍ରକାର ହୋଇଥାଆନ୍ତା ।

ସେ ଯାହାହେଉ, ଏହି ବିଦ୍ୱାନ୍‌ମାନେ ଯେଉଁ ମତ ପୋଷଣ କରିଛନ୍ତି, ତାକୁ ଆମ ଦେଶର ବିଦ୍ୱାନ୍‌ମାନେ ଆଗ୍ରହରେ ଗ୍ରହଣ କରିଛନ୍ତି । ସେମାନେ ପ୍ରକାଶ କରିଛନ୍ତି ଯେ, ପୁରୀରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏହି ତିନି ମୂର୍ତ୍ତି ଖ୍ରୀ:ଅ: ୧୨୩୦ରେ ଅନଙ୍ଗ ଭୀମଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ହେଲେ । ଏହାପୂର୍ବରୁ ଏହି ତିନିମୂର୍ତ୍ତି—ଦାରୁବିଗ୍ରହ ନ ଥିଲେ । ପଥରମୂର୍ତ୍ତି ଲକ୍ଷ୍ମୀ-ନୃସିଂହ ପୂଜା ପାଉଥିଲେ (୬୫) । ତାହାର ବହୁପୂର୍ବରୁ ଏଦେଶରେ ପୁରୁଷୋତ୍ତମ ପୂଜାର ପ୍ରଚଳନ ଥିଲା । ଏହି ପୂଜାର ପ୍ରଭାବରେ କାଳକ୍ରମେ ଜଗନ୍ନାଥଙ୍କର ତ୍ରିମୂର୍ତ୍ତି ରୂପାନ୍ତରିତ ହେଲେ (ଖ୍ରୀ:ଅ: ୧୨୩୦ରେ) । ଜଗନ୍ନାଥ ଓ ସୁଭଦ୍ରାଙ୍କ ସହିତ ବଳଭଦ୍ର ମୂର୍ତ୍ତି ଯୁକ୍ତ ହେଲେ ତୃତୀୟ ଅନଙ୍ଗ ଭୀମଦେବଙ୍କ (୬୬) ସମୟରେ । (୧୨୧୧-୧୨୩୮) । ସେହି ପଣ୍ଡିତ-ମାନଙ୍କ ବିଚାରରେ ସୁଦର୍ଶନ ହେଉଛନ୍ତି ନୃସିଂହଙ୍କର ସ୍ୱରୂପ । ଜଗନ୍ନାଥ ତ ନୃସିଂହଙ୍କର ଏକ ରୂପାନ୍ତର । ତେଣୁ ସୁଦର୍ଶନ ହେଉଛନ୍ତି ଜଗନ୍ନାଥଙ୍କର ଏକ ଚଳନ୍ତି ପ୍ରତିମା (୬୭) । ଆଉ ଅନ୍ୟ କିଛି ନୁହନ୍ତି । ଏ ସମସ୍ତଙ୍କର ପ୍ରତିଷ୍ଠା ଅନଙ୍ଗଭୀମଦେବଙ୍କ ସମୟରେ ହୋଇଅଛି ।

---

୬୫ । C. J. R. T. O—pp, 194-196

୬୬ । C. J. R. T.·O—pp· 196 (point. No. 7) See also—pp 194, First para·

୬୭ । C. J. R. T. O—pp. 196 (Point. No. 8)

ଏପରି ମତବ୍ୟକ୍ତ କରିବାଦ୍ୱାରା ମାନନୀୟ ବିଦ୍ୱାନ୍‌ମାନେ ମାଦଳାପାଞ୍ଜିକୁ ଉପେକ୍ଷା କରିଛନ୍ତି । ରକ୍ତବାହୁର ଆକ୍ରମଣ, ଜଗନ୍ନାଥଙ୍କୁ ସୋନପୁର ନେଇ ପାତାଳୀ କରିବା, ଯଯାତିଙ୍କ ଦ୍ୱାରା ମୂର୍ତ୍ତିମାନଙ୍କର ପୁନରୁଦ୍ଧାର, ତାଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ଉପାଧି ପ୍ରଦାନ, ଶଙ୍କରାଚାର୍ଯ୍ୟଙ୍କର ପୁରୀ ଆଗମନ, ଗୋବର୍ଦ୍ଧନ ମଠସ୍ଥାପନ ଓ ଠାକୁରଙ୍କ ଭୋଗ ଓ ପୂଜାବିଧିର ପୁନଃ ଆୟୋଜନ, ଯଯାତିଙ୍କ ଦ୍ୱାରା ଜଗନ୍ନାଥ ପାଇଁ ଏକ କ୍ଷୁଦ୍ର ମନ୍ଦିର ନିର୍ମାଣ, ଛତିଶାନିଯୋଗ (ଛତିଆଣ), ଦଇତାପତିମାନଙ୍କ ଭଳି (ତଥାକଥିତ ଶବର) ସେବକମାନଙ୍କର ପ୍ରାଚୀନତା; ସବୁକିଛି ଏତଦ୍ଦ୍ୱାରା ଉପେକ୍ଷିତ ହେଲା । ତା'ଛଡ଼ା ପୂର୍ବରୁ ଉପାସିତ ହେଉଥିବା ନୃସିଂହ ଆଦି ଆଦି, ଯେ କାହିଁକି ଥର ଥର କରି ଜଗନ୍ନାଥଙ୍କର, ପୁଣି ସୁଭଦ୍ରାଙ୍କର, ଶେଷରେ ବଳଭଦ୍ରଙ୍କର ମୂର୍ତ୍ତିମାନ ଗଢ଼ାଗଲା, ତା'ର କାରଣ ସ୍ପଷ୍ଟ ଭାବରେ କିଛି ଦିଆଯାଇନାହିଁ । ଯଦି ଏ ସବୁକଥା ଏତେ ପରେ ଗଙ୍ଗ ରାଜତ୍ୱରେ ଘଟିଗଲା, ତେବେ ଶିଳାଲେଖ ମାନଙ୍କରେ ତଥା ଅନ୍ୟାନ୍ୟ ଗ୍ରନ୍ଥମାନଙ୍କରେ ତାର କି'ଣ ସବୁ ପ୍ରମାଣ ଅଛି, ସେ ବିଷୟରେ କିଛି ସ୍ପଷ୍ଟ ଆଲୋକ ନାହିଁ । ସର୍ବୋପରି ସ୍କନ୍ଦପୁରାଣ, ବ୍ରହ୍ମପୁରାଣ ଆଦି ଗ୍ରନ୍ଥମାନ ସୂକ୍ଷ୍ମ ଦୃଷ୍ଟିରେ ବିବେଚିତ ହୋଇନାହିଁ ଓ ଉପେକ୍ଷିତ ହେବା ଫଳରେ ଉପରୋକ୍ତ ଫଳ ଫଳିଛି । ସେମାନଙ୍କର ଆଲୋଚନାରେ ଏ ସବୁ ଦୁର୍ବଳତା ଥିବାରୁ, ଯଦିଓ ସେମାନେ କହିଛନ୍ତି ଯେ ଜଗନ୍ନାଥଙ୍କର 'ତ୍ରିମୂର୍ତ୍ତି' (ଚତୁର୍ଦ୍ଧା ନୁହନ୍ତି) ଖ୍ରୀ:ଅ: ୧୨୩୦ରେ ପ୍ରତିଷ୍ଠିତ ହେଲେ, ତଥାପି ମନ ଭିତରେ ସେମାନଙ୍କର ସନ୍ଦେହ ଅଛି ଓ ସେମାନେ ବୋଧହୁଏ ନିଜ ଅଭିମତରେ ସେତେ ନିଃସନ୍ଦେହ ନୁହନ୍ତି । ତେଣୁ ଲେଖିଛନ୍ତି—"ଆମେ ବର୍ତ୍ତମାନର ଜଗନ୍ନାଥଙ୍କର ତ୍ରିମୂର୍ତ୍ତିଙ୍କର ପ୍ରତିଷ୍ଠାର ନିର୍ଦ୍ଦିଷ୍ଟ ଦିନ ବିଷୟରେ କିଛି ପ୍ରମାଣ ପାଇନାହିଁ (୨୬୮)" । ଏପରି ସନ୍ଦେହ ପ୍ରକାଶ କରି ତାପରେ ଖ୍ରୀ:ଅ: ୧୨୩୦ ରେ ବଳଭଦ୍ର ତ୍ରିମୂର୍ତ୍ତିରେ ଯୋଗଦେଲେ ବୋଲି ଲେଖିବାରେ କିଛି ତାତ୍ପର୍ଯ୍ୟ ନାହିଁ ।

ଏକଥା ସ୍ପଷ୍ଟ ଯେ ମତ୍ସ୍ୟପୁରାଣ ଓ ପଦ୍ମପୁରାଣର ପାତାଳଖଣ୍ଡ ବେଳକୁ ପୁରୁଷୋତ୍ତମ କ୍ଷେତ୍ରରେ ନୀଳାଖ୍ୟ ପୁରୁଷୋତ୍ତମ ଓ ଲକ୍ଷ୍ମୀ ପୂଜିତ ହେଉଥିଲେ । ଏହା ପ୍ରାୟ ପ୍ରଥମ ଶତକର କଥା । ଧୀରେ ଧୀରେ ପୁରୁଷୋତ୍ତମଙ୍କର ପଥରମୂର୍ତ୍ତିର ଶତ୍ରୁ ଆକ୍ରମଣ ବା କୌଣସି କାରଣରୁ ଅନ୍ତର୍ଦ୍ଧାନ ହେବାପରେ ଏ ପୀଠ ଉପରେ ଇନ୍ଦ୍ରରାଜାଙ୍କର ଦୃଷ୍ଟି ପଡ଼ିଲା । ଯେତେବେଳକୁ ପୁରୁଷୋତ୍ତମଙ୍କୁ ବ୍ରହ୍ମସ୍ୱରୂପୀ, ପରମାତ୍ମା ବୋଲି ବିଶ୍ୱର

୨୬୮ । C. J. R. T. O—pp 194—"We possess no source for a definite date for the establishment of the present Triad"

କରାଯାଉଥାଉଥିଲା । ବୃଷକୁ ଭଗବାନଙ୍କର କେଶ ବୋଲି ପୁରୁଷସୂକ୍ତରେ ବର୍ଣ୍ଣନା କରାଯାଉଥିଲା । ଯେହି ସବୁ ଦାର୍ଶନିକ ଭାବକୁ ନେଇ ଦାରୁବ୍ରହ୍ମ ପୁରୁଷୋତ୍ତମଙ୍କର ମୂର୍ତ୍ତି ପୂଜା ପାଉଥିଲା । ତାହାପରେ ପୂର୍ବରୁ ଆଲୋଚିତ ହୋଇଥିବା ଅନୁସାରେ କାଷ୍ଠରେ ଲକ୍ଷ୍ମୀ-ସୁଭଦ୍ରା ଓ ବଳଭଦ୍ର କ୍ରମେ କ୍ରମେ ପ୍ରତିଷ୍ଠିତ ହୋଇ ପୂଜାପାଇଲେ । ଏଥିପାଇଁ ଅନ୍ତତଃ କେତୋଟି ଶତାବ୍ଦୀ ଲାଗିଥିବ । ଯଦି ଅନ୍ତତଃ ଦୁଇ ତିନୋଟି ଶତାବ୍ଦୀ ଲାଗିଥାଏ, ତେବେ ତ୍ରିମୂର୍ତ୍ତିଙ୍କ ସହିତ ଚତୁର୍ଥମୂର୍ତ୍ତି ଯୋଗହେବା ପାଇଁ ପୁଣି କିଛିଦିନ ଲାଗିଥିବ । ଏହି ମଧ୍ୟରେ ହେଉଛି ବ୍ରହ୍ମପୁରାଣର ରଚନା କାଳ । ତେଣୁ ସେଥିରେ ତ୍ରିମୂର୍ତ୍ତି ଉପରେ ହିଁ ଗୁରୁତ୍ୱ ଦିଆଯାଉଛି । ଚତୁର୍ଦ୍ଧାମୂର୍ତ୍ତି ଲୋକପ୍ରିୟ ହେବାକୁ ପୁଣି ଅନ୍ତତଃ ଗୋଟିଏ ଦୁଇଟି ଶତାବ୍ଦୀ ଆବଶ୍ୟକ ହୋଇଥିବ । ଏହିପରି ପ୍ରାୟ ପଞ୍ଚମ ବା ଷଷ୍ଠ ଶତାବ୍ଦୀ ଅତିବାହିତ ହୋଇଯାଇଥିବ । ତାପରେ ଯଦି ରକ୍ତବାହୁ ଆକ୍ରମଣ ଘଟିଥାଏ, ତେବେ ଚତୁର୍ଦ୍ଧାମୂର୍ତ୍ତି ଜଗନ୍ନାଥ ଅନ୍ତତଃ ଦେଢ଼ ଶତାବ୍ଦୀ (୧୪୪ ବର୍ଷ) ପୂର୍ବରୁ ଯାଇ ସୋନ-ପୁରରେ ପାତାଳୀ ହୋଇଥିବେ । ମନ୍ଦିରରେ ସେବା, ପୂଜା, ଯାତ୍ରା ସବୁ ବନ୍ଦ ହୋଇଯାଇଥିବ । ମନ୍ଦିର ଖାଲିପଡ଼ି ଭାଙ୍ଗିବା ଅବସ୍ଥାକୁ ଆସିଥିବ । ଲୋକେ ଭାବିଥିବେ, ଜଗନ୍ନାଥ ଏ ସ୍ଥାନରେ ଆଉ ନାହାନ୍ତି । କାରଣ ଦେଢ଼ଶତାବ୍ଦୀ ଗତ ହେବାରେ ଲୋକେ ତାଙ୍କ ପିତୃପିତାମହଙ୍କ କାଳରୁ ମନ୍ଦିର ଶୂନ୍ୟ ପଡ଼ିଥିବାର ଦେଖୁଥିବେ । ସେତିକବେଳେ ହୁଏତ ଯଯାତିଙ୍କ ଦ୍ୱାରା ଚତୁର୍ଦ୍ଧାମୂର୍ତ୍ତିର ପୁନରୁଦ୍ଧାର ଓ ଏକ ମନ୍ଦିର ନିର୍ମାଣ ହୋଇଥିବ । ସେହିଭଳି ଏକ ସମୟରେ ସ୍କନ୍ଦପୁରାଣର ଉତ୍କଳଖଣ୍ଡ ଲେଖାଯାଇଛି । ଯଯାତିଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି କୁହାଯାଇଛି । ଏଥିରେ ଲୋକଙ୍କର ପୁଣି ବିଶ୍ୱାସ ଜନ୍ମାଇବା ପାଇଁ ଘୋଷଣା କରାଯାଇଛି ଯେ, ମନ୍ଦିର ଭାଙ୍ଗିଗଲେ ମଧ୍ୟ ଜଗନ୍ନାଥ ସେ ସ୍ଥାନ ଛାଡ଼ିନାହାନ୍ତି । ଜଗନ୍ନାଥ ନିଜେ କହିଛନ୍ତି (୨୭୦):—

"ପ୍ରାସାଦଭଙ୍ଗେ ତତ୍ସ୍ଥାନଂ ନ ତ୍ୟକ୍ଷାମି କଦାଚନମ୍" (ପୁ: ମା:—୨୯/୧୪)

ଯଯାତି ଯେଉଁ ମନ୍ଦିରଟି ନିର୍ମାଣ କରିଥିଲେ, ତାଙ୍କ ପରେ ରାଜାମାନେ ସମସ୍ତେ ଶୈବ ଥିବାରୁ ଜଗନ୍ନାଥଙ୍କର ପୂଜା ତଥା ମନ୍ଦିରର ସଂସ୍କାର ପ୍ରତି ଯଥେଷ୍ଟ ଦୃଷ୍ଟି ଦିଆଗଲା ନାହିଁ । ମନ୍ଦିର ପୁଣି ଭାଙ୍ଗିପଡ଼ିଲା । ପୁଣି ଯେତେବେଳେ ଗଙ୍ଗରାଜାମାନେ ରାଜତ୍ୱ କଲେ, ସେମାନେ ସମସ୍ତେ ବୈଷ୍ଣବ ଥିବାରୁ ପୁରୁଷୋତ୍ତମକ୍ଷେତ୍ରର ଭାଗ୍ୟ ବଦଳିଲା ।

---

୨୬୯ । The Land of Vishnu—pp. 204, 216 Foot note No. 110

୨୭୦ । ସ୍କନ୍ଦ—ପୁ: ମା: —୨୯ /୧୪—
"ପ୍ରାସାଦଭଙ୍ଗେ ତତ୍ସ୍ଥାନଂ ନ ତ୍ୟକ୍ଷାମି କଦାଚନ"

ଉତ୍ତଙ୍କ ମନ୍ଦିର ନିର୍ମାଣ ହେଲା । ଜଗନ୍ନାଥ ସାରା ଭାରତରେ ଅତି ଦ୍ରୁତଗତିରେ ଲୋକପ୍ରିୟ ହୋଇଉଠିଲେ । ଭାରତର ବିଭିନ୍ନ ପ୍ରାନ୍ତରୁ ବୈଷ୍ଣବ ଧର୍ମଯାଜକମାନେ ଏହି କ୍ଷେତ୍ରକୁ ଧାଇଁଆସିଲେ ନିଜ ନିଜର ଆସନ ପ୍ରତିଷ୍ଠା କରିବାପାଇଁ । ରାଜନୈତିକ ଦୃଷ୍ଟିରୁ ଲୋକଙ୍କୁ ଜଗନ୍ନାଥଙ୍କ ପାଦତଳେ ଏକତ୍ର କରି ଏକ ମହାଜାତୀୟ ଶକ୍ତି ଗଢିବା ପାଇଁ ଗଙ୍ଗରାଜା ଅନଙ୍ଗଭୀମଦେବ ଛତିଶାନିୟୋଗ ସୃଷ୍ଟି କରି ନିଜେ ଜଣେ ଜଗନ୍ନାଥଙ୍କର ମୁଖ୍ୟ ସେବକ ଭାବରେ ଭୂମିକା ଗ୍ରହଣ କଲେ (୨୭୧) । ଫଳରେ ଲୋକମାନଙ୍କ ମଧ୍ୟରେ ଆଉ ରାଜଶକ୍ତି ଜଗନ୍ନାଥଙ୍କ ବିରୋଧରେ ଆନ୍ଦୋଳନାତ୍ମକ ସ୍ୱର-ଉତ୍ତୋଳନ କରିବାର ସାହସ ରହିଲା ନାହିଁ । ଜଗନ୍ନାଥ ହେଲେ ଦେଶର ସର୍ବେସର୍ବା ଶାସକ । ରାଜା ହେଲେ ତାଙ୍କର ଜଣେ ସେବକ । କ୍ରମେ କ୍ରମେ ଜଗନ୍ନାଥଙ୍କୁ ପ୍ରଶଂସା କରି ଅନେକ ଗ୍ରନ୍ଥ ଲେଖାଗଲା । ଜୟଦେବଙ୍କ ଗୀତଗୋବିନ୍ଦ, ତନ୍ମଧ୍ୟରେ ଅନ୍ୟତମ (୨୭୨) । ପରେ ପରେ ଅଭିନବ ଗୀତଗୋବିନ୍ଦମ୍, ଭକ୍ତିବୈଭବ ନାଟକମ୍, ଦ୍ୱାଦଶ ଯାତ୍ରାତତ୍ତ୍ୱ, ଗୁଣ୍ଡିଚାଚମ୍ପୂ, ଗୁଣ୍ଡିଚାବିଜୟଚମ୍ପୂ, ଜଗନ୍ନାଥ ବଲ୍ଲଭନାଟକମ୍, ମୁକ୍ତି ଚିନ୍ତାମଣି, ନୀଳାଦ୍ରି ମହୋଦୟଂ, ଯାତ୍ରା ଭାଗବତଂ ପ୍ରଭୃତି ବହୁ ସଂସ୍କୃତ ଗ୍ରନ୍ଥ ରଚିତ ହୋଇଥିଲା । ସେହିପରି ଓଡ଼ିଆରେ ମଧ୍ୟ ଅଣାକାର ସଂହିତା, ଚତୁର୍ଦ୍ଧା 'ମୂର୍ତ୍ତି' ବର୍ଣ୍ଣନ, ସାରଳା ମହାଭାରତ (ବନପର୍ବ, ମୂଷଳୀ ପର୍ବ) ଦାରୁବ୍ରହ୍ମ ଗୀତା, ଦାର୍ଢ୍ୟତାଭକ୍ତି, ଦେଉଳତୋଳା, ଗୁପ୍ତଗୀତା, ଜଗମୋହନ ଛାନ୍ଦ, ଜଗନ୍ନାଥ ଭଜନ, କ୍ଷେତ୍ର ମାହାତ୍ମ୍ୟ, ନାମରତ୍ନଗୀତା, ନେତ୍ରୋତ୍ସବ ବର୍ଣ୍ଣନ, ବେଦାନ୍ତସାର ଗୁପ୍ତଗୀତା ଆଦି ଅନେକ ଗ୍ରନ୍ଥ ବିଭିନ୍ନ ସମୟରେ ରଚିତ ହେଲା । ଏଥିରୁ ଜଗନ୍ନାଥଙ୍କର ଲୋକପ୍ରିୟତା ବେଶ୍ ହୃଦୟଙ୍ଗମ କରିହୁଏ । ଜଗନ୍ନାଥଙ୍କର ଲୋକପ୍ରିୟତା ବିଶେଷଭାବରେ ଭାରତବର୍ଷରେ ସର୍ବତ୍ର ଉପଲବ୍ଧ ହେଲା ଗଙ୍ଗରାଜତ୍ୱ ପରେ; ଅର୍ଥାତ୍ ଦ୍ୱାଦଶ ଶତକ ପରେ । ଏହାର ପରବର୍ତ୍ତୀ ଯୁଗରେ ଓଡ଼ିଶା ବାହାରେ ଲିପିବଦ୍ଧ ହେଲା କ୍ରିୟାଯୋଗ ସାରଖଣ୍ଡରେ ପଦ୍ମପୁରାଣରେ ପୁରୁଷୋତ୍ତମ କ୍ଷେତ୍ରର ଭୂୟସୀ ପ୍ରଶଂସାତ୍ମକ ବର୍ଣ୍ଣନା ।

---

୨୭୧ । The Cult of Jagannath—K. C. Mishra—pp. 44; 120-121,

ମାଦଳାପାଞ୍ଜି—ପୃ ୩୨-୩୩ (ପ୍ରାଚୀ)

୨୭୨ । Proceeding of all Orissa History Conference 1977 Berhampur "Jagannath is the Krishna of Gitagovindam." (My article.)

## ପଦ୍ମପୁରାଣର କ୍ରିୟା ଯୋଗସାର ଖଣ୍ଡରେ ପୁରୁଷୋତ୍ତମକ୍ଷେତ୍ର—

ପୂର୍ବରୁ ଆଲୋଚନା କରାଯାଇଛି ଯେ ପଦ୍ମପୁରାଣର ପାତାଳଖଣ୍ଡ ଅତି ପ୍ରାଚୀନ ଓ ଏହା ଖ୍ରୀ:ଅ: ପ୍ରଥମ ଶତକ ବେଳକୁ ଲିଖିତ । ଏଥିରେ ପୁରୁଷୋତ୍ତମକ୍ଷେତ୍ର ନୀଳଗିରିର ବର୍ଣ୍ଣନା ଥିଲେ ମଧ୍ୟ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ବିଷୟରେ କିଛି ଉଲ୍ଲେଖ ନାହିଁ । ଖାଲି କୁହାଯାଇଛି, ଏ କ୍ଷେତ୍ରରେ ପୁରୁଷୋତ୍ତମ ନାମରେ ଚତୁର୍ଭୁଜ ହରି ଭକ୍ତମାନଙ୍କ ଦ୍ୱାରା ପୂଜିତ ହେଉଥିଲେ । ସ୍କନ୍ଦପୁରାଣରେ କଥିତ ନୀଳମାଧବଙ୍କ ସହିତ ଏ ମୂର୍ତ୍ତିର ସାମ୍ୟ ଥିବାର ଜଣାଯାଏ । ସେ ଯାହାହେଉ, (ଇନ୍ଦ୍ରଦ୍ୟୁମ୍ନଙ୍କ ଭଳି) କାଞ୍ଚୀର ଜଣେ ହିନ୍ଦୁରାଜା 'ଭଦ୍ରଗ୍ରୀବ' ସେଠାକୁ ଆସି ପ୍ରଥମେ ତାଙ୍କୁ ଦର୍ଶନ କରିପାରିଲେ ନାହିଁ । ପରେ ଅବଶ୍ୟ ଅନଶନ, ବ୍ରତ ଆଦି କରି ପାଞ୍ଚଦିନ ପରେ ସେ ନୀଳ (ମାଧବ ?) ରୂପୀ ଭଗବାନ ବିଷ୍ଣୁଙ୍କର ଦର୍ଶନ ପାଇଲେ (୨୭୩) । ଏଥିରୁ ଜଣାଯାଏ ପୁରୁଷୋତ୍ତମ କ୍ଷେତ୍ରରେ ପୂଜିତ ପୁରୁଷୋତ୍ତମ ଥିଲେ ଏକ ବିଷ୍ଣୁ ମୂର୍ତ୍ତି ଓ ଜଗନ୍ନାଥ ତାଙ୍କର ଏକ ରୂପାନ୍ତର । ଏ' ତ ହେଲା ପ୍ରଥମ ଶତାବ୍ଦୀରେ ରଚିତ ପଦ୍ମପୁରାଣର ପାତାଳଖଣ୍ଡର ଉକ୍ତି । ପରବର୍ତ୍ତୀ ଯୁଗରେ ଏହି ପୁରାଣର କ୍ରିୟାଯୋଗ ସାରଖଣ୍ଡର ଉକ୍ତି ଅନୁସାରେ ମଧ୍ୟ ପୁରୁଷୋତ୍ତମ ହେଉଛନ୍ତି ସେହି ପରଂବ୍ରହ୍ମ ବିଷ୍ଣୁ (୨୭୪) । ମାତ୍ର ସେତେବେଳକୁ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ପ୍ରତିଷ୍ଠିତ ହୋଇସାରିଛନ୍ତି (୨୭୫) । 'ଭଦ୍ରତନୁ' ନାମକ ବ୍ରାହ୍ମଣର ପୁରୁଷୋତ୍ତମ କ୍ଷେତ୍ରକୁ ଭଗବତ୍ ଦର୍ଶନ ପାଇଁ ଆସିବା ପ୍ରସଙ୍ଗରେ ପୁରାଣକାର ଏହି କ୍ଷେତ୍ରର ମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି ଓ କୃଷ୍ଣ-ଜଗନ୍ନାଥଙ୍କୁ ମହା-ବିଷ୍ଣୁ ବୋଲି ବର୍ଣ୍ଣନା କରାଯାଇଛି । ତ୍ରିମୂର୍ତ୍ତିଙ୍କର ବିଶେଷ ଉତ୍କର୍ଷ ବର୍ଣ୍ଣିତ ହେବାରୁ ପୁରାଣର ପ୍ରାଚୀନତା ପ୍ରମାଣିତ ହେଲେହେଁ ଶ୍ୱେତଗଙ୍ଗା ପ୍ରଭୃତି ତୀର୍ଥର ବର୍ଣ୍ଣନା ଏହାକୁ ଅର୍ବାଚୀନରେ ପରିଣତ କରେ (୨୭୬) । ଏହି ପୁରାଣରେ ଜଗନ୍ନାଥଙ୍କୁ

---

୨୭୩ । ପଦ୍ମପୁରାଣ—ପାତାଳଖଣ୍ଡ—ଅ ୧୬-୨୨

୨୭୪ । ପଦ୍ମ: କ୍ରିୟାଯୋଗ: ଗୁରୁମଣ୍ଡଳ——୧୬/୧୪୦—ପୃ ୧୦୫୩

"ବ୍ରହ୍ମରୂପେଣ ଯେନାଽସୌଦୃଷ୍ଟା ସୃଷ୍ଟମିଦଂ ଜଗତ୍
ତ୍ୱମସ୍ମି ତସ୍ମିନ୍ ମହାବିଷ୍ଣୋ ! ରମଣଂ ମମ ମାନସମ୍ ।

୨୭୫ । ପଦ୍ମ: କ୍ରିୟା: ଗୁରୁମଣ୍ଡଳ—୧୯୫୯—୫ମ ଭାଗ—୧୮/୨୧ ପୃ ୧୦୬୧—

ବଳଭଦ୍ରଂ ସୁଭଦ୍ରାଂ ଚ କୃଷ୍ଣଂ ଚ କମଲେକ୍ଷଣମ୍ ।
ଅଦୃଷ୍ଟା ଶ୍ରୀଜଗନ୍ନାଥଂ ସୁଭଦ୍ରାଂ ଚ ବଳଂ ତଥା ॥ ୧୮/୨୩

୨୭୬ । ପଦ୍ମ: କ୍ରିୟା: ଗୁରୁମଣ୍ଡଳ— ୧୮/୧୬—ପୃ ୧୦୬୧—

ରୋହିଣ୍ୟାଂ ଚ ସମୁଦ୍ରେ ଚ ଶ୍ୱେତଗଙ୍ଗା ଜଲେଷୁ ଚ ।

କମଳଲୋଚନ ବୋଲି ଯାହା ବର୍ଣ୍ଣନା କରାଗଲା, ତହିଁରୁ ସେ ମହାବିଷ୍ଣୁଙ୍କର ନେତ୍ରର ଗୋଲାକାର ହିଁ ସିଦ୍ଧ ହେଉଛି । ଅନ୍ୟ ଭାଷାରେ, ଜଗନ୍ନାଥଙ୍କର ନେତ୍ରର ଗୋଲାକାରର ଏହା ହୁଏତ ଏକ କାରଣ ହୋଇପାରେ । ଏହି ପୁରାଣର ଦୃଷ୍ଟିରେ ଜଗନ୍ନାଥ ହେଉଛନ୍ତି ଦେବକୀନନ୍ଦନ, ଦାମୋଦର । ତା' ସଙ୍ଗେ ସଙ୍ଗେ ପୁଣି ଜଗତ୍‌କର୍ତ୍ତା, ଜଗନ୍ମୟ (୬୭୭) । ଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ ଓ ଶ୍ରୀକୃଷ୍ଣଙ୍କୁ କେଶବ, କେଶିଶତ୍ରୁ, ସନାତନ, କଂସାରି, ନାରାୟଣ, ବାମନ, ଅଚ୍ଯୁତପୁନ ଆଦ୍ୟ, ବାସୁଦେବ, ଅନନ୍ତ, ଅଚ୍ୟୁତ, ଶ୍ରୀଧର, ପୁରୁଷୋତ୍ତମ, ଶ୍ରୀପତି, ନୃସିଂହ, ମତ୍ସ୍ୟ, ମହାକୂର୍ମ, ବରାହ, ପୃଥ୍ୱୀପତି, ବୈକୁଣ୍ଠ, ଜଗନ୍ନାଥ, ଚକ୍ରପାଣି, ଗଦାଧର, ଶଙ୍ଖଭୃତ୍, ପଦ୍ମପାଣି, ନନ୍ଦକୀ, ଗରୁଡ଼ଧ୍ୱଜ, ଶାର୍ଙ୍ଗୀ, ପଦ୍ମନାଭ, ଜନାର୍ଦ୍ଦନ, ତୁଳସୀ ବଲ୍ଲଭ, ପରେଶ, ପରମେଶ୍ୱର, ରୁକ୍ମିଣୀରମଣ, ଗୋବର୍ଦ୍ଧନଧର, ହରି, ଉପେନ୍ଦ୍ର, ବିଶ୍ୱମୂର୍ତ୍ତି, ଶ୍ୟାମପାଦ, ପରମାତ୍ମା, ପରଂବ୍ରହ୍ମ, ଶ୍ରୀନିବାସ, ଯଜ୍ଞଭୋକ୍ତା, ଯଜ୍ଞେଶ୍ୱର, ରାବଣାରି (ରାମଚନ୍ଦ୍ର), ପ୍ରଲମ୍ବଘ୍ନ (ବଳରାମ), ଅକ୍ଷୟ, ଅବ୍ୟୟ, ଆଦି ଅନେକ ନାମରେ ସମ୍ବୋଧନ କରାଯାଇ ତାଙ୍କର ମହାବିଷ୍ଣୁତ୍ୱକୁ ପ୍ରକାଶ କରାଯାଇଛି (୬୭୮) । ଫଳରେ ଜଗନ୍ନାଥ ଅଦ୍ୟାବଧି ସେହି ଭାବରେ, ସେହି ଚିନ୍ତାଧାରାରେ ପୂଜିତ ।

ସେହି କମଳାପତି ଜଗନ୍ନାଥଙ୍କୁ ବ୍ରହ୍ମରୂପରେ ଚର୍ଚ୍ଚା କରାଯାଇ ସୃଷ୍ଟି, ସ୍ଥିତି, ପାଳନର ସଂହାରକର୍ତ୍ତା ଭାବରେ ପଦ୍ମପୁରାଣର କ୍ରିୟାଯୋଗସାରରେ ବର୍ଣ୍ଣନା କରାଯାଇଛି (୬୭୯) । ସେ ହିଁ ରୁଦ୍ରରୂପରେ ଜଗତକୁ ସଂହାର କରନ୍ତି ଓ

---

ପଦ୍ମ: କ୍ରିୟା—୧୭/୬୪—ପୃ ୧୦୫୯ (ଏହା ଏକ ଶ୍ରେଷ୍ଠ କ୍ଷେତ୍ର)—
ତସ୍ମିନ୍ କ୍ଷେତ୍ରବରେ ପୁଣ୍ୟେ ଦୁର୍ଲଭେ ପୁରୁଷୋତ୍ତମେ ।
ପଦ୍ମ: କ୍ରିୟା—୧୮/୧—
ତୀର୍ଥଶ୍ରେଷ୍ଠମିତିପ୍ରୋକ୍ତଂ ଯତ୍ତ୍ୱୟା ପୁରୁଷୋତ୍ତମମ୍ ।

୬୭୭ । ପଦ୍ମ: କ୍ରିୟାଯୋଗ—୧୭/୧୦୭—ପୃ-୧୦୫୧—
ଦେବକୀନନ୍ଦନ ଶୌରିଃ ପୁଣ୍ଡରୀକ ନିରୀକ୍ଷଣଃ
ଦାମୋଦରଃ ଜଗନ୍ନାଥୋ ଜଗତ୍‌କର୍ତ୍ତା ଜଗନ୍ମୟଃ ।

୬୭୮ । ପଦ୍ମ : କ୍ରିୟା—୧୭/୧୦୫-୧୧୭—ପୃ-୧୦୫୧-୫୨

୬୭୯ । ପଦ୍ମ : କ୍ରିୟା—୧୭/୧୩୧—ପୃ-୧୦୫୩—
କୃତାଞ୍ଜଳିର୍ଜଗନ୍ନାଥ ମସ୍ତୌଷୀତ୍ କମଳାପତିମ୍ ।
ପଦ୍ମ : କ୍ରିୟା—୧୭/୧୩୬—ପୃ-୧୦୫୩—
ସୃଷ୍ଟିସ୍ଥିତି ପ୍ରଳୟକାରଣ ଈଶ୍ୱରସ୍ୟ ।

ବ୍ରହ୍ମା ରୂପରେ ସୃଷ୍ଟିକରନ୍ତି ଏବଂ ବିଷ୍ଣୁ ରୂପରେ ପାଳନ କରନ୍ତି (୨୮୦)। ସେ ହେଉଛନ୍ତି ସେଥିପାଇଁ ମହାବିଷ୍ଣୁ ଓ ସାକ୍ଷାତ୍ ପରଂବ୍ରହ୍ମ, ସନାତନ, ଅବ୍ୟୟ, ସଚ୍ଚିଦାନନ୍ଦ ବିଗ୍ରହ। ତାଙ୍କ ଚକ୍ଷୁରୁ ଦିବାକର ସୂର୍ଯ୍ୟ ଜାତ ହୁଅନ୍ତି ଓ କର୍ଣ୍ଣରୁ ପ୍ରାଣାଦି ବାୟୁ ଜାତ ହୁଅନ୍ତି। ସେହିପରି ବ୍ରହ୍ମରୂପୀ ବିଷ୍ଣୁଙ୍କର ମୁଖରୁ ଅଗ୍ନି ଜାତ ହେବାର କଥା ଏହି ପୁରାଣରେ କୁହାଯାଇଛି (୨୮୧) ଏଥିରୁ ଜଣାଯାଏ ଯେ ଏହି ମହାବିଷ୍ଣୁଙ୍କୁ ବେଦର ପୁରୁଷସୂକ୍ତରେ ଥିବା ବିରାଟ ପୁରୁଷ ବା ଯଜ୍ଞପୁରୁଷ ସହିତ ଏକ ଅଭେଦ କଳ୍ପନା କରାଯାଇଛି।

ଶ୍ରୀକୃଷ୍ଣ ବା ବିଷ୍ଣୁଙ୍କ ସମ୍ବନ୍ଧୀୟ ଯେତେ ଯେତେ ପୁରାଣଗ୍ରନ୍ଥ ଅଛି, ସବୁଥିରେ ପ୍ରାୟ ବିଷ୍ଣୁଙ୍କୁ ବା କୃଷ୍ଣ-ବିଷ୍ଣୁଙ୍କୁ ଉପରୋକ୍ତ ମତେ ବ୍ରହ୍ମ, ଯଜ୍ଞପୁରୁଷ ଇତ୍ୟାଦି ଭାବରେ ଚିତ୍ରଣ କରାଯାଇଛି। ପୁଣି ତନ୍ମଧ୍ୟରୁ ଯେଉଁ ଯେଉଁ ପୁରାଣମାନ ଜଗନ୍ନାଥଙ୍କ ବିଷୟରେ ଅବତାରଣା କରିଛନ୍ତି, ସମସ୍ତେ ଜଗନ୍ନାଥଙ୍କୁ ମହାବିଷ୍ଣୁ ଭାବରେ ବର୍ଣ୍ଣନା କରି କୃଷ୍ଣ-ବିଷ୍ଣୁଙ୍କର ଏହା ଏକ ରୂପାନ୍ତରିତ ଉପାସନା ବୋଲି ମନ୍ତବ୍ୟ କରିଛନ୍ତି। ଫଳରେ ଜଗନ୍ନାଥ ମୂଳତଃ ବିଷ୍ଣୁ ବା ମହାବିଷ୍ଣୁ; ଏହି ଚିନ୍ତାଧାରା ପ୍ରକଟିତ ହେଉଛି। ଏ ଉପାସନାର କ୍ରମପରିଣତି ସଂକ୍ଷେପରେ ଦେଖିଲେ ଜଣାଯାଏ, ପ୍ରଥମେ ଶ୍ରୀକୃଷ୍ଣଙ୍କୁ ଅବତାର ବିଷ୍ଣୁ ଭାବରେ ପୂଜା କରାଗଲା। ଏହା ନିଶ୍ଚୟ ମହାଭାରତ ଯୁଗର ପର ଘଟଣା। ତାପରେ ତାଙ୍କୁ ଚତୁର୍ଭୁଜ ସ୍ୱୟଂ ବିଷ୍ଣୁ ବୋଲି ଚିନ୍ତା କରାଗଲା। ସ୍ୱୟଂ ବିଷ୍ଣୁଙ୍କୁ ପୁଣି ସୃଷ୍ଟି, ସ୍ଥିତି, ସଂହାରର ନିୟନ୍ତା ଭାବରେ ବିଶ୍ୱାସ କରାଯାଇ ତାଙ୍କୁ ପରଂବ୍ରହ୍ମ ଆଖ୍ୟା ଦିଆଗଲା। ଶ୍ରୀକୃଷ୍ଣ (ବିଷ୍ଣୁ)ଙ୍କୁ ଏପରି ବ୍ରହ୍ମ ଭାବରେ ଚିନ୍ତା କରାଯିବା ପରେ ବେଦାନ୍ତର ନିର୍ଗୁଣ 'ବ୍ରହ୍ମ'ଙ୍କୁ ବିଷ୍ଣୁଙ୍କ ଠାରେ ଏକ ପ୍ରତୀକ ମୂର୍ତ୍ତିରେ ପ୍ରତିଫଳିତ କରି ବୁଝାଇବାର ଆବଶ୍ୟକତା ପଡ଼ିଲା। ଏହି ଶେଷ ପର୍ଯ୍ୟାୟ ହିଁ ଉତ୍କଳରେ ଶ୍ରୀକ୍ଷେତ୍ର ମାଧ୍ୟମରେ ଜଗନ୍ନାଥ ରୂପରେ ଦାରୁବ୍ରହ୍ମ ଭାବେ ରୂପାୟିତ ହେବାର ସମ୍ଭବ ହେଲା।

---

ପଦ୍ମ : କ୍ରିୟା—୧୭/୧୪୦—ପୃ-୧୦୫୩—

"ବ୍ରହ୍ମରୂପେଣ ଯେନାଽସୌ ଭୂତ୍ୱା ସୃଷ୍ଟମିଦଂ ଜଗତ୍।
ଭୂୟୋ ତସ୍ମିନ୍ ମହାବିଷ୍ଣୋ! ରମଣଂ ମମ ମାନସମ୍॥"

୨୮୦। ପଦ୍ମ : କ୍ରିୟା—୧୭/୧୪୧—ପୃ-୧୦୫୩—

ସର୍ବୋ ବିଷ୍ଣୋ! ଭୂତ୍ୱାଽନେନ କ୍ରିୟତେ ଜଗତଃ କ୍ଷୟଃ।
ରୁଦ୍ରରୂପେଣ ସଂହାରେ ତସ୍ମୈ ଭୂୟଂ ନମୋଽସ୍ତୁତେ॥

୨୮୧। ପଦ୍ମ : କ୍ରିୟା—୧୭/୧୪୩—ପୃ-୧୦୫୩—

ନେତ୍ରାଭ୍ୟାଂ ଯସ୍ୟ ଦେବସ୍ୟ ସୂର୍ଯ୍ୟୋଽଜନି ଦିବାକରଃ
ମୁଖାଦଗ୍ନିଶ୍ଚ ଜାୟେତ ତବ ତସ୍ମୈ ନମୋଽସ୍ତୁତେ॥

ସେତେବେଳକୁ ପ୍ରାଚୀନ ପଦ୍ଧତିରେ ଭିଭିନ୍ନ ଧାନକୁ ନେଇ କାଷ୍ଠ, ପାଷାଣ, ଲୌହ ରଜତ, ମୃତ୍ତିକା, ସୁବର୍ଣ୍ଣ ଇତ୍ୟାଦିରେ ମୂର୍ତ୍ତିଗଠନ ଆର୍ଯ୍ୟମାନେ ଜାଣିଥିଲେ ମଧ୍ୟ ପରମାତ୍ମାଙ୍କର ମୂର୍ତ୍ତି ପାଇଁ କ୍ଷୟଶୀଳ ଦାରୁ ଭଳି କାଷ୍ଠକୁ ବାଛିଲେ, ଯାହାର କ (ପରମ) ଆତ୍ମା ପାଇଁ (ନାଭିବ୍ରହ୍ମ)' ଘଟ ପରିବର୍ତ୍ତନର ସୁନ୍ଦର ଯୋଗ୍ୟତା ରହିଥିଲା । ସେ ଯାହାହେଉ, ସବୁ ଜାଣିଶୁଣି, ଭାବଚନ୍ତ୍ର ଆର୍ଯ୍ୟମାନେ କାଷ୍ଠାଭ୍ୟନ୍ତରରେ ପ୍ରତୀକ ବ୍ରହ୍ମଙ୍କୁ (ଆତ୍ମାକୁ) ସ୍ଥାପନ କରି ଏଭଳି ଏକ ଅଚନ୍ତ୍ୟ, ଅବ୍ୟକ୍ତ ପ୍ରତୀକ ମୂର୍ତ୍ତି ନିର୍ମାଣ କରି ପୂଜା କଲେ । ଜଗନ୍ନାଥଙ୍କ ପାଇଁ ଏହି ତାତ୍ତ୍ୱିକ ଚିନ୍ତାଧାରା ହିନ୍ଦୁର ପରଂପରା, ଧର୍ମଚେତନା ଆଦିର ସମ୍ମିଳିତ ଉଦାହରଣ ଏକ ମୂର୍ତ୍ତିମନ୍ତ ପ୍ରତୀକ ଭାବରେ ହିନ୍ଦୁ ଧର୍ମଗ୍ରନ୍ଥ ପୁରାଣାଦିରେ ରୂପାୟିତ ହୋଇଛି । ତାଙ୍କର ପାଣି, ପାଦ ନ ଥିବାର ଲକ୍ଷଣ ତାଙ୍କଠାରେ ବ୍ରହ୍ମତ୍ୱ ଆରୋପର ପ୍ରକୃଷ୍ଟ ପରିଚୟଜ୍ଞାପକ (୨୮୨) । ଏହି ରୂପର ପ୍ରକଳ୍ପ ବିଷ୍ଣୁପୁରାଣରେ ବିଷ୍ଣୁଙ୍କ ପାଇଁ କରାଯାଇଥିଲା ଓ ଏହି (ବିଷ୍ଣୁ) ପରଂବ୍ରହ୍ମଙ୍କର ମୂର୍ତ୍ତିକୁ ପୂଜାକଲେ ନିଶ୍ଚୟ ମୁକ୍ତିଲାଭ ହେବ ବୋଲି ଜନତାଙ୍କୁ ଉପଦେଶ ଦିଆଯାଇଥିଲା (୨୮୩) । ବ୍ରହ୍ମର ପରିକଳ୍ପନାରେ ଜଗନ୍ନାଥଙ୍କୁ ବା ବିଷ୍ଣୁଙ୍କୁ ଯେତେ ଅଙ୍ଗହୀନ ଭାବରେ ଦର୍ଶନ କରାଯାଇ-ପାରିବ, ଚିନ୍ତାଧାରାଟି ସେତିକି ସଫଳ ହେବ (୨୮୪) । ନିର୍ଗୁଣ ବ୍ରହ୍ମ ବିଷ୍ଣୁ ମାୟା ହେତୁ ସଗୁଣ ବୋଲି ଜଣାଯାଆନ୍ତି ସିନା; ମାତ୍ର ସେ ତ ଆତ୍ମରୂପୀ, ପରମାତ୍ମାଙ୍କର ସ୍ୱରୂପ ଓ ଉତ୍ତମ ପୁରୁଷ ତଥା (୨୮୫) ପୁରୁଷୋତ୍ତମ । ସେ ସର୍ବଭୂତରେ ବାସ କରନ୍ତି ଓ ସତ୍ତ୍ୱ, ରଜ, ତମ ଗୁଣର ସମ୍ପର୍କରେ ଆସି ସଂସାରରେ ସୃଷ୍ଟି, ସ୍ଥିତି, ପ୍ରଳୟର ରଚନା

---

୨୮୨ । ବିଷ୍ଣୁପୁରାଣ—ଷଷ୍ଠଭାଗ—୫/୬୬—ପୃ -୫୨୬—ବରେଲି—
ଅନିର୍ଦ୍ଦେଶ୍ୟମରୂପଂ ଚ ପାଣିପାଦାଦ୍ୟସଂଯୁତମ୍ ।

୨୮୩ । ବିଷ୍ଣୁପୁରାଣ—ପ୍ରଥମଭାଗ—୧୧/୪୬—ପୃ-୬୧—ବରେଲି—
ପରଂବ୍ରହ୍ମ ପରଂଧାମ ଯୋଽସୌବ୍ରହ୍ମ ତଥା ପରମ୍ ।
ତମାରାଧ୍ୟ ହରିଂ ଯାତ ମୁକ୍ତିମପ୍ୟତି ଦୁର୍ଲଭାମ୍ ॥

୨୮୪ । ବିଷ୍ଣୁପୁରାଣ--୧ମ—୧୪/୩୬-୪୦—
ଅଚକ୍ଷୁଶ୍ରୋତ୍ର ମଚଳମ ବାକ୍ ପାଣି ମମାନସମ୍ ॥ ୪୦ ॥

୨୮୫ । ବିଷ୍ଣୁପୁରାଣ—୧ମ—୧୦/୩୭—ପୃ-୮୧—
ଶୁଦ୍ଧଃ ସଲକ୍ଷ୍ୟତେ ଭ୍ରାନ୍ତ୍ୟା ଗୁଣବାନିବ ଯୋ ଗୁଣଃ ।
ତମାତ୍ମରୂପୀଣଂ ଦେବଂ ନତାଃ ସ୍ମ ପୁରୁଷୋତ୍ତମମ୍ ॥

କରନ୍ତି (୧୮୬) । ସେଥିପାଇଁ ତାଙ୍କୁ କ୍ଷରାକ୍ଷରମେବଚ ବୋଲି କୁହାଯାଇଛି (୧୮୭) । ସେ ହେଉଛନ୍ତି ବେଦାନ୍ତର ବ୍ରହ୍ମ, ସାଂଖ୍ୟର ପୁରୁଷ (୧୮୭ A), ଗୀତାର ବିଶ୍ୱରୂପ ପୁରୁଷୋତ୍ତମ, ମହାଭାରତର ଶ୍ରୀକୃଷ୍ଣ, ବେଦର ବିରାଟ ପୁରୁଷ ଏବଂ ବିଶ୍ୱର ବା ଜଗତର ସର୍ବଶ୍ରେଷ୍ଠ ପରମେଶ୍ୱର ଜଗନ୍ନାଥ ।

ଏଣୁ ଏକ ପକ୍ଷରେ ସେ ସହସ୍ର ବାହୁ, ବହୁ ବକ୍ତ୍ର ପାଦ ଓ ଅନ୍ୟ ପକ୍ଷରେ ସେ ପଦହୀନ, ହସ୍ତହୀନ ଇତ୍ୟାଦି (୧୮୯) । ସେହି ଦୃଷ୍ଟିରୁ ତାଙ୍କୁ ଖାଲି ବ୍ରହ୍ମ ବୋଲି କୁହାଯାଉନାହିଁ । ଶବ୍ଦବ୍ରହ୍ମ, ପରଂବ୍ରହ୍ମ; ଏହି ଉଭୟ ଭାବରେ ଆରାଧନା କରାଯାଇଛି (୧୯୦) । ଏହି କାରଣରୁ ପୁରୁଷୋତ୍ତମଙ୍କୁ ପ୍ରଣବରୂପୀ ବ୍ରହ୍ମ ବୋଲି କୁହାଯାଇଛି

---

୧୮୬ । ବିଷ୍ଣୁପୁରାଣ—୧ମ—୨୨/୨୭—ପୃ-୧୨୭—

ସର୍ବଭୂତେଷୁ ସର୍ବେଷୁ ସ୍ଥିତଃ କୁରୁତେ ସ୍ଥିତିମ୍ ।
ସତ୍ତ୍ୱଂଗୁଣଂ ସମାଶ୍ରିତ୍ୟ ଜଗତଃ ପୁରୁଷୋତ୍ତମଃ ।

୧୮୭ । ବିଷ୍ଣୁପୁରାଣ—୧ମ—୨୨/୫୫—

କ୍ଷରାକ୍ଷରସ୍ୱରୂପେ ତେ ସର୍ବଭୂତେଷ୍ୱବସ୍ଥିତେ ।

ବିଷ୍ଣୁପୁରାଣ—୧ମ—୨୨/୬୫—

କ୍ଷରାକ୍ଷରମୟୋ ବିଷ୍ଣୁଃ ବିଭର୍ତ୍ତ୍ୟଖିଳମୀଶ୍ୱରଃ ।। ପୃ-୧୩୦ ।।

୧୮୭ A । ବିଷ୍ଣୁପୁରାଣ—୫ମ—୧/୪୨—ପୃ-୩୭୪—

ପୁମାଂସ୍ତ୍ୱମେକଃ ପ୍ରକୃତେଃ ପରସ୍ତାତ୍ ।।

୧୮୮ । ବିଷ୍ଣୁପୁରାଣ—୫ମ—୧/୫୪-୫୮—ପୃ: ୩୭୫—

"ସହସ୍ରବାହୋ ବହୁ ବକ୍ତ୍ରପାଦ"—୫୪ ।

୧୮୯ । ବିଷ୍ଣୁପୁରାଣ—୫ମ—୧/୩୯-୪୦ ପୃ:୩୭୪—

ତ୍ୱମବ୍ୟକ୍ତମନନ୍ତେଶ୍ୟ ମରତ୍ୟା ନାମ ବର୍ଣ୍ଣିତ ।
ଅପାଣି ପାଦରୂପଂ ଚ ଶୁଦ୍ଧଂ ନିତ୍ୟଂ ପରାତ୍ପରମ୍ ।।୩୯।।
ଶୃଣୋତ୍ୟକର୍ଣ୍ଣଃ ପରପଶ୍ୟସି ତ୍ୱମଚକ୍ଷୁରେକୋ ବହୁ ରୂପ ରୂପଃ
ଅପାଦହସ୍ତୋ ଜବନୋଗ୍ରହୀତା ତ୍ୱଂ ବେତ୍ସି ସର୍ବଂ ନ ଚ ସର୍ବବେଦ୍ୟଃ ।।

(ଶ୍ୱେତାଶ୍ୱେତର ଉପନିଷଦ୍—୩/୧୯) ।।୪୦।।

୧୯୦ । ବିଷ୍ଣୁପୁରାଣ—୫ମ—୧/୬୫—ପୃ-୩୭୪—

ଶବ୍ଦବ୍ରହ୍ମ ପରଂଚୈବ ବ୍ରହ୍ମ ବ୍ରହ୍ମମୟସ୍ୟ ଯତ୍ ।।

ସ୍କନ୍ଦପୁରାଣ—ପୁ: ମା:—୨୮/୪୨—

ଶବ୍ଦବ୍ରହ୍ମ ପରଂବ୍ରହ୍ମ ନାନୟୋର୍ଭେଦ ଇଷ୍ୟତେ ।।

(୨୯୧)। ବର୍ଣ୍ଣାଯ କରାଯାଏ, ବ୍ରହ୍ମ ଉପଲବ୍ଧି କଲେ ଯେପରି ସଙ୍ଗେ ସଙ୍ଗେ ମୁକ୍ତିଲାଭ ହୁଏ, (ଦର୍ଶନାତ୍‌ମୁକ୍ତିଃ) ସେହିପରି ଜଗନ୍ନାଥ ବା ଦାରୁବ୍ରହ୍ମଙ୍କର ଦର୍ଶନରେ ସହସା ମୁକ୍ତିଲାଭ ହୋଇଥାଏ (୨୯୨)। ସ୍କନ୍ଦପୁରାଣର ଏହି ବର୍ଣ୍ଣନା ପଦ୍ମପୁରାଣର କ୍ରିୟାଯୋଗ ସାରଖଣ୍ଡ ବା ଉକ୍ତ ପୁରାଣରେ ଥିବା ପୁରୁଷୋତ୍ତମଙ୍କର ସ୍ୱରୂପ; ଏ ଉକ୍ତିଗୁଡ଼ିକ ପରସ୍ପର ସହିତ ତୁଳନା କରି ପୁଙ୍ଖାନୁପୁଙ୍ଖ ଆଲୋଚନା କଲେ ଜଣାଯାଏ ଯେ ବର୍ଣ୍ଣାଯ, ତାତ୍ତ୍ୱିକ ଚେତନା ଓ ଚନ୍ଦ୍ରାଧାରରେ ଏମାନଙ୍କର ସମ୍ପୂର୍ଣ୍ଣସାମ୍ୟ ରହିଅଛି। ବ୍ରହ୍ମପୁରାଣର ତ୍ରିମୂର୍ତ୍ତିର ଚନ୍ଦ୍ରାଧାର ପୂର୍ବାପର ପଦ୍ମପୁରାଣର କ୍ରିୟାଯୋଗ ସାରଖଣ୍ଡରେ ରହିଅଛି। ଉଭୟ ପୁରାଣରେ କୃଷ୍ଣ, ବଳରାମ, ସୁଭଦ୍ରାଙ୍କ ଉପରେ ଗୁରୁତ୍ୱ ସ୍ଥାପନ କରାଯାଇ ସୁଦର୍ଶନଙ୍କୁ ତଥା ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଉପେକ୍ଷା କରାଯାଇଛି। ତା'ଛଡ଼ା ଉଭୟ ପୁରାଣରେ ଦୋଳଯାତ୍ରା, ସ୍ନାନଯାତ୍ରା ଓ ଗୁଣ୍ଡିଚାଯାତ୍ରା ବା ରଥଯାତ୍ରା ଉପରେ ପ୍ରାଧାନ୍ୟ ଦିଆଯାଇଛି (୨୯୩)। ଉଭୟ ପୁରାଣ ମଧ୍ୟରେ ସବୁଠାରୁ ମଜାର କଥା ହେଉଛି, ଗୁଣ୍ଡିଚାଯାତ୍ରା ପାଇଁ 'ଗୁଣ୍ଡିକା' ଓ 'ଗୁଣ୍ଡିଚା' ଶବ୍ଦର ପ୍ରୟୋଗ। ପୁଣି, ଇନ୍ଦ୍ରଦ୍ୟୁମ୍ନଙ୍କ ସ୍ତ୍ରୀଙ୍କ ନାମ 'ଗୁଣ୍ଡିଚା'; ଏକଥା କୌଣସି ସଂସ୍କୃତ ପୁରାଣରେ ନାହିଁ ଓ ଏହା ଏକ ପରବର୍ତ୍ତୀ ଓଡ଼ିଆ ଦେଉଳତୋଳା ପୁସ୍ତକର ମନଗଢ଼ା କଥା। ବ୍ରହ୍ମ ପୁରାଣରେ ଲେଖାଅଛି (୨୯୪):—

"ଗୁଣ୍ଡିକାମଣ୍ଡପଂ ଯାନ୍ତଂ ଯେ ପଶ୍ୟନ୍ତି ରଥେସ୍ଥିତମ୍।
କୃଷ୍ଣଂ ବଳଂ ସୁଭଦ୍ରାଂ ଚ ତେ ଯାନ୍ତି ଭବନଂ ହରେଃ। ବ୍ରହ୍ମ-୬୬/୧
ଗୁଣ୍ଡିକା ନାମ ଯାତ୍ରା ମେ ସର୍ବକାମ ଫଳପ୍ରଦା॥" ବ୍ରହ୍ମ-୬୬/୮

ସେହିପରି ପଦ୍ମପୁରାଣର କ୍ରିୟା ଯୋଗସାର ଖଣ୍ଡରେ କୁହାଯାଇଛି(୨୯୫)—
"ଗୁଣ୍ଡିକା ମଣ୍ଡପେ ବିପ୍ର! ନିଜ ରାଜ୍ୟ ଲଭେତ୍ତ ସଃ॥ ୧୮/୪୮ (ପଦ୍ମ-କ୍ରିୟା:)

---

୨୯୧। ସ୍କନ୍ଦ—ପୁ: ମା:—୮/୩୪—ଇତି ସ୍ତୁତ୍ୱା ସୁରେଶାନଂ ଦେବଂ ପ୍ରଣବରୂପିଣମ୍।
ପ୍ରଣତଃ ପ୍ରଣବଂ ମନ୍ତ୍ରଂ ଜଜାପ ପୁରତୋ ହରେଃ॥
ସ୍କନ୍ଦ—ପୁ: ମା:—୩୦/୮—
ଯସ୍ୟ ପାଦାମ୍ବୁଜେ ଧୌତେ ଧର୍ମେଣ ବ୍ରହ୍ମରୂପିଣା॥

୨୯୨। ସ୍କନ୍ଦ—ପୁ: ମା:—୨୯/୫୬—
ଦାରୁବ୍ୟାଜାମୃତଂ ବ୍ରହ୍ମ ଦୃଷ୍ଟ୍ୱା ମୁଚ୍ୟେନ୍ନସଂଶୟଃ॥

୨୯୩। ପଦ୍ମ—କ୍ରିୟା:—୧୮/୩୧—ଦୋଲାସ୍ଥମାନଂ ଗୋବିନ୍ଦଂ ଫାଲ୍‌ଗୁନେମାସି-
ତଜ ଯୋ; ୧୮/୩୬—ମହାସ୍ନାନଂ ପ୍ରପଶ୍ୟନ୍ତି......

୨୯୪। ପୁରାଣବିମର୍ଶ—(ଉଦ୍ଧୃତ)—ପୃ-୫୩୮—ବଳଦେବଜୀ। ବାରାଣସୀ—୧୯୬୫।

୨୯୫। ପଦ୍ମ—କ୍ରିୟାଯୋଗସାର—ଗରୁମଣ୍ଡଳ—୧୯୫୯-ପୃ-୧୦୬୨—୧୦୬୩।

ଗୁଣ୍ଡିକା ମଣ୍ଡପଂ ଯାନ୍ତମାସାଂତେ କମଳାପତେମ୍ ॥ ୧୮/୩୮
ଗୁଣ୍ଡିକା ମଣ୍ଡପସ୍ଥଂ ଚ କୃଷ୍ଣଂ ପଶ୍ୟନ୍ତି ଯଃ ପୁମାନ୍ ॥ ୧୮/୪୩
ସପ୍ତସ୍ୱପ୍ନଃ ଜଗନ୍ନାଥଂ ଗୁଣ୍ଡିକା ମଣ୍ଡପେ ସ୍ଥିତମ୍ ॥ (ପଦ୍ମ: କ୍ରିୟା: ୧୮/୪୫)
ଶଯ୍ୟା ଭୂର୍ଜିତୋ ଯସ୍ତୁ ଗୁଣ୍ଡିକାମଣ୍ଡପେ ହରିମ୍ ॥ ପଦ୍ମ: କ୍ରିୟା: ୧୮/୪୮
ଗୁଣ୍ଡିକା ମଣ୍ଡପେ ପଶ୍ୟେଦ୍ ଯୋ ରାଜପୀଡ଼ିତୋ ଭୃଶମ୍ । ୧୮/୪୯ ।
ସର୍ବାସାମେବ ଯାତ୍ରାଣାଂ ଗୁଣ୍ଡିକା ପ୍ରକରମତା ॥ ୧୮/୫୦ ॥

ସ୍କନ୍ଦପୁରାଣର ଉତ୍କଳଖଣ୍ଡରେ କିନ୍ତୁ 'ଗୁଣ୍ଡିଚା' ନାମ ରହିଛି ଏବଂ ଏହି ନାମ ପରବର୍ତ୍ତୀ ଯୁଗରେ ଲୋକପ୍ରିୟ ହୋଇଯାଇଛି (୨୧୬)। ଏଣୁ ଗୁଣ୍ଡିବା ଓ ଗୁଣ୍ଡିକା ଶବ୍ଦର ପ୍ରୟୋଗ ବ୍ରହ୍ମପୁରାଣ ଓ କ୍ରିୟାଯୋଗସାରଖଣ୍ଡର ଉତ୍କଳଖଣ୍ଡଠାରୁ ପ୍ରାଚୀନତା ପ୍ରମାଣ କରିବା ସଙ୍ଗେ ସଙ୍ଗେ କ୍ରିୟା ଯୋଗସାରଖଣ୍ଡ ଯେ ଉତ୍କଳ ଖଣ୍ଡର (ଅଷ୍ଟମଶତକ) ପରବର୍ତ୍ତୀ; ଏଥିରେ ଘୋର ସନ୍ଦେହର ସୃଷ୍ଟି ଖେଳାଇଦିଏ । ଏଣୁ କୁହାଯାଇପାରେ ପ୍ରଥମେ ଗୁଣ୍ଡିବା, ତାପରେ ଗୁଣ୍ଡିକା ଓ ତାହାପରେ ଗୁଣ୍ଡିଚା ଶବ୍ଦର ବ୍ୟବହାର କରାଯାଇଛି । ମାତ୍ର ପ୍ରଥମେ ଗୁଣ୍ଡିବା, ତା'ପରେ ଗୁଣ୍ଡିଚା, ତା'ପରେ ଗୁଣ୍ଡିକା, ପୁଣି ତାପରେ ଓଡ଼ିଆ ପୁରାଣମାନଙ୍କ ବେଳକୁ ଗୁଣ୍ଡିଚା ଶବ୍ଦର ପ୍ରୟୋଗ କରାହେଲା, ଏହା ମୋଟେ ସମ୍ଭବ ନୁହେଁ । ତେଣୁ ଧରିବାକୁ ହେବ, ଯେ ଗୁଣ୍ଡିଚାର ପୂର୍ବବର୍ତ୍ତୀ ନାମ ଗୁଣ୍ଡିକା ଓ ତାହାର ପୂର୍ବବର୍ତ୍ତୀ ନାମ ଗୁଣ୍ଡିବା । ଏଥିରେ ଭାଷାତାତ୍ତ୍ୱିକ ଦୃଷ୍ଟିରୁ ଉଚ୍ଚାରଣ ପଦ୍ଧତି ଅନୁସାରେ କ୍ରମ ରହୁନାହିଁ । ଅତଏବ ଦ୍ରାବିଡ଼ ଗୁଡ଼ିସା ଶବ୍ଦରୁ ମଝିରେ 'ଗୁଡ଼ିଚା' ହୋଇ ପରେ ଗୁଣ୍ଡିଚା ଶବ୍ଦ ହୋଇଛି, (୨୧୭), ବା ସୌରା ଭାଷାର 'କୁନ୍' ବା ସେହି ଓ 'ଡଜା' ବା ଗଣ୍ଡି (କୁଣ୍ଡିକା) ଶବ୍ଦଦ୍ୱୟରୁ ହୋଇଛି (୨୧୮); ଏପରି ଭାବିବାର ଅର୍ଥ

---

୨୧୬ । ସ୍କନ୍ଦ—ପୁ: ମା:—୨୯/୩୪-୩୮—

ଦ୍ୱିଜସ୍ତୁସ୍ୱରଥେ ନାଥ ଗୁଣ୍ଡିଚା ମଣ୍ଡପଂ ପ୍ରତି ॥
ଗୁଣ୍ଡିଚା ମଣ୍ଡପଂ ନାମ ଯତ୍ରାହଂ ଅଜନଂପୁରା ॥୩୪॥

୨୧୭ । ଓଡ଼ିଶା ଇତିହାସ—ଡଃ ହରେକୃଷ୍ଣ ମହତାବ—ପୃ-୪୭୦
୨୧୮ । ଦାରୁଦେବତା—ପୃ: ୧୮୯ ।

"ଡଃ ମହତାବ ଅନୁମାନ କରନ୍ତି, "ଗୁଣ୍ଡିଚା ଖୁବ୍ ସମ୍ଭବ 'ଗୁଡ଼ିସା' (ତେଲୁଗୁଶବ୍ଦ)ର ପରିଣତି ।'' ଏହାର ଅର୍ଥ କୁଟୀର । ଏହି ଶବ୍ଦ 'ଗୁଡ଼ିଚା' ଭାବରେ ପୁଣି ପରିଣତ ହୋଇଥିବ । ତା'ପରେ 'ଗୁଡ଼ିଚାରୁ' 'ଗୁଣ୍ଡିଚା' କୁଟୀରକୁ ଯାତ୍ରା କଥା ଆସିଥିବ । ମହତାବଙ୍କର ଏ ମତକୁ ଡଃ ପାଢ଼ୀ କାଟି ଉଡ଼ାଇ ଦେଇଛନ୍ତି । ସେ କହନ୍ତି, ଏ ଯୁକ୍ତି ପଛରେ କିଛି କାରଣ ନାହିଁ । ଗୁଣ୍ଡିଚା ମନ୍ଦିର କେବେ ଏକ

ହେଉଛୁ ଟାଣି ଓଟାଣ ଜଗନ୍ନାଥଙ୍କୁ ନେଇ ଏକ ଦ୍ରାବିଡ଼ ଦେବତା ବା ଆଦିବାସୀଙ୍କର ଦେବତା ବୋଲି ପ୍ରମାଣ କରିବା । ତା'ଛଡ଼ା ଏପରି କିଛି ପ୍ରମାଣ କେଉଁ ଗ୍ରନ୍ଥ ବା ଶିଳାଲେଖ ଆଦିରୁ ମିଳୁନାହିଁ । ଯାହା ଆମକୁ ମିଳୁଛି, ତାହା ହେଉଛି, ଗୁଣ୍ଡିବା ଓ ଗୁଣ୍ଡିକା । ଅତଏବ ଏହି ଦୁଇଟି ଶବ୍ଦହିଁ ଗୁଣ୍ଡିଚ୍ଚ ଶବ୍ଦର ପୂର୍ବରୂପ, ଅନ୍ୟ କିଛି ନୁହେଁ ।

'ଗୁଣ୍ଡିବା' ଓ 'ଗୁଣ୍ଡିକା' ଏହି ଦୁଇଟି ଯଦି ଗୁଣ୍ଡିଚ୍ଚ ଶବ୍ଦର ପୂର୍ବରୂପ ହୋଇଥାନ୍ତି, ତେବେ ଏହା ସ୍ପଷ୍ଟ ଯେ ଏ ଯବୁ ଶବ୍ଦ 'ଗୁଣ୍ଠ୍' ଧାତୁରୁ ନିଷ୍ପନ୍ନ ହୋଇଛନ୍ତି । ଗୁଣ୍ଠ୍ ଧାତୁର ଯୋଡ଼ଏ ଅର୍ଥ ରହିଛି । ତନ୍ମଧ୍ୟରୁ ପ୍ରଥମ ଅର୍ଥଟି ହେଲା (Cover, hide) ଘୋଡ଼ାଇବା ବା ଲୁଚାଇବା (ଗୁଣ୍ଠିତ, ଗୁଣ୍ଠନ); କିନ୍ତୁ ଦ୍ୱିତୀୟ ଅର୍ଥଟି ହେଉଛି ଚୂର୍ଣ୍ଣ କରିବା (୨୧୯) । ଏହି ଅର୍ଥରେ ଦେଖିଲେ ପ୍ରଥମ ଅର୍ଥଟି ଏଠାରେ ପ୍ରଯୁଜ୍ୟ । ସେହି ଦୃଷ୍ଟିରୁ 'ଗୁଣ୍ଡିବା ଯାତ୍ରା'ର ଅର୍ଥ ପ୍ରଭୁଙ୍କୁ କୌଣସି ଆବରଣ ଭିତରେ ନେଇ ଯାତ୍ରା କରାଇବା । ହୁଏତ ଏହା ଶବ୍ଦାନ୍ତରେ ଗୁଣ୍ଡିତା ଯାତ୍ରା ହୋଇପାରେ ଏବଂ ପରେ 'ତା' ସ୍ଥାନରେ 'କା' ଓ ପରେ 'ଚ୍ଚ' ଏହି ବର୍ଗୀୟ ପ୍ରଥମ ବର୍ଣ୍ଣମାନ (କ, ଚ, ଟ, ତ, ପ) ଯୋଗ କରାଯାଇ ଗୁଣ୍ଡିକା ଓ ପରେ ଗୁଣ୍ଡିଚ୍ଚ ଶବ୍ଦ ନିଷ୍ପନ୍ନ ହୋଇପାରିଥାଏ । ଏହାଛଡ଼ା, କା, ଚ୍ଚ ଓ ବା'—ସମସ୍ତେ ହେଉଛନ୍ତି ଏକଜାତୀୟ ଓ ଅଳ୍ପ ପ୍ରାଣଶବ୍ଦ । ପୁଣି ଏହିଭଳି ନିଷ୍ପନ୍ନ 'ଗୁଣ୍ଡିଚ୍ଚ' ଶବ୍ଦର ଅର୍ଥ ଯଦି ଆବରଣ (To cover, hide) ହୁଏ, ତେବେ, ଦେଖିଲେ ଜଣାଯାଏ, ଯେ ଜଗନ୍ନାଥଙ୍କୁ 'ମେନାପଟା'ର ଆବରଣ ଭିତରେ ଆଣି ରଥଯାତ୍ରା କରାଯାଇଥାଏ । ଯେତେବେଳେ ନବକଳେବର ସମୟରେ ଦାରୁ ଅଣାଯାଏ, ତାକୁ ମଧ୍ୟ କୌଣସି ଆଚ୍ଛାଦନ ବସ୍ତ୍ରରେ ଆଚ୍ଛାଦନ କରାଯାଇ ରଥ ସ୍ୱରୂପ ଏକ ଶଗଡ଼ରେ ବସାଇ ମନ୍ଦିରକୁ ଅଣାଯାଏ । ଜଗନ୍ନାଥଙ୍କୁ ଘୋଡ଼ାଇବା ବିଧି ମୂଳରୁ ସବୁବେଳେ ଏପରି ଚାଲିଆସୁଛି । ସେ କୌଣସି ଆବରଣ ମଧ୍ୟରେ ସର୍ବଦା ଏହିପରି ଆଚ୍ଛାଦିତ ରହନ୍ତି । ତାଙ୍କର ବ୍ରହ୍ମ ପଦାର୍ଥ ସ୍ଥାପନ, ଅଣସର ଆଦି ସବୁକିଛି ଗୋପନରେ ହୁଏ । ତା'ଛଡ଼ା ପରମ୍ପରା ଅନୁଯାରେ ସ୍କନ୍ଦପୁରାଣରେ ଉଲ୍ଲେଖ ଅଛି ଯେ ଗୁଣ୍ଡିଚ୍ଚ ମଣ୍ଡପରେ ଯେଉଁ

କୁଠାର ନଥିଲା । ତାଙ୍କ ମତରେ ଏଇ ଶବ୍ଦ ପୌରାଣିକ 'କ୍ରୂନ୍' ଓ 'ତକା'ରୁ ନିଷ୍ପନ୍ନ ହୋଇଛି । ଏହାର ଅର୍ଥ 'ଦାରୁଗଣ୍ଡି' । "ପ୍ରଥମେ ସେ ଗୁଣ୍ଡିଚ୍ଚ ମଣ୍ଡପରେ ଦାରୁଗଣ୍ଡି ରୂପରେ ପୂଜା ପାଉଥିଲେ । ପରେ ତାଙ୍କୁ ପ୍ରାସାଦ ମଧ୍ୟରେ ତ୍ରିମୂର୍ତ୍ତି ରୂପେ ପ୍ରତିଷ୍ଠିତ କରାଗଲା ।" ଏହାପରେ ସେ ସ୍କନ୍ଦପୁରାଣରୁ ଉଦ୍ଧୃତ ଦେଇ ଆଗେଇଛନ୍ତି । ମାତ୍ର ଡଃ ପାଢ଼ୀଙ୍କର ଏ ଯୁକ୍ତି ପଛରେ, କୌଣସି ପ୍ରମାଣ ନାହିଁ । ସ୍କନ୍ଦପୁରାଣରେ ଏପରି ମୋଟେ କୁହା ଯାଇନାହିଁ ଯେ, ପ୍ରଥମେ, ଗୁଣ୍ଡିଚ୍ଚ ମନ୍ଦିରରେ କାଠଗଣ୍ଡି ପୂଜା ହେଉଥିଲା । ଏହା ସେ ମହାଶୟଙ୍କର ନିଜସ୍ୱ କଳ୍ପନା ।

୨୧୯ । Sanskrit Eglish Dictionary—(Student's) —
V. S. Apte—1965—pp 189.

ମଣ୍ଡପ ଥିଲା ବା ମହାବେଦୀ ଥିଲା, ତାହାକୁ ଗୋପନୀୟ କରାଯାଇଥିଲା (୩୦୦) । ତେଣୁ ଏ ମହାବେଦୀକୁ ଗୁଣ୍ଡିଚା (ଗୋପନୀୟା) ବୋଲି କହିବାର ଯାଥାର୍ଥ୍ୟ ଅଛି । ପୁଣି ପୌରାଣିକ ମତରେ ଏ ବେଦୀକୁ ପନ୍ଦରଦିନ ଘୋଡ଼ାଇକରି ରଖିବାର ବ୍ୟବସ୍ଥା ହୋଇଥିଲା (୩୦୧) । ତାହାର ଭିତରେ ସ୍ୱୟଂ ଭଗବାନ ବର୍ଦ୍ଧକୀ ବେଶରେ ଆସି ଚତୁର୍ଦ୍ଧା ମୂର୍ତ୍ତି ଗୋପନରେ ନିର୍ମାଣ କରିଥିଲେ । ସେହି ଗୁଣ୍ଡିଚା ମଣ୍ଡପକୁ ବର୍ଷରେ ଥରେ ରଥରେ ବସି ଜଗନ୍ନାଥ ଯାଆନ୍ତି ଓ ଏ ଯାତ୍ରାର ନାମ ହେଉଛି ସେଥିପାଇଁ ଗୁଣ୍ଡିଚାଯାତ୍ରା । କିନ୍ତୁ ଗୁଣ୍ଡିଚା ବୋଲି କେହି (ଇନ୍ଦ୍ରଦ୍ୟୁମ୍ନଙ୍କର) ରାଣୀ ଥିବାର କଥା ପ୍ରାଚୀନ ସଂସ୍କୃତ ଗ୍ରନ୍ଥମାନଙ୍କରେ ନାହିଁ । ଏହା ନୀଳାମ୍ବର ଦାସ ଶିଶୁକୃଷ୍ଣ ଦାସଙ୍କ ଭଳି କବିମାନଙ୍କର କଳ୍ପନା (୩୦୨) ।

ସାରଳାମହାଭାରତରେ ବର୍ଣ୍ଣନା ଅଛି, ରାଜା ଇନ୍ଦ୍ରଦ୍ୟୁମ୍ନ ନିଜେ ଉତ୍କଣ୍ଠିତ ହୋଇ କବାଟ ଖୋଲିଦେଲେ ଓ ଚତୁର୍ଦ୍ଧାମୂର୍ତ୍ତି ସେହି ହେତୁରୁ ଅସମ୍ପୂର୍ଣ୍ଣ ରହିଲା । ବୋଧହୁଏ, ତାଙ୍କ ସମୟରୁ ଗୁଣ୍ଡିଚା ରାଣୀଙ୍କର କବାଟ ଖୋଲିବା କଥା ଲୋକରେ ପ୍ରଚଳିତ ନ ଥିଲା । ସେ ଯାହା ଲେଖିଲେ, ତାହା ସ୍କନ୍ଦପୁରାଣ କାଳରେ କଣ୍ଢ୍ତ ଭାବରେ କିମ୍ବଦନ୍ତୀ ରୂପେ ଲୋକରେ ପ୍ରଚଳିତ ଥିଲା । ସେ ସେହି କାହାଣୀକୁ ନେଇ ତତ୍ର ଉଦ୍ଧୃତ ନିଜର ମୌଳିକତା ଯୋଗ କରି ବନପର୍ବ ଓ ମୂଷଳୀପର୍ବରେ ମହାଭାରତରେ ଜଗନ୍ନାଥଙ୍କ ଇତିହାସ ବର୍ଣ୍ଣନା କଲେ । ସେତେବେଳକୁ ଅବଶ୍ୟ ଜଗନ୍ନାଥ କ୍ଷେତ୍ର ଭାରତ ବିଖ୍ୟାତ

---

୩୦୦ । ସ୍କନ୍ଦ—ପୁ: ମା:—୧୮/୩୬—

ସୁଗୁପ୍ତାସ୍ତୁ ମହାବେଦ୍ୟାଂ ସ୍ୱୟଂ ସୋଽବତରିଷ୍ୟତ ।

୩୦୧ । ସ୍କନ୍ଦ—ପୁ: ମା:—୧୮/୩୬—

ପ୍ରଚ୍ଛାଦ୍ୟତାଂ ଦିନାନ୍ୟେଷା ଯାବତ୍ ପଞ୍ଚଦଶାନି ବୈ ।।

୩୦୨ । ଦେଉଳତୋଳା—(ଅଷ୍ଟାଦଶ ଶତକର ରଚନା)—ଶିଶୁକୃଷ୍ଣ ଦାସ—(ପଞ୍ଚଦଶଶତକର ନୀଳାମ୍ବର ଦାସ ଇତ୍ୟାଦି ।

"ଏଥିରେ ଥିବା ଗୁଣ୍ଡିଚାରାଣୀଙ୍କ କଥା ଯେପରି ଏକ କାଳ୍ପନିକ ଚରିତ, ସେହିପରି ଦଇତାମାନେ ଶବର ବୋଲି କହିବା ମଧ୍ୟ ଓଡ଼ିଆ କବିଙ୍କର ଏକ ମନଗଢ଼ା କଥା । ଦଇତାମାନେ ଶବରଜାତିର ବୋଲି କୌଣସି ପ୍ରାଚୀନ ପ୍ରମାଣ ନାହିଁ । ତେଣୁ ଏମାନଙ୍କୁ 'ଦଇତ' ଶବ୍ଦରୁ ଉଦ୍ଭବ ବୋଲି ସମାଲୋଚକମାନେ ଭାବିବା ମଧ୍ୟ ଏକ ଭ୍ରାନ୍ତ ଧାରଣା । ଏ ଭ୍ରାନ୍ତ ଆସିଛି ଶିଶୁକୃଷ୍ଣଦାସଙ୍କ ଦେଉଳ ତୋଳାର ଅନୁସରଣରେ । ଏ ପୁସ୍ତକ ତ ବେଶିଦିନର ରଚନା ନୁହେଁ । ଏଇ ଦୁଇଶହ ବର୍ଷତଳେ ଏପରି ଲେଖାଯାଇଛି । ପ୍ରକୃତରେ ଦଇତାମାନେ ହେଉଛନ୍ତି ଭୁବନେଶ୍ୱରର ବଡ଼ୁଙ୍କ ଭଳି ଶୂଦ୍ର ସେବକ ।

ହୋଇଯାଉଥିଲା (୩୦୩) । ଯାତ୍ରୀମାନେ ବନ୍ଧୁଜନ ସମାଗମରେ ଅନୁଷ୍ଠିତ ହେଉଥିଲା । ସ୍କନ୍ଦପୁରାଣ ଓ ମୁରାରିଙ୍କ ସମୟରୁ (ଅଷ୍ଟମ ଶତକ) ଏବଂ ତାହାର ପୂର୍ବରୁ ମଧ୍ୟ ଏହାର ଅନେକ ପ୍ରମାଣ ରହିଛି (୩୦୪) ରହିଛି । ସ୍କନ୍ଦପୁରାଣରେ ମହାପ୍ରସାଦର ଉତ୍କର୍ଷ ବହୁ-ଭାବରେ ବର୍ଣ୍ଣିତ । ଅର୍ଥାତ୍ ପ୍ରାଚୀନ ସମୟରୁ ମହାପ୍ରସାଦ ଭକ୍ଷଣ ଓ ଜାତିଭେଦ ନିର୍ବିଶେଷରେ ବ୍ରହ୍ମଦ୍ରବ୍ୟ ଏ ପବିତ୍ର ପ୍ରସାଦ ଗ୍ରହଣ ଅନ୍ତତଃ ସ୍କନ୍ଦପୁରାଣଠାରୁ ଆରମ୍ଭ-କରି ପଦ୍ମପୁରାଣରେ କ୍ରିୟାଯୋଗ ସାର ପର୍ଯ୍ୟନ୍ତ ଛନ୍ଦେ ଛନ୍ଦେ ବର୍ଣ୍ଣିତ (୩୦୫) । କ୍ରିୟା-ଯୋଗସାର ଖଣ୍ଡରୁ ଜଣାଯାଏ, ଯାତ୍ରୀ ବା ଭକ୍ତମାନେ ଦର୍ଶନ କରିବାକୁ ମନ୍ଦିରରେ ପ୍ରବେଶ କଲାବେଳେ ଶୃଙ୍ଖଳା ରକ୍ଷାକାରୀ ମନ୍ଦିର ପୁରୁଷମାନେ ସେମାନଙ୍କୁ ବେତ୍ରାଘାତ କରୁଥିଲେ ଓ ଦର୍ଶକମାନେ ଆନନ୍ଦରେ ସେ ବେତ୍ରପ୍ରହାରକୁ ଏକ ପବିତ୍ର ଉପହାର ଭଳି ଗ୍ରହଣ କରୁଥିଲେ (୩୦୬) । ଏହିପରି ସବୁକିଛି ପୁରୁଷୋତ୍ତମ କ୍ଷେତ୍ରରେ ପବିତ୍ର ବୋଲି ଧରାଯାଉଥିଲା । ସେହିପରି ଏକ ପଞ୍ଚଦଶ ଶତାବ୍ଦୀର ଧାର୍ମିକ ଭାବରେ ସାରଳାଦାସ ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ବର୍ଣ୍ଣନା କରିଥିଲେ । ତାଙ୍କ ପରେ ତାଙ୍କ ଭଳି ଅନେକ କବି ଜଗନ୍ନାଥଙ୍କର ସ୍ୱରୂପ ଅବଗତ ହେବାକୁ ଚେଷ୍ଟାକରି ନିଜ ନିଜର କୃତିମାନ ରଚନା କଲେ । ହେଲେ, ବୈଦିକ ଦର୍ଶନର ମୂଳାଧାର ଶ୍ରୀ ଜଗନ୍ନାଥଙ୍କୁ ନିଃସନ୍ଦେହ ଭାବରେ ନିର୍ଣ୍ଣୟ କରିପାରିଲେ ନାହିଁ । ଯାହାକୁ ଯେପରି ଦିଶିଲା, ସେ ସେପରି ବର୍ଣ୍ଣନା କଲେ । ଅଧିକାଂଶ ତ ତାଙ୍କୁ ମୂଳତଃ ବିଷ୍ଣୁ ଭାବରେ ବର୍ଣ୍ଣନା କଲେ । ପୁଣି କେହି କେହି ଏହି ଭାବ ସହିତ ତାଙ୍କୁ ବୌଦ୍ଧ ଅବତାର (୩୦୭), ସୁଭଦ୍ରାଙ୍କୁ (୩୦୮) ବ୍ରହ୍ମା ରାଧା,

---

୩୦୩ । ପଦ୍ମ : କ୍ରିୟା—୧୮/୫୪—

ସର୍ବେଷାମପି ତୀର୍ଥାନାଂ ବରିଷ୍ଠଂ ପୁରୁଷୋତ୍ତମ୍ ।

(ସ୍କନ୍ଦ : ବ୍ରହ୍ମ : ପୁରାଣାଦିରେ ମଧ୍ୟ ଏତାଦୃଶ ବର୍ଣ୍ଣନା ରହିଅଛି ।)

୩୦୪ । ଅନର୍ଘରାଘବମ୍—ମୁରାରି—ପ୍ରସ୍ତାବନା ।

୩୦୫ । ପଦ୍ମ : କ୍ରିୟା—୧୮/୭—

ଶ୍ୱଣ୍ଡାଳେନାଽପି ସଂସ୍ପୃଷ୍ଟଂ ଗ୍ରାହ୍ୟଂ ତନ୍ନାନ୍ନ ମଗ୍ରଜୈଃ ॥

୩୦୬ । ପଦ୍ମ : କ୍ରିୟା—୧୮/୨୩—

ତତ୍ର ବେତ୍ରପ୍ରହାରେଣ ଶରୀରଂ ଯସ୍ୟ ଲୋହିତମ୍ ॥

୩୦୭ । ସାରଳାମହାଭାରତ ସଭାପର୍ବ—ବଉଧରୂପେ, ବସେ ଅଛନ୍ତି ଜଗନ୍ନାଥ ॥

ଦ୍ରଷ୍ଟବ୍ୟ—The Land of Vishnu—(ମହାନ୍ତି)– pp-76—Foot note. No. 153.

୩୦୮ । ସା. ମ. ଭା.—ମୂଷଳୀପର୍ବ—ପୃ-୩୯—

"ବ୍ରହ୍ମା ବୋଇଲେ ମୁଁ କମା ରହିଥିବି ଏକ······

ବଳଭଦ୍ରଙ୍କୁ ଶିବ, ତଥା ଅ, ଉ, ମ (ଓଁକାର) ତ୍ରୈଃ (ବେଦ)ର ଉପାସନା, ତ୍ରିପୁରାର ମୂର୍ତ୍ତିସ୍ୱ ଇତ୍ୟାଦି ରୂପରେ ପରିକଳ୍ପନା କଲେ । ଏସବୁ ତନ୍ତ୍ରର ବୀଜମାନ ପୁରାଣ ଯୁଗରୁ ଜଗନ୍ନାଥଙ୍କଠାରେ ଆରୋପିତ ହୋଇଥିଲା । ଜୟଦେବ ଜଗନ୍ନାଥଙ୍କୁ ବୌଦ୍ଧ (୩୦୯) ଅବତାର ବୋଲି ଉଲ୍ଲେଖ କରିସାରିଥିଲେ । ଏ ସବୁ ଥିଲା ଓଡ଼ିଆ କବିମାନଙ୍କର ବର୍ଣ୍ଣନାର ମୌଳିକ ଉତ୍ସ । ସେହି ଉତ୍ସର ବିକଶିତ ଶାଖାପ୍ରଶାଖାମାନଙ୍କରୁ ଜଣାଯାଏ, ମହାବିଷ୍ଣୁ ଜଗନ୍ନାଥ ହେଉଛନ୍ତି କାଳ ବା ସର୍ବଶକ୍ତିମାନ୍ ମହାକାଳ । କିନ୍ତୁ ଓଡ଼ିଆ କବିମାନେ ଏହି ଦିଗଟି ଉପରେ ଯଥେଷ୍ଟ ଗୁରୁତ୍ୱ ନ ଦେଇଥିବାରୁ କାଳକ୍ରମେ ଏହି ଚିନ୍ତାଧାରାଟି ଅନ୍ଧକାରରେ ଅଦୃଶ୍ୟ ହୋଇଯାଇଛି ।

**ମହାକାଳ ଜଗନ୍ନାଥ:—**

ପ୍ରାଚୀନ ସଂସ୍କୃତ ଗ୍ରନ୍ଥମାନଙ୍କରେ ଜଗନ୍ନାଥଙ୍କୁ ଆର୍ଯ୍ୟ ଚିନ୍ତାଧାରାର ସର୍ବଶ୍ରେଷ୍ଠ ଦେବତା ରୂପେ ପୂଜା କରାଯାଇ ପରଂବ୍ରହ୍ମ ସ୍ୱୟଂ ଦାରୁବ୍ରହ୍ମ ଭାବରେ ଉପାସିତ ହେଉଛନ୍ତି ବୋଲି ଦେଖାଇ ଦିଆଯିବା ସଙ୍ଗେ ସଙ୍ଗେ ସେ ଯେ ସ୍ୱୟଂ ମହାଶକ୍ତିଶାଳୀ କାଳ; ସେ କଥା ମଧ୍ୟ ପ୍ରତିପାଦନ କରାଯାଇଥିଲା । ଜଗନ୍ନାଥଙ୍କୁ କାଳ ବା ମହାକାଳ ବୋଲି ପ୍ରମାଣ କରିବା ପଛରେ ତାଙ୍କୁ ମହାବିଷ୍ଣୁ ଭିନ୍ନ ଅନ୍ୟ କୌଣସି ଦେବତାରେ ରୂପାନ୍ତରିତ କରାଯିବାର ପ୍ରୟାସ କୌଣସି ସଂସ୍କୃତ ପୁରାଣକାରଙ୍କର ନ ଥିଲା । ସେତେବେଳେ ଜଗନ୍ନାଥଙ୍କୁ ଯେଉଁଭଳି ଭାବରେ ବିଚାର କରାଯାଉଥିଲା, ସେହି ସେହି ପାରଂପରିକ ସଂଜ୍ଞାଗୁଡ଼ିକ ପୁରାଣକାରମାନେ ଭିନ୍ନ ଭିନ୍ନ ସମୟରେ ପ୍ରୟୋଗ କରିଛନ୍ତି ମାତ୍ର (୩୧୦) ।

କାଳର ଶକ୍ତି ସର୍ବାଧିକ ଥିବାରୁ ପ୍ରତି ଧର୍ମର ଶ୍ରେଷ୍ଠ ଦେବତାଙ୍କୁ ସର୍ବଶକ୍ତିମୟ 'କାଳ' ବୋଲି କୁହାଯାଇପାରେ । ଶୈବମାନେ ଶିବଙ୍କୁ ପରଂବ୍ରହ୍ମ ବୋଲି ମାନିବା ସଙ୍ଗେ ସଙ୍ଗେ ମହାକାଳ ବୋଲି ମାନନ୍ତି ଓ ସେଥିପାଇଁ ଉଜ୍ଜୟିନୀ ପ୍ରଭୃତି ସ୍ଥାନରେ

---

ପ୍ରେମଭକ୍ତି ବ୍ରହ୍ମଗୀତା—ଯଶୋବନ୍ତ ଦାସ—

ମଧ୍ୟେ ସୁଭଦ୍ରା ବ୍ରହ୍ମାରୂପ, ରାଧାଙ୍କ ଅଙ୍ଗେ ତହିଁ ଗୋପ୍ୟ ।

୩୦୯ । ଗୀତଗୋବିନ୍ଦମ୍—ଜୟଦେବ—ଦଶାବତାର ସ୍ତୋତ୍ରମ୍—

କେଶବଧୃତ ବୁଦ୍ଧଶରୀର······

୩୧୦ । ସ୍କନ୍ଦ—ପୁ: ମା: ୩/୨୯—

କାଳସ୍ୱରୂପଂ ସର୍ବେଷାଂ କାଳାତ୍ମାନଂ ମହାମୁନେଃ ॥

ମହାକାଳ'—ଶିବଙ୍କର ମନ୍ଦିର ରହିଅଛି (୩୧୦ କ) । ଖ୍ରୀ: ଅ: ପ୍ରଥମ ଶତକ ବେଳକୁ ଶିବ ସର୍ବଶକ୍ତିମାନ୍ ମହାକାଳ ଭାବରେ ପୂଜିତ ହୋଇସାରିଥିଲେ । ଏକଥା କାଳିଦାସଙ୍କର ମେଘଦୂତ ଆମକୁ ସୂଚନା ଦିଏ (୩୧୧) । ଯୁଗେ ଯୁଗେ ବୈଷ୍ଣବ-ମାନଙ୍କର ଶୈବମାନଙ୍କ ସହିତ କଳହ ଓ ପ୍ରତିଯୋଗିତା ଲାଗିରହିଛି । ଶୈବମାନଙ୍କ ଦୃଷ୍ଟିରେ ଶକ୍ତି ହେଉଛନ୍ତି ଦୁର୍ଗା । ବୈଷ୍ଣବମାନଙ୍କ ଦୃଷ୍ଟିରେ ଶକ୍ତି ହେଉଛନ୍ତି ଲକ୍ଷ୍ମୀ । ଶୈବମାନଙ୍କ ଶିବ ହେଉଛନ୍ତି ପରଂବ୍ରହ୍ମ । ବୈଷ୍ଣବମାନଙ୍କର ବିଷ୍ଣୁ ମଧ୍ୟ ପରଂବ୍ରହ୍ମ ଓ ପୁରୁଷୋତ୍ତମ କ୍ଷେତ୍ରରେ ସେ ହେଲେ ଦାରୁବ୍ରହ୍ମ । ବିଷ୍ଣୁଙ୍କର ଯେପରି ଦଶାବତାର, ଶିବଙ୍କର ମଧ୍ୟ ସେପରି ମୁଖ୍ୟ ଦଶଗୋଟି ଅବତାର ରହିଛି । ଯଥା:—ମହାକାଳ, ତାର, ବାଳଭୁବନେଶ, ଷୋଡ଼ଷଶ୍ରୀବିଦ୍ୟେଶ, ଭୈରବ, ଛିନ୍ନମସ୍ତକ, ଧୂମବାନ୍, ବଗଳାମୁଖ, ମାତଙ୍ଗ ଓ କମଳ । ତାଙ୍କର ଶକ୍ତି ମଧ୍ୟ ପ୍ରତ୍ୟେକ ଅବତାରର ଅନୁରୂପା । ସେମାନେ ହେଲେ ଯଥାକ୍ରମେ—ମହାକାଳୀ, ତାରା, ବାଳାଭୁବନେଶୀ, ଷୋଡ଼ଶୀ-ଶ୍ରୀବିଦ୍ୟା, ଭୈରବୀ-ଗିରିଜା, ଛିନ୍ନମସ୍ତା, ଧୂମବତୀ, ବଗଳାମୁଖୀ, ମାତଙ୍ଗୀ ଓ କମଳା (୩୧୨) । ସେହି ଦୃଷ୍ଟିରୁ ଜଗନ୍ନାଥଙ୍କୁ ମହାବିଷ୍ଣୁ ବୋଲି କୁହାଯିବା ହେତୁ ତାଙ୍କର ଶକ୍ତିଙ୍କୁ ମହାଲକ୍ଷ୍ମୀ ବୋଲି କୁହାଯାଇଛି ।

୩୧୦ କ । ଶିବପୁରାଣ—୩, ୪୬, ୩—ଉଜ୍ଜୟିନ୍ୟାଂ ମହାକାଳଃ······

୩୧୧ । ମେଘଦୂତମ୍—(ପୂର୍ବମେଘଃ)—କାଳିଦାସ—
"ଅପ୍ୟନ୍ୟସ୍ମିନ୍ ଜଳଧରମହାକାଳମାସାଦ୍ୟ କାଳେ"

୩୧୨ । ଶିବମହାପୁରାଣର ଦାର୍ଶନିକ ତଥା ଧାର୍ମିକ ଆଲୋଚନା—ଡଃ ରମାଶଙ୍କର ତ୍ରିପାଠୀ—୧୯୭୬—ପୃ-୩୨୪ (Hereafter ଶି: ଦା: ଧା: ଆ:) ଜଗନ୍ନାଥ ମନ୍ଦିରସ୍ଥା ଭୁବନେଶ୍ୱରୀଙ୍କୁ 'କମଳା' ବୋଲି କୁହାଯାଏ ।

୩୧୩ । ଶିବମହାପୁରାଣ—୪, ୪୧, ୧୪,—

ଯତୋବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ ।
ତଦେବ ପରମଂପ୍ରୋକ୍ତଂ ବ୍ରହ୍ମୈବ ଶିବ ସଞ୍ଜ୍ଞକମ୍ ।

ଏହିପରି ଶିବଙ୍କୁ ସ୍ୱୟଂ 'ବ୍ରହ୍ମ' ବୋଲି அଭିହିତ କରାଯିବାପରେ ତାଙ୍କୁ ସର୍ବ-ଶକ୍ତିର ଅଧିକାରୀ 'କାଳ', 'ହର', 'ପ୍ରାଣ', 'ମହେଶ୍ୱର' ବୋଲି କୁହାଗଲା ।

କୂର୍ମପୁରାଣ—୧୨/୧୨—

' ପ୍ରୋଚ୍ୟତେ ଭଗବାନ୍ କାଳୋ ହରଃ ପ୍ରାଣୋ ମହେଶ୍ୱରଃ ।।

ଶିବଙ୍କୁ ପ୍ରଥମେ ବ୍ରହ୍ମ ଶବ୍ଦରେ ଉଦ୍ଦିଷ୍ଟ କରାଯାଇ ପରେ 'ମହାକାଳ' ଭାବରେ ସ୍ୱୀକାର କରାଗଲା । ଶିବମହାପୁରାଣରେ ଶିବଙ୍କୁ ବ୍ରହ୍ମରୂପରେ (୩୧୪) ବହୁଭାବରେ ଚିନ୍ତା କରାଯାଇଛି । "ଯତୋବାଚୋ ନିବର୍ତ୍ତନ୍ତେ"— ଇତ୍ୟାଦିର ପ୍ରୟୋଗ ଫଳରେ ଜଣାଯାଉଛି ଏହି ଶିବତତ୍ତ୍ୱ ନିଶ୍ଚୟ ବେଦାନ୍ତର ପରବର୍ତ୍ତୀ ଓ ତାରି ପ୍ରଭାବରେ ପ୍ରଭାବିତ । ସେହି ଶିବତତ୍ତ୍ୱ ଭିତରେ କାଳକ୍ରମେ ସାଂଖ୍ୟର ପୁରୁଷତତ୍ତ୍ୱ ଓ ମାୟାତତ୍ତ୍ୱ ମଧ୍ୟରେ ଶକ୍ତିତତ୍ତ୍ୱ ତଥା ଶକ୍ତିରୂପା ପ୍ରକୃତିଙ୍କର ଆରୋପ କରାଯାଇଛି (୩୧୪) । ବିଷ୍ଣୁଙ୍କ ଭଳି ଶିବଙ୍କୁ ମଧ୍ୟ ନିର୍ଗୁଣ, ଅବ୍ୟକ୍ତ, ଅନନ୍ତ, ମହାଦେବ (ଶିବ?), ପରମାତ୍ମା, ଇତ୍ୟାଦି ଭାବରେ ଉପାସନା କରାଯାଇଛି (୩୧୫) । ପ୍ରଥମେ ସମାଜରେ ବେଦ ହିଁ ପ୍ରମାଣ ବୋଲି ଗୃହୀତ ହେଲା । ତାହାପରେ ହେଲା ବେଦାନ୍ତ ଦର୍ଶନ । ତେଣୁ ବେଦାନ୍ତବାଦୀମାନଙ୍କର ସମର୍ଥନ ଲାଭ କରିବାପାଇଁ ଓ ଶିବଙ୍କୁ ବେଦାନ୍ତ ବ୍ରହ୍ମର ପ୍ରତୀକ ବୋଲି ପ୍ରମାଣ କରିବାଲାଗି ଶୈବ ପଣ୍ଡିତମାନେ ଲାଗିପଡ଼ିଲେ । ସେମାନେ କହିଲେ, ନିର୍ଗୁଣ ପରମାତ୍ମାଙ୍କଠାରୁ ଆଦ୍ୟରେ ଯିଏ ଜାତହେଲେ, ସେ ହେଉଛନ୍ତି ଶିବ (୩୧୬) । ବୈଷ୍ଣବମାନେ ମଧ୍ୟ ଅନୁରୂପ ଚିନ୍ତା କରି ତାହା ବିଷ୍ଣୁଙ୍କଠାରେ ଆରୋପ କରି ପ୍ରମାଣ କଲେ ଯେ ବିଷ୍ଣୁ ହେଉଛନ୍ତି ବ୍ରହ୍ମ (୩୧୭) । ଏତିକିବେଳେ ଦେଖାଗଲା, ସମାଜରେ ଅଧେ ଲୋକ ବିଷ୍ଣୁଙ୍କୁ ମାନୁଛନ୍ତି ତ

---

୩୧୪ । ଶି: ଦା: ଧା: ଆ:—ପୃ-୩୨୬ରେ ଥିବା ଟେବୁଲ୍ ଦ୍ରଷ୍ଟବ୍ୟ ।

୩୧୫ । ଶିବ ମହାପୁରାଣ—୨, ୧, ୪, ୩୩—

ନିର୍ଗୁଣଶ୍ଚ ଶିବାଖ୍ୟୋହି ପରମାତ୍ମା ମହେଶ୍ୱରଃ
ପରଂବ୍ରହ୍ମାଽବ୍ୟୟୋଽନନ୍ତୋ ମହାଦେବେତି ଗୀୟତେ ।

,, ୬, ୪, ୮,—ନିର୍ଗୁଣଂ ପରମଂ ବ୍ରହ୍ମ ସଦାଶିବମନାମୟମ୍ ।

୩୧୬ । ଶିବ ମହାପୁରାଣ—୪, ୪୨, ୨—

ଯଚ୍ଚାଦୌ ହି ସମୁତ୍ପନ୍ନଂ ନିର୍ଗୁଣାତ୍ ପରମାତ୍ମନଃ
ତଦେବ ଶିବ ସଂଜ୍ଞଂ ବେଦବେଦାନ୍ତିନୋ ବିଦୁଃ ॥

୩୧୭ । ବିଷ୍ଣୁପୁରାଣ—୩ୟ, ୧୭/୩୩—ବ୍ରହ୍ମସ୍ୱରୂପାୟ ନତାଃ ସ୍ମ ତସ୍ମୈ ।

ବିଷ୍ଣୁପୁରାଣ—୧ମ—୧୧/୪୬—

ପରଂବ୍ରହ୍ମ ପରଂଧାମ ଯୋଽସୌ ବ୍ରହ୍ମ ତଥା ପରଂ ॥

,, —୧ମ—୧୫/୫୮—

ବ୍ରହ୍ମାକ୍ଷର ମଜଂ ନିତ୍ୟଂ ଯଥାଽସୌ ପୁରୁଷୋତ୍ତମଃ ।

(ଏହିପରି ମଧ୍ୟ ସ୍କନ୍ଦ ବରାହ ଆଦି ପୁରାଣମାନଙ୍କରେ ବିଷ୍ଣୁଙ୍କୁ ବ୍ରହ୍ମ ବୋଲି କୁହାଯାଇଥିବାର ପୂର୍ବରୁ ଆଲୋଚିତ ହୋଇଛି । ଏଣୁ ଏଠାରେ ପୁନରାବୃତ୍ତି ନିଷ୍ପ୍ରୟୋଜନ ।

ଅଧେ ଶିବଙ୍କୁ ମାନୁଛନ୍ତି । ଉଭୟଙ୍କ ମଧ୍ୟରେ କଳହ ଲାଗିରହିଥିଲା । ଶୈବମାନେ କହିଲେ, "ବ୍ୟାଘ୍ରେଣ ତାଡ୍ୟମାନୋଽପି ନ ଗଚ୍ଛେତ୍ ବିଷ୍ଣୁ ମନ୍ଦିରମ୍ ।" ଅର୍ଥାତ୍ ବାଘ ଖାଇବାକୁ ଗୋଡ଼ାଇଲେ ମଧ୍ୟ ବିଷ୍ଣୁ ମନ୍ଦିରରେ ପ୍ରବେଶ କରିବା ପାପ । ଏହିପରି ଏକ ସମୟରେ ବିଷ୍ଣୁ ପୁରାଣ ପରିଷ୍କାର ଘୋଷଣା କଲା କି, ଶିବ ବା ରୁଦ୍ର ଏବଂ ବିଷ୍ଣୁ ବା ପୁରୁଷୋତ୍ତମ; ଏ ଉଭୟ ହେଉଛନ୍ତି ଏକ । ତେଣୁ ବିଷ୍ଣୁ ସ୍ୱୟଂ ରୁଦ୍ର (୩୧୮) ହୋଇଥିବାରୁ ସମସ୍ତେ ତାଙ୍କର ଆଶ୍ରୟ ନିଅ ।

ଏଣେ ବିଷ୍ଣୁ-ରୁଦ୍ର ଏକାଠି ହେଲେ, ତେଣେ ବିଷ୍ଣୁ ଓ ଶିବ ଉଭୟ ମହାକାଳ ହୋଇ ହରିହର ଭାବରେ ଏକତ୍ର ପୂଜା ପାଇଲେ । ଏଥିରେ କଳହର ପରିସମାପ୍ତି ହେଲା । ଶିବଙ୍କର ଶକ୍ତି ନାରାୟଣୀ ଓ କମଳା (୩୧୯) (ଭୁବନେଶ୍ୱରୀ) ଭାବରେ ପୂଜା ପାଇବା-ବେଳେ ବିଷ୍ଣୁ ଶକ୍ତି ମଧ୍ୟ କମଳା (ଲକ୍ଷ୍ମୀ) ଭାବରେ ପୂଜିତା ହେଲେ । ଫଳରେ ଉଭୟ ସମ୍ପ୍ରଦାୟ ମଧ୍ୟରେ ବିବାଦର ଅବସାନ ହେଲା । ଜଗନ୍ନାଥ ପୀଠରେ ସଙ୍କର୍ଷଣ (ବଳଭଦ୍ର)ଙ୍କୁ ଶିବ ଭାବରେ ଗ୍ରହଣ କରାଗଲା ଏବଂ ଅନ୍ୟପକ୍ଷରେ ସଙ୍କର୍ଷଣ ଶିବଙ୍କର ଅବତାର ଭାବରେ (୩୨୦) (ଏକରୁଦ୍ର) କଥିତ ହେଲେ । ପୁରୁଷୋତ୍ତମକ୍ଷେତ୍ରରେ ଶୈବ ଓ ବୈଷ୍ଣବଙ୍କର ଏହି ସମନ୍ୱୟାତ୍ମକ ମହାନ୍ ଧର୍ମ ସମ୍ମେଳନ ଅନୁଷ୍ଠିତ ହେଲା । ଶୈବ ଶଙ୍କରାଚାର୍ଯ୍ୟ, ବୈଷ୍ଣବ ରାମାନୁଜ ପ୍ରଭୃତି ବଡ଼ ବଡ଼ ପଣ୍ଡିତଙ୍କ ପାଇଁ ଏହା ହେଲା ପୁଣ୍ୟପୀଠ ।

ଉତ୍କଳଖଣ୍ଡ—ସ୍କନ୍ଦପୁରାଣର ପୂର୍ବବର୍ତ୍ତୀ ଶିବପୁରାଣ ଶିବଙ୍କୁ କାଳ ବା ମହାକାଳ ବୋଲି ବର୍ଣ୍ଣନା କରି ବ୍ରହ୍ମସ୍ୱରୂପ ବୋଲି ପ୍ରମାଣ କରିବାରୁ ଉତ୍କଳଖଣ୍ଡରେ ପୁରୁଷୋତ୍ତମଙ୍କୁ 'କାଳାତ୍ମନ୍' ବୋଲି ସମ୍ବୋଧନ କରାଯାଇଛି । ଶିବପୁରାଣରେ କୁହାଗଲା, କାଳ ହେଉଛି ଶିବଙ୍କର ତେଜଶକ୍ତି (୩୨୧) । ଏହା ସଂସାରକୁ ନିୟନ୍ତ୍ରଣ କରେ । ଏହା ମଧ୍ୟ ବ୍ରହ୍ମରୂପୀ ଶିବଙ୍କର ଇଚ୍ଛାଶକ୍ତି । କାଳ ହେଉଛି ଶିବଙ୍କର ଅବୟବ । କଳାକାଷ୍ଠରେ ନିର୍ମିତ ବିଗ୍ରହ

---

୩୧୮ । ବିଷ୍ଣୁପୁରାଣ—୩ୟ—୧୭/୨୭—

ନୃତ୍ୟତ୍ୟନ୍ତେ ଚ ଯଦ୍ରୂପଂ ତସ୍ମୈ ରୁଦ୍ରାତ୍ମନେ ନମଃ ।।

୩୧୯ । ଶି: ଦା: ଧା:ଆ—ପୃ-୩୨୪—

ଏବଂ (ଶରଣ୍ୟେତ୍ର୍ୟମ୍ବକେ ଗୌରି ନାରାୟଣୀ ନମୋଽସ୍ତୁତେ ।)

୩୨୦ । ବିଷ୍ଣୁପୁରାଣ—୨ୟ—୫/୧୯—-ପୃ-୧୫୪—-

ସଙ୍କର୍ଷଣାତ୍ମକୋରୁଦ୍ରୋ ନିଷ୍କ୍ରମ୍ୟାତ୍ତି ଜଗତ୍‌ତ୍ରୟମ୍ ।

୩୨୧ । ଶିବମହାପୁରାଣ—୭, ୧, ୭, ୬-୭—

କଳାତ୍ମିତ ସମାଖ୍ୟାତଂ ତେଜୋମାହେଶ୍ୱରଂ ପରମ୍ ।।

ହୋଇଛନ୍ତି, ବହ୍ମରୂପୀ ମହାକାଳ ଶିବଙ୍କର ମହାତେଜ (୩୨୨) ଏହିପରି ବର୍ଣ୍ଣନା ଶିବଙ୍କର ଉତ୍କର୍ଷ ପ୍ରତିପାଦନ କରି ଶିବପୁରାଣ କରିଅଛନ୍ତି । ଅର୍ଥାତ୍, ଶିବଙ୍କର ତେଜକୁ ତଥା ବ୍ରହ୍ମସ୍ୱରୂପ ଶିବଙ୍କୁ ସଫଳ ଭାବରେ ରୂପାୟନ କରିବାପାଇଁ କଳାକାଷ୍ଠର (ଲିଙ୍ଗ ବା) ବିଗ୍ରହ ନିର୍ମାଣ ଆବଶ୍ୟକ । ବୋଧହୁଏ, ସେତେବେଳକୁ କୃଷ୍ଣନାମ୍ନ ବ୍ରହ୍ମରୂପୀ ବିଷ୍ଣୁ ପୁରୁଷୋତ୍ତମଙ୍କର କାଷ୍ଠମୂର୍ତ୍ତି (ଜଗନ୍ନାଥ) ପୂଜିତ ହେବାର କଥା ଜଣାପଡ଼ିଲାଣି । ତେଣୁ ଶିବଙ୍କୁ ପୁରାଣକାର ସେହିଭାବରେ ଶିବପୁରାଣକାର କଳ୍ପନା କଲେ ।

ଶୈବଧର୍ମ ଓ ବୈଷ୍ଣବ ଧର୍ମ ପରସ୍ପରର ପ୍ରଭାବରେ ସର୍ବଦା ପ୍ରଭାବିତ । ତେବେ 'କାଳ' ବୋଲି ଶିବଙ୍କୁ ବା ବିଷ୍ଣୁଙ୍କୁ କଳ୍ପନା କରିବା ପଛରେ ସେହି ବେଦାନ୍ତର ବ୍ରହ୍ମଭାବ ନିହିତ । ଅର୍ଥାତ୍, ପ୍ରଥମେ ସର୍ବମୟ ବ୍ରହ୍ମ ହେଲାପରେ ଯାଇ କାଳସ୍ୱରୂପ ବୋଲି ତାଙ୍କୁ ସ୍ୱୀକାର କରାଯିବ । ସେହି ଦୃଷ୍ଟିରୁ ବିଷ୍ଣୁଙ୍କଠାରେ ମହାବିଷ୍ଣୁତ୍ୱ ଆରୋପିତ ହେବା ପରେ ସେ ବ୍ରହ୍ମ ବୋଲି ଅଭିହିତ ହେଲେ ଓ ତାହାପରେ ତାଙ୍କୁ ସଂସାରକୁ କଳନ କରୁଥିବା କାଳ ବୋଲି କୁହାଗଲା । କାଳର ବିନାଶ ନାହିଁ । ଯେହିପରି ଜନ୍ମ, ବୃଦ୍ଧି, ସ୍ଥିତି, ପରିଣାମ, କ୍ଷୟ ଓ ବିନାଶ ବ୍ରହ୍ମର ନାହିଁ କି କାଳର ନାହିଁ । ମହାବିଷ୍ଣୁଙ୍କର ମଧ୍ୟ ଏହି ଷଡ୍ ବିକାର ନାହିଁ । ସେ ମଧ୍ୟ ଚିର ବିଦ୍ୟମାନ । ଶୈବମତରେ ପ୍ରଳୟ କାଳରେ ଯେପରି ବ୍ରହ୍ମାତ୍ମକ ଶିବ କେବଳ ହିଁ ଥିଲେ (୩୨୩) । ସେପରି ବୈଷ୍ଣବ ମତରେ ପ୍ରଳୟ ସମୟରେ ସ୍ୱୟଂ ମହାବିଷ୍ଣୁ ମଧ୍ୟ ଶିଶୁରୂପରେ ଏକ ବଟପତ୍ରରେ ଭାସି ଭାସି ବିହାରୁଥିଲେ (୩୨୪) । ସେ ସଂସାରର ନିୟନ୍ତା ଥିବାରୁ ତାଙ୍କର ଉଦରରେ ସମଗ୍ର ସଂସାର ଲୁଚିରହିଥିଲା । ଏହା ଉତ୍କଳ-ଖଣ୍ଡରେ ବର୍ଣ୍ଣିତ ଅଛି । ମାର୍କଣ୍ଡେୟଋଷି ତାଙ୍କୁ ଦେଖିକବେଳେ 'କାଳାତ୍ମନ୍' ବୋଲି ସମ୍ବୋଧନ କରିଛନ୍ତି । ସେ ହୋଇଛନ୍ତି (୩୨୫) ନିତ୍ୟ । ସବୁକିଛି ଧ୍ୱଂସ ପାଇଗଲେ

---

୩୨୨ । ଶିବମହାପୁରାଣ—୭, ୧, ୭, ୬—

କଳାକାଷ୍ଠନିମେଷାଦି କଳାକଳିତ ବିଗ୍ରହମ୍ ।

କାଳାତ୍ମେତି ସମାଖ୍ୟାତଂ ତେଜୋ ମାହେଶ୍ୱରଂ ପରମ୍ ॥

(ଦ୍ରଷ୍ଟବ୍ୟ—ଶି: ଦା: ଧା: ଆ:—ପୃ: ୨୨୩)

୩୨୩ । ଶି: ବା: ଧା: ଆ:—ପୃ: ୧୦ ।

୩୨୪ । ସ୍କନ୍ଦ— ପୁ: ମା:-୩/୨୯—

ବାଳସ୍ୱରୂପଂ ସର୍ବେଷାଂ କାଳାତ୍ମାନଂ ମହାମୁନେଃ ।

୩୨୫ । ବିଷ୍ଣୁପୁରାଣ—୧/୨/୧୧—

ଶକ୍ୟତେ ବକ୍ତୁଂ ଯଃ ସଦାସ୍ତୀତି କେବଳମ୍ ।

ମଧ୍ୟ ତାଙ୍କର କେବେହେଲେ ବିଲୟ ନାହିଁ । ସେ ବିଶ୍ୱକୁ ପାଳନ କରନ୍ତି । ସୃଷ୍ଟି କରନ୍ତି ଓ ସଂହାର ମଧ୍ୟ କରନ୍ତି । ଏହି ଦୃଷ୍ଟିରୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ହେଉଛନ୍ତି ଏକ ଓ ଅଭିନ୍ନ । ସେମାନେ ଯାହା କରନ୍ତି କାଳ ମଧ୍ୟ ତାହା କରିଥାଏ (୩୨୬) । ସୃଷ୍ଟି, ସ୍ଥିତି, ପ୍ରଳୟ କାଳଦ୍ୱାରା ନିୟନ୍ତ୍ରିତ ହେଉଥିବାରୁ ବ୍ରହ୍ମାତ୍ମକ ଶିବଙ୍କ ତଥା ବ୍ରହ୍ମଭୂତ ମହାବିଷ୍ଣୁ-ଜଗନ୍ନାଥଙ୍କୁ 'କାଳ' ବୋଲି କୁହାଯାଏ ।

ଅନ୍ୟ ଦୃଷ୍ଟିରେ ଜଗନ୍ନାଥ ହେଉଛନ୍ତି ବିଷ୍ଣୁ-କୃଷ୍ଣ, ତଥା ମହାବିଷ୍ଣୁ । ବିଷ୍ଣୁ-କୃଷ୍ଣଙ୍କୁ ବିଷ୍ଣୁପୁରାଣରେ 'କାଳ' ବୋଲି କୁହାଯାଇଛି (୩୨୭) । ତେଣୁ ଜଗନ୍ନାଥ ହେଉଛନ୍ତି 'କାଳ' ବୈଷ୍ଣବମାନେ ସର୍ବଶକ୍ତିମାନ କୃଷ୍ଣ-ଜଗନ୍ନାଥଙ୍କୁ (୩୨୮) ପୁରୁଷୋତ୍ତମକ୍ଷେତ୍ରରେ

---

୩୨୬ । ଶିବ ମହାପୁରାଣ—୭, ୨, ୨, ୩୫—

କାଳଃ କରୋତି ସକଳଂ କାଳଃ ସଂହରତେ ପ୍ରଜାଃ ।

,, —୭, ୨, ୨, ୩୬—କାଳଃ ପାଳୟତେ ବିଶ୍ୱମ୍......

କୂର୍ମପୁରାଣ—୧୨/୧୭—

କାଳଃ ସୃଜତି ଭୂତାନି କାଳଃ ସଂହରତେ ପ୍ରଜାଃ ।
ସର୍ବେ କାଳସ୍ୟ ବଶଗାଃ ନ କାଳଃ କସ୍ୟଚିଦ୍ ବଶେ ॥

କୂର୍ମପୁରାଣ—୧୨।୨୪—

କରୋତି କାଳଃ ସକଳଂ ସଂହରେତ କାଳ ଏବ ହି ।
କାଳଃ ସ୍ଥାପୟତେ ବିଶ୍ୱଂ କାଳାଧୀନମିଦଂ ଜଗତ୍ ॥

୩୨୭ । ବିଷ୍ଣୁପୁରାଣ—ଅଂଶ—୧୭।୨୫—ପୃ-୨୬୬—

ତଦ୍ରୂପଂ ପୁଣ୍ଡରୀକାକ୍ଷ ତସ୍ମୈ କାଳାତ୍ମନେ ନମଃ ॥

,, —୫ମ—୩୮।୫୮—ପୃ-୪୯୮—

କାଳ ସ୍ୱରୂପୀ ଭଗବାନ୍ କୃଷ୍ଣଃ କମଳଲୋଚନଃ ॥

,, —୫ମ—୩୮।୬୦—ପୃ-୪୯୮—

ତଦର୍ଥମବତୀର୍ଣ୍ଣୋଽସୌ କାଳରୂପୀ ଜନାର୍ଦ୍ଦନଃ ॥

,, —୧ମ—୪।୧୪—

ପ୍ରଧାନ ବ୍ୟକ୍ତ ଭୂତାୟ କାଳଭୂତାୟ ତେ ନମଃ ॥

୩୨୮ । ବିଷ୍ଣୁପୁରାଣ—୫ମ—୭।୫୮—

"ଭୁବନେଶ ଜଗନ୍ନାଥ ମହାପୁରୁଷ ପୂର୍ବଜ ॥"

(ଶ୍ରୀକୃଷ୍ଣଙ୍କୁ ଏହି ଭାବରେ ଭୁବନେଶ ଓ ଜଗନ୍ନାଥ ବୋଲି ସମ୍ବୋଧନ କରି ସ୍ତୁତି କରାଯାଇଛି ।)

ପୂଜାକରି ସନ୍ତୁଷ୍ଟ ହେଲେ । ସର୍ବଶକ୍ତିମାନ୍‌ କାଳ ଜନକଂଠରେ ସମସ୍ତେ ପରାକ୍ରମ । ତେଣୁ କୌଣସି ପ୍ରକାରେ କାଳର ଉପାସନା କରିବାକୁ ଲୋକେ ଇଚ୍ଛୁଥିବେ । ତେଣୁ ବୈଷ୍ଣବ-ମାନେ ତାଙ୍କୁ କାଳ ବୋଲି ବିଷ୍ଣୁର ପ୍ରଥମେ କୃଷ୍ଣ-ବିଷ୍ଣୁ ଓ ପରେ ପୁରୁଷୋତ୍ତମ-ଜଗନ୍ନାଥ ଭାବରେ ପୂଜା କଲେ ।

ପୂର୍ବରୁ ଆଲୋଚନା କରାଯାଇଛି ଯେ ଶିବଙ୍କୁ ମଧ୍ୟ ଶୈବମାନେ କାଳ ବା ମହାକାଳ ଭାବରେ ପୂଜା କରୁଥିଲେ । ପୁରୁଷୋତ୍ତମକ୍ଷେତ୍ରରେ ଅନନ୍ତମୂର୍ତ୍ତି ବଳଭଦ୍ର (ବଳରାମ)ଙ୍କର ଯେତେବେଳେ ଜଗନ୍ନାଥଙ୍କ ସହିତ ପୂଜା ଅର୍ଚ୍ଚନା ଚାଲିଲା, ସେତେବେଳେ କ୍ରମେ ଶୈବ ଓ ବୈଷ୍ଣବଙ୍କ ମଧ୍ୟରେ ବିବଦମାନ ବାତାବରଣକୁ ଶାନ୍ତ କରିବାପାଇଁ ତଥା ଏହି ବିଷ୍ଣୁପୀଠକୁ ଶୈବମାନଙ୍କର ଉପାସନା ସ୍ଥଳ ଭାବରେ ପରିଣତ କରିବା ଲାଗି ଅନନ୍ତ ମୂର୍ତ୍ତି ବଳଭଦ୍ରଙ୍କୁ କାଳାଗ୍ନିରୁଦ୍ର ବା ଶିବ ଭାବରେ ସ୍କନ୍ଦ ପୁରାଣ ପ୍ରଭୃତିରେ ବର୍ଣ୍ଣନା କରାଗଲା । ପୂର୍ବରୁ ବଳରାମଙ୍କୁ ଅନନ୍ତମୂର୍ତ୍ତି ବୋଲି କୁହାଯାଉଥିଲା (୩୨୯) । ତାଙ୍କୁ ମଧ୍ୟ କାଳସ୍ୱରୂପୀ ବୋଲି କୁହାଗଲା (୩୩୦) । ଫଳରେ ବଳଭଦ୍ର ଏକପକ୍ଷରେ କାଳାତ୍ମକ-ଅନନ୍ତମୂର୍ତ୍ତି-ଶେଷନାରାୟଣ ହୋଇ ଯେପରି ବୈଷ୍ଣବମାନଙ୍କର ପ୍ରୀତିଭାଜନ ହେଲେ, ସେପରି କାଳରୂପୀ ଶିବ ଭାବରେ ଶୈବମାନଙ୍କର ଅନୁରାଗ ଓ ପୂଜାର ପାତ୍ର ହୋଇପାରିଲେ । ଏହାଫଳରେ ପୁରୁଷୋତ୍ତମକ୍ଷେତ୍ର ଶୈବ ଓ ବୈଷ୍ଣବ; ଉଭୟଙ୍କର ବିହାରସ୍ଥଳ ହୋଇପାରିଲା ।

## ଶୈବ ଓ ବୈଷ୍ଣବ ଧର୍ମର ପରମ୍ପରା—

ବୈଷ୍ଣବ ଧର୍ମ ଓ ଶୈବଧର୍ମ ଉଭୟ ଅତି ପ୍ରାଚୀନ । ବୈଦିକ ଯୁଗରେ ଏପରି ଧର୍ମ ନଥିଲେ ମଧ୍ୟ ଏ ଧର୍ମ-ଦ୍ୱୟର ଆରାଧ୍ୟ ଦେବତାଦ୍ୱୟଙ୍କ ନାମ ପ୍ରକାରାନ୍ତରେ ବିଦ୍ୟମାନ ଥିଲା । ତ୍ରୁଏତ, ବେଦର ରୁଦ୍ର, ବିଷ୍ଣୁଙ୍କର ପୁରାଣର ରୁଦ୍ର, ବିଷ୍ଣୁଙ୍କ ସହିତ ସେପରି ସାମଞ୍ଜସ୍ୟ ନାହିଁ । ସେ ଯାହାହେଉ, ରୁଦ୍ର ଓ ବିଷ୍ଣୁଙ୍କ ପାଇଁ ବେଦରେ ଅନେକସୂକ୍ତ ରଚନା କରାଯାଇଥିଲା । ମହେଞ୍ଜୋଦାରୋ ସଭ୍ୟତାରେ ମଧ୍ୟ ପଶୁପତି ଓ

---

୩୨୯ । ବିଷ୍ଣୁପୁରାଣ—୫ମ—୯/୨୬—ପୃ-୪୦୦—

ତ୍ୱଷ୍ଟା ଧୃତେସ୍ତଂ ଧରଣୀ ବିମୂର୍ତ୍ତି, ଚରାଚରଂ ବିଶ୍ୱମନନ୍ତ ମୂର୍ତ୍ତେଃ ।

(ଦ୍ରଷ୍ଟବ୍ୟ—ବିଷ୍ଣୁ—୫/୯/୨୯—ପୃ-୪୦୧)

୩୩୦ । ବିଷ୍ଣୁପୁରାଣ—୫ମ—୯/୨୯—ପୃ-୪୦୧

କୃତାଦି ଭେଦୈ ରଜକାଳରୂପୋ ନମେଷ ପୂର୍ବୋ ଜଗଦେତଦନ୍ତି ।

ଶିବ ଲିଙ୍ଗର ପୂଜା ପ୍ରଚଳିତ ଥିଲା (ଗାଗା୧) । ରାମାୟଣରୁ ଜଣାଯାଏ, ରାବଣ ଏକ ଶିବ ଭକ୍ତ ଥିଲା ଓ ବହୁ ସ୍ଥାନରେ ଶିବଲିଙ୍ଗ ସ୍ଥାପନ କରିଥିଲା (ଗାଗା୨) । ମହାଭାରତର ଅନୁଶାସନ ପର୍ବରୁ (ଅ: ୨୪) ଜଣାଯାଏ ଯେ, ଏଥିରେ ଶିବ ସହସ୍ର ନାମ ରହିଛି । ଏଥିରୁ ସେ ଯୁଗରେ ଶିବଲିଙ୍ଗ ପୂଜାର ଯଥେଷ୍ଟ ପ୍ରମାଣ ମିଳୁଅଛି । ତାହାପରେ ପୁରାଣ ଯୁଗରେ ପ୍ରାୟ ସମସ୍ତ ପୁରାଣରେ ଶିବଲିଙ୍ଗ ଉପାସନାର ବର୍ଣ୍ଣନା ମିଳୁଛି । ଏଣୁ ଶିବ ଉପାସନା ଏ ଦେଶରେ ଯେ ବହୁପ୍ରାଚୀନ କାଳରୁ ଚଳିଆସିଛି, ଏଥିରେ ମୋଟେ ସନ୍ଦେହ ନାହିଁ । ବୈଦିକ ଯୁଗରୁ ଏ ଦେଶରେ ଉଲ୍ଲିଖିତମତେ ଲିଙ୍ଗ ପୂଜା ଚଳିଆସିଛି ଏବଂ ଆର୍ଯ୍ୟମାନେ ଏହାକୁ ଆଦିବାସୀମାନଙ୍କଠାରୁ ଶିଖିଲେ ବୋଲି କୌଣସି ବଳିଷ୍ଠ ପ୍ରମାଣ ନାହିଁ । ପୁରାତନ ଯୁଗରେ ଲିଙ୍ଗପୂଜା ନାନା ଭାବରେ ରୋମ୍, ମିଶର, ଆସୀରିୟା, ୟୁନାନ୍ ଆଦି ସଭ୍ୟତାରେ phallic worship ନାମରେ ପ୍ରଚଳିତ ଥିଲା (ଗାଗା୩) । ସେହିପରି ମଧ୍ୟ ପ୍ରାଚୀନ ସଭ୍ୟତାର ଦେଶ ଏହି ଭାରତରେ ଲିଙ୍ଗାର୍ଚ୍ଚନ ପ୍ରଚଳିତ ଥିଲା । କିନ୍ତୁ ଏହା Phallic worship ଥିଲା କି ଅନ୍ୟ କିଛି ଥିଲା, ତାହା କହିବା ସହଜ ନୁହେଁ । କାରଣ, ମହେଞ୍ଜୋଦାରୋ ସଭ୍ୟତାର ନିଦର୍ଶନରୁ ଜଣାଯାଏ ଯେ ଲିଙ୍ଗପୂଜା ସହିତ ବୃଷଭ ମଧ୍ୟ ଉପଲବ୍ଧ ହେଉଛି । ବୃଷଭର ସନ୍ନିଧି ଲିଙ୍ଗଟିକୁ ଶିବଲିଙ୍ଗ ଭାବରେ ପ୍ରମାଣିତ କରୁଛି । ତା'ଛଡ଼ା ଭାରତରେ ପର୍ବତପୂଜା, ଶିଳାପୂଜା ଆଦିର ପରମ୍ପରା ମଧ୍ୟ ଥିଲା । ପରେ ଏହା ଶିବ ଲିଙ୍ଗରେ ପରିଣତ ହେଲା । ଶୈବମାନେ ଏହି ଆକୃତିବିହୀନ ଲିଙ୍ଗକୁ ନିର୍ଗୁଣ ବ୍ରହ୍ମ ବୋଲି ପ୍ରମାଣ କଲେ ଏବଂ ବିଷ୍ଣୁ ଆଦି ଦେବତାଙ୍କ ମୂର୍ତ୍ତିମନ୍ତ ଥିବାରୁ ସଗୁଣ ବୋଲି କହିଲେ (ଗାଗା୪) । ଏପରିକି ବିଷ୍ଣୁ ହେଉଛନ୍ତି ଶିବ ଓ

---

ଗାଗା୧ । ଶି : ଦା: ଧା: ଆ:—ପୃ-୨୧୫

ଗାଗା୨ । ରାମାୟଣ—ଉତ୍ତରକାଣ୍ଡ—୩୧।୪୨-୪୩—

ଯତ୍ର ଯତ୍ର ଚ ଯାତି ସ୍ମ ରାବଣୋ ରାକ୍ଷସେଶ୍ୱରଃ
ଜାମ୍ବୁନଦମୟଂ ଲିଙ୍ଗମ୍ ତତ୍ର ତତ୍ର ସ୍ମ ନୀୟତେ ।
ବାଲୁକା ବେଦୀ ମଧ୍ୟେ ତୁ ତଲ୍ଲିଙ୍ଗମ୍ ସ୍ଥାପ୍ୟ ରାବଣଃ
ଅର୍ଚ୍ଚ ୟାମାସ ଗନ୍ଧୈଶ୍ଚ ପୁଷ୍ପୈଶ୍ଚାମୃତ ଗନ୍ଧିଭିଃ ।।

ଗାଗା୩ । History and philosophy of Lingayat Religion-- M. R. Sakhar--pp-305.

ଗାଗା୪ । ଶି: ଦା: ଧା: ଆ:—ପୃ-୨୨୨ । (ଏବଂ ପୃ-୧୯୬-୧୯୭—ଦେଖନ୍ତୁ—ବିଷ୍ଣୁ ହେଉଛନ୍ତି ଶିବଙ୍କ ପୁତ୍ର)

ଶିବାଙ୍କର ପୁତ୍ର । ସୃଷ୍ଟି ରକ୍ଷା ପାଇଁ ତାଙ୍କୁ ସେ ବୁଦ୍ଧେ ଆନନ୍ଦବନରେ ଜାତ କଲେ ବୋଲି (୩୩୪ କ) କୁହାଗଲା ।

ଏହାଫଳରେ ବିଷ୍ଣୁଙ୍କଠାରୁ ବଡ଼ ବୋଲି ପରିଗଣିତ ହେଲେ । ମାତ୍ର ବୈଷ୍ଣବ-ମାନେ ଏ ମନଗଢ଼ା ତତ୍ତ୍ୱକୁ ମାନିଲେ ନାହିଁ । ସେମାନଙ୍କ ମତରେ ବିଷ୍ଣୁ ସବୁଠାରୁ ବଡ଼ ଓ ସେ ନିଜେ ହିଁ ମହାବିଷ୍ଣୁ ଅବସ୍ଥାରେ ନିର୍ଗୁଣ । ରାମଚନ୍ଦ୍ର, ଶ୍ରୀକୃଷ୍ଣ, ମତ୍ସ୍ୟ-ନାରାୟଣ, ବରାହମୂର୍ତ୍ତି, ନୃସିଂହ ମୂର୍ତ୍ତି ଆଦି ରୂପରେ ପ୍ରକାଶିତ ହେଲା ପରେ ସେ ହୁଅନ୍ତି ସଗୁଣ । ସେ ମଧ୍ୟ ରୁଦ୍ରଙ୍କ ଭଳି ଏକ ପ୍ରାଚୀନ ବୈଦିକ ଦେବତା । ଋଗ୍‌ବେଦର ଉକ୍ତି ଅନୁସାରେ ସେ ହେଉଛନ୍ତି ଆଦିତ୍ୟ ବା ସୂର୍ଯ୍ୟ । ବେଦରେ ବିଷ୍ଣୁ ଶବ୍ଦର ନିରୁକ୍ତି ହେଉଛି, "ବିଷ୍ଣୁର ଅର୍ଥ ବ୍ୟାପ୍ତ । ସୂର୍ଯ୍ୟରଶ୍ମି ଜଗତରେ ବ୍ୟାପି କରି ରହୁଥିବାରୁ ତାଙ୍କୁ (ସୂର୍ଯ୍ୟଙ୍କୁ) ବିଷ୍ଣୁ ବୋଲି କୁହାଯାଏ (୩୩୫) । ଏ ବିଷ୍ଣୁ ଏପରି ବିଶାଳ ଓ ବିଶ୍ୱବ୍ୟାପ୍ତ ଯେ ତିନିପାଦରେ ମାତ୍ର ସମଗ୍ର ବିଶ୍ୱକୁ ମାପିବାକୁ ସେ ସମର୍ଥ ହେଲେ (୩୩୬) । ପରେ ଏହି ଚିନ୍ତାଧାରାକୁ ନେଇ ପୁରାଣକାରମାନେ ବିଷ୍ଣୁଙ୍କର ବାମନାବତାରର ବର୍ଣ୍ଣନା କଲେ । ସେ ଯାହାହେଉ, ବେଦର ବର୍ଣ୍ଣିତ ବିଷ୍ଣୁ ଦୁର୍ବଳ ନଥିଲେ । ସେ ପୃଥିବୀ ଓ ଆକାଶକୁ ନିର୍ମାଣ କରିଥିଲେ (୩୩୭) । ବିଷ୍ଣୁ ସିଂହ ଭଳି ପରାକ୍ରମୀ ବୋଲି

---

୩୩୪ କ । ଶିବପୁରାଣ—୨, ୧, ୭।୩୩—୩୪, ୩୬-୩୮, ୪୩ = (୩୮)—
ତତଃ ପ୍ରମାନାବିରାସୀ ଦେକସ୍ତ୍ରୈଲୋକ୍ୟସୁନ୍ଦରଃ । (୩୮)
ବିଷ୍ଣୁତ ବ୍ୟାପକତ୍ୱାଦ୍ଦେ ନାମଖାତଂ ଭବିଷ୍ୟତ······(୪୩)

୩୩୫ । ନିରୁକ୍ତ—ଯାସ୍କ—୧୨।୧୯—ଅଥ ଯଦ୍ ବିଷିତୋ ଭବତି ତଦ୍ ବିଷ୍ଣୁ ର୍ଭବତି । ବିଷ୍ଣୁର୍ବିଶତେର୍ବା ବ୍ୟଶ୍ନୋତେ ର୍ବା ॥ (ଶ୍ରି: ଦା: ଧା:ଆ—ପୃ-୧୯୭)
ଦୁର୍ଗାଚାର୍ଯ୍ୟ(ଙ୍କର ବ୍ୟାଖ୍ୟା)—୨।୩—(ଉଦ୍ଧୃତ, ପୁରାଣବିମର୍ଶ—ପୃ-୪୫୯—"ଯଦା ରଶ୍ମି ଭିରତିଶୟେନାପ୍ତଂ ବ୍ୟାପ୍ତୋ ଭବତି, ବ୍ୟାପ୍ନୋତି ବା ରଶ୍ମି ଭିରସ୍ୟଂ ସର୍ବଂ, ତଦା ବିଷ୍ଣୁରାଦିତ୍ୟୋ ଭବତି ।"

ଦ୍ରଷ୍ଟବ୍ୟ : ପରେ ବିଷ୍ଣୁଙ୍କୁ ସର୍ବମୟ ବ୍ରହ୍ମ ବୋଲି ବର୍ଣ୍ଣନା କରାଗଲା । ଏହାଫଳରେ ସେ ଖାଲି ଆଦିତ୍ୟ ରୂପରେ ପ୍ରକାଶିତ ହେଲେ ନାହିଁ । ସଂସାରର ବୃକ୍ଷ, ପଶୁ, ମନୁଷ୍ୟ; ସବୁକିଛି ମାଧ୍ୟମରେ ବିଷ୍ଣୁ ଆତ୍ମପ୍ରକାଶ କଲେ ।

୩୩୬ । ଋଗ୍‌ବେଦଃ—୧।୨୨।୧୭—
ଇଦଂ ବିଷ୍ଣୁର୍ବିଚକ୍ରମେ ତ୍ରେଧା ନିଦଧେ ପଦମ୍ ॥

୩୩୭ । ପୁରାଣବିମର୍ଶ—ପୃ ୪୬୦

ବେଦରେ ବର୍ଣ୍ଣନା କରାଯାଇଛି (୩୩୮)। ପରେ ସମ୍ଭବତଃ ଏହି ଭାବକୁ ପୁରାଣରେ ବିଶ୍ଳେଷଣ କରି **ନୃସିଂହ** ଅବତାର କଥା ରଚନା କରାଯାଇଛି। ବେଦରେ ବିଷ୍ଣୁ ଅଜେୟ ଗୋପ ବା ଗୋପାଳକ ବୋଲି ଯାହା (୩୩୯) ବର୍ଣ୍ଣନା କରାଯାଇଛି ଓ ତାଙ୍କର ପରମଧାମ ବା ପରମ ପଦରେ ଗାଈଗୋରୁ ଆନନ୍ଦରେ ରହୁଥିବାର ଯାହା ଉଲ୍ଲେଖ (୩୪୦) ଅଛି, ତହିଁରୁ ପର ଯୁଗରେ ତାଙ୍କର ଶ୍ରୀକୃଷ୍ଣ ଅବତାର ଓ ଗୋଲୋକଧାମ; ଏହି ଦୁଇଟି ତଥ୍ୟ ବିକଶିତ ହୋଇଛି। ଇନ୍ଦ୍ର ବେଦରେ ଶକ୍ତିଶାଳୀ ଦେବତା ଥିଲେ ସତ। ମାତ୍ର ବୃତ୍ରାସୁରକୁ ସଂହାର କରିବାପାଇଁ ସେ ବିଷ୍ଣୁଙ୍କର ସହାୟତା ନେଇଥିଲେ। ଏଥିରୁ ଅନୁମିତ ହୁଏ ଯେ ବିଷ୍ଣୁ ମଧ୍ୟ କମ୍ ଶକ୍ତିଶାଳୀ ନ ଥିଲେ। ପରବର୍ତ୍ତୀ ଯୁଗରେ ତାଙ୍କୁ ଆହୁରି ଅଧିକ ଶକ୍ତିଶାଳୀ ଦେବତା ଭାବରେ ବର୍ଣ୍ଣନା କରାଗଲା।

ବ୍ରାହ୍ମଣଗ୍ରନ୍ଥର ଯୁଗରେ ବିଷ୍ଣୁଙ୍କୁ ଯଜ୍ଞର ମହାଦେବତା ଭାବରେ ସ୍ୱୀକାର କରାଗଲା। 'ଯଜ୍ଞୋ ବୈ ବିଷ୍ଣୁଃ'। କାରଣ, ସେତେବେଳେ ସମାଜର ସର୍ବସ୍ୱ ଥିଲା ଯଜ୍ଞ। ଆଉ ଅନ୍ୟକିଛି ନୁହେଁ। ଅଗ୍ନିଙ୍କୁ ଦ୍ୱିତୀୟ ବା ଗୌଣ (ଅବମ) ଦେବତା ଏବଂ ବିଷ୍ଣୁଙ୍କୁ 'ପରମ' ବା ଶ୍ରେଷ୍ଠ ଦେବତା ରୂପେ ଐତରେୟ ବ୍ରାହ୍ମଣ ବର୍ଣ୍ଣନା କରିଛି (୩୪୧)। ରାମାୟଣ ଓ ମହାଭାରତ ବେଳକୁ ବିଷ୍ଣୁ ସବୁଠାରୁ ଶକ୍ତିଶାଳୀ ଦେବତା ଭାବରେ ପରିଗଣିତ ହୋଇଥିଲେ ଓ ରାମ ଏବଂ କୃଷ୍ଣ ଅବତାର ଗ୍ରହଣ କରି ଦେବଗଣଙ୍କୁ ରାକ୍ଷସମାନଙ୍କ ଦୌରାତ୍ମ୍ୟରୁ ରକ୍ଷା (୩୪୨) କରିଥିଲେ। ସେତେବେଳକୁ ବ୍ରହ୍ମା ସୃଷ୍ଟିକର୍ତ୍ତା, ବିଷ୍ଣୁ ପାଳନକର୍ତ୍ତା ଓ ରୁଦ୍ର ସଂହାରକର୍ତ୍ତା ଭାବରେ ପ୍ରତିଷ୍ଠିତ ହୋଇସାରିଥିଲେ। ଏହାପରେ ପୁରାଣଯୁଗରେ ବିଷ୍ଣୁଙ୍କୁ ଜ୍ଞାନଗମ୍ୟ ଧ୍ୟାନଗମ୍ୟ ପୁରୁଷୋତ୍ତମ, ପରଂବ୍ରହ୍ମ, ସତ୍ୟ, ଅନନ୍ତ, ଅକ୍ଷୟ, ଅବ୍ୟୟ, ସଚ୍ଚିଦାନନ୍ଦସ୍ୱରୂପ ପ୍ରଭୃତି ଭାବରେ ବହୁଳ ପ୍ରଚାର

---

୩୩୮। ଋଗ୍‌ବେଦଃ—୧।୧୫୪।୨—
ପ୍ରତଦ୍ ବିଷ୍ଣୁଃ ସ୍ତବତେ ବୀର୍ଯେଣ, ମୃଗୋ ନ ଭୀମଃ କୁଚରୋ (ସିଂହଃ) ଗିରିଷ୍ଠା॥

୩୩୯। ଋଗ୍‌ବେଦଃ—୧।୨୨।୧୮—ବିଷ୍ଣୁର୍ଗୋପା ଅଦାଭ୍ୟଃ।

୩୪୦। ଋଗ୍‌ବେଦଃ—୧।୧୫୪।୬—ତା ବାଂ ବାସ୍ତୂନ୍ୟୁଶ୍ମସି ଗମଧ୍ୟୈ
ଯତ୍ର ଗାବୋ ଭୂରିଶୃଙ୍ଗା ଅୟାସଃ॥

୩୪୧। ଐତରେୟ ବ୍ରାହ୍ମଣ—୧।୧-ଅଗ୍ନିର୍ବୈ ଦେବାନାମବମୋ ବିଷ୍ଣୁଃ ପରମଃ।
ତଦନ୍ତରେଣ ସର୍ବାଃ ଅନ୍ୟା ଦେବତାଃ॥

୩୪୨। A Socio Political study of the Valmiki Ramayana--R. Sharma—Delhi—1971—pp. 11.

କରାଯାଇ ତାଙ୍କର ମହତ୍ତ୍ୱ ଅତିମାତ୍ରାରେ ବଢ଼ାଇ ଦିଆଗଲା । ଏଭଳି ଅବସ୍ଥାରେ ବେଦାନ୍ତର ଧ୍ୟାନଗମ୍ୟ ବ୍ରହ୍ମରୂପରେ ପରିଗଣିତ ହୋଇ ସେ ହେଲେ ମହାବିଷ୍ଣୁ ତଥା (୩୪୩) ନିତ୍ୟ, ଅରୂପ, ନିର୍ଗୁଣ, ସଗୁଣ ପରମସ୍ୱରୂପ ତଥା ପୁରୁଷୋତ୍ତମ । ପୂର୍ବରୁ ଏ ସବୁର ଆଲୋଚନା କରାଯାଇଛି । ଗୀତାରେ ସେହି ମହାବିଷ୍ଣୁଙ୍କୁ ଶ୍ରୀକୃଷ୍ଣଙ୍କଠାରେ ଆରୋପ କରାଯାଇ ତାଙ୍କୁ ପୁରୁଷୋତ୍ତମ ବୋଲି କୁହାଗଲା । ପରେ ସେହି ମହାବିଷ୍ଣୁ-ପୁରୁଷୋତ୍ତମଙ୍କ ପୁରୁଷୋତ୍ତମ-ଜଗନ୍ନାଥ ଭାବରେ ପୁରୁଷୋତ୍ତମକ୍ଷେତ୍ରରେ ଉପାସନା କରାଗଲା । ସେ ବ୍ରହ୍ମସ୍ୱରୂପୀ ବା ଶାସ୍ତ୍ରରେ 'ଦାରୁବ୍ରହ୍ମ' ହୋଇଥିବାରୁ ତାଙ୍କର ବିଲୟ ନାହିଁ । ଏପରିକି ପ୍ରଳୟ କାଳରେ ସବୁକିଛି ବିଲୁପ୍ତ ହେଲେ ମଧ୍ୟ ସେ ବିଲୁପ୍ତ ହୁଅନ୍ତି ନାହିଁ । ଏହା ହେଉଛି ଭାରତୀୟ ଧର୍ମଗ୍ରନ୍ଥର ତାତ୍ତ୍ୱିକ ଚିନ୍ତାଧାରା । ଉପାଧି ରହିତ ବ୍ରହ୍ମଙ୍କର ପ୍ରଥମ ରୂପ ହେଉଛି ପ୍ରଧାନ ଓ (୩୪୪) ପୁରୁଷ । ଏ ଦୁହେଁ ମିଶିଲେ ପୁରୁଷୋତ୍ତମ ବା ଶ୍ରେଷ୍ଠ ପୁରୁଷ ହୁଅନ୍ତି । ସେହି ଉପାଧିରହିତ ବ୍ରହ୍ମଙ୍କର ଦ୍ୱିତୀୟ ରୂପ ହେଉଛି 'କାଳ' । ତାହା ପୂର୍ବରୁ ଆଲୋଚିତ ହୋଇଛି । ପ୍ରଧାନ ପୁରୁଷ ଓ କାଳ; ଉଭୟ ମିଶି ପ୍ରକୃତି ଓ ପୁରୁଷଙ୍କୁ ସଂଯୁକ୍ତ ଓ ବିଯୁକ୍ତ କରନ୍ତି । ଫଳରେ ସୃଷ୍ଟି, ସ୍ଥିତି ଲୟ ସଂଘଟିତ ହୁଏ (୩୪୫) । ସୃଷ୍ଟିକାଳରେ (ସର୍ଗକାଳ) ସର୍ବବ୍ୟାପୀ ପରମେଶ୍ୱର ପ୍ରକୃତି ଓ ପୁରୁଷଙ୍କଠାରେ ପ୍ରବିଷ୍ଟ ହୋଇ ତାହାଙ୍କୁ କ୍ଷୋଭିତ କରନ୍ତି । ଏଥିରୁ ସୃଷ୍ଟି ସମ୍ଭବ ହୁଏ । ବିଷ୍ଣୁଙ୍କର ବିଭିନ୍ନ ରୂପ ମଧ୍ୟରେ ବ୍ୟକ୍ତ (ମହତାଦି) ଇତ୍ୟାଦି ପ୍ରକୃତି ବିକୃତି ହେଉଛି ଅନ୍ୟଏକ ରୂପ । ମାତ୍ର କାଳ ହେଉଛି ପରମ ବା ଶ୍ରେଷ୍ଠ ରୂପ । ହେଲେ ତାଙ୍କର ରୂପ ଏହି ଗୁଣଗୋଟି ଭାବରେ ସୀମିତ ନୁହେଁ । ବିଷ୍ଣୁଙ୍କର ଏତଦ୍‌ବ୍ୟତୀତ ଯେଉଁ ବିଶୁଦ୍ଧ ନିର୍ଗୁଣ ରୂପ ରହିଛି ତାହାକୁ କେବଳ ଯୋଗୀମାନେ ହିଁ ଦର୍ଶନ

୩୪୩ । ବିଷ୍ଣୁପୁରାଣ---୧।୨।୧୧---

ଶକ୍ୟତେ ବକ୍ତୁଂ ଯଃ ସଦାସ୍ତୀତି କେବଳମ୍ ।

ଦ୍ରଷ୍ଟବ୍ୟ—'ଜଗନ୍ନାଥ' ହେଉଛନ୍ତି ଯୋଗିମାନଙ୍କର ସେହି ଧ୍ୟାନଗମ୍ୟ ବ୍ରହ୍ମରୂପୀ ବିଷ୍ଣୁଙ୍କର ଏକ ଅଖଣ୍ଡ ସତ୍ତପ୍ରକାଶ । ଯେଣୁ କୁହାଯାଇଛି—

"ଧ୍ୟାନାବସ୍ଥିତ ତଦ୍‌ଗତେନ ମନସା ପଶ୍ୟନ୍ତି ଯଂ ଯୋଗିନଃ ।
ଯସ୍ୟାନ୍ତଂ ନ ବିଦୁଃ ସୁରାସୁରଗଣାଃ ଦେବାୟ ତସ୍ମୈ ନମଃ ॥

(ଏ ଶ୍ଳୋକଟି ସେହି ବିଷ୍ଣୁଙ୍କ ପାଇଁ ଉଦ୍ଦିଷ୍ଟ ।)

ଆଉ ମଧ୍ୟ—ଯୋଗିଭିର୍ଧ୍ୟାନଗମ୍ୟମ୍ । ବନ୍ଦେ ବିଷ୍ଣୁଂ......

୩୪୪ । ବିଷ୍ଣୁପୁରାଣ—୧।୨।୨୩ ।

୩୪୫ । ପୁରାଣ ବିମର୍ଶ—ପୃ-୪୬୭ ।

କରିପାରନ୍ତି (୩୪୬)। ଧ୍ୟାନରେ ଯୋଗୀମାନେ ଦର୍ଶନ କରିପାରୁଥିବା ବାସୁଦେବ ବା ବିଷ୍ଣୁଙ୍କର ରୂପକୁ ତଥା ନିର୍ଗୁଣ ବା ଗୁଣାତୀତ ଅକଳ୍ପ୍ୟ ରୂପକୁ ଦାରୁବ୍ରହ୍ମ ବ୍ୟାଜରେ ସାଧାରଣଙ୍କର ଦର୍ଶନ ଲାଗି ପୁରୁଷୋତ୍ତମକ୍ଷେତ୍ର ବା ମର୍ତ୍ତ୍ୟ ବୈକୁଣ୍ଠରେ ପ୍ରତୀକ ମୂର୍ତ୍ତିରେ ଉପସ୍ଥାପନ କରାଯାଇଛି। ଧର୍ମଗ୍ରନ୍ଥ ଓ ପୁରାଣମାନେ ଏହି ତତ୍ତ୍ୱକୁ ବିଭିନ୍ନ ସମୟରେ ପ୍ରଚାର କରିଯାଇଛନ୍ତି। ଏ ସବୁକୁ ଆଖିବୁଜିଦେଲେ ଚଳିବ ନାହିଁ।

**ବାସୁଦେବ ଉପାସନାହିଁ ବିଷ୍ଣୁ ଉପାସନା :—**

ମହାଭାରତ ବେଳକୁ ବାସୁଦେବ ଉପାସନା ଦେଶରେ ପ୍ରସିଦ୍ଧି ଲାଭ କରିସାରିଥିଲା। ମହାଭାରତ ଯୁଦ୍ଧର ଅନେକ ପରେ ମହାଭାରତ ଲେଖାଯାଇ ଶ୍ରୀକୃଷ୍ଣ ବା ବାସୁଦେବଙ୍କର ମାହାତ୍ମ୍ୟ ପ୍ରଚାର କରାଗଲା। ବାସୁଦେବଙ୍କୁ ସର୍ବବ୍ୟାପୀ ବିଷ୍ଣୁ ଓ ସର୍ବଭୂତନିବାସ ଆତ୍ମା ବା ପରମାତ୍ମା ଭାବରେ ଉପାସନା କରାଗଲା (୩୪୭)। ଆମର ପୁରୀରେ ଉପାସିତ ଜଗନ୍ନାଥ ଉପାସନାର ମୌଳିକ ତତ୍ତ୍ୱ ଏହି ବାସୁଦେବ ଉପାସନାରେ ହିଁ ନିହିତ। ମହାଭାରତ ପରେ ବିଭିନ୍ନ ପୁରାଣରେ ସେହି ତତ୍ତ୍ୱ ପ୍ରଖ୍ୟାପନ ହୋଇଥିଲା। ବାସୁଦେବଙ୍କୁ ପରଂବ୍ରହ୍ମ ବୋଲି କୁହାଗଲା (୩୪୮)। କୁହାଯାଇଛି, ତାଙ୍କୁ ଚାରିପ୍ରକାର ଭିନ୍ନ ରୂପରେ (ଭେଦରେ) ଓ ଏକ ରୂପରେ (ଅଭେଦରେ) ଦର୍ଶନ କରାଯାଇପାରେ (୩୪୯)। ଅର୍ଥାତ୍

---

୩୪୬। ବିଷ୍ଣୁପୁରାଣ—୧।୨।୧୬—

ପ୍ରଧାନ ପୁରୁଷ ବ୍ୟକ୍ତକାଳାନାଂ ପରମଂ ହି ଯତ୍।
ପଶ୍ୟନ୍ତି ସୂରୟଃ ଶୁଦ୍ଧଂତଦ୍ ବିଷ୍ଣୋଃ ପରମଂ ପଦମ୍ ॥

୩୪୭। ପୁରାଣ ବିମର୍ଶ—ପୃ: ୪୬୭—

ବାସନା ବାସୁଦେବସ୍ୟ ବାସିତଂ ଭୁବନତ୍ରୟମ୍।
(ଉଦ୍ଧୃତ) ସର୍ବଭୂତ-ନିବାସୋଽସି ବାସୁଦେବ ନମସ୍ତୁତେ। (ମହାଭାରତ)

୩୪୮। ବିଷ୍ଣୁପୁରାଣ—ଅଂଶ।୩।୨୮—ପୃ-୨୧୫
,,—୬ଷ୍ଠ—୧୫।୩୫—ପୃ-୧୧୯—

ପରମ ବ୍ରହ୍ମଣେ ତସ୍ମୈ ନିତ୍ୟମେବ ନମୋନମଃ।
ଯଦ୍ରୂପଂ ବାସୁଦେବସ୍ୟ ପରମାତ୍ମ ସ୍ୱରୂପିଣଃ ॥

୩୪୯। ବିଷ୍ଣୁପୁରାଣ—ଅଂଶ—୩।୨୯—ପୃ-୨୧୫—

ଏତଦ୍ ବ୍ରହ୍ମଣି ଧା ଭେଦମଭେଦମପି ସ ପ୍ରଭୁଃ।
,, —୬ଷ୍ଠ—୧୫।୩୫—ପୃ-
ବାସୁଦେବାଭିଧେୟସ୍ୟ ସ୍ୱରୂପମ୍ ପରମାତ୍ମନଃ ॥
(ଏହି ଏକ ରୂପ ପରମାତ୍ମା ସେ ହୁଅନ୍ତି ଅଭେଦ କଳ୍ପନାରେ।)

ସେ ଶବ୍ଦବ୍ରହ୍ମ ଓଁକାର (ପ୍ରଣବ) ଅଭେଦ କଳ୍ପନାରେ ହୋଇପାରନ୍ତି ଓ ଭେଦରେ ଅ, ଉ, ମ; ଏପରି ମଧ୍ୟ ହୋଇପାରନ୍ତି । ଅନ୍ୟ ପକ୍ଷରେ ସେ ଭେଦରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା (ତ୍ରିଧା) ବି ହୋଇପାରନ୍ତି । ଏବଂ ଅଭେଦ କଳ୍ପନାରେ ଦାରୁବ୍ରହ୍ମ-ମହାବିଷ୍ଣୁ ମଧ୍ୟ ହୋଇପାରନ୍ତି । ଶବ୍ଦବ୍ରହ୍ମ ଯେପରି ସର୍ବଜ୍ଞାନର ଆଧାର, ସେହିପରି ବାସୁଦେବଙ୍କୁ ମଧ୍ୟ ସର୍ବଜ୍ଞାନର ମୂଳଶକ୍ତି ବୋଲି କୁହାଯାଇଛି (୩୫୦) । ବାସୁଦେବ ହେଉଛନ୍ତି ଯଜ୍ଞପୁରୁଷ ଓ ଅଚ୍ୟୁତ, ଗୋବିନ୍ଦ (ଗୋପାଳକୃଷ୍ଣ) ମାଧବ ଅନନ୍ତ (ବଳରାମ ବା ବଳଭଦ୍ର), କୃଷ୍ଣ-ବିଷ୍ଣୁ, ହୃଷିକେଶଙ୍କ ଠାରୁ ସେ ମୋଟେ ଭିନ୍ନ ନୁହନ୍ତି (୩୫୧) । ସେହି ବାସୁଦେବ ଅଚ୍ୟୁତ ବା ପରମାତ୍ମା ଭାବରେ ବିଶ୍ୱବ୍ରହ୍ମାଣ୍ଡରେ ପରିବ୍ୟାପ୍ତ (୩୫୨) । ବିଶ୍ୱବ୍ୟାପ୍ତ ଓ ଯଜ୍ଞପୁରୁଷ ବୋଲି ବାସୁଦେବଙ୍କୁ କହିବା ପଛରେ ବୋଧହୁଏ ବେଦର ସେହି "ସହସ୍ରଶୀର୍ଷା ପୁରୁଷ" ଓ ବେଦାନ୍ତର 'ସର୍ବଂଖଳ୍ୱିଦଂବ୍ରହ୍ମ'; ଅଦ୍ୱୈତଭାବନା ନିହିତ । ସେ ଯାହାହେଉ, ପୁରୁଷୋତ୍ତମ ଓ ବାସୁଦେବ; ଉଭୟ ହେଉଛନ୍ତି ଯଜ୍ଞପୁରୁଷ; (୩୫୩) ଏବଂ ସେହିପରି, ସେହି ଚନ୍ଦ୍ରାଧାରର ଦାରୁବ୍ରହ୍ମ ଭାବରେ ପୁରୁଷୋତ୍ତମ-ଜଗନ୍ନାଥ ମଧ୍ୟ ଯଜ୍ଞପୁରୁଷ ଓ ଯଜ୍ଞରୁ ସମ୍ଭବ । ତାଙ୍କୁ ମଧ୍ୟ ବାସୁଦେବ ବୋଲି କୁହାଯାଇଛି ଏବଂ ସେ ହେଉଛନ୍ତି ହିରଣ୍ୟଗର୍ଭ-ପୁରୁଷ-ପ୍ରଧାନ-ବ୍ୟକ୍ତରୂପୀ ମହାବିଷ୍ଣୁ ତଥା ଶୁଦ୍ଧଜ୍ଞାନ-ସ୍ୱରୂପୀ (୩୫୪) । ସେଥିପାଇଁ ତାଙ୍କର ପୂଜାରେ ପୁରୁଷସୂକ୍ତ ଓଁକାର (ପ୍ରଣବ)ର ବ୍ୟବହାର ସର୍ବଜନ ରହିଛି (୩୫୫) । ଏସବୁ ଦୃଷ୍ଟିରୁ ଜଗନ୍ନାଥ ଉପାସନାର ଭିତ୍ତିଭୂମି

---

୩୫୦ । ବିଷ୍ଣୁପୁରାଣ—୨ୟ—୧୩/୪୩—ପୃ-୧୮୪—

୩୫୧ । ବିଷ୍ଣୁପୁରାଣ—୨ୟ—୧୩/୯—ପୃ-୧୮୫—

ସର୍ବେଶାଚ୍ୟୁତ ଗୋବିନ୍ଦ ମାଧବାନନ୍ତ କେଶବ ।
କୃଷ୍ଣ ବିଷ୍ଣୋ ହୃଷିକେଶ ବାସୁଦେବ ନମୋଽସ୍ତୁତେ ॥

୩୫୨ । ବିଷ୍ଣୁପୁରାଣ—୨ୟ—୧୬/୨୩—ପୃ-୨୦୨—

ଏକଂ ସମସ୍ତଂ ଯଦିହାସ୍ତି କିଂଚିତ୍
ତଦଚ୍ୟୁତୋ ନାସ୍ତି ପରଂ ତତୋଽନ୍ୟତ୍ ॥

୩୫୩ । ବିଷ୍ଣୁପୁରାଣ—୫ମ—୧୭/୬—ପୃ-୪୨୨—

ସର୍ବେଷୁ ଯଜ୍ଞପୁରୁଷଃ ପୁରୁଷୈଃ ପୁରୁଷୋତ୍ତମଃ ॥

୩୫୪ । ସ୍କନ୍ଦ—ପୁ: ମା:—୨୪/୩—

ହିରଣ୍ୟଗର୍ଭ ପୁରୁଷ ପ୍ରଧାନ ବ୍ୟକ୍ତ ରୂପିଣେ ।
ଓଁ ନମୋ ବାସୁଦେବାୟ ଶୁଦ୍ଧଜ୍ଞାନ ସ୍ୱରୂପିଣେ ।

୩୫୫ । ସ୍କନ୍ଦ—ପୁ: ମା:—୨୪/୬—୭—

ଜଗନ୍ନାଥ ହେଉଚନ୍ତି:ସହସ୍ରଶୀର୍ଷା ପୁରୁଷଃ······ (୬)
ଯଃ ପୁମାନ୍ ପରମଂ ବ୍ରହ୍ମ ପରମାତ୍ମେତି ଗୀୟତେ । (୭)

ଯେ ପୂର୍ବକାଳର ବିଷ୍ଣୁ (ବାସୁଦେବ) ଉପାସନା; ଏଥିରେ କିଛି ସନ୍ଦେହ ଅଛି ବୋଲି କୁହାଯାଇ ନପାରେ । ପ୍ରାଚୀନ ଭାରତର ଧର୍ମଧାରା, ପୁରାଣ ସାହିତ୍ୟର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ଓ ପର୍ଯ୍ୟାଲୋଚନା ଆମକୁ ଯଥାର୍ଥରେ ସୂଚାଇଦିଏ ଯେ ଜଗନ୍ନାଥପୂଜା ହେଉଛି ବିଷ୍ଣୁ ଉପାସନାର ଏକ ଚରମ ପରିଣତି । ମତ୍ସ୍ୟପୁରାଣଠାରୁ ଆରମ୍ଭକରି ଭବିଷ୍ୟ ପୁରାଣ (୩୫୬) ପର୍ଯ୍ୟନ୍ତ ସମସ୍ତ ପୁରାଣରେ ଏହି ସତ୍ୟହିଁ ପ୍ରକାଶ କରାଯାଇଛି । ଶବରମାନଙ୍କ ସ୍ତମ୍ଭପୂଜା ଉପରେ ବିଷ୍ଣୁ ପୂଜାର ଆରୋପ ହୋଇଥିବା କଥା କୌଣସି ପ୍ରାଚୀନ ଗ୍ରନ୍ଥ କହନ୍ତି ନାହିଁ । ଏହା ବର୍ତ୍ତମାନର ମହାପଣ୍ଡିତମାନଙ୍କ ମତ । ଏ ମତର ପ୍ରାସଙ୍ଗିକତା ଯଥାସ୍ଥାନରେ ଆଲୋଚିତ ହେବ ।

ଆର୍ଯ୍ୟମାନେ ଭାରତକୁ ଆସିବା ପରେ ଏକ ସୁଶିକ୍ଷିତ ସଭ୍ୟଜାତି ଭାବରେ ନିଜକୁ ପ୍ରତିଷ୍ଠା କରିପାରିଥିଲେ । ବେଦ ବେଦାଙ୍ଗର ରଚନା ହିଁ ତାର ପ୍ରକୃଷ୍ଟ ପ୍ରମାଣ । ସେମାନେ ଏତେ ଉନ୍ନତ ଥାଇ କାହିଁକି ବା ଅନୁନ୍ନତ ଜଙ୍ଗଲୀ ଶବରମାନଙ୍କ ସ୍ତମ୍ଭ ଦେବତାଙ୍କୁ ନେଇ ବିଷ୍ଣୁ ଭାବରେ ପୂଜା କରନ୍ତେ ? ଉନ୍ନତ ଜାତିଠାରୁ ବରଂ ବେଶି ଅନୁନ୍ନତ ଜାତି ଗ୍ରହଣ କରେ ଓ ତହିଁରେ ଅନୁପ୍ରାଣିତ ହୁଏ । ଏକଥା ଯୁଗେ ଯୁଗେ ସବୁଠାରେ ଦେଖାଯାଇଛି । ଉଦାହରଣ ସ୍ୱରୂପ, ଇଂରେଜମାନେ ଏ ଦେଶ ଶାସନ କଲାବେଳେ ଭାରତୀୟମାନେ ସେମାନଙ୍କର ଶିକ୍ଷା, ଭାଷା, ପୋଷାକ, ପରିଚ୍ଛଦ, ଚଳଣି ସବୁ ଉଣାଅଧିକେ ଗ୍ରହଣ କଲେ । କିନ୍ତୁ ସେମାନେ କ'ଣ ସେପରି ଭାରତୀୟଙ୍କର ପୋଷାକ, ଚଳଣି, ଭାଷା ଇତ୍ୟାଦି ଗ୍ରହଣ କରିଛନ୍ତି କି ? ତା'ଛଡ଼ା ଜଣେ ଭାରତୀୟ ପ୍ୟାଣ୍ଟ, ସାର୍ଟ ପିନ୍ଧି ଇଂରାଜୀ କହିଲେ କ'ଣ ବା ତାଙ୍କୁ କିଏ ଇଂରେଜ ବୋଲି କହିବ ? ସେହିପରି ଜଗନ୍ନାଥଙ୍କ ରୂପ ଦେଖି ତାଙ୍କୁ ଆଦିବାସୀ ଦେବତା ବୋଲି ବିଚାରିବା ପଛରେ କି ଯୁକ୍ତି ଅଛି ? ଯଦି ତାଙ୍କୁ ଆଦିବାସୀଙ୍କ ସ୍ତମ୍ଭଦେବତା ବୋଲି ବିଚାର କରାଯାଏ, ତେବେ ସମାଲୋଚକମାନେ କାହିଁକି ଭାବୁ ନାହାନ୍ତି ଯେ, ହୁଏତ ଏ ସ୍ତମ୍ଭପୂଜା ବୈଦିକ ପରଂପରାରେ ଥାଇପାରେ । ସେତେବେଳେ ଆର୍ଯ୍ୟମାନେ ସ୍ତମ୍ଭ ପୂଜା କରୁଥାଇ ପାରନ୍ତି । ଅଥବା ଏହା 'ସ୍ଥୂଳଲିଙ୍ଗ' ପୂଜାର ରୂପାନ୍ତର ହୋଇପାରେ; କିମ୍ବା ଜଗନ୍ନାଥ ଏକ ପ୍ରତୀକମୂର୍ତ୍ତି ହୋଇପାରନ୍ତି, ଇତ୍ୟାଦି ।

---

୩୫୬ । ଭବିଷ୍ୟ ପୁରାଣ– ବରେଲୀ—୧୯୬୪—୨ୟ ଭାଗ—୫୦/୨୪—

ଗତୋଽସି ଶରଣଂ ଦେବଂ ହରିଂ ନାରାୟଣଂ ପ୍ରଭୁମ୍ ।
ପ୍ରଣତୋଽସି ଜଗନ୍ନାଥଂ ସ ମେ ବିଷ୍ଣୁଃ ପ୍ରସାଦତୁ ।।

**ପୁଣି ଦ୍ରଷ୍ଟବ୍ୟ**.—ଭବିଷ୍ୟ-୨ୟ-୨୧/୬୨-ପୃ-୨୬୪, ୨୧/୮୮-ପୃ-୨୬୮—ଇନ୍ଦ୍ରଦ୍ୟୁମ୍ନ କଥା, ଏବଂ ୫୦/୩୨ (ପୁରୁଷୋତ୍ତମ ପୂଜା) ପୃ-୪୭୬ । "ଯୋ ପୂଜୟନ୍ତି ପ୍ରବୁଧାଃ ପୁରୁଷୋତ୍ତମସ୍ୟ, ମତ୍ସ୍ୟାଦିକାଂସ୍ତୁ ଦଶମୀଷ୍ଟ ଦଶାବତାରାନ୍—୨ୟ-୫୦/୩୨ । ଭବିଷ୍ୟ-ପୁରାଣ ।

ହିନ୍ଦୁମାନେ ବିଷ୍ଣୁଭାବରେ ଉପାସନା କରୁଥିବା ଜଗନ୍ନାଥଙ୍କୁ ପ୍ରଥମେ ମେ କେନ୍ଦ୍ରେର ହିନ୍ଦୁସର୍ବସ୍ୱ; ତାହା ଚିନ୍ତା ନକରି ଟିକିଏ ମାଳ ଅଞ୍ଚଳରେ ବୁଲିଯାଇ ଓ ସ୍ତମ୍ଭପୂଜା ଦେଖି ତାଙ୍କୁ ଶବର ଦେବତା, ବୌଦ୍ଧଦେବତା, ଜୈନ ଦେବତା ବୋଲି ଏତେ ସହଜରେ କହିବା ବାସ୍ତବିକ ବଡ଼ ବିଚିତ୍ର । ବନ୍ଧମଙ୍ଗଳା ଉପରେ, ନନ୍ଦପଦ ନାମକ ଜୈନ ସଙ୍କେତକୁ ରଖିଦେଲେ ଯେପରି ଜଗନ୍ନାଥଙ୍କ ଭଳି ଟିକିଏ ଦେଖାଯାଉଛି, ସେହିପରି O. T. D. C କୁ (Orissa Turism Development Corporation) ମଧ୍ୟ ସଜାଇଦେଲେ ଜଗନ୍ନାଥଙ୍କ ପରି ଦେଖାଯାଉଛି । ସେହିପରି କୃଷ ଦେବତାଙ୍କୁ ଟିକିଏ ବାଗେଇଦେଲେ ଜଗନ୍ନାଥଙ୍କ ପରି ଦେଖଯାଇପାରୁଛି । ଏସବୁକୁ ଦେଖି ଯଦି ଜଗନ୍ନାଥଙ୍କୁ ତଦ୍ରୂପ ଭାବରେ ତତ୍‌ସମ୍ବନ୍ଧୀୟ ବୋଲି ଚିନ୍ତା କରାଯାଏ, ତେବେ ଆମେ ଭୂଆଁ ବୁଲିବା ଛଡ଼ା ଅନ୍ୟ କିଛି ଫଳ ହେବନାହିଁ । ଏହି ଭ୍ରାନ୍ତିକୁ ବିଶେଷ ଆଲୋଚନା କରି ପୁସ୍ତକଟିର କଳେବର ବୃଦ୍ଧି କରିବା ଆମର ଉଦ୍ଦେଶ୍ୟ ନହେବା ବାଞ୍ଛନୀୟ । ଆମେ ଏପରି ପାଣ୍ଡିତ୍ୟ ଦର୍ଶାଇବାକୁ ଯାଇ ଭ୍ରାନ୍ତିରେ ପଡ଼ିଯାଉଛୁ; ଚକାଡୋଳାକୁ ଚିହ୍ନି ପାରୁନାହୁଁ; ସେତିକି କହିଲେ ଯଥେଷ୍ଟ । ତାଙ୍କୁ ନଚିହ୍ନି ଏବେ ଆମେ ନେଇ ଥୋଇଲୁଣି ଖ୍ରୀଷ୍ଟ-ଧର୍ମର କ୍ରସ୍ ସଙ୍ଗେ, ରୂପାନ୍ତର ଭାବରେ ।

ଏହା ନିଶ୍ଚିତ ଯେ ବୈଦିକ ପରଂପରାରେ ଯୂପର ପୂଜା ଥିଲା । ଅଥର୍ବ ବେଦ ସଂହିତାରୁ ଏ ପ୍ରମାଣ ଉପଲବ୍‌ଧି ହେଉଅଛି (୩୫୭) । ଏହି ବୈଦିକ ସ୍ତମ୍ଭକୁ ଅନାଦି ଓ ଶାଶ୍ୱତ ବୋଲି ବର୍ଣ୍ଣନା କରି ବ୍ରହ୍ମସ୍ଥାନୀୟ ବୋଲି ସ୍ୱୀକାର କରାଯାଉଥିଲା । ଶିବଲିଙ୍ଗର ପୂଜା ଏହି ଯୁଗରୁ ହିଁ ପ୍ରତୀକ ପୂଜା ଭାବରେ ପରବର୍ତ୍ତୀ ଯୁଗରେ ଗୃହୀତ ହୋଇଥିଲା (୩୫୮) । ଏହାର ଆଧାର ଉପରେ ସ୍ଥୂଳଲିଙ୍ଗର ସ୍ୱରୂପ କାଷ୍ଠ, ପ୍ରସ୍ତର ଓ ବାଲୁକା ନିର୍ମିତ ଥିଲା (୩୫୯) । ଲିଙ୍ଗ ଅର୍ଥାତ୍ ଚିହ୍ନ ବା ପ୍ରତୀକ । ତାହା ପୁଣି ସ୍ତମ୍ଭଭଳି ବେଳେବେଳେ କରାଯାଏ (୩୬୦) । ସ୍ତମ୍ଭରୁ ନୃସିଂହ ଭାବରେ ବିଷ୍ଣୁଙ୍କର ଆବିର୍ଭାବ ବିଷୟ ପର ଯୁଗରେ ପୁରାଣମାନଙ୍କରେ ରହିଅଛି । ଶିବଲିଙ୍ଗର ମୂଳତତ୍ତ୍ୱ ଯେପରି ବୈଦିକ ସ୍ତମ୍ଭପୂଜାରେ ନିହିତ, ବିଷ୍ଣୁପୂଜା ମଧ୍ୟ ପରବର୍ତ୍ତୀ ଯୁଗରେ ସେହି ଆଡ଼କୁ ଢଳିଆସିଛି । ଶିବଲିଙ୍ଗକୁ ବ୍ରହ୍ମ, ନିରାକାର ନିର୍ଗୁଣ ବୋଲି କୁହାଯିବା ଅଧିକ ପ୍ରାମାଣିକ ହେବାରୁ ଜଗନ୍ନାଥ ସ୍ୱରୂପରେ ଯୂପସଦୃଶ ଏକ ପ୍ରତୀକ ମୂର୍ତ୍ତିପୂଜା କରିବା ମଧ୍ୟ ତାହାଠାରୁ ଅଧିକ ପ୍ରାମାଣିକ ହୋଇ-

---

୩୫୭ । ସିଦ୍ଧାନ୍ତ ଦୀପିକା—୧୦-୨୧ ।

୩୫୮ । ଶି: ଦା: ଧା: ଆ:—ପୃ-୨୨୧, ୨୨୨ ।

୩୫୯ । ଶିବମହାପୁରାଣ—୨,୧,୧୨,୫୧-୫୪ ।

୩୬୦ । ଶିବ ମହାପୁରାଣ—୧,୫,୨୯—

ତତଃ ସ୍ୱଲିଙ୍ଗ ଚିହ୍ନତ୍ୱାତ୍ ସ୍ତମ୍ଭତୋ ନିଷ୍କଲଂ ଶିବଃ ।

ପାରନ୍ତି ଏବଂ ସେ ମୂର୍ତ୍ତିକୁ ସେଥିପାଇଁ 'ଦାରୁବ୍ରହ୍ମ' ବୋଲି କୁହାଯାଇଛି । ଏହା ପଛରେ ଶିବ ଓ ବିଷ୍ଣୁଙ୍କୁ ବ୍ରହ୍ମସ୍ୱରୂପ ବୋଲି ପ୍ରମାଣ କରିବାର ଚିନ୍ତାଧାରା ନିହିତ । ସ୍କନ୍ଦ-ପୁରାଣରେ ବି ବିଷ୍ଣୁସ୍ୱରୂପ ନ୍ୟଗ୍ରୋଧ ବୃକ୍ଷକୁ ସ୍ପଷ୍ଟ ଭାବରେ ନିତ୍ୟ, ବ୍ରହ୍ମ ସଦ୍ଗୁଣ, ଅବିନାଶୀ, ବୈଦିକଯଜ୍ଞ ବା ଯୂପ ବୋଲି କୁହାଯାଇଛି (୩୭୧) । ଏପରି ସବୁ ପ୍ରମାଣ ଥାଉ ଥାଉ; ଜଗନ୍ନାଥ ଯଦି ଯନ୍ତ୍ରପୂଜାରୁ କାଳକ୍ରମେ ସୃଷ୍ଟ ହୋଇଛନ୍ତି ବୋଲି ବିଚାର କରାଯାଏ, ତେବେ ସେ ସେହି ବୈଦିକ ଯୂପ ପୂଜାର କ୍ରମପରିଣତି ବୋଲି ନକହି ଶବରଙ୍କ ଯନ୍ତ୍ର-ପୂଜାର କ୍ରମପରିଣତି ବୋଲି କହିବାରେ ତାତ୍ପର୍ଯ୍ୟ କ'ଣ ? ଯଦି ଜଗନ୍ନାଥ ଉପାସନା ବେଦଠାରୁ ଆହୁରି ପ୍ରାଚୀନ ହୋଇଥାଏ, ତେବେ ଯାଇ ଏ ଯୁକ୍ତି ଗ୍ରହଣୀୟ ହୋଇପାରେ ସିନା, ଅନ୍ୟଥା ନୁହେଁ । ମାତ୍ର ଜଗନ୍ନାଥ ଯେ ବେଦଠାରୁ କଦାପି ପୁରୁଣା ନୁହନ୍ତି, ଏହା ଧ୍ରୁବ ସତ୍ୟ । ଫଳରେ ତାଙ୍କୁ ସେପରି ଚିନ୍ତା କରିବା ଅଯୌକ୍ତିକ । ଗୋଟିଏ ବାକ୍ୟରେ ତାଙ୍କର ସ୍ୱରୂପ ପ୍ରକାଶ କରିବାକୁ ଗଲେ, କୁହାଯାଇପାରେ, ସେ ହେଉଛନ୍ତି ଆର୍ଯ୍ୟଦେବତା ବିଷ୍ଣୁ-ପୁରୁଷୋତ୍ତମ-ଦାରୁବ୍ରହ୍ମ ଜଗନ୍ନାଥ । ସେ ବ୍ରହ୍ମ ସ୍ୱରୂପ ହୋଇଥିବାରୁ ତାଙ୍କୁ ଅର୍ପିତ ମହାପ୍ରସାଦ ମଧ ବ୍ରହ୍ମତୁଲ୍ୟ; (୩୭୨) ତେଣୁ ଜାତିଭେଦ ନିର୍ବିଶେଷରେ ସମସ୍ତଙ୍କ ଦ୍ୱାରା ଭକ୍ଷିତ । ଏହାର ମୂଳ ମଧ ସେହି ଗୀତା ତତ୍ତ୍ୱରେ ନିହିତ । ଅତଏବ, ଜଗନ୍ନାଥ ହେଉଛନ୍ତି ହିନ୍ଦୁଧର୍ମର ମୂଳାଧାର ତଥା ଭାରତୀୟ ଆର୍ଯ୍ୟଧର୍ମ ପରଂପରାର ଶ୍ରେଷ୍ଠ ପ୍ରତୀକ ମୂର୍ତ୍ତି ତଥା ସକଳ ହିନ୍ଦୁଦର୍ଶନର ଏକ ସାଙ୍କେତିକ ସମୁଜ୍ଜ୍ୱଳ ବିଗ୍ରହ; ଏହା ନିଃସନ୍ଦେହରେ ଗ୍ରହଣୀୟ ।

ଏ ସବୁ ସିନା ଶାସ୍ତ୍ରୀୟ ପ୍ରମାଣ ବଳରେ ବିଚାର କରାଗଲା । ମାତ୍ର ଜଗନ୍ନାଥ ଉପାସନାର ବିକାଶ ଦିଗରେ କେବଳ ପ୍ରତ୍ନତାତ୍ତ୍ୱିକ ପ୍ରମାଣାବଳୀକୁ ଗ୍ରହଣ କରି ଯଦି ବିଚାର କରାଯାଏ, ତେବେ ଆମେ କେଉଁ ସିଦ୍ଧାନ୍ତରେ ପହଞ୍ଚିବା; ବର୍ତ୍ତମାନ ତାହା ଦେଖିବାର କଥା । କାରଣ, ଆଧୁନିକ ଯୁଗର ଗବେଷଣାରେ ଏପ୍ରକାର ଆଲୋଚନାର ଯଥେଷ୍ଟ ଭୂମିକା ରହିଛି । ତେଣୁ, ସେହି ପ୍ରକାରର ଆଲୋଚନା ବିଧେୟ ।

---

୩୭୧ । ସ୍କନ୍ଦପୁରାଣ—ପୁ: ମା:—୩/୯-୧୦—

ଏକାର୍ଣ୍ଣବେ ମହାଘୋରେ ନୌରିବ କ୍ଷେତ୍ରମୀକ୍ଷତେ ।
ତନ୍ମଧ୍ୟେ ଯୂପସଦ୍ଗୁଣୋ ନ୍ୟଗ୍ରୋଧସ୍ତିଷ୍ଠତେ ମହାନ୍ ।।

୩୭୨ । ଶ୍ରୀମଦ୍ ଭଗବଦ୍ ଗୀତା—୪/୨୪—

ବ୍ରହ୍ମାର୍ପଣଂ ବ୍ରହ୍ମହବି ର୍ବ୍ରହ୍ମାଗ୍ନୌ ବ୍ରହ୍ମଣା ହୁତମ୍ ।
ବ୍ରହ୍ମୈବ ତେନ ଗନ୍ତବ୍ୟଂ ବ୍ରହ୍ମକର୍ମ ସମାଧିନା ।।

ମହାପ୍ରସାଦ ରନ୍ଧାଯିବା ପୂର୍ବରୁ ହୋମ କରାଯାଏ । ପୁରୁଷସୂକ୍ତରେ ଆହୁତି ଦିଆଯାଏ । ସେହି ଯଜ୍ଞାଗ୍ନିରେ ଜଗନ୍ନାଥଙ୍କର ପାକ ସମାପନ୍ନ ହୁଏ । ଯଜ୍ଞ ଚରୁ ଅନ୍ନ ଭଳି ସମୁପଲବ୍ଧ ଅନ୍ନ ବ୍ୟଞ୍ଜନ ଦାରୁବ୍ରହ୍ମଙ୍କୁ ବୈଦିକ ବିଧିରେ ଅର୍ପିତ ହେବା ପରେ ବ୍ରହ୍ମଦ୍ରବ୍ୟ ଭାବରେ ସମସ୍ତଙ୍କର ଭୋଜନୀୟ ହୁଏ ।

## ଦ୍ୱିତୀୟ ପରିଚ୍ଛେଦ

### ଜଗନ୍ନାଥଙ୍କ ଉପାସନାର ବିକାଶରେ ପ୍ରତ୍ନତାତ୍ତ୍ୱିକ ପ୍ରମାଣ

କୌଣସି ବସ୍ତୁର ଇତିହାସ ଆଲୋଚନା ପାଇଁ କେବଳ ଯେ ଶିଳାଲେଖର ପ୍ରମାଣ ଆବଶ୍ୟକ, ତାହା ନୁହେଁ । ଏହା ସହିତ ମଧ୍ୟ ଗ୍ରନ୍ଥ ପ୍ରମାଣ, ପ୍ରତ୍ନତାତ୍ତ୍ୱିକ ପ୍ରମାଣ, ସ୍ଥଳ ପ୍ରମାଣ (Field verification), କାହାଣୀ, ପରମ୍ପରା ଆଦି ସବୁକଥାର ତଥ୍ୟର ତୁଳନାତ୍ମକ ବିଶ୍ଳେଷଣ ଆବଶ୍ୟକ । ଏ ମଧ୍ୟରୁ କେଉଁଟି ପ୍ରତି ଆଖିବୁଜିଦେବା ଅର୍ଥ ଇତିହାସକୁ ପରିହାସ କରିବା । ଶିଳାଲେଖର ସବୁ ଉକ୍ତି 'ପ୍ରମାଣ' ନୁହେଁ କି ଗ୍ରନ୍ଥ-ପ୍ରମାଣର ସମସ୍ତ ଉକ୍ତି 'ତଥ୍ୟ' ନୁହେଁ । ଶିଳାଲେଖ ଓ ଗ୍ରନ୍ଥମାନଙ୍କରେ ଅନେକ କାଳ୍ପନିକ, ପ୍ରଶସ୍ତିମୂଳକ ଓ ଅତିରଞ୍ଜନମାନ ରହିଅଛି । ଧନଲୋଭରେ ଉଭୟରେ ପଣ୍ଡିତମାନେ ଏକ ଦୁର୍ବଳରାଜାକୁ ମହାଶକ୍ତିଶାଳୀ ପାର୍ଥିବ ବା ପୃଥିବୀର ଅଧିପତି ବୋଲି ବର୍ଣ୍ଣନା କରିବାକୁ ପଛାଉ ନାହାନ୍ତି । ତେଣୁ ଏସବୁ ଉକ୍ତିମାନ ଦାୟିତ୍ୱପୂର୍ଣ୍ଣ ଭାବରେ ପୁଙ୍ଖାନୁପୁଙ୍ଖ ଅନୁଧ୍ୟାନ ଓ ଆଲୋଚନା କରି ତାପରେ ଯେତିକି ଗ୍ରହଣୀୟ, ସେତିକି ଗ୍ରହଣ କରିବା ଉଚିତ । କେବଳ ଶିଳାଲେଖରେ ଖୋଦିତ ହୋଇଗଲା ବୋଲି ସବୁକଥା ଗ୍ରହଣୀୟ, ଆଉ ତାଳପତ୍ରରେ ଲେଖା ହେଲା ବୋଲି ଗ୍ରନ୍ଥପ୍ରମାଣ ସବୁଯାକ ଉପେକ୍ଷଣୀୟ; ଏପରି ନୁହେଁ । ସବୁକଥା ଗୁରୁତ୍ୱଦେଇ ଗବେଷଣା ଦୃଷ୍ଟିରୁ ବିଚାର କରାଯିବା, ଦରକାର । ଅତଏବ ଏକ ତଥ୍ୟର ସିଦ୍ଧାନ୍ତ ପାଇଁ ଗ୍ରନ୍ଥପ୍ରମାଣ ଯେତିକି ଆବଶ୍ୟକ ଶିଳାଲେଖ ଓ ଶିଳାରେ ନିର୍ମିତ ମନ୍ଦିରରେ ବା ମନ୍ଦିର ଗାତ୍ରରେ ଥିବା ମୂର୍ତ୍ତି ନିଶ୍ଚୟ ସେତିକି ଦରକାର । ଅତଏବ, ସବୁପ୍ରକାର ପ୍ରମାଣଗୁଡ଼ିକରେ ସମୀକ୍ଷାତ୍ମକ ତର୍ଜମା ହେଲେ ଯାଇ ସତ୍ୟ ଉଦ୍‌ଘାଟିତ ହୋଇପାରିବ । ସେଥିପାଇଁ ପ୍ରତ୍ନତାତ୍ତ୍ୱିକ ପ୍ରମାଣମାନ ଏଠାରେ ଆଲୋଚନୀୟ ।

ପ୍ରାଚୀନ ଭାରତରେ ଅନେକ ମନ୍ଦିର ଥିଲା । ବିଭିନ୍ନ ସ୍ଥାନରେ ଅନେକ ପ୍ରତିମା, କାରୁକାର୍ଯ୍ୟ ଓ ପ୍ରସ୍ତର ମୂର୍ତ୍ତିମାନ ରହିଥିଲା । କାଳର କରାଳକବଳରେ ସେଥିରୁ ଅନେକ ଭଗ୍ନ, ଅନେକ ଧ୍ୱସ୍ତବିଧ୍ୱସ୍ତ, ପୁଣି ଅନେକ ବିଖଣ୍ଡିତ ଭାବରେ ଉପଲବ୍ଧ ହେଉଅଛି । ସେଗୁଡ଼ିକ ପ୍ରତି ଯଦି ଆଖିପକାଇଲେ, ସେକାଳର ଇତିହାସ, ସଂସ୍କୃତି ତଥା ଧର୍ମ-

ଧାରା ଅନେକ ପରିମାଣରେ ଆଖିଆଗରେ ନାଚଯାଏ । ଅତଏବ ମହାବିଷ୍ଣୁ ଜଗନ୍ନାଥଙ୍କ ସମ୍ବନ୍ଧରେ ଆଲୋଚନା କଲାବେଳେ ସେଦିଗକୁ ଟିକିଏ ଆଖିପକାଇ ପ୍ରାଚୀନ ଭାରତରେ କି କି ପ୍ରକାର ବିଷ୍ଣୁ ପ୍ରତିମା ଥିଲା, ସେମାନେ ସବୁ ଏକାପରି ନା ଭିନ୍ନ ପ୍ରକାରର, ତନ୍ମଧ୍ୟରୁ ଜଗନ୍ନାଥଙ୍କ ସହିତ କାହାର ବା କି ସମ୍ପର୍କ ଅଛି, ଅଥବା କେଉଁ ପ୍ରକାର ମୂର୍ତ୍ତିର ପରିକଳ୍ପନାର ବିକାଶରେ ଜଗନ୍ନାଥମୂର୍ତ୍ତି ମହାବିଷ୍ଣୁ ଭାବରେ ରୂପାୟିତ, ସେ ମହାବିଷ୍ଣୁ ପରିକଳ୍ପନା କ'ଣ, ସେପରି କିଛି ମୂର୍ତ୍ତି ଥିଲା କି ନା, ଶେଷ ନାରାୟଣ କିଏ, ବଳରାମ ପୂଜାର ବିକାଶ କିପରି, ଅନନ୍ତ ବାସୁଦେବ ପୂଜା କିପରି ହେଉଥିଲା, ତାହାର ଜଗନ୍ନାଥ ଉପାସନା ସହିତ କି ସମ୍ପର୍କ ଅଛି; ଏସବୁ ଦିଗପ୍ରତି ଟିକିଏ ଦୃଷ୍ଟିନିକ୍ଷେପ କରି ଭାରତର ବିଭିନ୍ନ ସ୍ଥାନ ପରିକ୍ରମାରେ ବୁଲିଆସିବା ଦରକାର ।

**ଚତୁର୍ଭୁଜ ବିଷ୍ଣୁ ପ୍ରତିମା—**

ଏପର୍ଯ୍ୟନ୍ତ ଯେତେପ୍ରକାର ବିଷ୍ଣୁମୂର୍ତ୍ତି ଆବିଷ୍କୃତ ହୋଇଛି ତନ୍ମଧ୍ୟରେ ପ୍ରାଚୀନତମ ହେଉଛି ମଥୁରାସଂଗ୍ରହାଳୟରେ ସଂରକ୍ଷିତ ଥିବା କେତୋଟି ଚତୁର୍ଭୁଜ ବିଷ୍ଣୁମୂର୍ତ୍ତି । ଚତୁର୍ଥ ଶତକ (ଖ୍ରୀ: ଅ:)ରେ ନିର୍ମିତ ଓ ଗଢ଼ୱା ନାମକ ସ୍ଥାନରୁ ପ୍ରାପ୍ତ ପ୍ରସ୍ତରର ଚତୁର୍ଭୁଜ ବିଷ୍ଣୁପ୍ରତିମା ସଂରକ୍ଷିତ ହୋଇଛନ୍ତି ଏଲାହାବାଦ ସଂଗ୍ରହାଳୟରେ । ଏଠାରେ ଥିବା ଦେବାଙ୍ଗନ ନାମକ ଏକ ସ୍ଥାନରେ ଉପଲବ୍‌ଧ ହୋଇଥିବା ଏକ ପ୍ରସ୍ତରର ବିଷ୍ଣୁପ୍ରତିମା ମଧ୍ୟ ଚତୁର୍ବାହୁ ବିଶିଷ୍ଟ । ଭାରତ କଳାଭବନ ସଂଗ୍ରହାଳୟରେ ପ୍ରାଚୀନତମ ବିଷ୍ଣୁଙ୍କର ଯେଉଁ ମୂର୍ତ୍ତି ସଂରକ୍ଷିତ ହୋଇଛି ତାଙ୍କର ସେହି ଚାରିଗୋଟି ଭୁଜ ରହିଅଛି । ଦେଓଗଡ଼ରେ (ବିହାର) ପଞ୍ଚମ ଶତକରେ ନିର୍ମିତ ଏକ ବିଷ୍ଣୁମୂର୍ତ୍ତି ଉପଲବ୍‌ଧ ହୋଇଛି । ତାହାଙ୍କର ମସ୍ତକଦେଶରେ ସପ୍ତଫଣା ବିଶିଷ୍ଟ ଅନନ୍ତନାଗ ରହିଛନ୍ତି ଏବଂ ଶଙ୍ଖଚକ୍ର ଧାରଣପୂର୍ବକ ତାଙ୍କର ଚତୁର୍ବାହୁ ଅଛି । ଏ ମୂର୍ତ୍ତି ଅନନ୍ତ ଓ ବିଷ୍ଣୁଙ୍କର ଏକ ମିଳିତ ସମାବେଶ । ହାତରେ ହଳ ମୂଷଳ ନାହିଁ ଅଥଚ ଶଙ୍ଖଚକ୍ର ଅଛି । ହଳମୂଷଳ ନଥିବାରୁ ତାଙ୍କୁ ବଳରାମ ବା ଅନନ୍ତମୂର୍ତ୍ତି ବଳଭଦ୍ର (ସଙ୍କର୍ଷଣ) ବୋଲି ବିଗ୍ଭର କରାଯାଇ ପାରୁନାହିଁ; ବରଂ ବିଷ୍ଣୁ ବୋଲି ବିଗ୍ଭର କରାଯାଉଛି । ଏଣେ ମସ୍ତକରେ ଥିବା ସପ୍ତଫଣା ତାଙ୍କୁ ଅନନ୍ତ ବୋଲି ସୂଚାଉଛି । ଏପରିଭାବରେ ସେ **ଅନନ୍ତବିଷ୍ଣୁ** (ବାସୁଦେବ ?) ଭାବରେ ପ୍ରକାଶିତ । ବଙ୍ଗୀୟ ସାହିତ୍ୟ ପରିଷଦ, କଲିକତାରେ ଏକ ଅନୁରୂପ ମୂର୍ତ୍ତି ସପ୍ତଫଣା ମସ୍ତକରେ ଧାରଣକରି ଛିଡ଼ା ହୋଇଥିବାର ଦେଖାଯାଏ । ଏ ମୂର୍ତ୍ତିଟି ନବମ ଶତକରେ ନିର୍ମିତ । ଶେଷଶାୟୀ ବିଷ୍ଣୁଙ୍କର ଏକମୂର୍ତ୍ତି ରାଜିମ୍‌ର (ମଧ୍ୟପ୍ରଦେଶ) ରାଜୀବଲୋଚନ ମନ୍ଦିରରେ ରହିଅଛି । ଷଷ୍ଠ ଶତାବ୍ଦୀରେ ଏହି ମୂର୍ତ୍ତିଟି ନିର୍ମିତ ଓ ଏମୂର୍ତ୍ତି ମଧ୍ୟ ଚତୁର୍ବାହୁ ବିଶିଷ୍ଟ । ଦଶମ ଶତାବ୍ଦୀରେ ନିର୍ମିତ ଏକ ଶେଷଶାୟୀ ବିଷ୍ଣୁଙ୍କର ମୂର୍ତ୍ତି ଲକ୍ଷ୍ନୌ ସଂଗ୍ରହାଳୟରେ ରହିଅଛି । ଏହାଙ୍କର ମଧ୍ୟ

ସୁଷରଗୋଟି ବାହୁ ରହିଅଛି । ବୈଦ୍ୟନାଥଠାରେ ଥିବା ଏହି ଶତାବ୍ଦୀରେ ନିର୍ମିତ ଏକ ଶେଷଶାୟୀ ବିଷ୍ଣୁମୂର୍ତ୍ତି ମଧ୍ୟ ଚତୁର୍ବାହୁ । କିନ୍ତୁ ଏହାର ଅନେକ ପୂର୍ବରୁ ସପ୍ତମ-ଅଷ୍ଟମ ଶତାବ୍ଦୀରେ ନିର୍ମିତ ଏକ ଶେଷଶାୟୀ ମୂର୍ତ୍ତି ମଥୁରା ସଂଗ୍ରହାଳୟରେ ରହିଅଛି । ଏ ମୂର୍ତ୍ତିଙ୍କର ମଧ୍ୟ ଶଙ୍ଖଚକ୍ରଯୁକ୍ତ ସୁଷରଗୋଟି ଭୁଜ ରହିଅଛି । ଏହି ଶତାବ୍ଦୀ ବେଳକୁ ଶେଷଶାୟୀ ନାରାୟଣଙ୍କର ପୂଜା ସହିତ ଲକ୍ଷ୍ମୀନାରାୟଣଙ୍କର ପୂଜା ମଧ୍ୟ ଚାଲିଥିଲା । ଅମ୍ବର ସଂଗ୍ରହାଳୟରେ ଅଷ୍ଟମ ଶତାବ୍ଦୀରେ ନିର୍ମିତ ଏକ ଲକ୍ଷ୍ମୀନାରାୟଣ ମୂର୍ତ୍ତି ରହି ଏହି ପ୍ରମାଣ ଯୋଗାଇଥାଏ । ନବମ ଶତାବ୍ଦୀରେ ଭାରତରେ ଲକ୍ଷ୍ମୀନାରାୟଣ ପୂଜାର ପ୍ରମାଣ ହିଏ ଏଲ୍ଲାହାବାଦରେ ସଂରକ୍ଷିତ ଲକ୍ଷ୍ମୀନାରାୟଣଙ୍କର ଗୋଟିଏ ମୂର୍ତ୍ତି । ଏହି ଉଭୟ ନାରାୟଣ ମଧ୍ୟ ଚତୁର୍ବାହୁ ବିଶିଷ୍ଟ ଅଟନ୍ତି । କାମ୍ବେର ନଗରଠାରେ ଉପଲବ୍ଧ ନବମ ଶତାବ୍ଦୀର ଏକ ଲକ୍ଷ୍ମୀ ନାରାୟଣମୂର୍ତ୍ତି ଓ ଲକ୍ଷ୍ନୌ ସଂଗ୍ରହାଳୟରେ ଥିବା ଦଶମ ଶତାବ୍ଦୀର ଏକ ଲକ୍ଷ୍ମୀନାରାୟଣମୂର୍ତ୍ତି; ଉଭୟ ମୂର୍ତ୍ତିରେ ନାରାୟଣଙ୍କର ସୁଷରଗୋଟି ଭୁଜ ରହିଛି । କାଶ୍ମୀରର ଶ୍ରୀନଗର ସଂଗ୍ରହାଳୟରେ ଥିବା ନବମ ଶତାବ୍ଦୀର ଏକ ଗରୁଡ଼ାରୋହୀ ଲକ୍ଷ୍ମୀ-ନାରାୟଣମୂର୍ତ୍ତିରେ ନାରାୟଣଙ୍କର ଚତୁର୍ବାହୁ ରହିଅଛି । ଗ୍ରାମ୍ବଂରେ ଉପଲବ୍‌ଧ ଅଷ୍ଟମ ଶତକରେ ଉପଲବ୍‌ଧ ଗରୁଡ଼ାରୋହୀ ବୈକୁଣ୍ଠଙ୍କର ଓ ଶ୍ରୀନଗର ସଂଗ୍ରହାଳୟରେ ଥିବା ସେହି ଗରୁଡ଼ାରୋହୀ ବୈକୁଣ୍ଠ (ବିଷ୍ଣୁ)ଙ୍କର ସୁଷରଗୋଟି ଲେଖାଏଁ ହାତ ରହିଛି । ବମ୍ବେର ପ୍ରିନ୍‌ସ୍‌ ଅଫ୍‌ ୱେଲସ୍‌ ସଂଗ୍ରହାଳୟରେ (Prince of Wales Museum) ରଖାଯାଇଥିବା ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ଗରୁଡ଼ାରୋହୀ ବୈକୁଣ୍ଠଙ୍କର ମଧ୍ୟ ସୁଷରଗୋଟି ବାହୁ ଅଛି । ପଞ୍ଚମ ଶତାବ୍ଦୀରେ ନିର୍ମିତ ହରିହର ମୂର୍ତ୍ତିଙ୍କର ହେଉଛି ସୁଷରଗୋଟି ହାତ । ତନ୍ମଧ୍ୟରୁ ଦୁଇଟି ବାହୁ ବିଷ୍ଣୁଙ୍କ ପାଇଁ ଓ ଅନ୍ୟ ଦୁଇଟି ବାହୁ ଶିବଙ୍କ ପାଇଁ ଉଦ୍ଦିଷ୍ଟ । ଏ ପ୍ରକାର ଏକ ମୂର୍ତ୍ତି ପାଟନା ସଂଗ୍ରହାଳୟରେ ରଖାଯାଇଅଛି । ବୃନ୍ଦାବନରେ ଯେଉଁ ହରିହର ମୂର୍ତ୍ତିଟି ଦେଖିବାକୁ ମିଳେ (Mahanta Collection) ତାଙ୍କର ମଧ୍ୟ ସୁଷରଗୋଟି ଭୁଜ ରହିଛି । ଏ ମୂର୍ତ୍ତିଟି ନବମ ଶତାବ୍ଦୀରେ ନିର୍ମିତ । ଦଶମ ଶତାବ୍ଦୀରେ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ନିର୍ମାଣ କରାଗଲା । ତା ପୂର୍ବରୁ ସ୍ୱୟଂଭୂ ଶିବଲିଙ୍ଗ ତ୍ରିଭୁବନେଶ୍ୱର ସେଠାରେ ଶିବ ଭାବରେ ପୂଜିତ ହେଉଥିଲେ । ମନ୍ଦିର ନିର୍ମାଣ ସମୟରେ ତାଙ୍କୁ ହରିହର ଭାବରେ ଉପାସନା କରାଯାଉଥିଲା । ମନ୍ଦିର ଗାତ୍ରରେ ହରିହରଙ୍କର ମୂର୍ତ୍ତି ଖୋଦିତ ହେଲା । ଏ ମୂର୍ତ୍ତିଙ୍କର ମଧ୍ୟ ଚତୁର୍ବାହୁ ରହିଅଛି । ଏକାଦଶ ଶତାବ୍ଦୀରେ ଏକ ହରିହର ମୂର୍ତ୍ତି ନିର୍ମିତ ହୋଇଥିଲା । ତାହାର ଫଟୋଚିତ୍ର Iconography of Visnuରେ ରହିଅଛି (୧) । ଏ ମୂର୍ତ୍ତିଙ୍କର ବାମପାର୍ଶ୍ୱର

---

୧ । Iconography of Visnu—K. Desai—Delhi—1973—Fig. 47. (Here after; I. V. )

ଆୟୁଧ ଓ ଅବୟବ ହେଉଛନ୍ତି ବିଷ୍ଣୁଙ୍କ ପରି ଏବଂ ଦକ୍ଷିଣପାର୍ଶ୍ୱ ହେଉଛି ଶିବଙ୍କ ଭଳି । ଯେ ଯାହାହେଉ, ଏ ମୂର୍ତ୍ତି ମଧ୍ୟ ଚତୁର୍ବାହୁ ବିଶିଷ୍ଟ । କଲିକତାର 'ଭାରତୀୟ ସଂଗ୍ରହାଳୟ'ରେ (Indian Museum) ଏକାଦଶ ଶତାବ୍ଦୀରେ ନିର୍ମିତ ଏକ ହରିହର ମୂର୍ତ୍ତି ରହିଅଛି । ତାଙ୍କର ହେହ୍ଲପଣ ଗୁଣଗୋଟି ଭୁଜ ଅଛି । ସେହି କଲିକତାରେ ଲୋକେଶ୍ୱର ନାମକ ଏକ ବିଷ୍ଣୁମୂର୍ତ୍ତି 'ଆଶୁତୋଷ ସଂଗ୍ରହାଳୟ'ରେ ସଂରକ୍ଷିତ । ଏହା ନବମ ଶତକରେ ନିର୍ମିତ ଏକ ଚତୁର୍ଭୁଜ ବିଷ୍ଣୁପ୍ରତିମା । ଏ ମୂର୍ତ୍ତିଟିର ଆଉଗୋଟିଏ ବିଶେଷତ୍ୱ ହେଲ, ଏହାଙ୍କ ମୁଣ୍ଡରେ ଛତ୍ରଭଳି ଅନନ୍ତଙ୍କର ସପ୍ତଫଣା ରହିଛି । କେଣ୍ଟୁ ଅନ୍ୟପ୍ରକାରେ କହିବାକୁ ଗଲେ ଏହା ଏକ ନବମ ଶତାବ୍ଦୀର ଅନନ୍ତ-ବିଷ୍ଣୁ (ବାସୁଦେବ) ଉପାସନାର ପ୍ରତୀକ । ମାତ୍ର ଦେଖିବାର କଥା ଯେ, ସବୁ ବିଷ୍ଣୁ ଲୋକେଶ୍ୱର ମୂର୍ତ୍ତି ଏକାପରି ନିର୍ମାଣ କରାଯାଉନଥିଲା । ସମସ୍ତ ମସ୍ତକ ଦେଶରେ ଅନନ୍ତନାଗଙ୍କର ଫଣା ଶୋଭାପାଉ ନଥିଲା । ଫଣା ନଥିବା ଏକ ବିଷ୍ଣୁଲୋକେଶ୍ୱର ମୂର୍ତ୍ତି ଦିଲ୍ଲୀର ଜାତୀୟ ସଂଗ୍ରହାଳୟ (National Museum)ରେ ଅଛି । ଏହା ଏକାଦଶ ଶତାବ୍ଦୀର ବିଷ୍ଣୁ ଉପାସନାର ଏକ ମୂକସାକ୍ଷୀ । ଏ ମୂର୍ତ୍ତିଟି ମଧ୍ୟ ଚତୁର୍ବାହୁ ବିଶିଷ୍ଟ ।

ପୂର୍ବ ଅଧ୍ୟାୟରେ ଆଲୋଚନା କରାଯାଇଛି ଯେ, ବିଷ୍ଣୁଙ୍କୁ ପୂର୍ବ କାଳରେ ଆଦିତ୍ୟ ବା ସୂର୍ଯ୍ୟ ବୋଲି କୁହାଯାଉଥିଲା । ଅତଏବ ସୂର୍ଯ୍ୟନାରାୟଣ ମଧ୍ୟ ହେଉଛନ୍ତି ଏକରକମର ବିଷ୍ଣୁ । ସେପରି ଏକ ଚତୁର୍ଭୁଜ ସୂର୍ଯ୍ୟନାରାୟଣ-ବିଷ୍ଣୁଙ୍କର ମୂର୍ତ୍ତି ଜବାହରମ୍ୟୁଜିୟମରେ ସଂରକ୍ଷିତ ହୋଇଛି (୧) । ଏ ମୂର୍ତ୍ତିଟି ନବମ ଶତାବ୍ଦୀରେ ନିର୍ମିତ ଓ ଏହାଙ୍କର ଗୁଣଗୋଟି ଭୁଜ ଅଛି । ତା'ଛଡ଼ା ମସ୍ତକରେ ସପ୍ତଫଣା ଛତ୍ରପରି ରହିଛି । ଏଣୁ, ଏହା ଏକ 'ସୂର୍ଯ୍ୟ-ଅନନ୍ତ-ବିଷ୍ଣୁ' ପୂଜାର ଏକୀକରଣର ପ୍ରତୀକ । ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ବୃଦ୍ଧ-ବିଷ୍ଣୁ ବା ଯୋଗନାରାୟଣଙ୍କର ଏକ ମୂର୍ତ୍ତି ମଥୁରା ସଂଗ୍ରହାଳୟରେ ସଂରକ୍ଷିତ । ଏ ମୂର୍ତ୍ତି ମଧ୍ୟ ଚକ୍ର-ଗଦାଧାରୀ ଏକ ଚତୁର୍ଭୁଜ ଯୋଗାସୀନ ମୂର୍ତ୍ତି । ବିଷ୍ଣୁଙ୍କର ବିଭିନ୍ନ ଅବତାରର ପୂଜାକ୍ରମରେ ମୁଖ୍ୟତଃ ଆମେ ଯେଉଁ ଦଶାବତାରର ମୂର୍ତ୍ତିମାନ ଦେଖିବାକୁ ପାଉ, ତନ୍ମଧ୍ୟରୁ ଅନେକ ମୂର୍ତ୍ତି ମଧ୍ୟ ଚତୁର୍ଭୁଜ ବିଶିଷ୍ଟ । ଉଦାହରଣତଃ, ଯୋଧପୁର (ଏସିଆନ୍)ରେ (Sachia Mata Temple) ଥିବା ନବମ ଶତାବ୍ଦୀର ଏକ ଚତୁର୍ଭୁଜ ବରାହ ମୂର୍ତ୍ତି, ଜବାହର ମ୍ୟୁଜିୟମରେ ସଂରକ୍ଷିତ ନବମ ଶତାବ୍ଦୀର ଏକ ଚତୁର୍ଭୁଜ ମହାବରାହ ମୂର୍ତ୍ତି, ଦେଓଗଡ଼(Deogarh)ର ପଞ୍ଚମ ଶତକରେ ନିର୍ମିତ ଏକ ଚତୁର୍ଭୁଜ ନୃସିଂହ ମୂର୍ତ୍ତି, ଲକ୍ଷ୍ନୌ ମ୍ୟୁଜିୟମରେ ସଂରକ୍ଷିତ ନବମ ଶତକର ଏକ

---

୧ । I. V.—Fig.50,

ଚତୁର୍ବାହୁ ନୃସିଂହ ମୂର୍ତ୍ତି, କଲିକତା ମ୍ୟୁଜିୟମ (West Bengal Govt. Museum)ର ଏକାଦଶ ଶତକରେ ନିର୍ମିତ ଏକ ଚତୁର୍ଭୁଜ ନୃସିଂହ ମୂର୍ତ୍ତି, ସପ୍ତମ ଶତକର ନିର୍ମିତ ସିରପୁରର ଲକ୍ଷଣ ମନ୍ଦିରରେ ଥିବା ଏକ ଚତୁର୍ବାହୁ ନୃସିଂମୂର୍ତ୍ତି, ନବମ ଶତକରେ ନିର୍ମିତ ବାରାଣସୀର ଭାରତ କଳାଭବନରେ ସଂରକ୍ଷିତ ଏକ ଚତୁର୍ଭୁଜ ବାମନମୂର୍ତ୍ତି, ଅଷ୍ଟମ ଶତାବ୍ଦୀରେ ନିର୍ମିତ ଭାରତୀୟ ସଂଗ୍ରହାଳୟ (Indian museum) କଲିକତାରେ ସଂରକ୍ଷିତ ଏକ ଚତୁର୍ବାହୁ-ତ୍ରିବିକ୍ରମ-ବାମନମୂର୍ତ୍ତି, ଯୋଧପୁର (Osian) ହରିହରମନ୍ଦିରରେ ଥିବା ନବମ ଶତାବ୍ଦୀର ଏକ ଚତୁର୍ବାହୁ ତ୍ରିବିକ୍ରମ, ବାମନମୂର୍ତ୍ତି, ଗୋଆଲିୟର ସଂଗ୍ରହାଳୟରେ ସଂରକ୍ଷିତ ଦଶମ ଶତାବ୍ଦୀର ଏକ ଚତୁର୍ଭୁଜ ତ୍ରିବିକ୍ରମ ବାମନ ମୂର୍ତ୍ତି, ଭ୍ରମ୍ବରେ (୩) ଥିବା ଚତୁର୍ଦ୍ଦଶ ଶତାବ୍ଦୀରେ ନିର୍ମିତ ଏକ ଚତୁର୍ଭୁଜ-ପଶୁରାମ ମୂର୍ତ୍ତି, ଆଦି ଅନ୍ୟତମ । ପଶୁରାମଙ୍କର ଚତୁର୍ଭୁଜ ଥିବା କୌଣସି ପୁରାଣରେ ସାଧାରଣତଃ ଉଲ୍ଲେଖ ନ ଥିଲେ ମଧ୍ୟ ତାଙ୍କୁ ଭଗବାନ ବିଷ୍ଣୁଙ୍କର ଏକ ଅବତାର ଭାବରେ ବର୍ଣ୍ଣନା କରାଯାଇଛୁ । ସେହି ଦୃଷ୍ଟିରୁ ଚତୁର୍ଦ୍ଦଶ ଶତାବ୍ଦୀରେ ଏ ମୂର୍ତ୍ତିଟିରେ ତାଙ୍କର ଚାରଗୋଟି ଭୁଜ କରାଯାଇଅଛି । ଦଶାବତାରାନ୍ତର୍ଗତ ବିଷ୍ଣୁଙ୍କର ଏହିସବୁ ମୂର୍ତ୍ତିମାନଙ୍କ ଛଡ଼ା ତାଙ୍କର ଆହୁ ହୟଗ୍ରୀବ ପ୍ରଭୃତି ଅନେକ ଅବତାରମାନ ରହିଅଛି ଓ ସେଗୁଡ଼ିକ ବିଭିନ୍ନ ସ୍ଥାନରେ ମଧ୍ୟ ପୂଜିତ ହେଉଥିବାର ପ୍ରମାଣ ମିଳିଅଛି । ତନ୍ମଧ୍ୟରୁ ଖଜୁରାହୋର ଲକ୍ଷ୍ମଣ ମନ୍ଦିରରେ ଥିବା ଏକାଦଶ ଶତକରେ ନିର୍ମିତ ଏକ ହୟଗ୍ରୀବ ମୂର୍ତ୍ତିଙ୍କର ମଧ୍ୟ ଚାରଗୋଟି ବାହୁ ଅଛି ।

ଭୁବନେଶ୍ୱରର ଓଡ଼ିଶା ମ୍ୟୁଜିୟମରେ ସଂରକ୍ଷିତ କୃଷ୍ଣ-ବିଷ୍ଣୁଙ୍କର ମଧ୍ୟ ଚାରଗୋଟି ଭୁଜ ରହିଛି । ଏଥିରୁ ଦୁଇଟି ଭୁଜ ଶ୍ରୀକୃଷ୍ଣଙ୍କର ଓ ତାହା ବଂଶୀବାଦନରେ ନିବଦ୍ଧ । ଆଉ ଦୁଇଟି ଭୁଜ ବିଷ୍ଣୁଙ୍କର । ଏ ଦୁଇଟି ହେଉଛି ଶଙ୍ଖଚକ୍ରଧାରୀ । ଏହି ମୂର୍ତ୍ତିଟି ପ୍ରାୟ ଅଷ୍ଟମ ଶତାବ୍ଦୀ ବେଳକୁ ନିର୍ମିତ । ଜଗନ୍ନାଥଙ୍କ ମନ୍ଦିରରେ ଥିବା ଦଶାବତାର କ୍ରମରେ (ନାଟକ ମନ୍ଦିର) ନୃସିଂହ ମୂର୍ତ୍ତିଟି ହେଉଛି ଚତୁର୍ଭୁଜ । ଏହା ଏକ ପରବର୍ତ୍ତୀକାଳର ମୂର୍ତ୍ତି । ଜଗନ୍ନାଥ ମନ୍ଦିରରେ ଥିବା ମାଧବ ମୂର୍ତ୍ତିଟି ମଧ୍ୟ ଏକ ଚତୁର୍ଭୁଜ ବିଷ୍ଣୁମୂର୍ତ୍ତି । ବୌଦ୍ଧର ଗନ୍ଧରାଡ଼ିରେ ଥିବା ମାଧବ ମୂର୍ତ୍ତିଟି (ନବମ ଶତକ) ଏବଂ ପୁରୀ ଜିଲ୍ଲାର ସୋଭନେଶ୍ୱର ମନ୍ଦିରର ନୀଳମାଧବ ମୂର୍ତ୍ତିଟି ମଧ୍ୟ ଚତୁର୍ଭୁଜ ବିଷ୍ଣୁମୂର୍ତ୍ତି । ବ୍ରହ୍ମଗିରିର (ପୁରୀ) ଅଲର୍ଓ୍ୱାରନାଥ ମନ୍ଦିରରେ ଥିବା ଜନାର୍ଦ୍ଦନ ନାରାୟଣ ମୂର୍ତ୍ତିଟି ହେଉଛି ଏକ ଚତୁର୍ଭୁଜ ବିଷ୍ଣୁମୂର୍ତ୍ତି । ଜଗନ୍ନାଥ ମନ୍ଦିର (ପୁରୀ)ର ପାର୍ଶ୍ୱଦେବତା ଭାବରେ ଥିବା ବାମନ, ନୃସିଂହ ଓ ବରାହ ହେଉଛନ୍ତି ପ୍ରତ୍ୟେକ ଚତୁର୍ଭୁଜ ବିଷ୍ଣୁ । ଏସବୁ ଦ୍ୱାଦଶ ଶତାବ୍ଦୀରେ ନିର୍ମିତ । ପୁରୀଜିଲ୍ଲାର ଚୌରାଶୀରେ ଥିବା ସୋମବଂଶୀ

---

୩ । I. V.– Fig. 79.

ରାଜତ୍ୱ କାଳରେ (୧୦ମ-ଏକାଦଶ ଶତକ) ନିର୍ମିତ ନୀଳମାଧବ ମୂର୍ତ୍ତିଙ୍କର ମଧ୍ୟ ଚତୁର୍ଭୁଜ ରହିଛି । ସେହିପରି ବୈଷ୍ଣବୀଠାରେ ଥିବା ଲକ୍ଷ୍ମୀନାରାୟଣ ମୂର୍ତ୍ତି ମଧ୍ୟରେ ନାରାୟଣ ହେଉଛନ୍ତି ଚତୁର୍ଭୁଜ । ଏହା ଗଙ୍ଗ ରାଜତ୍ୱ ସମୟରେ (ଦ୍ୱାଦଶ ଶତକ) ନିର୍ମିତ । ଓଡ଼ିଶା ଭିତରେ ବୁଲିଆସିଲେ ଦେଖାଯାଏ ଯେ ଏଠାରେ ମଧ୍ୟ ପ୍ରାଚୀନକାଳରୁ ଅନେକ ବିଷ୍ଣୁ ମୂର୍ତ୍ତି ତଥା ବିଷ୍ଣୁଙ୍କର ଅବତାରମାନଙ୍କର ମୂର୍ତ୍ତି ପୂଜିତ ହୋଇ ଆସୁଛି ଏବଂ ସମସ୍ତେ ପ୍ରାୟ ଚତୁର୍ଭୁଜ । ମାତ୍ର ଜଗନ୍ନାଥଙ୍କର ମାତ୍ର ଦୁଇଟି ଭୁଜ ରହିଛି । ତେଣୁ ତାଙ୍କୁ ଚତୁର୍ଭୁଜ ବିଷ୍ଣୁ ଭାବରେ ରୂପାୟନ କରିବାପାଇଁ ଗଜୋଦ୍ଧାରଣ ବେଶ ସମୟରେ କୃତ୍ରିମ ଭୁଜଖଣ୍ଡି ତାଙ୍କୁ ଓ ବଳଭଦ୍ରଙ୍କୁ ଚତୁର୍ଭୁଜ ବିଷ୍ଣୁ ଭାବରେ ଉପସ୍ଥାପନ କରାଯାଏ । ଜଗନ୍ନାଥଙ୍କୁ ଶଙ୍ଖଚକ୍ର, ଗଦା, ପଦ୍ମ ଧରାଇ ଦିଆଯାଏ ଓ (ବଳରାମଙ୍କୁ) ବଳଭଦ୍ରଙ୍କୁ ଶଙ୍ଖଚକ୍ର, ହଳ, ମୂଷଳ ଧାରଣ କରାଇ ଦିଆଯାଏ । ତେବେ ପ୍ରଶ୍ନ ଉଠୁଛି, ଯଦି ଜଗନ୍ନାଥ ହେଉଛନ୍ତି ସ୍ୱୟଂ ବିଷ୍ଣୁ, ତେବେ ତାଙ୍କର କାହିଁକି ଚତୁର୍ଭୁଜ ନାହିଁ ? ତେବେ ଦ୍ୱିଭୁଜ କ'ଣ କୌଣସି ବିଷ୍ଣୁ ମୂର୍ତ୍ତିଙ୍କର ହୋଇପାରେନା ? ଅଥବା, ଚତୁର୍ଭୁଜ-ଠାରୁ ଅଧିକ ଭୁଜ ଥିବା ବିଷ୍ଣୁ ମୂର୍ତ୍ତି କ'ଣ ନାହାନ୍ତି ?

## ଚତୁର୍ଭୁଜ ଭିନ୍ନ ବିଷ୍ଣୁ ମୂର୍ତ୍ତି—

ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିରୁ ପୂର୍ବୋକ୍ତ ଏହି ପ୍ରଶ୍ନର ଆଲୋଚନା ପାଇଁ ପୁଣି ବହିର୍ଗା-ବଲୋକନକ୍ରମରେ ଭାରତ ଭ୍ରମଣରେ ଯିବା ଆବଶ୍ୟକ । ଭାରତର ବିଭିନ୍ନ ସଂଗ୍ରହାଳୟ, ମନ୍ଦିର ଇତ୍ୟାଦି ପ୍ରତି ଦୃଷ୍ଟି ନିକ୍ଷେପକଲେ ଆମେ ଦେଖିବାକୁ ପାଉ ଯେ, ବିଷ୍ଣୁଙ୍କର ଚାରିଗୋଟି ଭୁଜରୁ ଅଧିକ ମଧ୍ୟ ଅଛି ଓ ଚାରିରୁ କମ୍ ଅର୍ଥାତ୍ ଦୁଇଟି ଭୁଜ ମଧ୍ୟ ଅଛି । ଦେଓଗଡ଼ (Deogarh)ରୁ ମିଳିଥିବା ଏକ ପଞ୍ଚମ ଶତକରେ ନିର୍ମିତ ବିଷ୍ଣୁ ମୂର୍ତ୍ତିଙ୍କର ଛଅଗୋଟି ଭୁଜ ରହିଛି । ଏହାଙ୍କର ମସ୍ତକରେ ସାତଗୋଟି ନାଗମୂର୍ତ୍ତି ରହିଛି ଏବଂ ପ୍ରତ୍ୟେକ ନାଗଙ୍କର ତିନିଗୋଟି ଲେଖାଏଁ ଫଣା ଥାଇ ସମୁଦାୟ ୨୧ ଏକୋଇଶଟି ଫଣା ରହିଛି (୪) । ଜବାହରଲାଲ ମ୍ୟୁଜିୟମରେ (ମୂର୍ତ୍ତି ନଂ. ୮) ବୈକୁଣ୍ଠ (ବିଷ୍ଣୁ)ଙ୍କର ନବମ ଶତକରେ ନିର୍ମିତ ଏକ ଷଡ଼ଭୁଜ ମୂର୍ତ୍ତି ରହିଛି । ଗୁଜୁରାଟର ସମଲଜୀଠାରେ ନବମ ଶତକରେ ନିର୍ମିତ ବିଶ୍ୱରୂପ ବିଷ୍ଣୁଙ୍କର ଏକ ଅଷ୍ଟମ ଭୁଜମୂର୍ତ୍ତି ଅଛି (୫) ।

---

୪ । I. V.—Plate-No.19

୫ । Shah. U. P—Sculptures from Samalaji and Rode—pp-66 ff. Pl. 48-50. Baroda—1960
· I. V—Plate—No. 43.

ଗ୍ୱାଲିୟରଠାରେ (Museum) ସେହି ବିଶ୍ୱରୂପ-ବିଷ୍ଣୁ ମୂର୍ତ୍ତିଙ୍କର ହେଉଛି ଛଅଗୋଟି ଭୁଜ । ଏ ମୂର୍ତ୍ତିଟି ଦଶମ ଶତକରେ ନିର୍ମିତ । ଏହି ଶତାବ୍ଦୀରେ ନିର୍ମିତ ତ୍ରିବିକ୍ରମ ବାମନଙ୍କର ଏକ ଷଡ଼ଭୁଜମୂର୍ତ୍ତି ଗ୍ୱାଲିୟର ମ୍ୟୁଜିୟମରେ (୬) ସଂରକ୍ଷିତ । ଅତଏବ ପଞ୍ଚମ ଶତକରୁ ଆରମ୍ଭକରି ଦଶମ ଶତକ ପର୍ଯ୍ୟନ୍ତ. ଏପରିକି ତାହାର ପରେ ମଧ୍ୟ ଚତୁର୍ଭୁଜଠାରୁ ଅଧିକ ଭୁଜ ଥିବା ବିଷ୍ଣୁ ମୂର୍ତ୍ତିମାନ ମିଳୁଅଛି । ଏହିପରି ଚତୁର୍ଭୁଜ, ଷଡ଼ଭୁଜ, ଅଷ୍ଟଭୁଜ ବିଷ୍ଣୁ ମୂର୍ତ୍ତିର ପରମ୍ପରା ଭାରତରେ କନ୍ତୁ ଦିନରୁ ରହିଥିଲେ ମଧ୍ୟ ଦୁଇ ଭୁଜ ମୂର୍ତ୍ତିର ପରମ୍ପରା ଯେ ନ ଥିଲା ତାହା କୁହାଯାଇ ନ ପାରେ । ବିଷ୍ଣୁଙ୍କର ଓ କୃଷ୍ଣଙ୍କର ଦୁଇଭୁଜ ବିଶିଷ୍ଟ ମୂର୍ତ୍ତିମାନ ଭାରତର ଅନେକ ସ୍ଥଳରେ ଦେଖିବାକୁ ମିଳିଥାଏ ।

## ଦ୍ୱିଭୁଜ ବିଷ୍ଣୁ ମୂର୍ତ୍ତି :—

ନବମ ଶତାବ୍ଦୀରେ ନିର୍ମିତ ଶ୍ରୀଧରମୂର୍ତ୍ତି ଏକ ଦ୍ୱିଭୁଜ ମୂର୍ତ୍ତି । ଏହା ବୁଦ୍ଧଗୟାରେ ଉପଲବ୍ଧ । ଏହି ଶତାବ୍ଦୀରେ ନିର୍ମିତ ବିଷ୍ଣୁଙ୍କର ଏକ ଦ୍ୱିଭୁଜ ମୂର୍ତ୍ତି କଲିକତାର ଭାରତୀୟ ସଂଗ୍ରହାଳୟରେ, ସଂରକ୍ଷିତ (୭) । ବୈକୁଣ୍ଠ (ବିଷ୍ଣୁ) ମୂର୍ତ୍ତିମାନଙ୍କ ମଧ୍ୟରେ ଅନେକେ ହେଉଛନ୍ତି ଦ୍ୱିଭୁଜ । ଚତୁର୍ଥ ଶତାବ୍ଦୀରେ ନିର୍ମିତ ଏକ ଦ୍ୱିଭୁଜ ଚତୁର୍ମୂର୍ତ୍ତି-ବିଷ୍ଣୁ ମଥୁରା ସଂଗ୍ରହାଳୟରେ ସଂରକ୍ଷିତ । ଷଷ୍ଠ ଶତାବ୍ଦୀର ଏକ ଦ୍ୱିଭୁଜ ବୈକୁଣ୍ଠ ମୂର୍ତ୍ତି ମଧ୍ୟ ମଥୁରା ସଂଗ୍ରହାଳୟରେ ଅଛି । ବମ୍ବେର ପ୍ରିନ୍ସ୍ ଅଫ୍ ଓ୍ୱେଲସ୍ ସଂଗ୍ରହାଳୟରେ (Prince of wales museum) ସଂଗୃହୀତ ଏକ ବୈକୁଣ୍ଠ ମୂର୍ତ୍ତିଙ୍କର ମଧ୍ୟ ଦୁଇଗୋଟି ଭୁଜ । ଏ ମୂର୍ତ୍ତିଟି ନବମ ଶତାବ୍ଦୀରେ କାଶ୍ମୀରରେ ନିର୍ମିତ । ଷଷ୍ଠ ଶତାବ୍ଦୀରେ ନିର୍ମିତ ଏକ ବିଶ୍ୱରୂପ ବିଷ୍ଣୁ ମୂର୍ତ୍ତିଙ୍କର ହସ୍ତଦ୍ୱୟ ଭଗ୍ନ ହେଲେ ମଧ୍ୟ ସେ ଯେ ଏକ ଦ୍ୱିଭୁଜ ମୂର୍ତ୍ତି, ଏଥିରେ ସନ୍ଦେହ ନାହିଁ । ଏହି ମୂର୍ତ୍ତିଟି ମଥୁରା ସଂଗ୍ରହାଳୟରେ ସଂରକ୍ଷିତ (୮) । ପାଟନା ମ୍ୟୁଜିୟମରେ ସଂରକ୍ଷିତ ପଞ୍ଚଶତାବ୍ଦୀର ଏକ ହଳଧର ମୂର୍ତ୍ତି ମଧ୍ୟ ଦ୍ୱିଭୁଜ ବିଶିଷ୍ଟ । ମଥୁରାମ୍ୟୁଜିୟମ୍‌ରେ ଭଗବାନ ବରାହ (ବିଷ୍ଣୁ)ଙ୍କର ଏକ ମୂର୍ତ୍ତି ରହିଛି । ଏହା ଦ୍ୱିତୀୟ ଶତାବ୍ଦୀରେ ନିର୍ମିତ ଏକ ଦ୍ୱିଭୁଜ ମୂର୍ତ୍ତି । ବରାହ (ବିଷ୍ଣୁ) ମୂର୍ତ୍ତିମାନଙ୍କ ମଧ୍ୟରେ ଏହା ବୋଧହୁଏ, ଏକ ପ୍ରାଚୀନତମ ଦ୍ୱିଭୁଜମୂର୍ତ୍ତି । ପଞ୍ଚମ ଶତାବ୍ଦୀରେ ନିର୍ମିତ ଏକ ବରାହମୂର୍ତ୍ତିଙ୍କର ମଧ୍ୟ

---

୬ । I. V—Plate—No.78

୭ । I. V—Plate—No. 10, 11

୮ । I. V—Plate—No. 41

ଦୁଇଟି ଭୁଜ (୮) । ବିଷ୍ଣୁଙ୍କର ଅନ୍ୟଏକ ଅବତାର ନୃସିଂହମୂର୍ତ୍ତିଙ୍କର ଅନେକସ୍ଥଳରେ ଦୁଇଟି ମାତ୍ର ଭୁଜ ରହିଛି । ତନ୍ମଧ୍ୟରେ ଷଷ୍ଠ ଶତାବ୍ଦୀରେ ନିର୍ମିତ ତଥା ବାରାଣସୀର ଭାରତ କଳାଭବନରେ ସଂରକ୍ଷିତ ନୃସିଂହମୂର୍ତ୍ତି ଦୁଇଟି ଅନ୍ୟତମ । 'ଗୁଣ୍ଟୁର' ଜିଲ୍ଲାର କୋଣ୍ଡମୋଟୁଠାରୁ ଉପଲବ୍ଧ ଏକ ବିରାଟ ଧାତୁରେ ବିଷ୍ଣୁଙ୍କର ବିଭିନ୍ନ ମୂର୍ତ୍ତିଙ୍କର ଦୁଇ ଦୁଇଟି ଭୁଜ ରହିଅଛି । ଏଥିରେ ଯଥାକ୍ରମେ ପ୍ରଦ୍ୟୁମ୍ନ (କାମଦେବ), ବିଷ୍ଣୁ, ନୃସିଂହ, କୃଷ୍ଣ, ସଙ୍କର୍ଷଣ ଓ ଅନିରୁଦ୍ଧ ରହିଛନ୍ତି । ସେମାନଙ୍କର ପ୍ରତ୍ୟେକଙ୍କର ଦୁଇ ଦୁଇଟି ଭୁଜମାନଙ୍କରେ ଉପଯୁକ୍ତ ଆୟୁଧ । ଏହି ମୂର୍ତ୍ତିମାନ ଚତୁର୍ଥ ଶତକର ପୂର୍ବରୁ ନିର୍ମିତ (୯) । ବିଷ୍ଣୁଙ୍କର ଅନ୍ୟଏକ ଅବତାର ବାମନଙ୍କର ମଧ୍ୟ ଅନେକ ସ୍ଥଳରେ ଦୁଇଟି ଭୁଜ ରହିଛି । ପଞ୍ଚମ ଶତକରେ ନିର୍ମିତ ବାମନଙ୍କର ଏକ ଦ୍ୱିଭୁଜମୂର୍ତ୍ତି ଏଲାହାବାଦ ସଂଗ୍ରହାଳୟରେ ସଂରକ୍ଷିତ । ବିଷ୍ଣୁଙ୍କର ଗ୍ରାମାବତାରର ପ୍ରାୟ ସମସ୍ତ ଉପଲବ୍ଧ ମୂର୍ତ୍ତି ହେଉଛନ୍ତି ଦୁଇଭୁଜ ବିଶିଷ୍ଟ । ଶ୍ରୀକୃଷ୍ଣଙ୍କର ମଧ୍ୟ ଅଧିକାଂଶ ମୂର୍ତ୍ତି ଦ୍ୱିଭୁଜ । ଅବଶ୍ୟ ତାଙ୍କଠାରେ ବିଷ୍ଣୁତ୍ୱକୁ ପ୍ରକାଶ କରିବାକୁ ଯାଇ ବେଳେବେଳେ ଶିଳ୍ପୀ ତାଙ୍କୁ ଚତୁର୍ଭୁଜ ବିଶିଷ୍ଟ କରିଛି । ଦଶମ ଶତାବ୍ଦୀର ଏକ ଚତୁର୍ଭୁଜ ଶକଟ ଭଙ୍ଗକାରୀ ଶ୍ରୀକୃଷ୍ଣମୂର୍ତ୍ତି ଖଜୁରାହୋର ଲକ୍ଷ୍ମଣ ମନ୍ଦିରରେ ରହିଛି । ତଥାପି ଶ୍ରୀକୃଷ୍ଣଙ୍କର ଅଧିକାଂଶ ଓ ଅନେକ ମୂର୍ତ୍ତି ଦ୍ୱିଭୁଜ । ଦେଓଗଡ଼ର ପଞ୍ଚମ ଶତାବ୍ଦୀରେ ନିର୍ମିତ ଏକ ଶକଟ ଭଙ୍ଗକାରୀ ଶ୍ରୀକୃଷ୍ଣମୂର୍ତ୍ତି ହେଉଛି ଦୁଇଭୁଜ ବିଶିଷ୍ଟ (୧୦) । ସେହିପରି ଗୋବର୍ଦ୍ଧନଧାରୀ କୃଷ୍ଣ ହେଉଛନ୍ତି ଦୁଇଭୁଜ ବିଶିଷ୍ଟ । ପଞ୍ଚମ ଶତାବ୍ଦୀର ଏପରି ଏକ ମୂର୍ତ୍ତି ଏହାର ପ୍ରମାଣ ଦିଏ (୧୧) । ପଞ୍ଚମ ଶତାବ୍ଦୀର ଏକ ଗୋବର୍ଦ୍ଧନଧାରୀ ଶ୍ରୀକୃଷ୍ଣଙ୍କର ଦ୍ୱିଭୁଜମୂର୍ତ୍ତି ବାରାଣସୀର ଭାରତ କଳାଭବନରେ ଅଛି । ସେହିପରି ନବମ ଶତାବ୍ଦୀର ମୂର୍ତ୍ତି କାଳୀୟଦଳନକାରୀ ଶ୍ରୀକୃଷ୍ଣ, ସେହି ଶତାବ୍ଦୀର ମୂର୍ତ୍ତି କେଶୀହନ୍ତା ଶ୍ରୀକୃଷ୍ଣ, ପଞ୍ଚମ ଶତକର ମୂର୍ତ୍ତି ଚାଣୁରଙ୍କ ସହିତ ଯୁଦ୍ଧ କରୁଥିବା ଶ୍ରୀକୃଷ୍ଣ, ଦଶମ ଶତାବ୍ଦୀର ମୂର୍ତ୍ତି କୁବଳୟାପୀଡ଼ହାରକାରୀ ଶ୍ରୀକୃଷ୍ଣ; ସବୁଠାରେ ହେଉଛନ୍ତି ଦୁଇଭୁଜ ବିଶିଷ୍ଟ ଏବଂ ତାଙ୍କର ଭାଇ ପ୍ରଲମ୍ବାସୁର ହତ୍ୟାକାରୀ ବଳରାମ ମଧ୍ୟ ଏକ ଦ୍ୱିଭୁଜମୂର୍ତ୍ତି (୧୨) ।

---

୮ । I. V.—Plate—No. 59

୯ । C. J. R. T.O—Plate—No. 53. (See also—Plate. 54, 55 ଦ୍ୱିଭୁଜ ନୃସିଂହ (ଚତୁର୍ଥ ଶତକ)

୧୦ । I. V—Plate—88

୧୧ । I. V—Plate—No. 91

୧୨ । I. V—Plate—No. 92, 93, 95, 96, 97,

ଜଗନ୍ନାଥ ଓ ବଳଭଦ୍ର ଏହୁ କୃଷ୍ଣ ଓ ବଳରାମଙ୍କ ପରି ହେଉଛନ୍ତି ଦ୍ୱିଭୁଜ । ପୂର୍ବରୁ ବିଷ୍ଣୁ ପ୍ରତିମା ସବୁ ଦ୍ୱିଭୁଜ ହୋଇ ଗଢ଼ା ହେଉଥିବାରୁ (୧୨ କ) ଜଗନ୍ନାଥ ଓ ବଳଭଦ୍ର ଙ୍କର ଦ୍ୱିଭୁଜମୂର୍ତ୍ତି ଭୁଜଦୃଷ୍ଟିରୁ ପରମ୍ପରାରୁ ବିରୋଧ କରୁନାହିଁ । ଫଳରେ ସେ ଖାଲି କୃଷ୍ଣ ନୁହନ୍ତି; ସେ ମଧ୍ୟ ବିଷ୍ଣୁ । ଏଥିରେ ଏ ଉଭୟ ତତ୍ତ୍ୱ ସିଦ୍ଧ ହେଉଛି । ତେବେ ଦେଖିବାର କଥା, ଓଡ଼ିଶାର ହିନ୍ଦୁଧର୍ମ ତଥା ବିଷ୍ଣୁ ଉପାସନାର ପରମ୍ପରା କେବେଠାରୁ ?

### ଓଡ଼ିଶାରେ ବିଷ୍ଣୁ ଉପାସନା:—

ବୌଦ୍ଧଯୁଗରେ ଓଡ଼ିଶାରେ ଅନେକ ବୌଦ୍ଧ ଥିଲେ ମଧ୍ୟ ବ୍ରାହ୍ମଣ ଓ ହିନ୍ଦୁଙ୍କର ଚତୁର୍ବର୍ଣ୍ଣ ମଧ୍ୟ ନିଜ ନିଜର କର୍ମରେ ତତ୍ପର ଥିଲେ । ଓଡ଼ିଶାର ଦୁଇଜଣ ଯୁବକ 'ତପସୁ' ଓ 'ଭଲ୍ଲିକ' ଗୌତମ ବୁଦ୍ଧଙ୍କଠାରୁ ସିଧାସଳଖ ଉପଦେଶ ଗ୍ରହଣ କରିବା କଥା ବିନୟ ପିଟକ ଓ ଅଙ୍ଗୁତ୍ତରନିକାୟ ଗ୍ରନ୍ଥରୁ ଜଣାଯାଏ (୧୩) । ଖ୍ରୀ: ପୂ: ତୃତୀୟ ଶତିକ ବେଳକୁ ଅଶୋକ କଳିଙ୍ଗ ବିଜୟ କଲେ । ସେତେବେଳେ ମଧ୍ୟ ଓଡ଼ିଶାରେ ବୌଦ୍ଧଧର୍ମ ଯାଙ୍କରୁ ଓଡ଼ିଶାରେ ବ୍ରାହ୍ମଣ୍ୟ ଧର୍ମ ରହିଥିଲା । ସେଥିପାଇଁ ଅଶୋକ କଳିଙ୍ଗ ଯୁଦ୍ଧରେ ଅନେକ ବ୍ରାହ୍ମଣଙ୍କୁ ହତ୍ୟା ଓ କ୍ଷତବିକ୍ଷତ କରିଥିବାରୁ ଅନୁତପ୍ତ ହେଲେ (୧୪) ଏବଂ ପରେ ବୌଦ୍ଧଧର୍ମ ଗ୍ରହଣ କଲେ । ଖ୍ରୀ: ପୂ: ପ୍ରଥମ-ଦ୍ୱିତୀୟ ଶତାବ୍ଦୀରେ ଖାରବେଳ କଳିଙ୍ଗର ସମ୍ରାଟ ଥିଲେ । ସେ ଜୈନ ହେଲେ ମଧ୍ୟ ସବୁ ଧର୍ମ ପ୍ରତି ସହାନୁଭୂତିଶୀଳ

---

୧୨ କ । ମ: ସ୍ମ:—୧, ୫୮, ୪୯—

ଯଃ ସ ଚକ୍ରଗଦାପାଣିଃ ପୀତବାସ ସିତପ୍ରଭ ।

ବୃହତ୍ ସଂହିତା—ବାଙ୍ଗାଲୋର—୧୯୪୭—L VIII—୩୫

ଦ୍ୱିଭୁଜସ୍ୟରୁ ଶାନ୍ତିକରେ ଦକ୍ଷିଣହସ୍ତୋଽପରସ୍ୱ ଶଙ୍ଖଧରଃ ।

ବିଷ୍ଣୁଧର୍ମୋତ୍ତରମ୍—୩/୬୦, ୨

ମତ୍ସ୍ୟପୁରାଣ—ଆନନ୍ଦାଶ୍ରମ—ପୁନା—୧୯୦୭-୨୫୮, ୬

୧୩ । Olden Berg's com.—ବିନୟପିଟକ P.M ଓ ଅଙ୍ଗୁତ୍ତର ନିକାୟ—ପ୍ରଥମଭାଗ—ଅ: ୧୦—ପୃ: ୩୬ ।

୧୪ । Select Inscriptions—Dr. D. C. Sircal—pp-35—35, "For the injury or slaughter or deportation of the beloved ones, of the lot of Brahmanas, the Sramanas and the adherents of other secret" = (Rock Edit. No. xiii)

ଥିଲେ । ବ୍ରାହ୍ମଣମାନଙ୍କୁ ଯଜ୍ଞଯାଗ କରିବାରେ ସାହାଯ୍ୟ କରୁଥିଲେ ଓ ଅନେକ ହିନ୍ଦୁ ଦେବତାଙ୍କ ମନ୍ଦିର ନିର୍ମାଣ କରିଥିଲେ । ଏହା ତାଙ୍କର ହାତୀଗୁମ୍ଫା ଶିଳାଲେଖରୁ ଜଣାଯାଏ (୧୫) । ଖାରବେଳଙ୍କ ସମୟଠାରୁ ବୈଷ୍ଣବରାଜା ସମୁଦ୍ରଗୁପ୍ତଙ୍କ ସମୟ ପର୍ଯ୍ୟନ୍ତ (ଖ୍ରୀ: ଅ: ୪ର୍ଥ ଶତକ) ଓଡ଼ିଶାର ଇତିହାସ ଅନ୍ଧକାରାଚ୍ଛନ୍ନ ଥିଲେ ମଧ୍ୟ ସେତେବେଳେ ଯେ ହିନ୍ଦୁ ଧର୍ମ ଓ ବିଭିନ୍ନ ଦେବତା ପୂଜା ଓଡ଼ିଶାରେ ଚାଲୁଥିଲା; ଏଥିରେ ସନ୍ଦେହ ନାହିଁ । ଗୁପ୍ତରାଜାମାନେ ମୁଖ୍ୟତଃ ବୈଷ୍ଣବ ଥିଲେ । ସେହି ସମୟରେ ଖାଲି କଳିଙ୍ଗ ନାହିଁକି ; ସାରା ଭାରତରେ ବୈଷ୍ଣବଧର୍ମ ଲୋକପ୍ରିୟ ହୋଇଉଠିଥିଲା । ଗୁପ୍ତରାଜାମାନେ ପ୍ରାୟଶଃ ବିଷ୍ଣୁଙ୍କୁ ମାଧବ ଭାବରେ ପୂଜା କରୁଥିଲେ (୧୬) । ମାଧବ ଶବ୍ଦର ତାତ୍ତ୍ୱିକ ଅର୍ଥ ମା' ବା ଲକ୍ଷ୍ମୀଙ୍କର 'ଧବ' ଅର୍ଥାତ୍ ସ୍ୱାମୀ ହୋଇଥିବାରୁ ସେମାନେ ନିଶ୍ଚୟ ଲକ୍ଷ୍ମୀପତି ନାରାୟଣଙ୍କର ଉପାସନା କରୁଥିଲେ । ବୋଧହୁଏ ଲକ୍ଷ୍ମୀନାରାୟଣ ପୂଜା ଖୁବ୍ ଜୋର୍-ସୋର୍‌ରେ ସେତେବେଳେ ଚାଲିଥିବ । ଅପସନ୍ଦ ପ୍ରସ୍ତର ଅଭିଲେଖରୁ ଜଣାଯାଏ ଯେ, ଗୁପ୍ତରାଜା ମାଧବଗୁପ୍ତ, ମାଧବଙ୍କର ଉପାସକ ଥିଲେ (୧୭) । ଏଣୁ କୁହାଯାଇପାରେ ଗୁପ୍ତରାଜାମାନଙ୍କ ପୂର୍ବରୁ ଓଡ଼ିଶାରେ ହିନ୍ଦୁଧର୍ମର ବିଭିନ୍ନ ଦେବତା ପୂଜିତ ହେଉଥିଲେ । ଗୁପ୍ତ ରାଜତ୍ୱ କାଳରେ ବିଷ୍ଣୁ ଉପାସନା ଅଧିକ ଲୋକପ୍ରିୟ ହୋଇଥିଲା । ପରେ ଅବଶ୍ୟ ପୁଣି ବୌଦ୍ଧଧର୍ମ, ଶୈବଧର୍ମ ଆଦି ଓଡ଼ିଶାରେ ପ୍ରାଧାନ୍ୟ ବିସ୍ତାର କଲା । ତଥାପି ବିଷ୍ଣୁ ଉପାସନା ଲୋପ ପାଇଯାଇଥିଲା ବୋଲି କୁହାଯାଇନପାରେ । ଗଙ୍ଗରାଜତ୍ୱ ବେଳକୁ ତାହା ପୁନରାୟ ଲୋକପ୍ରିୟ ହୋଇଉଠିଲା । ଏ ହେଉଛି ଧର୍ମ-ଇତିହାସର ସାରକଥା ।

## ଲକ୍ଷ୍ମୀନାରାୟଣ ଉପାସନା :—

ବହୁପ୍ରାଚୀନ ଯୁଗରୁ ଭାରତରେ ଲକ୍ଷ୍ମୀନାରାୟଣ ଉପାସନା ପ୍ରଚଳିତ । ନାରାୟଣ ଶବ୍ଦର ଅର୍ଥ ହେଉଛି, ଜଳରେ ବା ସାଗରରେ ଶୟନ କରିଥିବା ବିଷ୍ଣୁ (୧୮) । ଏଥିରୁ

---

୧୫ । ହାତୀଗୁମ୍ଫା ଶିଳାଲେଖ—୧୭—Vide— J. B. O. R. S. —Vol-iii December 1917-P, 146.

୧୬ । Cult of Jagannath—K. C. Mishra—pp. 2. (Here ofter C.J.)

୧୭ । C. J.—pp. 2.

୧୮ । ବିଷ୍ଣୁପୁରାଣ—୧।୪।୬—

ଆପୋ ନାରା ଇତି ପ୍ରୋକ୍ତା ଆପୋବୈ ନରସୂନବଃ ।
ଅୟନଂ ତସ୍ୟ ତାଃ ପୂର୍ବଂ ତେନ ନାରାୟଣଃ ସ୍ମୃତଃ ।।

(ନାର+ଅୟନ = ନାରାୟଣ)

ଅନନ୍ତଶାୟୀ ବିଷ୍ଣୁଙ୍କ ଚିତ୍ର ପ୍ରଚଳିତ ହେଉଛି । କେତେବେଳେ ସେ ଅନନ୍ତଶାୟୀ ଭାବରେ ଉପାସିତ ହୁଅନ୍ତି ତ କେତେବେଳେ ଲକ୍ଷ୍ମୀନାରାୟଣ ଭାବରେ ଦର୍ଶିତ ହୁଅନ୍ତି । ଅନନ୍ତଶାୟୀ ଅବସ୍ଥାରେ ତାଙ୍କ ପାଦ ନିକଟରେ ବସିଥାନ୍ତି ଲକ୍ଷ୍ମୀ । ସେହିପରି ଏକ ବିଷ୍ଣୁ ମୂର୍ତ୍ତିଙ୍କ ସହିତ ଅନନ୍ତଶୟନାବସ୍ଥାରେ ପାଦ ନିକଟରେ ଥାଇ ଲକ୍ଷ୍ମୀ ପୂଜିତା ହୁଅନ୍ତି । କିନ୍ତୁ ବସିଥିବା ଲକ୍ଷ୍ମୀନାରାୟଣ ମୂର୍ତ୍ତି ଦ୍ୱୟରେ ଲକ୍ଷ୍ମୀ ଓ ନାରାୟଣଙ୍କର ଆସନ ସମାନ ଥାଏ । ଅନନ୍ତଶାୟୀ ମୂର୍ତ୍ତିରେ ନାରାୟଣ ମୁଖ୍ୟ ଓ ଲକ୍ଷ୍ମୀ ଗୌଣ । କିନ୍ତୁ ଲକ୍ଷ୍ମୀ-ନାରାୟଣ ମୂର୍ତ୍ତିର ଉପାସନାରେ ଉଭୟଙ୍କର ଆସନ ଏକ ହୋଇଥିବାରୁ ଉଭୟ ସମାନ । ରାଜସ୍ଥାନର ଚିତୋରଗଡ଼ ଜିଲ୍ଲାର ଘୋସୁଣ୍ଡି ନାମକ ଗ୍ରାମରୁ ପ୍ରାପ୍ତ ଅଭିଲେଖରୁ (୧୯) ତଥା ଖ୍ରୀ: ପୂ: ୨ୟ ଶତାବ୍ଦୀର ରାଜା ଅଗ୍ନିମିତ୍ରଙ୍କର ଏକ ମୁଦ୍ରା Coinରୁ (୨୦) ପ୍ରମାଣିତ ହୋଇଛି ଯେ, ସେତେବେଳକୁ ଭାରତରେ ନାରାୟଣଙ୍କର ବା ବିଷ୍ଣୁଙ୍କର ପୂଜା ପ୍ରଚଳିତ ଥିଲା । ପୂର୍ବରୁ ଆଲୋଚିତ ହୋଇଛି ଯେ, ବିଷ୍ଣୁଙ୍କର ଉପାସନା ମହାଭାରତ ଯୁଗରୁ ଆରମ୍ଭ ହୋଇଛି; ଏଥିପାଇଁ ଅନେକ ଗ୍ରନ୍ଥ ପ୍ରମାଣ ରହିଛି । ଲକ୍ଷ୍ମୀଙ୍କର ଉପାସନା ମଧ୍ୟ ଅନେକ ପ୍ରାଚୀନ । ଲକ୍ଷ୍ମୀନାରାୟଣଙ୍କ ମିଳିତ ପୂଜା ହେବା ପୂର୍ବରୁ ସ୍ୱାଧୀନ ଭାବରେ ବିଷ୍ଣୁ ତଥା ବାସୁଦେବ ପ୍ରଭୃତିଙ୍କର ଉପାସନା ଚାଲିଥିଲା । ଲକ୍ଷ୍ମୀ ମଧ୍ୟ ସ୍ୱତନ୍ତ୍ର ଭାବରେ ପୂଜିତା ହେଉଥିଲେ । ପ୍ରତ୍ନତାତ୍ତ୍ୱିକ ଆଲୋଚନାରୁ ଜଣାଯାଏ, ଯେ ଲକ୍ଷ୍ମୀ-ନାରାୟଣଙ୍କ ମିଳିତ ଉପାସନା ଠାରୁ ଗଜଲକ୍ଷ୍ମୀ ପୂଜା ଆହୁରି ପ୍ରାଚୀନତର । ବରହୁତ୍ ଠାରୁ ଆବିଷ୍କୃତ ଗୋଟିଏ ଗଜଲକ୍ଷ୍ମୀମୂର୍ତ୍ତି ଏହାର ପ୍ରମାଣ ଦେଉଥାଏ (୨୧) । ଗୁପ୍ତରାଜତ୍ୱ କାଳରେ (୨୨) ରଚିତ ବିଷ୍ଣୁଧର୍ମୋତ୍ତର ପୁରାଣରୁ ଜଣାଯାଏ ଯେ, ସେତେବେଳେ ମଧ୍ୟ ଲକ୍ଷ୍ମୀଙ୍କର ସ୍ୱତନ୍ତ୍ର ମୂର୍ତ୍ତି ପୂଜିତ ହେଉଥିଲେ (୨୩) । ଅବଶ୍ୟ ଲକ୍ଷ୍ମୀନାରାୟଣଙ୍କର ମିଳିତ

---

୧୯ । Epigraphica Indica-vol.-xvi, pp. 25 ff.
"ସଙ୍କର୍ଷଣ ବାସୁଦେବାଭ୍ୟାଂ × × ପ୍ରାକାରେ ନାରାୟଣବାଟିକା ।"
Select Inscription-Cal-1942-pp. 92—D.C. Sircar.

୨୦ । Allan, J.—A catalogue of the Indian coins in the British Museum—London—1936. Pl.-XXIX. 6.

୨୧ । J. N. Banerjea—Develpment of Hindu iconography 2ndEd—Cal; 1956-pp. 374-375

୨୨ । I. v PP-39

୨୩ । ବିଷ୍ଣୁଧର୍ମୋତ୍ତରମ୍-୩/୮୨

ଉପାସନା ମଧ୍ୟ ସେହି ସମସ୍ତବେଳକୁ ଜୋର୍‌ସୋର୍‌ରେ ଗ୍ଭଲିଥିଲା । ଅତଏବ ତାତ୍କାଳିକ ସମାଜରେ ଏ ଉଭୟ ପ୍ରକାରର ପୂଜାବିଧି ଥିଲା ।

ପାଞ୍ଚରାତ୍ର ସୂତ୍ରରୁ ଜଣାଯାଏ ଯେ ଗରୁଡ଼ବାହନ ସହିତ ଲକ୍ଷ୍ମୀନାରାୟଣଙ୍କର ଧ୍ୟାନ୍ନାୟମାନ ହୋଇଥିବା ମୂର୍ତ୍ତି ପୂଜିତ ହେଉଥିଲା (୧୪) । ପ୍ରାଚୀନ ବିଶ୍ୱକର୍ମା ଶାସ୍ତ୍ରରେ ମଧ୍ୟ ଲକ୍ଷ୍ମୀନାରାୟଣଙ୍କର ଯୁଗଳମୂର୍ତ୍ତି ନିର୍ମାଣର ନିୟମ ବର୍ଣ୍ଣନା କରାଯାଇଛି । ଚତୁର୍ବର୍ଗ ଚିନ୍ତାମଣିରେ ହେମାଦ୍ରି ଏହି ତଥ୍ୟ (୧୫) ପରିବେଷଣ କରିଛନ୍ତି । ଏହି ପ୍ରକାରର ଏକ ଲକ୍ଷ୍ମୀନାରାୟଣ ମୂର୍ତ୍ତି ଏହ୍ଲାବାଦ ନିକଟରେ ମାଣିକପୁରଠାରୁ ମିଳିଛି ଓ ତାହା ଏହ୍ଲାବାଦ ସଂଗ୍ରହାଳୟରେ ସଂରକ୍ଷିତ ହୋଇଛି (୧୬) । ଏହି ମୂର୍ତ୍ତିର ନାରାୟଣଙ୍କ ପାର୍ଶ୍ୱରେ ଚକ୍ରପୁରୁଷ ଅଛନ୍ତି ଓ ଲକ୍ଷ୍ମୀଙ୍କ ପାର୍ଶ୍ୱରେ ଚାମରଧାରିଣୀ ରହିଛନ୍ତି । ଏହି ଚକ୍ରପୁରୁଷ ହୁଏତ ପୁରୀର ଜଗନ୍ନାଥଙ୍କ ପାର୍ଶ୍ୱରେ ଉପାସିତ ସୁଦର୍ଶନଙ୍କ ସହିତ ତୁଳନୀୟ ହୋଇପାରନ୍ତି । ଅର୍ଥାତ୍ ନାରାୟଣଙ୍କ ପାର୍ଶ୍ୱଦେଶରେ ଚକ୍ରପୁରୁଷ ପୂଜା ପାଇବାର ବିଧି ବିଷ୍ଣୁ-ଜଗନ୍ନାଥଙ୍କର ପାର୍ଶ୍ୱରେ ସୁଦର୍ଶନ (ଚକ୍ର)ଙ୍କର ପୂଜାକ୍ରମରେ ଅନୁସୃତ ହେଉଛି ବୋଲି କହିଲେ ଅଯୌକ୍ତିକ ହେବନାହିଁ । ସୁଦର୍ଶନଙ୍କର ସ୍ଥାପନା ପଛରେ ନିଶ୍ଚୟ ଏହି ପାରମ୍ପରିକ ଯୁକ୍ତି ରହିଛି । (ଅବଶ୍ୟ, ତାଙ୍କର ସ୍ତମ୍ଭାକାରଣ ଆଉ ଏକ ସ୍ୱତନ୍ତ୍ର ପ୍ରଶ୍ନ) ।

ଖଜୁରାହୋଠାରେ ପାର୍ଶ୍ୱନାଥ ଓ ଲକ୍ଷ୍ମଣ ମନ୍ଦିରରେ ଗୋଟିଏ ଗୋଟିଏ ଲକ୍ଷ୍ମୀ-ନାରାୟଣ ମୂର୍ତ୍ତି ରହିଅଛି । ଏଥିରେ ଲକ୍ଷ୍ମୀଙ୍କୁ ବାମହାତରେ ନାରାୟଣ ଆଲିଙ୍ଗନ କରୁ-ଥିବାର ଚିତ୍ର ଉପସ୍ଥାପନ କରାଯାଇଛି (୧୭) । ସ୍କନ୍ଦପୁରାଣରେ ନୀଳମାଧବଙ୍କର ଯେଉଁ ବର୍ଣ୍ଣନା ରହିଛି, ସେ ମଧ୍ୟ ଲକ୍ଷ୍ମୀଙ୍କୁ ତାଙ୍କର ବାମହସ୍ତରେ ଆଲିଙ୍ଗନ କରୁଥିବାର ଉଲ୍ଲେଖ ଅଛି (୧୮) । ଏହି ନୀଳମାଧବ ମୂର୍ତ୍ତିଟି ହେଉଛି ଜଗନ୍ନାଥଙ୍କର ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ରରେ ଉପାସିତ ତଥା ଶବରଦ୍ୱାରା ସଂରକ୍ଷିତ ପ୍ରସ୍ତର ଖୋଦିତ ଏକ

---

୧୪ । ପାଞ୍ଚରାତ୍ରସୂତ୍ର-Gaekwar Oriental Series, Liv, 1931.
ସୂତ୍ର—୧୯, ୩୭,

୧୫ । ହେମାଦ୍ରି—ଚତୁର୍ବର୍ଗ ଚିନ୍ତାମଣି—କଲିକତା—୧୮୭୯—ବ୍ରତଖଣ୍ଡ—
ପ୍ରଥମ ଭାଗ —ପୃ-୧୧୫-୧୧୪ ।

୧୬ । I. V—pp. 32.

୧୭ । I. V.—pp. 32.

୧୮ । ସ୍କନ୍ଦ : ପୁ: ମା:—୫/୯—
'ବାମପାର୍ଶ୍ୱେ ସ୍ଥିତାଂ ଲକ୍ଷ୍ମୀଂ ବାମେନାଲିଙ୍ଗ୍ୟ ବାହୁନା ।

ସୁନ୍ଦର ଲକ୍ଷ୍ମୀ-ନାରାୟଣ ମୂର୍ତ୍ତି । ଏକ କିମ୍ବଦନ୍ତୀ ହେଲେ ମଧ୍ୟ ଲୋକମୁଖରେ ପରମ୍ପରାକ୍ରମେ ଲୋକମୁଖରେ ପ୍ରଚଳିତ ହୋଇ ରହିଥିବାରୁ, ଏହାର ସଂକ୍ଷିପ୍ତ ସାରବତ୍ତା ଯେ ନାହିଁ, ଏହା ଅସ୍ୱୀକାର୍ଯ୍ୟ ନୁହେଁ । ପ୍ରାଚୀନ ଯୁଗରେ ଲକ୍ଷ୍ମୀନାରାୟଣ ପୂଜା ଭାରତରେ ଚାଲୁଥିଲା । ତେଣୁ ଏପରି ଏକ ସୁନ୍ଦର ଲକ୍ଷ୍ମୀନାରାୟଣ ମୂର୍ତ୍ତି (ନୀଳମାଧବ) ଓଡ଼ିଶାରେ ଯେ ଥିବ ଓ ଶବର ହାତରେ ତାହା ପଡ଼ିଯାଇଥିବ, ଏଥିରେ ବିଚିତ୍ରତା ବା କ'ଣ ଥାଇପାରେ ? ସେହି କିମ୍ବଦନ୍ତୀରୁ ଜଣାଯାଏ, "ପୂର୍ବ ଅଞ୍ଚଳ ଘୋର ଜଙ୍ଗଲରେ ଆବୃତ୍ତ ଥିଲା" । ଅତଏବ ଏହା ନିଶ୍ଚିତ ଯେ, ପ୍ରଥମେ ଏଠାରେ ଜନପଦ ଥିଲା । ଲକ୍ଷ୍ମୀନାରାୟଣ (ନୀଳମାଧବ) ଏଠାରେ ପୂଜିତ ହେଉଥିଲେ । କାଳକ୍ରମେ ସେ ଜନପଦ କୌଣସି କାରଣରୁ ଧ୍ୱଂସ ହୋଇ ସେ ସ୍ଥାନ ଜଙ୍ଗଲରେ ପରିଣତ ହୋଇଛି ଓ ଶବରମାନେ ସେଠାରେ ବାସ କରିଛନ୍ତି । ଏବେ ମଧ୍ୟ ସେହି ଅଞ୍ଚଳରେ ବୀରନରସିଂହପୁର ଆଦି ପଞ୍ଚକୋଶୀ ଗ୍ରାମ-ମାନଙ୍କରେ ଶଅର (ଶବର)ମାନେ ଦେଖାଯାଆନ୍ତି । ସେ ଯାହାହେଉ, ଯେତେବେଳେ ଶବରମାନେ ଏ ଅଞ୍ଚଳରେ ବନଭୂମି ମଧ୍ୟରେ ଭ୍ରମଣ କରୁଥିଲେ, ହୁଏତ ସେମାନଙ୍କ ମଧ୍ୟରୁ ଜଣେ, ଏହି ଲକ୍ଷ୍ମୀନାରାୟଣ (ନୀଳମାଧବ) ମୂର୍ତ୍ତିଟିକୁ ଦେଖି ଲୁଚାଇ ପୂଜାକଲେ । ଏହି ମୂର୍ତ୍ତିଟି ଲକ୍ଷ୍ମୀନାରାୟଣ ମୂର୍ତ୍ତି ହେଲେ ହେଁ; ଏଥିରେ ଲକ୍ଷ୍ମୀନାରାୟଣଙ୍କର ଦଣ୍ଡାୟମାନ ମୂର୍ତ୍ତି ଖୋଦିତ ନହୋଇ ଆସୀନ ମୂର୍ତ୍ତି ଖୋଦିତ ହୋଇଥିଲା । ବିଷ୍ଣୁ (ମାଧବ) ଶଙ୍ଖଚକ୍ର ଗଦା ଧାରଣ କରିଥିଲେ । କିନ୍ତୁ ପଦ୍ମ ଧାରଣ ନକରି ସେହି ହସ୍ତରେ ଲକ୍ଷ୍ମୀଙ୍କୁ ଆଲିଙ୍ଗନ କରିଥିଲେ (୨୯) । ଲକ୍ଷ୍ମୀ ନାରାୟଣଙ୍କର ଏପରି ଆସୀନ ମୂର୍ତ୍ତିମାନ ବହୁଦିନରୁ ଭାରତରେ ପୂଜିତ ହେଉଛନ୍ତି । ସ୍କନ୍ଦପୁରାଣର ଉତ୍କଳଖଣ୍ଡ ଅଷ୍ଟମ ଶତାବ୍ଦୀରେ ରଚନା କରାଗଲାବେଳେ ମଧ୍ୟ ସେପରି ମୂର୍ତ୍ତି ଭାରତର ବିଭିନ୍ନ ପ୍ରାନ୍ତରେ ପୂଜିତ ହେଉଥିଲେ । ଓଡ଼ିଶାର ହୁଏତ ସେହି ମୂର୍ତ୍ତି ସେତେବେଳକୁ ଅଦୃଶ୍ୟ ହେବାପରେ ତତ୍ ସ୍ଥାନରେ ଜଗନ୍ନାଥଙ୍କର ଚତୁର୍ଦ୍ଧାମୂର୍ତ୍ତି ପୂଜିତ ହେଉଥିଲେ । ଅଷ୍ଟମ ଶତାବ୍ଦୀରେ ନିର୍ମିତ ଓ ପିଣ୍ଡିର ନାମକ ସ୍ଥାନରୁ ଉପଲବ୍ଧ ଏକ ଆସୀନ-ଲକ୍ଷ୍ମୀନାରାୟଣ ମୂର୍ତ୍ତି ଜାମନଗର ମ୍ୟୁଜିୟମ୍‌ରେ ସଂରକ୍ଷିତ ହୋଇଛି । ଏ ମୂର୍ତ୍ତିଟି ଦେଖିବାକୁ ନୀଳମାଧବ ମୂର୍ତ୍ତି ଭଳି (୩୦) । କାମ୍ବେ

---

୨୯ । ସ୍କନ୍ଦ : ପୁ: ମା:—୫/୮-୯—

ଶଙ୍ଖଚକ୍ର ଗଦା ପାଣିଂ ଦିବ୍ୟାଳଂକାର ଭୂଷିତମ୍ ।
ରତ୍ନ ପାଦୁକୟୋଃ ପୃଷ୍ଠେ ଵିନ୍ୟସ୍ତଚରଣାମ୍ବୁଜମ୍ ॥
ବ୍ୟାକାଶେ ପୁଣ୍ଡରୀକାକ୍ଷଂ ପ୍ରସନ୍ନବଦନଂ ବିଭୁମ୍ ।
ବାମପାର୍ଶ୍ୱେ ସ୍ଥିତାଂ ଲକ୍ଷ୍ମୀଂ ବାମେନାଲିଙ୍ଗ୍ୟ ବାହୁନା ।
ନାଗବଲ୍ଲୀଦଳଂ ବକ୍ତ୍ରମାଦଦାନଂ ଶ୍ରିୟାହ୍ୱୟମ୍ ।

୩୦ । Journal of the oriental Institute—(J. O. I.)—

ଢଳଃରେ ଜମ୍ବାଦ୍ୱନ୍ୟ ନଗରର ଏକ କ୍ଷୁଦ୍ର ମନ୍ଦିରରେ ଏକ ଅନୁରୂପ ଦଶମ ଶତକରେ ନିର୍ମିତ ଲକ୍ଷ୍ମୀନାରାୟଣ ମୂର୍ତ୍ତି ଉପାସିତ ହେଉଛନ୍ତି । ଏହା ଏକରକମର ନୀଳମଣି (ନୀଳପଥର) (୩୧) ନିର୍ମିତ । ପୁରୁଷୋତ୍ତମ କ୍ଷେତ୍ରରେ ଅଚିତ ନୀଳମାଧବ ମୂର୍ତ୍ତିଟି ମଧ୍ୟ ନୀଳକାନ୍ତମଣିରେ ନିର୍ମିତ ହୋଇଥିବାର ବର୍ଣ୍ଣନା ସ୍କନ୍ଦପୁରାଣରୁ ଜଣାଯାଏ । ଏହା ନୀଳମଣି ନିର୍ମିତ ବୋଲି ଉଲ୍ଲେଖ ଥିଲେ ହେଁ, ଏହି କ୍ଷେତ୍ରରେ କ୍ଲୋରାଇଟ୍ ପଥରରେ ନିର୍ମିତ ବୋଲି ବିଶ୍ୱାସ କରିବା ଅଧିକ ବାସ୍ତବ ହେବ ।

ଏସିଆଟିକ୍ ସୋସାଇଟି ମନ୍ଦିରରେ ଗୋଟିଏ ଲକ୍ଷ୍ମୀନାରାୟଣ ମୂର୍ତ୍ତି ଅଛି (୩୨) । ଏ ମୂର୍ତ୍ତିଟିରେ ପୂର୍ବୋକ୍ତ ପ୍ରାଚୀନ ମୂର୍ତ୍ତିର ସମସ୍ତ ଲକ୍ଷଣ ପରିସ୍ଫୁଟ ଓ ଏଥିରେ ଆଉ ଅଧିକ କିଛି ନୂତନତ୍ୱ ନାହିଁ । ନବମ ଶତକରେ ନିର୍ମିତ ଏକ ପ୍ରାଚୀନ ଲକ୍ଷ୍ମୀନାରାୟଣ ମୂର୍ତ୍ତି ଶ୍ରୀନଗର ସଂଗ୍ରହାଳୟରେ ରହିଅଛି । ଏଥିରେ ଲକ୍ଷ୍ମୀ ଓ ନାରାୟଣ ଗରୁଡ଼ ଉପରେ ବସି ଉଡ଼ିଯାଉଥିବା ଅବସ୍ଥାରେ ରୂପାୟିତ ହୋଇଛନ୍ତି । ବୃଟିଶ୍ ମ୍ୟୁଜିୟମ୍‌ରେ ଏକ ଲକ୍ଷ୍ମୀନାରାୟଣ ମୂର୍ତ୍ତି ରହିଛି ଓ ଏଥିରେ ନାରାୟଣ ଲକ୍ଷ୍ମୀଙ୍କୁ (ନମ୍ର) ବାମହସ୍ତରେ ଆଲିଙ୍ଗନ କରନ୍ତି । ଏହି ମୂର୍ତ୍ତିଟି ହେଉଛି ଦ୍ୱାଦଶଶତାବ୍ଦୀରେ ନିର୍ମିତ । ଏକାଦଶ ଶତାବ୍ଦୀରେ ନିର୍ମିତ ଅନ୍ୟ ଏକ ଏହିପରି ମୂର୍ତ୍ତି ଲକ୍ଷ୍ନୌ ମ୍ୟୁଜିୟମ୍‌ରେ ସଂରକ୍ଷିତ ହୋଇଛି । ଏହିପରି ଦେଖିବାକୁ ମିଳେ ଭାରତର ବିଭିନ୍ନ ପ୍ରାନ୍ତରେ ଅନେକ ଲକ୍ଷ୍ମୀନାରାୟଣ ମୂର୍ତ୍ତି ବିଭିନ୍ନ ସମୟରେ ନିର୍ମିତ ହୋଇଛନ୍ତି ।

ପ୍ରଥମେ ଗଜଲକ୍ଷ୍ମୀ ପୂଜା ଓ ନାରାୟଣ, ବାସୁଦେବଙ୍କ ପୂଜା ଚାଲୁ ଚାଲୁ ତାହା ପରେ ଲକ୍ଷ୍ମୀ ନାରାୟଣଙ୍କର ମିଳିତ ବିଗ୍ରହ ପୂଜିତ ହେଲେ । ସେତେବେଳେ ଲକ୍ଷ୍ମୀଙ୍କୁ ଛାଡ଼ି ଆଉ ନାରାୟଣ ରହିପାରିଲେ ନାହିଁ । ପୁଣି ଏପରି ହେଲା ଯେ, ଶକ୍ତିତତ୍ତ୍ୱ ଭାରତରେ ଲୋକପ୍ରିୟତା ବିସ୍ତାର କଲା । ଶିବଶକ୍ତି ମିଳିତ ଭାବରେ ପୂଜିତ ହେଉ ହେଉ ଶିବ ନିଜେ ଶକ୍ତିଙ୍କ ଦେହରେ ମିଶିଯାଇ ଏକ ମୂର୍ତ୍ତି ବା ଅର୍ଦ୍ଧନାରୀଶ୍ୱର ହୋଇଗଲେ । ବିଷ୍ଣୁ ମଧ୍ୟ ଲକ୍ଷ୍ମୀଙ୍କ ସହିତ ସମ୍ମିଳିତ ହୋଇ କେତେକ ଯାଗାରେ ଅର୍ଦ୍ଧ ଲକ୍ଷ୍ମୀନାରାୟଣ ରୂପରେ ପୂଜା ପାଇଲେ । ଶିଳ୍ପରତ୍ନ ନାମକ ଗ୍ରନ୍ଥରେ ବିଷ୍ଣୁଙ୍କର ଏହି ମୂର୍ତ୍ତିର ନିର୍ମାଣ ପଦ୍ଧତି ସ୍ପଷ୍ଟତଃ

Vol. xiv. March, 1965; pp. 431. Fig. XII.
(R. Subramanyam.-Pindara and its Antiquities)

୩୧ । I. V.—pp. 33. "a blue schist image belonging to the 10th century."

୩୨ । I. V.—pp. 33.—A. S. I. A. R. —1908—1909—pp. 106—III.—R. D. Bhandarkar—The temples of Orissa.

ବନାଇ ଦିଆଗଲା (୬୩)। ଏହା ହେଲା ବିଷ୍ଣୁଙ୍କର ପରବର୍ତ୍ତୀ (Mediaeval period)ର ରୂପ। ମାତ୍ର ସେତେବେଳକୁ ପୁରୁଷୋତ୍ତମ ଜଗନ୍ନାଥ ପ୍ରତିଷ୍ଠିତ ହୋଇସାରିଥିଲେ। ଏଣୁ ପରବର୍ତ୍ତୀ ଲକ୍ଷ୍ମୀନାରାୟଣଙ୍କର ଏହି ରୂପକଳ୍ପ ସହିତ ଜଗନ୍ନାଥଙ୍କର କିଛି ସମ୍ପର୍କ ନାହିଁ। ଏହା ହେଉଛି ତଦ୍ରୂପ ବିକାଶର ଗୋଟିଏ ଦିଗମାତ୍ର। ଲକ୍ଷ୍ମୀନାରାୟଣ ପୂଜାର ଅନ୍ୟ ଗୋଟିଏ ଦିଗର ଚିନ୍ତାଧାରା ଆସି ଜଗନ୍ନାଥଙ୍କ ଉପାସନାରେ ମିଶିଛି। ଏଥିରେ ଖାଲି ଲକ୍ଷ୍ମୀନାରାୟଣଙ୍କର ପୂଜା ହୋଇନାହିଁ। ପ୍ରକୃତରେ ମହାବିଷ୍ଣୁଙ୍କ ସହିତ ମହାଲକ୍ଷ୍ମୀଙ୍କର ଉପାସନା ପୁରୁଷୋତ୍ତମ କ୍ଷେତ୍ରରେ କରାଯାଉଛି। ସାରାଭାରତରେ ବିଷ୍ଣୁ ଯେତେ ରୂପରେ ପୂଜିତ ହୁଅନ୍ତି, ସେ ସବୁ ଆସି ସମ୍ମିଳିତ ହୋଇଛି ମହାବିଷ୍ଣୁ ଭାବନାରେ ଓ ପରଶେଷରେ ତାହା ରୂପାୟିତ ହୋଇଛି ଦାରୁବ୍ରହ୍ମ-ପୁରୁଷୋତ୍ତମ-ଜଗନ୍ନାଥ ମୂର୍ତ୍ତିରେ। ବିଷ୍ଣୁ ସାଧାରଣତଃ ଚବିଶି ଗୋଟି ଚିନ୍ତାଧାରାରେ ବା ଚବିଶିଗୋଟି ରୂପରେ ଉପାସିତ ହୁଅନ୍ତି। ପଦ୍ମପୁରାଣ, ରୂପମଣ୍ଡନମ୍, ପରମେଶ୍ୱର ସଂହିତା (ବିଶ୍ୱାଖଣ୍ଡ) ଅହିର୍ବୁଧ୍ନ୍ୟ ସଂହିତା ଆଦି ଗ୍ରନ୍ଥମାନ ବିଷ୍ଣୁ ସେହିସବୁ ରୂପ ସମ୍ପର୍କରେ ବିସ୍ତୃତ ଆଲୋକପାତ କରିଛନ୍ତି। ବିଷ୍ଣୁଙ୍କର ସେହିସବୁ ରୂପତତ୍ତ୍ୱକ ହେଉଛନ୍ତି:—କେଶବ, ନାରାୟଣ, ମାଧବ, ଗୋବିନ୍ଦ, ବିଷ୍ଣୁ, ମଧୁସୂଦନ, ତ୍ରିବିକ୍ରମ, ବାମନ, ଶ୍ରୀଧର, ହୃଷିକେଶ, ପଦ୍ମନାଭ, ଦାମୋଦର, ସଙ୍କର୍ଷଣ, ବାସୁଦେବ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ, ପୁରୁଷୋତ୍ତମ, ଅଧୋକ୍ଷଜ, ନୃସିଂହ, ଅଚ୍ୟୁତ, ଜନାର୍ଦ୍ଦନ, ଉପେନ୍ଦ୍ର, ହରି ଓ ଶ୍ରୀକୃଷ୍ଣ। ଏହି ସମସ୍ତ ରୂପର ମୂଳ ହେଉଛନ୍ତି ମହାବିଷ୍ଣୁ। ତାଙ୍କୁ ପରଂବ୍ରହ୍ମସ୍ୱରୂପ ବୋଲି କୁହାଯାଇଛି। ପୂର୍ବରୁ ମହାବିଷ୍ଣୁ ସମ୍ପର୍କରେ ଦାର୍ଶନିକ ବିଚାର କରାଯାଇଛି। ତହିଁରୁ ବୁଝାପଡ଼ୁଛି ଯେ, ପୁରୁଷୋତ୍ତମ ଜଗନ୍ନାଥ ହେଉଛନ୍ତି ସେହି ଦାର୍ଶନିକ ଚିନ୍ତାଧାରାର ଏକ ଅଖଣ୍ଡ ସ୍ୱୟଂସମ୍ପୂର୍ଣ୍ଣ ବିଗ୍ରହ। ବିଷ୍ଣୁଦେବତା ହୋଇଥିବାରୁ ତାଙ୍କୁ ବିଷ୍ଣୁଙ୍କର ଅନ୍ୟାନ୍ୟ ନାମରେ ମଧ୍ୟ ସ୍ମରଣ କରାଯାଏ। କିନ୍ତୁ ଏହା, ଏଡ଼ାଇ ଦେବାର କୁହେଁ ଯେ, ଲକ୍ଷ୍ମୀନାରାୟଣ ପୂଜାର କ୍ରମପରିଣତିରେ ଜଗନ୍ନାଥଙ୍କର ଏହି ରୂପାୟନର କିଛି ସମ୍ପର୍କ ନାହିଁ। ଅନନ୍ତଶାୟୀ (ଲକ୍ଷ୍ମୀନାରାୟଣ)ଙ୍କର ଲକ୍ଷ୍ମୀନାରାୟଣ ପୂଜାର ସହିତ ଯେପରି ସାଂସ୍କୃତିକ

୬୩। ଶିଲ୍ପରତ୍ନମ୍—Trivendrum Sanskrit Series-1929-23-76.

"ହସ୍ତୈ ବିଭ୍ରତ୍ ସରସିଜଗଦାଶଙ୍ଖଚକ୍ରାଣି ବିଦ୍ୟାଂ
ପଦ୍ମାଦର୍ଶୌ କନକ କଳଶଂ ମେଘବଦ୍ଦ୍ୟୋଦ୍ ବଲାସମ୍ ॥
ବାମୋତ୍ସଂଗସ୍ତନମବିରଳାକଳ୍ପମା ଶ୍ଳେଷଲେଖ—
ଦେକାକ୍ଷାନ୍ତଂ ବପୁରବତୁ ବଃ ପୁଣ୍ଡରୀକାକ୍ଷ ଲକ୍ଷ୍ମ୍ୟୋଃ ॥
(ଏଥିରେ ଭଗବାନ ନାରାୟଣଙ୍କର ଅଷ୍ଟଭୁଜର ଉପସ୍ଥାପନା କରାଯାଇଛି।)
(ସେ ଧରିଛନ୍ତି—ଶଙ୍ଖ, ଚକ୍ର, ଗଦା, ପଦ୍ମ, ପୁସ୍ତକ, ଦର୍ପଣ କଳସ)

ତଥା ଐତିହାସିକ ସମ୍ପର୍କ ରହିଛି, ସେହିପରି ଏ ଉଭୟ ପ୍ରକାର ଜଗନ୍ନାଥ ଉପାସନା ସହିତ ସମ୍ପର୍କ ଅଛି । ଜଗନ୍ନାଥଙ୍କୁ ସେଥିପାଇଁ ବିଷ୍ଣୁ ବୋଲି ଆରାଧନା କରାଯାଉଥିବା ବେଳେ ସୁଭଦ୍ରାଙ୍କୁ ଲକ୍ଷ୍ମୀ ବୋଲି ଆରାଧନା କରାଯାଉଛି । କାରଣ, ପ୍ରଥମେ ସୁଭଦ୍ରାଙ୍କ ସ୍ଥାନରେ ମହାଲକ୍ଷ୍ମୀ ଥିଲେ । ପରେ ମହାଲକ୍ଷ୍ମୀଙ୍କୁ ଅନ୍ୟତ୍ର ନିଆଯାଇ ତତ୍ ସ୍ଥାନରେ ସୁଭଦ୍ରାଙ୍କୁ ଅବସ୍ଥାପନା କରାଯାଇଛି । ଏ ବିଷୟରେ ପୂର୍ବ ଅଧ୍ୟାୟରେ ତଥା ଏହି ଲେଖକର ଅନ୍ୟ ପୁସ୍ତକ 'The Land of Vishnu'ରେ ବିସ୍ତୃତ ଆଲୋଚନା କରାଯାଇଥିବାରୁ ଏଠାରେ ପୁଣି ଚର୍ବିତ ଚର୍ବଣ ଅନାବଶ୍ୟକ ।

**ଶେଷ ନାରାୟଣ ଉପାସନା:—**

ଶେଷ ନାରାୟଣ ପୂଜା ବହୁଳଭାବରେ ଭାରତରେ ପ୍ରତିଷ୍ଠିତ ଥିଲା ବୋଲି ଅନେକ ପ୍ରତ୍ନତାତ୍ତ୍ୱିକ ପ୍ରମାଣ ଗବେଷକମାନଙ୍କର ହସ୍ତଗତ ହୋଇଛି । ଜଗନ୍ନାଥ (ନାରାୟଣ) ଓ ବଳଭଦ୍ର (ଶେଷ) ଉପାସନା ସହିତ ଏ ପ୍ରକାର ପ୍ରତ୍ୟକ୍ଷ ସମ୍ପର୍କ ନଥିଲେ ମଧ୍ୟ ପରୋକ୍ଷ ସମ୍ପର୍କ ଯେ ନିଶ୍ଚୟ ରହିଛି, ଏଥିରେ ଦ୍ୱିମତ ନାହିଁ । ଶେଷ ନାରାୟଣ ପୂଜା ଓ ଅନନ୍ତ ବାସୁଦେବ ପୂଜା ଆପାତତଃ ଭିନ୍ନ ହେଲେ ମଧ୍ୟ ସୂକ୍ଷ୍ମତଃ ଏକ ଓ ଅଭିନ୍ନ ।

ପୂର୍ବରୁ ନାରାୟଣ ଶବ୍ଦର ବ୍ୟୁତ୍ପତ୍ତି ଆଲୋଚନା ହୋଇଛି ଓ ଏଥିରେ ସାବ୍ୟସ୍ତ କରାଯାଇଛି ଯେ, ନାରାୟଣ ହେଉଛନ୍ତି ଜଳରେ ବା କ୍ଷୀରସାଗରରେ ଶୟନ କରିଥିବା ମହାବିଷ୍ଣୁ ବା ନିଦ୍ରାବିଷ୍ଣୁ (୩୪) । ପ୍ରଳୟକାଳରେ ଯୋଗନିଦ୍ରାରେ ସେ ଶୋଇ ରହି-ଥାଆନ୍ତି । ତାଙ୍କର ନାଭିକମଳରୁ ଜନ୍ମ ନିଅନ୍ତି ବ୍ରହ୍ମା । ପୁଣି ଆଉଥରେ ସୃଷ୍ଟିର ସର୍ଜନା କରାଯାଏ ସେହି ସ୍ରଷ୍ଟା ବ୍ରହ୍ମାଙ୍କ ଦ୍ୱାରା । ଯୋଗନିଦ୍ରାରେ ଥିବାବେଳେ ବିଷ୍ଣୁ ଶେଷ ନାଗ ଉପରେ ଶୋଇଥାନ୍ତି ଓ ମହାଲକ୍ଷ୍ମୀ ତାଙ୍କର ଚରଣସେବା କରୁଥାନ୍ତି । ମହାଭାରତ ଯୁଗରୁ ଏହି ଚିନ୍ତାଧାରା ପ୍ରତିଷ୍ଠିତ (୩୫) । ମହାଭାରତର ଶାନ୍ତି ପର୍ବରେ ଭଗବାନ ବିଷ୍ଣୁ ଶେଷଶଯ୍ୟାରେ ଶୟନ କରିଥିବାର ଉଲ୍ଲେଖ ଅଛି (୩୬) । ଶେଷନାଗଙ୍କୁ ଅନନ୍ତ ବୋଲି କୁହାଯାଇଛି । ଅନନ୍ତ, ଅର୍ଥାତ୍, ସେ ହେଉଛନ୍ତି ବିଶାଳ ଓ ଅସୀମ । ସେହି ଅସୀମରେ ବିଷ୍ଣୁଙ୍କର ଅବସ୍ଥାନ ତାଙ୍କୁ ବିଶ୍ୱବ୍ୟାପୀ ମହାବିଷ୍ଣୁରେ ତଥା ଆଦ୍ୟମୂଳ ତଥା ଅନାଦି

---

୩୪ । ବିଷ୍ଣୁପୁରାଣ—୪।୬—"ଆପୋ ନାରା ଇତି ପ୍ରୋକ୍ତା ଆପୋ ବୈ ନରସୂନବଃ
ଅୟନଂ ତସ୍ୟ ତାଃ ପୂର୍ବଂ ତେନ ନାରାୟଣଃ ସ୍ମୃତଃ ॥

୩୫ । ମହାଭାରତ—ଆସ୍ତୁ, ୧୯୪।୮-୧୫ । (Bhandarakar, Poona, 1927-64

୩୬ । ମହାଭାରତ—୧୨ଣ, ୪୭, ୪୮

ପରଂବ୍ରହ୍ମରେ ପରିଣତ କରେ । ସେ ହିଁ ସୃଷ୍ଟି, ସ୍ଥିତ, ଲୟର କାରଣ; ଏହା ତାଙ୍କର ନାଭିରୁ ସୃଷ୍ଟି କର୍ତ୍ତା ବ୍ରହ୍ମାଙ୍କର ଆବିର୍ଭାବ ତଥ୍ୟ, ଚତୁଃପାର୍ଶ୍ୱରେ ଜଳାର୍ଣ୍ଣବ ପ୍ରଳୟର ତାଣ୍ଡବ ଲୀଳା ଓ ତାଙ୍କର ସମୟୋପଯୋଗୀ ଅବତାର ଗ୍ରହଣ ଇତ୍ୟାଦିରୁ ପ୍ରମାଣିତ ।

ମହାଭାରତ ସମସ୍ତ ବେଳକୁ ସ୍ୱୟଂ ଶେଷଙ୍କୁ ମଧ୍ୟ ବିଷ୍ଣୁଙ୍କର ଏକ ସ୍ୱରୂପ ବୋଲି କଳ୍ପନା କରାଯାଇଛି (୩୭) । ପ୍ରାଚୀନ ଭାରତୀୟ ଚିନ୍ତାଧାରାରେ ନାଗକୁ ପ୍ରାଣ ଓ ଜୀବ୍ୟ ବୋଲି ଗ୍ରହଣ (୩୮) କରାଯାଉଥିଲା । ଶେଷନାଗ ସେହି ଦୃଷ୍ଟିରୁ ହେଉଛନ୍ତି ଜନୈ ପରମାତ୍ମା ବିଷ୍ଣୁ (୩୯) ମହାଭାରତରେ ବାସୁଦେବ ଶ୍ରୀକୃଷ୍ଣଙ୍କ ଅଗ୍ରଜ ବଳରାମଙ୍କୁ ଶେଷ-ନାଗଙ୍କର ଅବତାର ବୋଲି ସ୍ୱୀକାର କରାଯାଇ ତାଙ୍କୁ ମଧ୍ୟ ଶେଷ ନାରାୟଣ ବା ବିଷ୍ଣୁ ବୋଲି ସ୍ୱୀକାର କରାଗଲା (୪୦) । ବୋଧହୁଏ, ବିଷ୍ଣୁ ପୂଜାର ବିକାଶ ସଙ୍ଗେ ସଙ୍ଗେ ଅନ୍ୟତଗରେ ନାଗ ପୂଜା ମଧ୍ୟ (୪୧) ଲୋକପ୍ରିୟ ହୋଇଥିଲା । ତେଣୁ ଏକ ସମୟରେ ବିଷ୍ଣୁ ପୂଜା ଓ ନାଗପୂଜାକୁ ଯୋଡ଼ି ଏକତ୍ର କରି ଶେଷନାରାୟଣ ଅଥବା ଅନନ୍ତବାସୁଦେବ ପୂଜା ମାଧ୍ୟମରେ ମହାବିଷ୍ଣୁଙ୍କର ଅର୍ଚ୍ଚନା ଚାଲିଲା ।

ମହାଭାରତ ଯୁଗରୁ ଶେଷଶାୟୀ ନାରାୟଣଙ୍କର ଉପାସନା ଚାଲିଥିଲେ ମଧ୍ୟ ସେ ସମୟରେ କୌଣସି ମୂର୍ତ୍ତି ଅଦ୍ୟାବଧି ଆବିଷ୍କୃତ ହୋଇପାରି ନାହିଁ । ଶେଷଶାୟୀ ମୂର୍ତ୍ତିର ମାଧ୍ୟମରେ ପ୍ରଚଳିତ ଲକ୍ଷ୍ମୀନାରାୟଣ ପୂଜା ପରଯୁଗରେ ଲକ୍ଷ୍ମୀନାରାୟଣଙ୍କର ବିଶେଷ (ଶେଷ ବର୍ଜିତ) ଉପାସନାରେ ରୂପ ନେଇଥିଲା । ହେଲେ, ଶେଷନାରାୟଣ (ଅନନ୍ତଶାୟୀ, ଦାକ୍ଷିଣାତ୍ୟରେ ପଦ୍ମନାଭସ୍ୱାମୀ)ଙ୍କର ପୂଜା ମୂଳୋତ୍ପାଟିତ ନ ହୋଇ ପୂର୍ବଭଳି ଭକ୍ତ-ମାନଙ୍କର ବିଶ୍ୱାସଭାଜନ ହୋଇ ଚାଲୁରହିଲା । କଥା ହେଉଛି, ଗୋଟିଏ ପ୍ରକାର ଉପାସନାର ବିକାଶ ହୋଇ ଅନ୍ୟ ଏକ ଉପାସନା ସୃଷ୍ଟି ହେଲେହେଁ ପୂର୍ବ ଉପାସନାଟି ସବୁ କ୍ଷେତ୍ରରେ ଏହାଫଳରେ ଲୋପ ହେଉନାହିଁ । ଏହାହିଁ ପରମ୍ପରା । ଫଳରେ ସମାଜରେ ଗୋଟିଏ ଉପାସନା ନ ଚାଲି ଦୁଇଟି ଉପାସନା ଚାଲିଛି । ସେହି ଦୃଷ୍ଟିରୁ ବୈଦିକ ବିଷ୍ଣୁପୂଜା ଗୋଟିଏ ପ୍ରକାରର ହେଲେ ମଧ୍ୟ ତହିଁରୁ ଶାଖା, ପ୍ରଶାଖା, ଉପଶାଖା

---

୩୭ । ମହାଭାରତ--ଶାନ୍ତି, ୧୮୭/୧୦

୩୮ । De Souza, J. P. (The serpent as the symbol of life and immortality)--Journal of Indian History--Vol. XLIV. Part II, August, 1966, pp-441 ff.

୩୯ । J. Gonda--Aspects of Early Vaisnavism--pp-152 (Utrecht, 1954)

୪୦ । ମହାଭାରତ--୧, ୬୭, ୯୧

୪୧ । I. V--pp. 24

ଇତ୍ୟାଦି ସୃଷ୍ଟି ହୋଇ ବିଷ୍ଣୁପୂଜା ଏକ ମହାଦ୍ରୁମ ଭାବରେ କାଳକ୍ରମେ ଭାରତରେ ପ୍ରଖ୍ୟାତ ଲାଭ କରିଛି ଏବଂ ଫଳରେ ପୂର୍ବରୁ ଆଲୋଚିତ ଚତୁର୍ବିଂଶତି ପ୍ରକାରରେ ଅଥବା ତହିଁରୁ ବେଶି ସଂଖ୍ୟାରେ ଭାରତରେ ବିଷ୍ଣୁଦେବତାମାନେ ପୂଜିତ ହେଉଛନ୍ତି ।

ଗୁପ୍ତ ରାଜତ୍ୱକାଳରେ ନିର୍ମିତ ଏକ ଶେଷନାରାୟଣ ମୂର୍ତ୍ତି ଦେଓଗଡ଼ରେ (Gupt Temple) ଉପଲବ୍ଧ ହୋଇଛି (୪୨) ଓ ସେହି ଚତୁର୍ଥ-ପଞ୍ଚମ ଶତକରେ ନିର୍ମିତ ଅନ୍ୟଏକ ଶେଷଶାୟୀ (୪୩) ଚତୁର୍ଭୁଜ ବିଷ୍ଣୁ ମୂର୍ତ୍ତି ଏଲାହାବାଦ ମ୍ୟୁଜିୟମରେ ସଂରକ୍ଷିତ ହୋଇଛି । ଓଡ଼ିଶାରେ ଉପଲବ୍ଧ ଶେଷଶାୟୀ ମୂର୍ତ୍ତି ଏହି ମୂର୍ତ୍ତିଦ୍ୱୟଠାରୁ ଆହୁରି ଅଧିକ ପ୍ରାଚୀନ । ଖାରବେଳଙ୍କ ସମୟରେ ଖ୍ରୀ: ପୂ: ୨ୟ ଶତକରେ ନିର୍ମିତ ଉଦୟଗିରି ଗୁମ୍ଫାରେ ଗୋଟିଏ ଶେଷନାରାୟଣ ମୂର୍ତ୍ତି ରହିଛି (୪୪) । ଏଠାରେ ଅନ୍ୟ ଏକ ଗୁମ୍ଫାରେ (ନଂ. ୧୪) ଆଉ ଏକ ଅନନ୍ତଶାୟୀ (୪୫) ରହିଛି । ତାଙ୍କ ନିକଟରେ ଅଛନ୍ତି ଭୂଦେବୀ, ଲକ୍ଷ୍ମୀ ଓ ଆୟୁଧ ପୁରୁଷମାନେ । ଅତଏବ କୁହାଯାଇପାରେ ଯେ ମହାଭାରତ ଯୁଗରୁ ଆରମ୍ଭ ହୋଇ ଶେଷନାରାୟଣ ଉପାସନା ଖ୍ରୀ: ପୂ: ଦ୍ୱିତୀୟ ଶତାବ୍ଦୀବେଳକୁ ବା ତାହା ପୂର୍ବରୁ ପ୍ରସ୍ତର ମୂର୍ତ୍ତି ଭାବରେ ରୂପ ନେଲା । ଚତୁର୍ଥଶତାବ୍ଦୀଠାରୁ ଷଷ୍ଠ ଶତାବ୍ଦୀ ମଧ୍ୟରେ ତ ବହୁ ପରିମାଣରେ ସାରାଭାରତବର୍ଷରେ ଏହି ମୂର୍ତ୍ତି ଦୃଷ୍ଟିଗୋଚର ହୁଏ । ପଦ୍ମନାଭ ସ୍ୱାମୀ ବା ଶେଷଶାୟୀଙ୍କ ମନ୍ଦିର ପ୍ରଚୁର ଭାବରେ ଦକ୍ଷିଣ ଭାରତରେ ଦେଖାଯାଏ । ପ୍ରତ୍ୟେକ ମୂର୍ତ୍ତିରେ ଲକ୍ଷ୍ମୀ ଓ ଭୂଦେବୀ ଥାଆନ୍ତି । କେରଳର ତ୍ରିଭେନ୍ଦ୍ରମରେ ପଦ୍ମନାଭ ସ୍ୱାମୀଙ୍କର ଏକ ଚିତ୍ତାକର୍ଷକ ସୁନ୍ଦର ମନ୍ଦିର ରହିଅଛି । ସମାଲୋଚକମାନଙ୍କ ମତରେ ଶେଷନାରାୟଣ ପୂଜା ପ୍ରଥମେ ଦକ୍ଷିଣ ଭାରତରେ ଆରମ୍ଭ ହୋଇ ପରେ ଉତ୍ତର ଭାରତରେ ପ୍ରବେଶ କଲା । ପଞ୍ଚମ-ଷଷ୍ଠ ଶତକ ବେଳକୁ ଶେଷଶାୟୀ ବିଷ୍ଣୁଙ୍କର ବାରଣଯୁକ୍ତ ମୂର୍ତ୍ତି, ଅଭିଷେକ ମୂର୍ତ୍ତି ଇତ୍ୟାଦି ସମଗ୍ର ଦେଶରେ ଲୋକପ୍ରିୟତା ଅର୍ଜନ କରିଥିଲା । ମଧ୍ୟପ୍ରଦେଶର ରାଜୀମଠାରେ ରାଜୀବଲୋଚନ ମନ୍ଦିରର ଦ୍ୱାରବନ୍ଧରେ ଷଷ୍ଠ ଶତକରେ ନିର୍ମିତ ଏକ ଶେଷଶାୟୀ ମୂର୍ତ୍ତି ରହିଛି । ନାଭିଦେଶରୁ ବିଷ୍ଣୁଙ୍କର ପଦ୍ମପୃଷ୍ଠ ପ୍ରତିଷ୍ଠିତ

୪୨ । I. V--pp. 25

୪୩ । ଏଲାହାବାଦ ମ୍ୟୁଜିୟମ୍--ମୂର୍ତ୍ତି ନମ୍ବର-୨୫୯

୪୪ । Danielou Alain--Hindu Polytheism, London, 1964. Pl. IX

୪୫ । Annual Administrative Report of the Archaeological Dept. Gwalior statey—ear 1932-33.Pl V1, a

ହୋଇଛି । ତାହାରୁ ଜନ୍ମ ନେଇଛନ୍ତି ବ୍ରହ୍ମା । ଭୂଦେବୀ ପଦସେବା କରୁଛନ୍ତି । ଏହିପରି ସମସ୍ତ ଶାସ୍ତ୍ରୀୟ ଲକ୍ଷଣଯୁକ୍ତ ମୂର୍ତ୍ତିଟି ନିଖୁଣ ଭାବରେ ସେଠାରେ ଶୋଭାପାଉଛି ।

ଦକ୍ଷିଣ ଭାରତୀୟ ଶାସ୍ତ୍ରୋକ୍ତ ମତରେ ଶେଷନାଗଶୟନ ମୂର୍ତ୍ତି ବିଭିନ୍ନ ପ୍ରକାରର ହୋଇଥାଏ । ଏମାନଙ୍କ ମଧ୍ୟରୁ କିଏ ଯୋଗଶୟନ ମୂର୍ତ୍ତି ତ କିଏ ଭୋଗଶୟନ ମୂର୍ତ୍ତି । ପୁଣି କିଏ ବୀର ଶୟନ ମୂର୍ତ୍ତି ତ କିଏ ଅଭିଚାରିକ ମୂର୍ତ୍ତି । ତେବେ ପ୍ରତ୍ୟେକ ମୂର୍ତ୍ତିରେ ବ୍ରହ୍ମା, ଅନନ୍ତ (ପଞ୍ଚଫଣ ବା ସପ୍ତଫଣ) (୪୬) ଶୟିତ ବା ଅର୍ଦ୍ଧଶୟିତ ଚତୁର୍ଭୁଜ, ବିଷ୍ଣୁ, ଲକ୍ଷ୍ମୀ (ବୀଣାଧାରିଣୀ), ଭୂଦେବୀ (ପଦସେବା କାରିଣୀ), ଆୟୁଧ ପୁରୁଷମାନେ, ଭୃଗୁ ଓ ମାର୍କଣ୍ଡେୟ ଋଷି, ଗରୁଡ଼, ନାଗକନ୍ୟା, ଦାନବ, ଶିଶୁଭାବରେ ଅଶ୍ୱିନୀମାନେ, ନାରଦ ଓ ତୁମ୍ବୁରୁ ଇତ୍ୟାଦି ରହିବାର କଥା (୪୭) । କିନ୍ତୁ ବାସ୍ତବ କ୍ଷେତ୍ରରେ ଏ ସମସ୍ତେ ଏକାଠି ଖୋଦିତ ନ ହେଲେ ମଧ୍ୟ ଏ ମଧ୍ୟରୁ ଅନେକ ଖୋଦିତ ହୋଇଥାନ୍ତି । ନାଗପୂଜା ଭାରତୀୟ ସଂସ୍କୃତିରେ ଓତଃପ୍ରୋତ ଭାବରେ ଜଡ଼ିତ । ପୁରୀର ଜଗନ୍ନାଥ ମନ୍ଦିର ଓ ଭୁବନେଶ୍ୱରର ଅନେକ ମନ୍ଦିରର (ନାଗଦନ୍ତ) ଦ୍ୱାରବନ୍ଧରେ ନାଗର ଯୁଗଳ ମୂର୍ତ୍ତି ସଜ୍ଜିତ ହୋଇ ଖୋଦିତ ଥିବାର ଦେଖାଯାଏ । କାଳକ୍ରମେ ସେହି ନାଗପୂଜା ଶେଷନାଗ ଆରାଧନାରେ ପର୍ଯ୍ୟବସିତ ହୋଇଛି । ଫଳରେ ଶତାବ୍ଦୀ ଶତାବ୍ଦୀ ଧରି ଏ ମୂର୍ତ୍ତି ଦେଶର ପ୍ରତ୍ୟେକ ପ୍ରାନ୍ତରେ ଦୃଷ୍ଟିଗୋଚର ହେଉଛନ୍ତି । 'ଦ୍ୱାରବନ୍ଧରେ ଶୋଭିତ ପରଂପରାକ୍ରମେ' ରାଜିମ୍‌ର ରାଜୀବଲୋଚନ ମନ୍ଦିରର ଦ୍ୱାରବନ୍ଧରେ ଷଷ୍ଠ ଶତାବ୍ଦୀରେ ଖୋଦିତ ହୋଇଛି ସେହି ଶେଷଶାୟୀ ମୂର୍ତ୍ତି (୪୮) ।

ଓଲ୍‌ବର ନିକଟସ୍ଥ ଜଗନ୍ନାଥ ମନ୍ଦିରରେ ନବମ ଶତାବ୍ଦୀରେ ନିର୍ମିତ ଗୋଟିଏ ଶେଷଶାୟୀ ବିଷ୍ଣୁଙ୍କର ମୂର୍ତ୍ତି ରହିଅଛି (୪୯) । ଅର୍ଥାତ୍, ଏକ ସମୟରେ (୯ମ ଶତରେ)

୪୬ । Rao, T. A. Gopinath--Elements of Hindu Iconography--Madras—1914. Vol. 1. pp-1 Pl. XXV, XXX. (ଐହୋଲ୍ ଓ ବାଦାମୀରୁ ଏପରି ଅନନ୍ତଶାୟୀ ମୂର୍ତ୍ତି ମିଳିଛନ୍ତି ।)

୪୭ । ବୈଖାନସାଗମଂ--ପଟଳ-୬ °--ଅନନ୍ତୋପରିଷ୍ଟ ସମାସୀନାଂ ଦକ୍ଷିଣପାଦମାକୁଞ୍ଚ୍ୟ ବାମଂ ପ୍ରସାର୍ଯ୍ୟ, ଦକ୍ଷିଣହସ୍ତଂ ତଦଙ୍କେନାର୍ଦ୍ଧ୍ୱ ସଂନ୍ୟସ୍ୟ ବାମହସ୍ତଂ ବାମଜାନୂର୍ଦ୍ଧ୍ୱ ପ୍ରସାର୍ଯ୍ୟ ଚତୁର୍ବାହୁଂ ଚକ୍ରଶଙ୍ଖଧରଂ ଫଣାନ୍ ପଞ୍ଚ ସପ୍ତ ବା ଛିନ୍ନମୌଳିନଂ ପ୍ରବାଳାଭଂ ସର୍ବାଭରଣଭୂଷିତଂ ଦକ୍ଷିଣେ ଭୃଗୁଂ ବାମେ ଶଙ୍କରଂ ତଦ୍ରୂପଂ କୌତୁକଂ ପ୍ରତିଷ୍ଠୋକ୍ତ କ୍ରମେଣ ପ୍ରତିଷ୍ଠାଂ କାରୟେତ୍ ॥

୪୮ । M. G. Dixit--Sirpur and Rajim Temples. Pl. 82

୪୯ । Dr. U. P. Shah--Sculptures from Samalaji and Roda-Pl. 9 and I. V. pp. 28

ଏକ ପକ୍ଷରେ ଜଗନ୍ନାଥଙ୍କଙ୍କ ମନ୍ଦିରରେ ଜଗନ୍ନାଥଙ୍କର ପୂଜା ଚାଲିଛି ଓ ଶେଷଶାୟୀ ବିଷ୍ଣୁଙ୍କର ମଧ୍ୟ ଉପାସନା ହେଉଛି । ପୁଣି ମଧ୍ୟ କୁହାଯାଇପାରେ ଯେ ନବମ ଶତାବ୍ଦୀ ବେଳକୁ ବିଷ୍ଣୁ-ଜଗନ୍ନାଥଙ୍କର ପୂଜା ଭାରତର ବିଭିନ୍ନ ସ୍ଥାନରେ ଲୋକପ୍ରିୟ ହୋଇ-ଯାଇଥିଲା । ଏହାର କାରଣ ହେଉଛି, ଜଗନ୍ନାଥ ଉପାସନାକୁ ଲୋକପ୍ରିୟ କରାଇବା ପାଇଁ ଅଷ୍ଟମ ଶତାବ୍ଦୀ ବେଳକୁ ଉତ୍କଳଖଣ୍ଡ, ସ୍କନ୍ଦପୁରାଣର ରଚନା । ଯେ ଯାହାହେଉ, ଉକ୍ତ ଶେଷଶାୟୀ ମୂର୍ତ୍ତିଟିରେ ବ୍ରହ୍ମା, ଅନନ୍ତଦେବ, ପଦ୍ମ ଆଦି ସମସ୍ତ ବିଷୟ ସ୍ଥାନ ପାଇଛି । ଗବେଷିକା କଳ୍ପନା ଦେଶାଇ ଓଡ଼ିଶାରେ ଉପଲବ୍ଧ ଏକ ଦଶମ ଶତକରେ ନିର୍ମିତ ଶେଷଶାୟୀ ବିଷ୍ଣୁଙ୍କର ମୂର୍ତ୍ତି ପ୍ରକାଶ କରିଛନ୍ତି (୬୦) । ଏଥିରେ, ଗୋଟିଏ ଚକ୍ର ଉପରେ ବିଷ୍ଣୁଙ୍କୁ ଅବସ୍ଥାପନ କରାଯାଇଛି । ଚକ୍ର ଉପରେ ସମୁଦ୍ରର ତରଙ୍ଗାୟିତ ଜଳରାଶି ଶୋଭିତ ହୋଇଛି । ଏହା ପ୍ରଳୟକାଳୀନ ଜଳରେ ଅନନ୍ତାଶ୍ରୟୀ ବିଷ୍ଣୁଙ୍କ ରୂପାୟନ କରିଛି । ଏହି ସବୁ ବର୍ଣ୍ଣନା କରି ମଧ୍ୟ ଶ୍ରୀମତୀ ଦେଶାଇ ତାଙ୍କର ନିବନ୍ଧରେ ଓଡ଼ିଶାର କେଉଁସ୍ଥାନରୁ ଏହାକୁ ପାଇଥିଲେ; ସେ କଥାର ଉଲ୍ଲେଖ କରିନାହାନ୍ତି । ତେବେ ଯାହା-ହେଉ, ତାଙ୍କ ମତରେ ଦଶମ ଶତାବ୍ଦୀ ବେଳକୁ ଓଡ଼ିଶାରେ ଶେଷଶାୟୀ ବିଷ୍ଣୁଙ୍କର ଉପାସନା ଥିଲା । ଏକାଦଶ ଶତାବ୍ଦୀରେ ଶେଷଶାୟୀଙ୍କର ଉପାସନା କରାଯାଉଥିବାର ପ୍ରତ୍ନତାତ୍ତ୍ୱିକ ପ୍ରମାଣ ଖଜୁରାହୋ ମ୍ୟୁଜିୟମରେ ମିଳିଥାଏ । ଏହି ଶତାବ୍ଦୀରେ ନିର୍ମିତ ଏକ ଶେଷଶାୟୀ ମୂର୍ତ୍ତି ଖଜୁରାହୋ ସଂଗ୍ରହାଳୟରେ ସଂରକ୍ଷିତ । ସାଧାରଣ ଶେଷଶାୟୀ ମୂର୍ତ୍ତିର ଲକ୍ଷଣ ଛଡ଼ା ଏଥିରେ ଗୋଟିଏ ଅଧିକା କଥା ହେଉଛି, ଏ ମୂର୍ତ୍ତିର ଊର୍ଦ୍ଧ୍ୱଦେଶରେ ବିଷ୍ଣୁଙ୍କର ସମସ୍ତ ଅବତାର ଖୋଦିତ ହୋଇଛନ୍ତି । ଏଥିରୁ ପ୍ରକାଶିତ ହେଉଛି ଯେ, ମୂଳବିଷ୍ଣୁ ବା ମହାବିଷ୍ଣୁ ହେଉଛନ୍ତି ଅନନ୍ତଶାୟୀ ଏବଂ କୃଷ୍ଣ, ନୃସିଂହ ଆଦି ଅବତାର-ମାନେ ତାଙ୍କଠାରୁ ଆବିର୍ଭୂତ ହୁଅନ୍ତି । ଶେଷଶଯ୍ୟାର ନିମ୍ନଦେଶରେ ଶଙ୍ଖଟିଏ ଓ ବେଦୀଟିଏ ରହିଛି ଏବଂ ସେ ଦୁଇଟିକୁ କେତୋଟି ଲୋକ ବସି ପୂଜା କରୁଛନ୍ତି । ଘୋଡ଼ାଟିଏ ନିକଟରେ ଠିଆହୋଇଛି (୬୧) । ଏ ଘୋଟକଟି ହୟଗ୍ରୀବ ସ୍ୱରୂପ ହୋଇପାରେ ବୋଲି ଶ୍ରୀମତୀ ଦେଶାଇ ଲେଖିଛନ୍ତି । ମାଥା (ଗ୍ରୀବା) ମସ୍ତକଟି ଘୋଟକ ଭଳି ଓ ଶରୀରଟି ମନୁଷ୍ୟ ଭଳି, ଏପରି ମୂର୍ତ୍ତି ଏହା ନୁହେଁ । ଏଣୁ ଏହାକୁ ହୟଗ୍ରୀବ ବୋଲି ଚିନ୍ତା କରିବାର କାରଣ ନାହିଁ । ବୋଧହୁଏ, ଶଙ୍ଖବେଦୀ ଶଙ୍ଖକ୍ଷେତ୍ରର

---

୬୦ । I. V.—pp- 20 (We find two sleeping Vishnu images in Bhimakand and Sarang of Dhenkanal District, Orissa—See Orissa To urism news-letter, Page-12 Vol-VIII,No. 6, February—March, 1983)

୬୧ । I. V. PP-29

(ପୁରୁଷୋତ୍ତମ କ୍ଷେତ୍ରର) ମହାବେଦୀକୁ ଅନୁସରଣ କରିଛୁ ଓ ଯୋଢ଼ାରୁ ଓଡ୍ରାର ପୂଜା କରୁଥିବା ଲୋକ ରାଜା ଇନ୍ଦ୍ରଦ୍ୟୁମ୍ନ ହୋଇପାରନ୍ତି । କାରଣ, ସେତେବେଳକୁ ଏହି କାହାଣୀ ସାରାଭାରତରେ ଲୋକପ୍ରିୟ ହୋଇସାରିଥିଲା ଓ (୫୨) ବିଷ୍ଣୁ-ଜଗନ୍ନାଥ ପୂଜା ପୁରୀରେ ଚାଲିଥିଲା ❋ ।

ଶାସ୍ତ୍ରୀୟ ପ୍ରମାଣାବଳୀରୁ ପ୍ରମାଣିତ ହୋଇସାରିଛି ଯେ, ମହାବିଷ୍ଣୁଙ୍କର ଆରାଧନା ବାସୁଦେବ ବା କୃଷ୍ଣ ବିଷ୍ଣୁ, ସଙ୍କର୍ଷଣ-ଅନନ୍ତ ବା ଶେଷ, ନାରାୟଣ ବା ବିଷ୍ଣୁ (ଦ୍ୱିଭୁଜ ବା ଚତୁର୍ଭୁଜ) ଆଦି ରୂପରେ ଅନ୍ତତଃ ମହାଭାରତ ସମୟରୁ ପ୍ରଚଳିତ ହେଲାଣି । ଖ୍ରୀ. ପୂ. ୨ୟ ଶତକ ବେଳକୁ ଏହି ଆରାଧନା ଅଧିକତର ଲୋକପ୍ରିୟତା ହାସଲ କରିଥିବାର ପ୍ରତ୍ନତାତ୍ତ୍ୱିକ ପ୍ରମାଣ ପୂର୍ବରୁ ଆଲୋଚନା ହୋଇଛି । ଶେଷଶାୟୀ ବିଷ୍ଣୁଙ୍କର ଯେଉଁ ମୂର୍ତ୍ତିମାନ ଉପଲବ୍ଧ ହୋଇଛି, ସେଥିରୁ ଜଣାଯାଉଛି ଯେ, ଖ୍ରୀ: ପୂ: ଦ୍ୱିତୀୟ ଶତାବ୍ଦୀରୁ ଏକାଦଶ ଶତାବ୍ଦୀ ମଧ୍ୟରେ ଭାରତରେ ବହୁଳଭାବରେ ଏ ଆରାଧନା ଚାଲିଛି ଏବଂ ଅଧିକାଂଶ (ବିଷ୍ଣୁ) ଶେଷଶାୟୀ ମୂର୍ତ୍ତି ଏହି ସମୟରେ ନିର୍ମିତ ହୋଇଛନ୍ତି । ମହାଭାରତ ଯୁଗରୁ ଆରମ୍ଭକରି 'ମହାବିଷ୍ଣୁ'ଙ୍କର ଯେଉଁ ବିଭିନ୍ନ ରୂପରେ ଆରାଧନା କରାଗଲା ଓ ଫଳରେ ଯେଉଁ ମହାନ୍ ବୈଷ୍ଣବ ଧର୍ମର ସ୍ରୋତ ଭାରତରେ ପ୍ରବାହିତ ହୋଇଗଲା, ତାହାର କ୍ରମପରିଣତି ଫଳରେ ଏହି ମହାସ୍ରୋତରୁ ଶାଖା, ପ୍ରଶାଖା, ଉପଶାଖା ଇତ୍ୟାଦି ସୃଷ୍ଟି ହୋଇ ପରେ ଏହା ସର୍ବଧର୍ମସମନ୍ୱୟ ପୀଠ ପୁରୁଷୋତ୍ତମ କ୍ଷେତ୍ରରେ ଜଗନ୍ନାଥ ତତ୍ତ୍ୱରୂପୀ ମହାସମୁଦ୍ରରେ ନିପତିତ ହେଲା ।

ସଂକ୍ଷେପରେ ଆଲୋଚନା କଲେ କୁହାଯାଇପାରେ ପ୍ରଥମେ ଅନ୍ତତଃ **ତିନିପ୍ରକାର** ମହାବିଷ୍ଣୁ ପୂଜିତ ହେଉଥିଲେ । ଗୋଟିଏ ହେଲା ବାସୁଦେବ କୃଷ୍ଣ ହେଉଛନ୍ତି ପୁରୁଷୋତ୍ତମ,

---

୫୨ । The Land of Vishnu—by this author—First and last chapters.

❋ । ଦ୍ରଷ୍ଟବ୍ୟ:—ଗୋଟିଏ ପ୍ରାଚୀନ ଓ ଲୋକପ୍ରିୟ ଶ୍ଳୋକରେ ଜଗନ୍ନାଥଙ୍କୁ ଅନନ୍ତଶାୟୀ 'ଦାରୁଭୂତୋ ମୁରାରି' ବୋଲି କୁହାଯାଇ ତାଙ୍କୁ ବିଷ୍ଣୁ ବୋଲି ବର୍ଣ୍ଣନ କରାଯାଇଛି । ଶ୍ଳୋକଟି ହେଉଛି—

"ଏକା ଭାର୍ଯ୍ୟା ପ୍ରକୃତି-ମୁଖରା ଚଞ୍ଚଳା ଚ ଦ୍ୱିତୀୟା
ପୁତ୍ରୋଽପ୍ୟେକୋ ଭୁବନବିଜୟୀ ମନ୍ମଥୋ ଦୁର୍ନିବାରଃ
**ଶେଷଃ ଶଯ୍ୟା ବସତି ଜଳଧୌ** ବାହନଂ ପନ୍ନଗାରିଃ
ସ୍ମାରଂ ସ୍ମାରଂ ସ୍ୱଗୃହ ଚରିତଂ **ଦାରୁଭୂତୋ ମୁରାରି** ।।

ଏହି ବର୍ଣ୍ଣନାନୁସାରେ ଦାରୁବ୍ରହ୍ମ-ଜଗନ୍ନାଥ ହେଉଛନ୍ତି, ଅନନ୍ତଶାୟୀ ମୁରାରି ବା ବିଷ୍ଣୁ ।

ପରମାତ୍ମା, ଅଚିନ୍ତ୍ୟ ପରଂବ୍ରହ୍ମ ସ୍ୱରୂପୀ ମହାବିଷ୍ଣୁ । ମହାଭାରତ ଓ ଗୀତା ଆଦି ଗ୍ରନ୍ଥମାନେ ଏହିଭାବରେ ତାଙ୍କୁ ଚିନ୍ତା କରିଛନ୍ତି । ଦ୍ୱିତୀୟତଃ ଅନନ୍ତ, ଶେଷନାଗ ବା ତଦ୍ରୂପ ଅବତାର ସଙ୍କର୍ଷଣ (ବଳରାମ)ଙ୍କୁ ମଧ୍ୟ ବିଷ୍ଣୁସ୍ୱରୂପ ବା ମହାବିଷ୍ଣୁ ବୋଲି ସ୍ୱୀକାର କରାଗଲା । ତୃତୀୟ ପ୍ରକାରର ମହାବିଷ୍ଣୁ ହେଉଛନ୍ତି ଦ୍ୱିଭୁଜ ବା ଚତୁର୍ଭୁଜ ନାରାୟଣ ବା ବିଷ୍ଣୁମୂର୍ତ୍ତି । ଏଣେ ଅନ୍ୟ ଦିଗରେ ଦେଖିଲେ ମହାଲକ୍ଷ୍ମୀଙ୍କର ଲକ୍ଷ୍ମୀ ବା ଗଜଲକ୍ଷ୍ମୀ ଇତ୍ୟାଦି ରୂପରେ ଆରାଧନା ଚାଲିଛି । କାଳକ୍ରମେ ବାସୁଦେବଙ୍କ (କୃଷ୍ଣ) ସହିତ ସଙ୍କର୍ଷଣ (ବଳରାମ) ଯୁକ୍ତ ହୋଇ ଏକ ଦିଗରେ ଦ୍ୱିବ୍ୟୂହ ବା ବାସୁଦେବ-ସଙ୍କର୍ଷଣ ପୂଜା ଚାଲିଲା । ପୁଣି ଅନ୍ୟ ଦିଗରେ ସଙ୍କର୍ଷଣଙ୍କର ଅନ୍ୟ ନାମ ଶେଷ (ନାଗ) ଓ ନାରାୟଣ (ବିଷ୍ଣୁ)ଙ୍କୁ ଯୋଗ କରି ଶେଷନାରାୟଣ ଉପାସନା ମଧ୍ୟ ଚାଲିଲା । ପୁଣି କେତେକ ଧର୍ମଗୁରୁ ଲକ୍ଷ୍ମୀ ଓ ନାରାୟଣଙ୍କୁ ଯୋଗକରି ଲକ୍ଷ୍ମୀନାରାୟଣ ପୂଜା କଲେ । ଲକ୍ଷ୍ମୀଙ୍କର ଏହି ଯୋଗଦାନ ଅବଶ୍ୟ ଶକ୍ତି ଉପାସନାର ମହାପ୍ରୋନ୍ନତର କ୍ରମପରିଣତି । ପୁଣି କ୍ରମଶଃ ବାସୁଦେବ-ସଙ୍କର୍ଷଣ ଓ ଶେଷ ନାରାୟଣ; ଏହି ଉଭୟ ପୂଜା ସମାନ ଅର୍ଥକ ହୋଇଥିବାରୁ ସଙ୍କର୍ଷଣଙ୍କ ମସ୍ତକରେ ଶେଷନାଗର ଫଣାକୁ ଯୋଗକରି ଅନନ୍ତ ବାସୁଦେବ ବା ବଳଭଦ୍ର ଓ କୃଷ୍ଣ ବିଷ୍ଣୁଙ୍କର ପୂଜା ଚାଲିଲା । ଏହିପରି ଦୁଇ ମୂର୍ତ୍ତି ଭୁବନେଶ୍ୱରର ବିନ୍ଦୁସାଗର ପୁଷ୍କରିଣୀର ପ୍ରାଚୀର କାନ୍ଥରେ ରହିଛି । କ୍ରମେ ଶକ୍ତି ପୂଜାର ପ୍ରଭାବରେ ଏକାନଂଶା (ଶୈବୀ ଶକ୍ତି ଦୁର୍ଗା ) ତାଙ୍କ ସହିତ ଯୋଗ ଦେଇ ପୂଜିତା ହେଲେ । ତାଙ୍କୁ ପୁଣି ବୈଷ୍ଣବୀ ଶକ୍ତି ଭାବରେ କଳ୍ପନା କରି ସୁଭଦ୍ରା ବୋଲି କୁହାଗଲା । ଅନ୍ୟ ଦିଗରେ ଏହି ବଳଭଦ୍ର (ଅନନ୍ତ) କୃଷ୍ଣ (ବାସୁଦେବ)ଙ୍କ ସହିତ ଲକ୍ଷ୍ମୀନାରାୟଣ ପୂଜାକୁ ଯୋଗକରି ବଳଭଦ୍ର କୃଷ୍ଣବିଷ୍ଣୁ ଓ ଲକ୍ଷ୍ମୀ ବା ମହାଲକ୍ଷ୍ମୀ ପୂଜିତ ହେଲେ । ଶକ୍ତିପୂଜାର ପ୍ରଭାବରେ ଲକ୍ଷ୍ମୀଭାବ ସହିତ ଏକାନଂଶା (ଭୁବନେଶ୍ୱରୀ ଦୁର୍ଗା) ଭାବକୁ ମିଳାଇ କ୍ରମେ କ୍ରମେ ସଙ୍କର୍ଷଣ ଓ ଓ ଅନନ୍ତରୂପୀ ବଳଭଦ୍ର (ବା ବଳରାମ), ବାସୁଦେବ-ପୁରୁଷୋତ୍ତମ-ଜଗନ୍ନାଥ (ମହାବିଷ୍ଣୁ) ଏବଂ ସୁଭଦ୍ରା (ଏକାଂନଂଶା + ଲକ୍ଷ୍ମୀ) ଏକତ୍ର ପୂଜିତ ହେଲେ । ଶୈବମାନେ ଅବଶ୍ୟ ବଳଭଦ୍ରଙ୍କୁ ଶିବ ଭାବରେ ମାନିଲେ ।

ଏହି ଟେବୁଲଟିରେ ଯାହା ଯାହା ଦର୍ଶାଇ ଦିଆଗଲା, ତନ୍ମଧ୍ୟରେ ମହାବିଷ୍ଣୁ, ବାସୁଦେବ ସଙ୍କର୍ଷଣଙ୍କର ପୂଜା ବା ଦ୍ୱିବ୍ୟୂହ ଆରାଧନା, ଚତୁର୍ଭୁଜ ବା ଦ୍ୱିଭୁଜ ବିଷ୍ଣୁ, ଲକ୍ଷ୍ମୀ-ନାରାୟଣ ପୂଜା, ଶେଷ ନାରାୟଣ ଅର୍ଚ୍ଚନା ଆଦି ପ୍ରଧାନ । ଏଗୁଡ଼ିକ ମଧ୍ୟରୁ ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିରୁ ବିଷ୍ଣୁ ଆରାଧନା, ଲକ୍ଷ୍ମୀନାରାୟଣ ପୂଜା ଓ ଶେଷନାରାୟଣଙ୍କର ଉପଲବ୍ଧ ମୂର୍ତ୍ତି ଗୁଡ଼ିକ ଉପରେ ଆଲୋଚନା କରାଯାଇଛି । ବର୍ତ୍ତମାନ ଦ୍ୱିବ୍ୟୂହ ମୂର୍ତ୍ତି, ମହାବିଷ୍ଣୁ, କୃଷ୍ଣବିଷ୍ଣୁ ଇତ୍ୟାଦି ଚିନ୍ତାଧାରା ଓ ଉପଲବ୍ଧ ମୂର୍ତ୍ତିମାନଙ୍କ ଉପରେ ଧ୍ୟାନ ଦିଆଯିବା ଆବଶ୍ୟକ ।

୧
ମହାବସ୍ତୁ (ମହାସ୍ରୋତ)
ବାସୁଦେବ ବା କୃଷ୍ଣ-ବସ୍ତୁ

୨
ମହାଶସ୍ତୁ
ସଙ୍କର୍ଷଣ ବା ଅନନ୍ତ ବା ଶେଷ

୩
ମହାବସ୍ତୁ
ନାରାୟଣ ବା ବସ୍ତୁ

୪
ମହାଲକ୍ଷ୍ମୀ
ଲକ୍ଷ୍ମୀ ବା ଗଜଲକ୍ଷ୍ମୀ

ବାସୁଦେବ ସଙ୍କର୍ଷଣ (ଦ୍ୱିବ୍ୟୂହ)

ଶେଷନାରାୟଣ

(ମହାସ୍ରୋତ)-ଶକ୍ତିପୂଜା ପ୍ରଭାବରେ

ଅନନ୍ତ ବାସୁଦେବ ବା ବଳଭଦ୍ର, କୃଷ୍ଣ-ବସ୍ତୁ (ପୁରୁଷୋତ୍ତମ) ଲକ୍ଷ୍ମୀ-ନାରାୟଣ

(ସୁଭଦ୍ରା) ଏକାନଂଶା, ଅନନ୍ତ, ବାସୁଦେବ

ବଳଭଦ୍ର, କୃଷ୍ଣବସ୍ତୁ, ଲକ୍ଷ୍ମୀ

ମହାସ୍ରୋତ ଶକ୍ତିଉପାସନାର ପ୍ରଭାବରେ ମହାଲକ୍ଷ୍ମୀ

(ଏକାନଂଶା) ସୁଭଦ୍ରା

ସୁଭଦ୍ରା, ଅନନ୍ତ, ବାସୁଦେବ
(Cult at Bhubaneswar)

(ଶିବ) ବଳଭଦ୍ର, ଜଗନ୍ନାଥ ସୁଭଦ୍ରା—ଶକ୍ତିପୂଜା ପ୍ରଭାବରେ
(Cult at Puri)

**ଅତଏବ—ଜଗନ୍ନାଥ** = ମହାବସ୍ତୁ, ବାସୁଦେବ, ନାରାୟଣ, କୃଷ୍ଣ-ବସ୍ତୁ, ପୁରୁଷୋତ୍ତମ ।
**ବଳଭଦ୍ର** = ସଂକର୍ଷଣ, ବଳରାମ, ଅନନ୍ତ, ଶେଷ, (ଶିବ)/(ବସ୍ତୁ) ।
**ସୁଭଦ୍ରା** = ଏକାନଂଶା, ମହାଲକ୍ଷ୍ମୀ, ଭୁବନେଶ୍ୱରୀ, (ବସ୍ତୁ-ଜଗନ୍ନାଥଙ୍କର ଶକ୍ତି ଓ ଶିବ-ବଳଭଦ୍ରଙ୍କର ଶକ୍ତି) ।
ତେଣୁ ସେ ଲକ୍ଷ୍ମୀ ଓ ଭୁବନେଶ୍ୱରୀ ।

[**Note**:—This table is drawn by the author for the first time advocating the truth in the world]

## ଦ୍ୱି ବ୍ୟୂହ ଉପାସନା :

ପ୍ରଥମେ ଯେଉଁ ବାସୁଦେବ କୃଷ୍ଣଙ୍କ ପୂଜା କରାଯାଉଥିଲା, ତାଙ୍କୁ ସ୍ୱୟଂ ପରଂବ୍ରହ୍ମ-ବିଷ୍ଣୁ ବୋଲି ବିଚାର କରି ଉପାସନା କରାଯାଉଥିଲା । ବାସୁଦେବ ଏହା ଫଳରେ ଗୋପାଳକୃଷ୍ଣ ନଥିଲେ, ଥିଲେ ବିଷ୍ଣୁ-କୃଷ୍ଣ । ପରେ ଏହି ଏକ ମୂର୍ତ୍ତିକୁ ଦ୍ୱିମୂର୍ତ୍ତି, ଦୁଇରୁ ତିନି ଓ ତିନିରୁ ଚାରି ମୂର୍ତ୍ତି ଭାବରେ ଚତୁର୍ବ୍ୟୂହ ମୂର୍ତ୍ତିର ପୂଜା ଚାଲିଲା । ମହାଭାରତ ବେଳଠାରୁ ଏପରି ବ୍ୟୂହ ପୂଜା ଚାଲିଥିବାର ଅନେକ ପ୍ରମାଣ ରହିଅଛି (୫୩) । ଏ ବ୍ୟୂହ ପୂଜା ମୁଖ୍ୟତଃ କୃଷ୍ଣିବଂଶ ବା ଯଦୁବଂଶର ବୀରମାନଙ୍କ ପୂଜା କରିବାପାଇଁ ଉଦ୍ଦିଷ୍ଟ । ଚତୁର୍ବ୍ୟୂହ କ୍ରମରେ ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ ଓ ପରେ ପଞ୍ଚବ୍ୟୂହକ୍ରମରେ ଜାମ୍ବବତୀ ନନ୍ଦନ ଶାମ୍ବଙ୍କର ପୂଜା ହେଉଥିଲା । ପରେ ଚତୁର୍ବ୍ୟୂହ ଉପାସନା ଉପରେ ସାଂଖ୍ୟ ଦର୍ଶନର ମୂଳତତ୍ତ୍ୱକୁ ଆରୋପ କରାଯାଇଥିଲା । ସେହି ସାଂଖ୍ୟ ତତ୍ତ୍ୱ ହେଉଛି, ପରମ, ମହତ୍ (ଜୀବ), ମନ ଓ ଅହଂକାର । ବାସୁଦେବ ହେଉଛନ୍ତି ନିର୍ଗୁଣାତ୍ମକ । ତାଙ୍କଠାରୁ ମହାନ୍ (ଜୀବ)ର ଅଭିବ୍ୟକ୍ତି ସଙ୍କର୍ଷଣ ଉଦ୍ଭବ । ସେହିପରି ଯଥାକ୍ରମେ ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧଙ୍କୁ ମନ ଓ ଅହଂକାର ବୋଲି ବିଚାର କରାଗଲା (୫୪) । ବୃହତ୍‌ସଂହିତା, ବିଷ୍ଣୁଧର୍ମୋତ୍ତରଂ ଓ ବୈଖାନସାଗମରେ ପଞ୍ଚବ୍ୟୂହ ଉପାସନାର ବିଶେଷ ଉଲ୍ଲେଖ ରହିଛି (୫୫) । କାଳକ୍ରମେ ପଞ୍ଚବ୍ୟୂହ ଅପେକ୍ଷା ଚତୁର୍ବ୍ୟୂହ ବେଶି ଲୋକପ୍ରିୟ ହୋଇଥିଲା । ଫଳରେ ଏହାର କ୍ରମପରିଣତି ରୂପେ ପୂଜିତ ହେଲେ ଅନେକ ସ୍ଥାନରେ ଚତୁର୍ମୂର୍ତ୍ତି ବୈକୁଣ୍ଠ (୫୬) । ଆମର ଜଗନ୍ନାଥ ମଧ୍ୟ ପ୍ରଥମେ ଏକ, ପରେ ଦୁଇ, ତାପରେ ତିନି ଓ ଶେଷରେ ଚତୁର୍ଦ୍ଧାମୂର୍ତ୍ତି ଭାବରେ ପୂଜିତ

---

୫୩ । ମହାଭାରତ—ପୁନା—୧୨/୩୩୬,୫୩—

ଏକବ୍ୟୂହବିଭାଗୋ ବା କ୍ୱଚିଦ୍ ଦ୍ୱିବ୍ୟୂହ ସଞ୍ଜ୍ଞିତଃ ।
ତ୍ରିବ୍ୟୂହଶ୍ଚାପି ସଂଖ୍ୟାତ ଚତୁର୍ବ୍ୟୂହଶ୍ଚ ଦୃଶ୍ୟତେ ॥

୫୪ । ମହାଭାରତ—(Ed. V.S. Suthankar—Bhandarkar Institute) Poona– XII, 326, 38-39.

୫୫ । ବୃହତ୍‌ସଂହିତା—(Tr. Shastri, V. S.) ବାଙ୍ଗାଲୋର, ୧୯୪୭, (LVIII), ୪୦ ।

ବିଷ୍ଣୁଧର୍ମୋତ୍ତର ପୁରାଣ—(ସମ୍ପାଦକ-ପ୍ରିୟବଳଶାହ—ବରୋଦା, ୧୯୫୮) ୩ୟ, ୮୫, ୭୮ । ବୈଖାନସାଗମ—(ସମ୍ପାଦକ—କେ. ଏସ୍. ଶାସ୍ତ୍ରୀ—ତ୍ରିଭେନ୍ଦ୍ରମ୍—୧୯୩୫) ପଟଳ ୫୯ ।

୫୬ । ମହାଭାରତ—୧୨/୩୨୬/୪୩

ହେଲେ । ତେଣୁ ତାଙ୍କ ଉପରେ ଯେ ଏହି ବ୍ୟୂହପୂଜାର ପ୍ରଭାବ ନ ପଡ଼ିଛି, ସେ କଥା କିଏ କହିବ ?

ବ୍ୟୂହପୂଜାର ପ୍ରଚଳନ ମହାଭାରତବେଳଠାରୁ ଥିଲେ ମଧ୍ୟ ଖ୍ରୀ. ପୂ. ପ୍ରଥମ ଶତାବ୍ଦୀ ପୂର୍ବରୁ ଏହି ବୃଷ୍ଣୀ ବୀରମାନଙ୍କର ମୂର୍ତ୍ତି ଆମର ହସ୍ତଗତ ହୋଇଛି (୫୭) । ରାଜସ୍ଥାନର ଚିତୋରଗଡ଼ ଜିଲାର ଘୋଷୁଣ୍ଡି ଗ୍ରାମରୁ ଉପଲବ୍ଧ ଶିଳାଲେଖରୁ ଜଣାଯାଏ ଯେ ସେହିବେଳକୁ ସେଠାରେ ଦ୍ଵି ବ୍ୟୂହ ଉପାସନା କ୍ରମରେ ବାସୁଦେବ ସଙ୍କର୍ଷଣଙ୍କର ପୂଜା ହେଉଥିଲା (୫୮) । ପରେ ସେହି ପୂଜାରୁ କୃଷ୍ଣ ଓ ବଳରାମଙ୍କର ପୂଜା ଚାଲିଲା । ଅନ୍ୟ ପ୍ରକାରେ କହିବାକୁ ଗଲେ ଏହା ଅନନ୍ତ ବାସୁଦେବପୂଜାର ଏକ ଭିନ୍ନ ରୂପ ।

## ଅନନ୍ତ ବାସୁଦେବ ପୂଜା—

ପ୍ରଥମରୁ ଉପାସିତ ହୋଇଆସୁଥିବା ବାସୁଦେବଙ୍କ ସହିତ ଅନନ୍ତ ଯୁକ୍ତ ହେଲେ । ଉଭୟ ଥିଲେ 'ବିଷ୍ଣୁସ୍ଵରୂପ' । ବାସୁଦେବଙ୍କୁ ପୂଜା କରି ସନ୍ତୁଷ୍ଟ ନକଲେ ମୁକ୍ତିଲାଭ ହେବନାହିଁ; ଏହା ସମାଜରେ ଏକ ବଦ୍ଧମୂଳ ଧାରଣା ଥିଲା (୫୯) । ଏମିତି ନାନା ଭାବରେ କୃଷ୍ଣ ବାସୁଦେବଙ୍କର ଆରାଧନା ଚାଲିଥିଲା । ଅବଶ୍ୟ ଏହା ବୈଦିକ ଯୁଗରୁ ଏପରି ଭାବରେ ଚାଲିନଥିଲା କି ବାସୁଦେବଙ୍କୁ କୃଷ୍ଣ ବୋଲି କୁହାଯାଉନଥିଲା । ଋଗ୍‌ବେଦରେ 'କୃଷ୍ଣ-ଅଙ୍ଗୀରସ' ବୋଲି ଜଣେ ମନ୍ତ୍ରଦ୍ରଷ୍ଟା ଥିଲେ (୬୦) । ଶ୍ରୀକୃଷ୍ଣ ନଥିଲେ । ସେ କିନ୍ତୁ ଏହି ଶ୍ରୀକୃଷ୍ଣ ନୁହନ୍ତି କି ଶ୍ରୀକୃଷ୍ଣଙ୍କ ସହିତ ତାଙ୍କର କିଛି ସମ୍ପର୍କ ନାହିଁ । ସେ ଦୃଷ୍ଟିରୁ କୃଷ୍ଣତଃ ଜଗନ୍ନାଥଙ୍କର ପୂଜାର ପରିକଳ୍ପନା ମଧ୍ୟ ସେ ଯୁଗରେ ନାହିଁ କହିଲେ ଚଳେ । ବୈଦିକଯୁଗ ପରେ ବ୍ରାହ୍ମଣ ଯୁଗରେ ମଧ୍ୟ କୃଷ୍ଣ କହିଲେ ସେହି କୃଷ୍ଣ ଅଙ୍ଗୀରସଙ୍କୁ ବୁଝାଉଥିଲା (୬୧) । ଉପନିଷଦ ଯୁଗରେ କୃଷ୍ଣ ଦେବକୀ

---

୫୭ । Epigraphica Indica—Vol. XXIV. pp. 194ff—
"ଭଗବତାଂ କୃଷ୍ଣୀନାଂ ପଞ୍ଚବୀରାଣାଂ ପ୍ରତିମା···"

୫୮ । Epigraphica Indica—Vol. XVI pp. 25 ff.
(···ଭଗବଦ୍‌ଭ୍ୟାଂ ସଙ୍କର୍ଷଣ ବାସୁଦେବାଭ୍ୟାଂ ପୂଜାଶିଳା ପ୍ରକାରୋ ନାରାୟଣ ବାଟିକା ॥)

୫୯ । ବିଷ୍ଣୁପୁରାଣ—ପ୍ରଥମଭାଗ—୪/୧୮—
ବାସୁଦେବମନାରାଧ୍ୟ କୋ ମୋକ୍ଷଂ ସମବାପସ୍ୟତି ।

୬୦ । ଋଗ୍‌ବେଦ—୮ମ/୫୪/୩-୪

୬୧ । କୌଶିତକୀ ବ୍ରାହ୍ମଣ— ୩୦/୯

ପୁତ୍ର ଭାବରେ ପ୍ରଥମେ ଆତ୍ମପ୍ରକାଶ କଲେ ଓ ସେ ଘୋର ଅଙ୍ଗୀରସ ନାମକ ଋଷିଙ୍କର ଶିଷ୍ୟ ଥିଲେ ବୋଲି କୁହାଗଲି (୭୨)। ପାଣିନିଙ୍କ ସମସ୍ତବେଳକୁ ଶ୍ରୀକୃଷ୍ଣ ବାସୁଦେବଙ୍କ ପୁତ୍ର 'ବାସୁଦେବ' ଭାବରେ ଜଣାଶୁଣା ହୋଇସାରିଥିଲେ (୭୩)। ପତଞ୍ଜଳି ମଧ୍ୟ ତାଙ୍କର ମହାଭାଷ୍ୟରେ ବାସୁଦେବ ଶବ୍ଦରେ ଶ୍ରୀକୃଷ୍ଣଙ୍କୁ ବିଚାରକୁ ନେଇଛନ୍ତି। ସେତେବେଳକୁ ମହାଭାରତ ରଚନା ସରିଛି ଓ ଶ୍ରୀକୃଷ୍ଣଙ୍କର ମହତ୍ତ୍ୱ ପ୍ରତିପାଦିତ ହୋଇ ବାସୁଦେବହିଁ ପରଂବ୍ରହ୍ମ; ଏକଥା ପ୍ରକାଶିତ ହୋଇଯାଇଛି। ହରିବଂଶରେ ଶ୍ରୀକୃଷ୍ଣଙ୍କର ଚରିତ ବିଶଦ ଭାବରେ ବର୍ଣ୍ଣିତ ହୋଇ ତାଙ୍କର ପ୍ରତିଷ୍ଠା ଓ ଉପାସନା ସମାଜରେ ବହୁତ ବଢ଼ିଯାଇଛି।

ଏଣେ ବାସୁଦେବକୃଷ୍ଣଙ୍କର ଭାଇ ବଳରାମ ମଧ୍ୟ ଦ୍ୱିବ୍ୟୂହ ଉପାସନା ମାଧ୍ୟମରେ ଲୋକପ୍ରିୟ ହୋଇଉଠିଛନ୍ତି। ବାସୁଦେବ ସଙ୍କର୍ଷଣ ପୂଜା କୃଷ୍ଣବଳରାମ ଉପାସନାରେ ପରିଣତ ହୋଇଛି। ବଳରାମଙ୍କୁ ମହାଭାରତ ଯୁଗରୁ ଶେଷନାଗ ବୋଲି ବିଚାର କରାଯାଇଛି। (୭୪) ହରିବଂଶରେ ତାଙ୍କୁ 'ନାଗରାଜ' ବୋଲି କୁହାଯାଇଛି ଏବଂ ପୁରାଣ ଯୁଗରେ ବଳରାମ ହେଉଛନ୍ତି ଶେଷନାଗ ଓ ଧରଣୀଧର ସପ୍ତଫଣ ବାସୁକୀଙ୍କର ଏକ ମୂର୍ତ୍ତିମନ୍ତ (୭୫) ପ୍ରତୀକ। ବଳଦେବ ହେଉଛି ବଳରାମଙ୍କର ଅନ୍ୟଏକ ନାମ। ତେଣୁ ବଳଦେବଙ୍କର ମସ୍ତକରେ ସର୍ପଫଣା ଥିବାର ମୂର୍ତ୍ତିମାନଙ୍କରେ ଦେଖାଯାଏ। ବଳରାମଙ୍କୁ ଅନନ୍ତନାଗ ବୋଲି ବିଚାରରୁ ନିଆଯାଇ ତାଙ୍କୁ ବିଷ୍ଣୁ ସ୍ୱରୂପ ବୋଲି ବିଚାର କରାଯିବା ସଙ୍ଗେ ସଙ୍ଗେ ତାଙ୍କୁ ବାସୁଦେବଙ୍କ ଠାରୁ ଅଭିନ୍ନ ବୋଲି ବିଚାର କରାଗଲି। ଫଳରେ ଶେଷଶାୟୀ ବିଷ୍ଣୁ ଓ ଶେଷନାଗ ଉଭୟେ; ଏକ ଓ ଅଭିନ୍ନ ତତ୍ତ୍ୱ କୃଷ୍ଣବାସୁଦେବ ଓ ଶେଷ ବଳରାମଙ୍କ ଠାରେ ଆରୋପିତ ହୋଇ ଅନନ୍ତ (ବଳଦେବ) ଓ ବାସୁଦେବ ଏକତ୍ର ପୂଜିତ ହେଲେ। ବିଷ୍ଣୁ ପୁରାଣକାଳରୁ ବା ତା ପୂର୍ବରୁ ଏ ପ୍ରକାର ପୂଜା ଭାରତରେ ଅନୁଷ୍ଠିତ (୭୬)

---

୭୨। ଛାନ୍ଦୋଗ୍ୟ ଉପନିଷଦ—୩ୟ/୧୭/୬

୭୩। ଅଷ୍ଟାଧ୍ୟାୟୀ—୩ୟ/୧/୨୬

୭୪। I. V.—pp. 134.

୭୫। ବିଷ୍ଣୁ ପୁରାଣ—୫ମ/୩୭/୨୪—ପୃ-୪୮୭—

ଏବଂ ବିଧାନ୍ୟନେକାନି ବଲଦେବସ୍ୟ ଧୀମତଃ
କର୍ମାଣ୍ୟ ପରିମେୟାନି ଶେଷସ୍ୟ ଧରଣୀ ଭୃତଃ ॥

୭୬। ବିଷ୍ଣୁ ପୁରାଣ—୨ୟ/୫/୧୧—ଅନନ୍ତବାସୁଦେବ ଅଭିନ୍ନ—
"ନାମବ୍ୟାଖ୍ୟାମନନ୍ତସ୍ୟ ବାସୁଦେବସ୍ୟ ତତ୍ତ୍ୱତଃ।
" —୫୯/୯/୨୯—
ଦ୍ୱିତ୍ର୍ୟାଧିକେୟଂ ଧରଣୀ ବିମୂର୍ତ୍ତି ଚରାଚରଂ ବିଶ୍ୱମନନ୍ତ ମୂର୍ତ୍ତେ !
(ପୃ-୪୦୧)

ହୋଇଲେଣି ଓ ଅନନ୍ତ ବାସୁଦେବ ବା ବାସୁଦେବସଙ୍କର୍ଷଣଙ୍କର ଅନେକ ମନ୍ଦର ଖ୍ରୀ: ପୂ: ଦ୍ୱିତୀୟ ଶତକଠାରୁ ନିର୍ମିତ ହେବାର ପ୍ରମାଣ ମିଳିଲାଣି (୬୭) ।

ବଳରାମଙ୍କୁ ଅନନ୍ତ ବୋଲି କୁହାଯାଉଥିଲେ ମଧ୍ୟ କେତେକ ମୂର୍ତ୍ତିରେ ସେ ପୂର୍ବପୂର୍ବ ବାସୁଦେବଙ୍କ ପରି ଜଣାଯାଆନ୍ତି । ଯତେ ଅବା କୃଷ୍ଣ ଓ ବଳରାମଙ୍କ ମଧ୍ୟରେ ଅଭେଦ ସମ୍ପର୍କ ରହିଛି ଓ ସେଥିପାଇଁ ସ୍କନ୍ଦପୁରାଣର ଉତ୍କଳଖଣ୍ଡରେ କୃଷ୍ଣ ଓ ବଳରାମ (ବଳଭଦ୍ର)ଙ୍କ ମଧ୍ୟରେ ଅଭେଦ ସମ୍ପର୍କ ବର୍ଣ୍ଣିତ ହୋଇଛି (୬୮) । ଆଉ ଜଗନ୍ନାଥ ମନ୍ଦିରରେ ବଳଭଦ୍ର ବୋଧହୁଏ ସେଇଥିପାଇଁ 'ବାସୁଦେବମନ୍ତ୍ର'ରେ ପୂଜିତ ହେଉଛନ୍ତି । ବଳଭଦ୍ର ବା ବଳରାମଙ୍କର ମୂର୍ତ୍ତି ପ୍ରାଚୀନ ଯୁଗରେ ଅନେକାଂଶରେ ବାସୁଦେବଙ୍କ ପରି ନିର୍ମିତ ହେଉଥିବାରୁ, ଏକମୂର୍ତ୍ତିରେ ମଧ୍ୟ ଅନନ୍ତବାସୁଦେବ ପ୍ରତିଫଳିତ ହୁଅନ୍ତି । ଏହା ସମାଜରେ ଅନନ୍ତବାସୁଦେବ ପୂଜାର ବହୁଳ ଲୋକପ୍ରିୟତାର ଏକ ଅଲୌକିକ ଫଳ । ବଳରାମଙ୍କର ଏପରି ଏକ ଅନନ୍ତବାସୁଦେବାତ୍ମକ ମୂର୍ତ୍ତି ନିର୍ମାଣ କରିବାର ବିଧି ନିର୍ଦ୍ଦେଶିତ ହୋଇଅଛି ପ୍ରାଚୀନ ଶିଳ୍ପଶାସ୍ତ୍ର ବିଷ୍ଣୁଧର୍ମୋତ୍ତର ପୁରାଣରେ । ଏଥିରେ ବଳରାମଙ୍କର ଦ୍ୱିବିଧ ମୂର୍ତ୍ତିର ନିର୍ମାଣ କୌଶଳ ନିର୍ଦ୍ଦେଶିତ ହୋଇଛି । ଗୋଟିଏ ହେଉଛି ତାଙ୍କର ବ୍ୟୂହରୂପ ବା ସଙ୍କର୍ଷଣ ରୂପ ଏବଂ ଅନ୍ୟଟି ହେଉଛି ତାଙ୍କର ଅବତାର ବିଭବ । ବ୍ୟୂହରୂପରେ ତାଙ୍କୁ ବାସୁଦେବଙ୍କ ଭଳି ନିର୍ମାଣ କରାଯିବାର ବିଧି ରହିଛି । ଏଥିରେ ତାଙ୍କୁ ବିଷ୍ଣୁଙ୍କ ଭଳି ଚତୁର୍ଭୁଜ ଭାବରେ ନିର୍ମାଣ କରାଯାଏ । କିନ୍ତୁ ତାଙ୍କର ଆୟୁଧ ଗଦା, ଚକ୍ର ହୁଏନାହିଁ । ଉପର ଦୁଇ ହାତରେ ସେ ଧରନ୍ତି ହଳ, ମୂଷଳ ଓ ତଳ ଦୁଇଟି ହାତରେ ଧାରଣ କରନ୍ତି ଶଙ୍ଖ ଓ ପଦ୍ମ । ତାଙ୍କର ବର୍ଣ୍ଣ ହୁଏ ଧବଳ । (ଶଙ୍ଖେନ୍ଦୁ ଧବଳଂ ବଲମ୍ —ସ୍କନ୍ଦ: ପୁ: ମା:) । ସେ ପିନ୍ଧନ୍ତି ନୀଳବସ୍ତ୍ର । ଏହି ହେଉଛି ବଳରାମଙ୍କର ବାସୁଦେବାତ୍ମକ ମୂର୍ତ୍ତିର ସ୍ୱରୂପ (୬୯) । ବିଷ୍ଣୁଧର୍ମୋତ୍ତର ପୁରାଣରେ ଅନ୍ୟାନ୍ୟ ବର୍ଣ୍ଣିତ ଅଛି ତାଙ୍କର ସେହି କାମପାୟୁ ଅବତାର ରୂପ । ଏଥିରେ ସେ ଦୁଇଟି ହସ୍ତରେ ଧରିଥିବେ ହଳ ଓ ମୂଷଳ । ଅବାରିତ ହାଲା (ମଦ୍ୟ)ର ଉନ୍ମାଦନାରେ ଚକ୍ଷୁ ତାଙ୍କର ଘୂର୍ଣ୍ଣିତ ହୋଇପଡ଼ୁଥିବ ।

---

୬୭ । I.V.—pp. 4-5. (Note. 40)
[The Nanaghat cave inscription of Naganika]

୬୮ । ସ୍କନ୍ଦପୁରାଣ—ଉତ୍କଳଖଣ୍ଡ—୧୯/୨୩
ନ ଭେଦୋଽସ୍ତି ହି କୋ ବିପ୍ରାଃ କୃଷ୍ଣସ୍ୟ ଚ ବଲସ୍ୟ ଚ ।
ତଥାପି ସେ ଶେଷଦେବ—"ଛଟାକୃତଫଣାସପ୍ତ ମୁକୁଟୋଜ୍ଜ୍ୱଳକୁଣ୍ଡଳଃ ॥
ଅତଏବ ସେ ହେଉଛନ୍ତି ଅନନ୍ତ । ସ୍କନ୍ଦ—ପୁ: ମା:—୧୯/୧୦—

୬୯ । ବିଷ୍ଣୁଧର୍ମୋତ୍ତର ପୁରାଣ—୩ୟ/୫୭/୩-୬ ।

ଶରୀରର ବର୍ଣ୍ଣ ହେଉଛି ଗୌର । ନୀଳବସ୍ତ୍ର ଓ କର୍ଣ୍ଣରେ କୁଣ୍ଡଳ ଧାରଣ କରି ସେ ଦିଶୁଥିବେ କମନୀୟ । ଏ ବର୍ଣ୍ଣନା ଗୁପ୍ତଯୁଗରୁ (୭୦) କାଳରେ ରଚିତ ବିଷ୍ଣୁଧର୍ମୋତ୍ତର ପୁରାଣରେ ସ୍ଥାନ ପାଇଛି (୭୧) । ମସ୍ତକରେ ସପ୍ତଫଣା ସାପୋଟିଏ ରହିଥିବାର ବିଧାନ ମଧ୍ୟ ପ୍ରାଚୀନ ଯୁଗରୁ ଚାଲିଆସୁଛି (୭୨) । ମହାଭାରତ ଯୁଗରୁ ବଳରାମଙ୍କର ଆୟୁଧ ଭାବରେ ହଳ, ମୂଷଳକୁ ନିଆଯାଇଛି (୭୩) । ଅଗ୍ନିପୁରାଣରେ ମଧ୍ୟ ଅନୁରୂପ ବର୍ଣ୍ଣନା ଦେଖିବାକୁ ମିଳେ (୭୪) । ତେଣୁ ମୋଟାମୋଟି କହିବାକୁ ଗଲେ ବଳରାମ କେତେବେଳେ ତାଙ୍କର ଅବତାର ରୂପରେ ହଳ, ମୂଷଳଧାରୀ ଦ୍ୱିଭୁଜରୂପ, ମସ୍ତକରେ ସର୍ପଫଣା, ଧବଳ ଶରୀର, ନୀଳାମ୍ବରଶୋଭୀ; ପୁଣି ଅନ୍ୟ ରୂପରେ ଚତୁର୍ଭୁଜ, ବିଷ୍ଣୁସ୍ୱରୂପ, ଫଣଶୋଭିତ ଏବଂ ହଳମୂଷଳଧାରୀ ଭାବରେ ରୂପାୟିତ ହୁଅନ୍ତି । ଏହାଠାରୁ ବିଚିତ୍ର କଥା ହେଉଛି, ଯେଉଁ ସଙ୍କର୍ଷଣ—ବଳରାମ ବା ବଳଭଦ୍ର ବିଷ୍ଣୁ ରୂପରେ ଥିବାବେଳେ ଗରୁଡ଼ ଆରୋହଣ କରିଥିବାର ମୂର୍ତ୍ତି ମଧ୍ୟ ଭାରତରେ ବିରଳ ନୁହେଁ । ତେଣୁ, ବୁଝିବସିଲେ ବଳରାମ ଓ ବିଷ୍ଣୁଙ୍କ ମଧ୍ୟରେ ପାର୍ଥକ୍ୟ ନାହିଁ ।

ଗରୁଡ଼ାରୋହୀ ବଳରାମଙ୍କର ଏକ ମୂର୍ତ୍ତି ଓସିଆନ (Osian) ଠାରେ ଆବିଷ୍କୃତ ହୋଇଛି । (On a projecting pillar of the Temple—No.-7.) । ବଳରାମଙ୍କର ଏହି ମୂର୍ତ୍ତି ଗରୁଡ଼ ଉପରେ ଆସୀନ । ମସ୍ତକରେ ପଞ୍ଚଫଣଛତ୍ର । (ଅନ୍ୟତ୍ର ସପ୍ତଫଣ ମଧ୍ୟ ଅଛି ।) ଏଠି ସେ ହୋଇଛନ୍ତି ଚତୁର୍ଭୁଜ । ଉପର ଭୁଜଦ୍ୱୟରେ ହଳମୂଷଳ ଧରିଛନ୍ତି । ନିମ୍ନସ୍ଥ ଏକ ହସ୍ତରେ ଧରିଛନ୍ତି ଏକ ଶୁଭ୍ରଶଙ୍ଖ । ଅନ୍ୟ ହସ୍ତଟି ବକ୍ଷ ନିକଟରେ ଜ୍ଞାନମୁଦ୍ରାରେ ଶୋଭିତ । ଏହା ହେଉଛି ବଳରାମଙ୍କର ସେହି ବ୍ୟୂହରୂପ (୭୫) । ଏଠି ସଙ୍କର୍ଷଣ ଅନନ୍ତରୂପୀ ହେଲେହେଁ ସେ ବାସୁଦେବ ବା କୃଷ୍ଣ-ବିଷ୍ଣୁ ଭାବରେ ରୂପାୟିତ । ଏ ରୂପରେ ଶଙ୍କର୍ଷଣଙ୍କଠାରେ ଅନନ୍ତବାସୁଦେବଙ୍କର ସଂମିଶ୍ରଣ ଘଟିଛି । ବଳରାମଙ୍କୁ ବାସୁଦେବ ଭାବରେ ରୂପାୟନ କରାଯିବା ପଛରେ ଯେ ଯେ ନିଜେ ସ୍ୱୟଂ

---

୭୦ । I. V—pp. 39 (See for the date of Vishnudharmottaram.)

୭୧ । ବିଷ୍ଣୁଧର୍ମୋତ୍ତରପୁରାଣ—ଅଧ୍ୟା/୮୫/୭୩ ।

୭୨ । ବୃହତ୍ ସଂହିତା—ଉଦ୍ଧୃତ—"ରୈବ କୁଣ୍ଡଳୀ"—
I. V.—pp. 140 (Note-64)

୭୩ । ମହାଭାରତ—ଆଦି/୧୧୯/୧୦-୨୪୦, ଶଲ୍ୟ/୬୩/୪୪, ୧୩ଣ/୧୪୭/୭୩୦ ।।

୭୪ । ଅଗ୍ନି ପୁରାଣ—୪୯/୬-୭ ।

୭୫ । R. G. Bhandarkar—Temples of Osian-Archaeological survey of India.-1908-1909pp. 106.

ବିଷ୍ଣୁ; ଏକଥା ପ୍ରମାଣିତ ହେଉଛି । ତେଣୁ ବିଷ୍ଣୁଙ୍କର ଦଶାବତାର ଗଣନାରେ ଅଷ୍ଟମ ଅବତାର ସ୍ଥାନରେ କେଉଁଠି ଶ୍ରୀକୃଷ୍ଣ (ବାସୁଦେବ)ଙ୍କୁ ନିଆଯାଇଛି ତ କେଉଁଠି ବଳରାମଙ୍କୁ ନିଆଯାଇଛି । ଜୟଦେବ ତ ଗୀତଗୋବିନ୍ଦରେ ବଳରାମଙ୍କୁ ଏହି କ୍ଷେତ୍ରରେ ବିଷ୍ଣୁଙ୍କର ଅବତାର ଭାବରେ ଗ୍ରହଣ କରିଛନ୍ତି (୭୫କ) । ଜଗନ୍ନାଥଙ୍କ ମନ୍ଦିରର ନାଟମନ୍ଦିରରେ ସେଥିପାଇଁ ଦଶାବତାର ମୂର୍ତ୍ତିମାନଙ୍କ ମଧ୍ୟରେ ଅଷ୍ଟମ ଅବତାର ଭାବରେ ବଳରାମଙ୍କୁ ସ୍ଥାନ ଦିଆଯାଇଛି । ଏହାର କାରଣ ହେଉଛି, ଶ୍ରୀକୃଷ୍ଣଙ୍କୁ ଅବତାରୀ ବୋଲି ସ୍ୱୀକାର କରାଯାଇ, ବଳରାମଙ୍କୁ ବିଷ୍ଣୁଙ୍କର ଅବତାର ବୋଲି ଗ୍ରହଣ କରାଯାଇଛି । ଏପରି ଭିନ୍ନତା ଥିଲେ ମଧ୍ୟ ବଳରାମ ତାଙ୍କର ବ୍ୟୂହରୂପରେ ଅନନ୍ତ ବାସୁଦେବଙ୍କର ଏକ ମିଳିତ ମୂର୍ତ୍ତି; ଏଥିରେ କିଛି ସନ୍ଦେହ ନାହିଁ । ଭିନ୍ନ ରୂପରେ ସେ ହେଉଛନ୍ତି ଅନନ୍ତ-ବାସୁଦେବ; ଅଭିନ୍ନ ରୂପରେ ସେ ହେଉଛନ୍ତି ବଳରାମ-ବିଷ୍ଣୁ ।

ମହାଭାରତ ଯୁଗରୁ ବଳରାମଙ୍କର ମୂର୍ତ୍ତିନିର୍ମାଣର ଗ୍ରନ୍ଥ ପ୍ରମାଣ ଥିଲେ ମଧ୍ୟ ଖ୍ରୀ: ପୂ: ପ୍ରଥମ ଶତାବ୍ଦୀଠାରୁ ବଳରାମଙ୍କର ମୂର୍ତ୍ତିମାନ ବର୍ତ୍ତମାନ ଦୃଷ୍ଟିଗୋଚର ହୋଇଥାଏ । ମଥୁରାରୁ ବଳରାମଙ୍କର ଖ୍ରୀ: ପୂ: ପ୍ରଥମ ଶତାବ୍ଦୀରେ ନିର୍ମିତ ଏକ ସୁନ୍ଦର ମୂର୍ତ୍ତି ମିଳିଅଛି ଓ ଏହା ଲକ୍ଷ୍ନୌ ସଂଗ୍ରହାଳୟରେ ସଂରକ୍ଷିତ ହୋଇଅଛି । ଏଥିରେ ବଳରାମ ଏକ ସର୍ପଫଣଛତ୍ର ତଳେ ଦଣ୍ଡାୟମାନ । ହସ୍ତରେ ରହିଛି ଆୟୁଧ ହଳ ଓ ମୂଷଳ (୭୬) । ଏହି ଶତାବ୍ଦୀରେ ନିର୍ମିତ ବଳରାମଙ୍କର ଅନ୍ୟ ଏକ ମୂର୍ତ୍ତି ବାରଣସୀର ଆଦିକେଶବ ଘାଟଠାରୁ ଆବିଷ୍କୃତ ହୋଇଛି ଓ ତାହା ଭାରତ କଳାଭବନ (ବାରାଣସୀ) ରେ ସଂରକ୍ଷିତ ହୋଇଛି । (No. 279) । ମଥୁରାରେ ମଧ୍ୟ ଅନୁରୂପ ଏକ ବଳରାମଙ୍କର ଅନନ୍ତମୂର୍ତ୍ତି ତନ୍ନତ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇଛି । ଏ ମୂର୍ତ୍ତିମାନଙ୍କୁ ଦେଖିଲେ ବଳରାମ ପୂଜା ମଧ୍ୟରେ ସେହି ଅନନ୍ତ ବା ଶେଷଙ୍କର ପୂଜାକୁ ଯୋଡ଼ା ଯାଇଥିଲା ପରି ମନେହୁଏ । ସର୍ପଫଣାତଳେ ଥିବା ବଳରାମ ବା ସଙ୍କର୍ଷଣଙ୍କ ଉପାସନା ଯେ ନାଗ ଉପାସନାର ପ୍ରଭାବରେ ପ୍ରଭାବିତ, ଏଥିରେ ସନ୍ଦେହ ନାହିଁ । ସେହିପରି ଶେଷ ନାରାୟଣ ଉପାସନାରେ ମଧ୍ୟ ନାଗଉପାସନାର ପ୍ରଭାବ ରହିଛି ।

ମଥୁରାର ସଂଗ୍ରହାଳୟରେ ବଳରାମଙ୍କର ଗୋଟିଏ ମୂର୍ତ୍ତି ସଂରକ୍ଷିତ ହୋଇଛି । ସର୍ପଫଣାତଳେ ବଳରାମ ବିରାଜମାନ କରିଛନ୍ତି । ବଳରାମଙ୍କ ମୂର୍ତ୍ତିର ସମସ୍ତ ଶାସ୍ତ୍ରୀୟ

---

୭୫କ । ଗୀତଗୋବିନ୍ଦମ୍—ଦଶାବତାର ସ୍ତୋତ୍ରମ୍—
"କେଶବ, ଧୃତ ହଳଧର ରୂପ, ଜୟ ଜଗଦୀଶ ହରେ ।"

୭୬ । I.V.-pp. 135

ଲକ୍ଷଣ ତାଙ୍କଠାରେ ପରିଷ୍ଫୁଟ । ଏହି ମୂର୍ତ୍ତିଟି ଖ୍ରୀ: ଅ: ୩ୟ ଶତାବ୍ଦୀରେ ନିର୍ମିତ (୭୭) । ପଞ୍ଚମ ଶତାବ୍ଦୀରେ ଖୋଦିତ ଏକ ବଳରାମ ମୂର୍ତ୍ତି ଗ୍ୱାଲିୟର ମ୍ୟୁଜିୟମରେ ସଂରକ୍ଷିତ ହୋଇଛି । ପଞ୍ଚଫଣଛତ୍ରତଳେ ଏ ମୂର୍ତ୍ତି ବିରାଜମାନ । ହାତରେ ହଳମୂଷଳ ଓ ମଦ୍ୟପାତ୍ର । ଚତୁର୍ଥ ଭୁଜ କଟି ଦେଶରେ ନ୍ୟସ୍ତ (୭୮) । ଅଷ୍ଟମ ଶତାବ୍ଦୀରେ ନିର୍ମିତ ଏକ ଚତୁର୍ଭୁଜ ବଳରାମ ମୂର୍ତ୍ତି ପାହାଡ଼ପୁରରୁ ମିଳିଅଛି । ସେ ତାଙ୍କର ଉପରିସ୍ଥ ହସ୍ତଦ୍ୱୟରେ ହଳମୁଷଳ ଧାରଣ କରିଛନ୍ତି । ଏକ ନିମ୍ନସ୍ଥହସ୍ତରେ ଧରିଛନ୍ତି ମଦ୍ୟପାତ୍ର, ଆଉ ଅନ୍ୟ ହସ୍ତଟି କଟି-ଦେଶରେ ନ୍ୟସ୍ତ । ମସ୍ତକ ଦେଶରେ ସପ୍ତଫଣଛତ୍ର ରହିଛି (୭୯) । ନବମଶତାବ୍ଦୀରେ ନିର୍ମିତ ଏକ ଚତୁର୍ଭୁଜ ବଳରାମ ମୂର୍ତ୍ତି ବରୋଦାରୁ ଉପଲବ୍ଧ ହୋଇ ଗ୍ୱାଲିୟର ମ୍ୟୁଜିୟମରେ ସଂରକ୍ଷିତ ହୋଇଛି (୮୦) ଦଶମ ଶତାବ୍ଦୀରେ ନିର୍ମିତ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରରେ ଅନନ୍ତ (ବଳରାମ) ବାସୁଦେବ କୃଷ୍ଣ ଓ ସୁଭଦ୍ରାଙ୍କ (ଏକାନଂଶା)ଙ୍କ ସହିତ ପୂଜିତ ହେଲେ । ଏହି ମୂର୍ତ୍ତିଟି ମଧ୍ୟ ବଳରାମଙ୍କର ସେହି ବ୍ୟୂହମୂର୍ତ୍ତି ଏବଂ ଅନନ୍ତ ମୂର୍ତ୍ତି ଭାବରେ ଏହା ସପ୍ତଫଣାର ଛତ୍ରତଳେ ଦଣ୍ଡାୟମାନ (୮୧) । ଏକାଦଶ ଶତାବ୍ଦୀରେ ନିର୍ମିତ ବଳରାମଙ୍କର ମୂର୍ତ୍ତି ବଙ୍ଗଳାର ରାଜସାହିରେ ବରେନ୍ଦ୍ର ରିସର୍ଚ୍ଚ ସୋସାଇଟିର ସଂଗ୍ରହାଳୟରେ ସଂଗୃହୀତ ହୋଇଅଛି । ଏ ମୂର୍ତ୍ତି ମଧ୍ୟ ସର୍ପଫଣ ତଳେ ବିରାଜମାନ ଓ ବଳରାମ ମୂର୍ତ୍ତିର ସମସ୍ତ ଲକ୍ଷଣ ଏହାଙ୍କଠାରେ ରହିଅଛି (୮୨) । ଏହିପରି ଭାବରେ ବଳରାମ ଓ (ଅନନ୍ତ)ଙ୍କର ପୂଜା ଖ୍ରୀ: ପୂ: ପ୍ରଥମ ଶତାବ୍ଦୀଠାରୁ ଆରମ୍ଭ-କରି ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଓ ତାହାପରେ ମଧ୍ୟ ଚାଲିଥିବାର ବହୁଳ ପ୍ରମାଣ ରହିଅଛି ।

---

୭୭ । I.V.-pp. 135.

୭୮ । Annual Administrative Report of the Dept. of Archaeology, Gwalior—1929. Plate—iv.d.

୭୯। I.V.—pp.135.

୮୦ । Annual Administrative Report of the Dept. of Archaeology. Gwalior—1933—34. pp. 104.

୮୧ । C.J—Plate. No. 7.
C.J.R.T.O.—Plate. No. 44.

୮୨ । S.K. Saraswati—Early sculpture of Bengal—Calcutta—1962—pp.57.

ଏକଦିଗରେ ବାସୁଦେବଙ୍କର ଉପାସନା, ଅନ୍ୟ ଦିଗରେ ସଙ୍କର୍ଷଣ, ବଳରାମ ବା ଅନନ୍ତଙ୍କର ଉପାସନା ଓ ଉଭୟ ମିଶି ଅନନ୍ତ ବାସୁଦେବଙ୍କର ଉପାସନା ଏ ଦେଶର ଧର୍ମଧାରାରେ ଅନେକ ଦିନରୁ ପ୍ରବାହିତ ହେଉଥିଲା। ଖଣ୍ଡଗିରିର (Cave. No.7) ଗୋଟିଏ ଗୁମ୍ଫାରେ ସପ୍ତଫଣ ଅନନ୍ତ ଖ୍ରୀ: ପୂ: ୨ୟ ଶତାବ୍ଦୀଠାରୁ ଓଡ଼ିଶାରେ ଖୋଦିତ ହୋଇଛନ୍ତି। ହେଲେ, ଏ ମୂର୍ତ୍ତି ବଳରାମ ନୁହନ୍ତି। ଯେତେବେଳେ ଅନନ୍ତ ପୂଜା ଯାରାଭାରତରେ ଲୋକପ୍ରିୟତା ଅର୍ଜନ କଲା, ତାକୁ ବୌଦ୍ଧ ଓ ଅନ୍ୟାନ୍ୟ ଧର୍ମାବଲମ୍ବୀ-ମାନେ ନିଜ ନିଜ ଧର୍ମରେ ଅନ୍ତର୍ଭୁକ୍ତ କରିଦେଲେ। ତେଣୁ ଭୁବନେଶ୍ୱରର ଖଣ୍ଡଗିରି-ଠାରେ ଥିବା ଏ ମୂର୍ତ୍ତିଟି ହଳମୁଷଳଧାରୀ ବଳରାମ ନହୋଇ ଏକ ଜୈନମୂର୍ତ୍ତି ଭାବରେ ଉପସ୍ଥାପିତ ହୋଇଛନ୍ତି (୮୩)। ସପ୍ତଫଣଛତ୍ରତଳେ ଏ ଧ୍ୟାନସ୍ଥ ମୂର୍ତ୍ତିଟି ବିରାଜମାନ। ସେହି ଭୁବନେଶ୍ୱରରେ ଏକ ପ୍ରାଚୀନତମ ଅନନ୍ତ ଓ ବାସୁଦେବ ମୂର୍ତ୍ତି ବିନ୍ଦୁସାଗର ପ୍ରାଚୀର ବନ୍ଧରେ ପୂଜିତ ହେଉଥିବାର ଦେଖାଯାଏ। ଏହି ମୂର୍ତ୍ତିଦ୍ୱୟ ସୋମବଂଶୀ ରାଜା (ଚନ୍ଦ୍ର) ଚଣ୍ଡିହେଶ୍ୱର (୮୪) ଦଶମ ଶତାବ୍ଦୀରେ ବିନ୍ଦୁସାଗର ପୁଷ୍କରିଣୀ ଖୋଳାଇ-ବାର ଅନେକ ପୂର୍ବରୁ ପୂଜିତ ହେଉଥିବାର ଜଣାଯାଏ। ଶକ୍ତିପୂଜାର ପ୍ରଭାବରେ ଅନନ୍ତ ବାସୁଦେବଙ୍କ ସହିତ କ୍ରମେ ଏକ ଦେବୀମୂର୍ତ୍ତି ପୂଜିତ ହେଲେ।

**ଏକାନଂଶା—**

ଏହି ଦେବୀ ମୂର୍ତ୍ତିଙ୍କୁ ଏକାନଂଶା ବୋଲି କୁହାଯାଇପାରେ। ଏକାନଂଶାଙ୍କୁ ଦୁର୍ଗାଭାବରେ ପୂଜା କରିବାର ବିଧି ମହାଭାରତ ଯୁଗରୁ ପ୍ରଚଳିତ (୮୫)। ସେହି ସମୟରେ ଏକାନଂଶାଙ୍କୁ ବିଷ୍ଣୁ କୃଷ୍ଣ ବା ବାସୁଦେବଙ୍କ ସହିତ ପୂଜା କରାଯାଉଥିଲା। ମହାଭାରତର ହରିବଂଶ ପର୍ବରେ ତାଙ୍କୁ ଯଶୋଦାଙ୍କର ଝିଅ (ବ୍ରଜକନ୍ୟା) ଭାବରେ ବର୍ଣ୍ଣନା କରା-ଯାଇଛି। କଂସ ଏହାଙ୍କୁ ଧରି ନେଇ କରିଥିଲା; କିନ୍ତୁ ସେ ଯୋଗମାୟା ଦୁର୍ଗା ବା ଆଦିଶକ୍ତି ଥିବାରୁ କଂସ ହାତରୁ ଖସିଯାଇ ଶୂନ୍ୟକୁ ଚାଲିଗଲେ। ବିଷ୍ଣୁପୁରାଣରେ ତାଙ୍କୁ ନିଦ୍ରାଦେବୀ ବା ଯୋଗନିଦ୍ରା ବୋଲି ବର୍ଣ୍ଣନା କରାଯାଇଛି। ସେ ହେଉଛନ୍ତି, ମହାଶକ୍ତି ଶୁମ୍ଭନିଶୁମ୍ଭଙ୍କର ହତ୍ୟାକାରିଣୀ ଦୁର୍ଗା ଏବଂ ଅନ୍ୟ ଭାବରେ ତାଙ୍କୁ କ୍ଷାନ୍ତି, କାନ୍ତି, ଧୃତି, ଆକାଶ, ପୃଥିବୀ, ଲଜ୍ଜା, ପୁଷ୍ଟି, ଉଷା, ଆର୍ଯ୍ୟା, ବେଦଗର୍ଭା, ଅମ୍ବିକା, ଭଦ୍ରା, ଭଦ୍ରକାଳୀ, କ୍ଷେମଦା ଓ ଭାଗଦା ବୋଲି କୁହାଯାଇଛି (୮୬)। ଯେତେବେଳେ ତାଙ୍କୁ

---

୮୩। ଖଣ୍ଡଗିରି—(ନବମୁନିଗୁମ୍ଫା—(Cave. No.7.)

୮୪। The Land of Vishnu—pp. 31.32,201.

୮୫। The Cult of Ekanamsa—I.H.Q· Vol. XXXV.—
No. 3, 1959. pp. 189.

୮୬। ବିଷ୍ଣୁପୁରାଣ—୫ମ/୧/୮୧-୮୩।

ବିଷ୍ଣୁଙ୍କ ସହିତ ପୂଜା କରାଗଲା, ତାଙ୍କୁ ଦୁର୍ଗା ବା ଏକାନଂଶା ବୋଲି ବିଗ୍ଣର କରା ନଯାଇ ବୈଷ୍ଣବୀ ଶକ୍ତି 'ଭଦ୍ରା' ଭାବରେ ବା ମଙ୍ଗଳମୟୀ ରୂପେ ପୂଜା କରାଗଲା । ବଳରାମଙ୍କର ସୁଭଦ୍ରା ବୋଲି ଯେଉଁ ଭଗିନୀ ଥିଲେ ଓ ଯାହାଙ୍କୁ ଅର୍ଜ୍ଜୁନ ବିବାହ କରିଥିଲେ, ପରେ ତାଙ୍କୁ ସେହି ସୁଭଦ୍ରା ନାମରେ ଅଭିହିତ କରାଗଲା । ହେଲେ, ସେ ସୁଭଦ୍ରା ହେଲେ ମଧ୍ୟ ପରେ ଆଉ ଏକାନଂଶା-ଦୁର୍ଗା ଭାବରେ ବିଗ୍ଣର କରାଗଲା ନାହିଁ । ବୈଷ୍ଣବୀ ଶକ୍ତି ହୋଇ-ଥିବାରୁ ତାଙ୍କୁ ମଦ୍ୟମାଂସ ଉପହାର ଦିଆଗଲା ନାହିଁ । ବିଷ୍ଣୁ ପୁରାଣରେ ତ ତାଙ୍କୁ ମଦ୍ୟ ମାଂସ ଉପହାର ଦିଆଯିବାର ବିଧି ଥିଲା (୮୭) । ଯେ ଯାହାହେଉ, ଏହି ଶକ୍ତି ମୂର୍ତ୍ତି କୃଷ୍ଣ ବଳରାମ ବା ଅନନ୍ତବାସୁଦେବଙ୍କ ମଧ୍ୟରେ ବସି ବୈଷ୍ଣବୀ ଶକ୍ତି ଭାବରେ ପୂଜା ପାଇଲେ । ସେ ଖାଲି ଦୁର୍ଗା ଭାବରେ କଳ୍ପିତ ହେଲେ ନାହିଁ, ଲକ୍ଷ୍ମୀ ଭାବରେ ମଧ୍ୟ ପରିକଳ୍ପିତ ହେଲେ । ଅଷ୍ଟମଶତାବ୍ଦୀରେ ସ୍କନ୍ଦପୁରାଣର ଉତ୍କଳଖଣ୍ଡ ଏହି ତତ୍ତ୍ୱକୁ ବିସ୍ତୃତ ଭାବରେ ପ୍ରଗ୍ଣର କଲା (୮୮) । ଅତଏବ କୃଷ୍ଣ-ବଳରାମଙ୍କର ମଧ୍ୟରେ ଥିବା ମୂର୍ତ୍ତିଟି ସଂପୂର୍ଣ୍ଣ ଶକ୍ତିମୟୀ ଦୁର୍ଗା ବା ଭୁବନେଶ୍ୱରୀ ନୁହନ୍ତି କି ସଂପୂର୍ଣ୍ଣ ଲକ୍ଷ୍ମୀ ମଧ୍ୟ ନୁହନ୍ତି । ସେ ହେଉଛନ୍ତି ଏହି ଦୁଇ ତତ୍ତ୍ୱର ଏକ ମିଳିତ ସମାହାର ବିଗ୍ରହ । ତାଙ୍କୁ ଏକାନଂଶା (ଦୁର୍ଗା) ବୋଲି ଯେତିକି ଚିନ୍ତା କରାଯାଇଛି ସୁଭଦ୍ରା ବୋଲି ସେତିକି ଚିନ୍ତା କରାଯାଇଛି ଓ ଲକ୍ଷ୍ମୀ ବୋଲି ସେତିକି ବିଗ୍ଣର କରାଯାଉଛି । କିନ୍ତୁ ମୋଟଉପରେ ଦେଖିଲେ, ସେ ହେଲେ ଏକ ବୈଷ୍ଣବୀ ମହାଶକ୍ତି । ବୈଷ୍ଣବମାନଙ୍କ ପାଇଁ ସେ ହେଉଚନ୍ତି ନିରାମିଷଭୋଗୀ ବୈଷ୍ଣବୀ-ଶକ୍ତି ଏବଂ ଶୁଦ୍ଧ ଶାକ୍ତ (ଦୁର୍ଗାଙ୍କର ଉପାସକ)ମାନଙ୍କ ପାଇଁ ବିମଳା ହେଉଛନ୍ତି ଆମିଷଭୋଗୀ ଶୈବୀ-ଶକ୍ତି । ସୂକ୍ଷ୍ମ ଭାବରେ ଦେଖିଲେ, ଶୈବୀଶକ୍ତିଙ୍କୁ ବୈଷ୍ଣବୀ ଶକ୍ତି ଭାବରେ ସୁଭଦ୍ରାଙ୍କ-ଠାରେ ଉପସ୍ଥାପନା କରାଯାଇଛି । ତେଣୁ ତାଙ୍କୁ ସୁଭଦ୍ରା (ମଙ୍ଗଳମୟୀ) ଭାବରେ ଆହ୍ୱାନ କରି ମଧ୍ୟ ନାରାୟଣୀ, ଭଦ୍ରକାଳୀ, କାତ୍ୟାୟନୀ ଇତ୍ୟାଦି ଶୈବୀ ଓ ବୈଷ୍ଣବୀ ଶକ୍ତିର ସମନ୍ୱୟ ଭାବରେ ସମ୍ବୋଧନ କରାଯିବାର ପୁରାଣମାନଙ୍କରେ ଦୃଷ୍ଟାନ୍ତ ରହିଛି (୮୯) ।

ସୁଭଦ୍ରା ପୁରାପୁରି ଏକାନଂଶା ନହେଲେ ମଧ୍ୟ ତାଙ୍କଠାରେ ଯେ ଏକାନଂଶା ଉପାସନାର ପ୍ରଭାବ ନାହିଁ, ସେକଥା ନୁହେଁ । କୃଷ୍ଣ ବଳରାମ ବା ଜଗନ୍ନାଥ ବଳଭଦ୍ରଙ୍କ

୮୭ । ବିଷ୍ଣୁପୁରାଣ—୫ମ/୧/୮୪-୮୭ ।

୮୮ । C.J.—pp—216—ସ୍କନ୍ଦ—ପୁ: ମା:—୧୯/୧୧—
ଲକ୍ଷ୍ମୀ ପ୍ରାଦୁର୍ବଭୂବେୟଂ ସବ ଚୈତନ୍ୟ ରୂପିଣୀ ।

୮୯ । C.J.R.T.O—pp.182;
ସ୍କନ—ପୁ:ମା:—୨୭/୫୭—
"ଭଦ୍ରା ଭଦ୍ରସ୍ୱରୂପେ ତ୍ୱଂ ଭଦ୍ରକାଳୀ ନମୋଽସ୍ତୁତେ" ।।

ମଧ୍ୟରେ ସୁଭଦ୍ରା ଯେପରି ଅବସ୍ଥାପିତ ହୋଇଛନ୍ତି, ସେହିପରି କୃଷ୍ଣ ଓ ବଳରାମଙ୍କ ମଧ୍ୟରେ ଏକାନଂଶା ରହି ପୂଜିତ ହେବାର ବିଧି ତାହା ପ୍ରାଚୀନ ଯୁଗରୁ ପ୍ରଚଳିତ ଅଛି । ପ୍ରାୟ ପଞ୍ଚମ-ଷଷ୍ଠଶତକରେ ବରାହମିହିର ତାଙ୍କର ବୃହତ୍ ସଂହିତାରେ ଏକାନଂଶା, କୃଷ୍ଣ ଓ ବଳରାମଙ୍କର ମଧ୍ୟରେ ରହି ପୂଜା ପାଇବା ପାଇଁ ଉପଦେଶ ଦେଇଛନ୍ତି (୯୦) । ତାଙ୍କର ବହୁ ପୂର୍ବରୁ ତଥା ଖ୍ରୀଷ୍ଟ ପୁରାଣାଦିର ପୂର୍ବରୁ ହରିବଂଶରେ କୁହାଯାଇଛି, ଏକାନଂଶାଙ୍କର ବର୍ଣ୍ଣ ହେଉଛି କୃଷ୍ଣଙ୍କ ଭଳି କଳା ଏବଂ ମୁଖର ଆକୃତି ହେଉଛି ବଳରାମଙ୍କ ପରି (୯୧) । ସ୍କନ୍ଦ ପୁରାଣର ସେହି ଅନୁରୂପ ବର୍ଣ୍ଣନା ମଧ୍ୟ ସୁଭଦ୍ରାଙ୍କୁ ଏକାନଂଶାଙ୍କର ଏକ କ୍ରମପରିଣାମ ବୋଲି ସୂଚନା ଦିଏ (୯୨) । ବୃହତ୍ ସଂହିତାର ବର୍ଣ୍ଣନା ଅନୁସାରେ ଏକାନଂଶାଙ୍କର ଦୁଇଟି ହାତ ଥିବାର ଜଣାଯାଏ । ସେ ଗୋଟିଏ ହାତରେ ପଦ୍ମଫୁଲ ଧରିଥାନ୍ତି ଓ ଅନ୍ୟ ଭୁଜଟି କଟିଦେଶରେ ନ୍ୟସ୍ତ ଥାଏ । କିନ୍ତୁ ସୁଭଦ୍ରାଙ୍କର ହସ୍ତ ପ୍ରକାଶିତ ନୁହେଁ । ସେ ଦାରୁବ୍ରହ୍ମଙ୍କ ଭଳି ବହ୍ମସ୍ୱରୂପା ହୋଇଥିବାରୁ 'ଅପାଣିପାଦ' ହୋଇଛନ୍ତି । ମାତ୍ର ପରେ ବଳଦେବଜୀ ମନ୍ଦିର (କେନ୍ଦ୍ରାପଡ଼ାରେ) ଥିବା ସୁଭଦ୍ରାମୂର୍ତ୍ତିରେ ଗୋଟିଏ ହାତ ଥିବାର ଦେଖାଯାଏ । ଏହାର କାରଣ ହେଉଛି, ସୁଭଦ୍ରା ଏକ ସ୍ତ୍ରୀ ମୂର୍ତ୍ତି ହୋଇଥିବାରୁ ଭାରତୀୟ ନାରୀଙ୍କର ଶାଢ଼ୀପିନ୍ଧା ଢଙ୍ଗରେ ତାଙ୍କର ଗୋଟିଏ ହାତ ଶାଢ଼ୀତଳେ ଅଦୃଶ୍ୟ ଭାବରେ ଅଛି ଓ ଅନ୍ୟହାତଟି ବାହାରକୁ ଦେଖାଯାଉଛି । ଭାରତରେ ତଥା ଓଡ଼ିଶାରେ କନ୍ୟାକୁ ବିବାହକାଳରେ କନ୍ୟାବେଶରେ ସଜାଇ ଥିବାବେଳେ ଶାଢ଼ୀ ଓ ବେହରଣ ମଧ୍ୟରେ କନ୍ୟାଟିର ଉଭୟ ହାତ ଲୁଚିଯାଇଥାଏ । ସୁଭଦ୍ରା ସ୍ତ୍ରୀ ଜାତିର ପ୍ରତିନିଧିତ୍ୱ କରୁଥିବାରୁ (୯୩) ତାଙ୍କର ଭୁଜଦ୍ୱୟକୁ ଶାଢ଼ୀ ତଳେ ଗୋପ୍ୟ କରିବାର ଚିନ୍ତାଧାରା ଯେ ତାଙ୍କର ଭୁଜହୀନ ମୂର୍ତ୍ତିର ପରିକଳ୍ପନାରେ ନଥିବ ସେ କଥା କିଏ କହିବ ?

---

୯୦ । ବୃହତ୍‌ସଂହିତା—୫୮/୩୭—

ଏକାନଂଶା କାର୍ଯ୍ୟାଦେବୀ ବଳଭଦ୍ର କୃଷ୍ଣୟୋର୍ମଧ୍ୟେ ।
କଟି ସଂସ୍ଥିତବାମକରା ସରୋଜମିତରେଣ ଚୋଦ୍ୱହତି ॥

୯୧ । ହରିବଂଶମ୍—୨ୟ/୨୪୦—

ମଚ୍ଛବୀ ସଦୃଶୀ କୃଷ୍ଣା ସଙ୍କର୍ଷଣ ସମାନନା ।

୯୨ । ସ୍କନ୍ଦ—ପୁ: ମା:—୧୯/୧୨,୧୪—

ବଳଭଦ୍ରାକୃତେର୍ଜାତା ବଳରୂପସ୍ୟ ଶକ୍ତିନାତ୍ ॥୧୨॥
ଭଗିନୀ ବଳଦେବସ୍ୟ ଇତ୍ୟେଷା ପୌରାଣିକୀ କଥା ॥୧୩॥

୯୩ । ସ୍କନ୍ଦ: ପୁ: ମା:—୨୬/୫୮—

ସ୍ତ୍ରୀରୂପଂ ତ୍ୱଂ ସର୍ବମେବ ପୁଂରୂପୋ ଜଗଦୀଶ୍ୱରଃ ।

ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିରୁ ଦେଖିଲେ, କୃଷ୍ଣ, ବଳରାମ ଓ ଏକାନଂଶାଙ୍କର ମୂର୍ତ୍ତିମାନ ପ୍ରଥମ ଶତାବ୍ଦୀର ବହୁପୂର୍ବରୁ ଉପଲବ୍ଧ ହୋଇଛି । ପ୍ରଥମ ଶତାବ୍ଦୀରେ ନିର୍ମିତ କୃଷ୍ଣ, ବଳରାମ ଓ ଏକାନଂଶାଙ୍କର ଏକ ମୂର୍ତ୍ତିପଟ୍ଟ ମଥୁରାରୁ ଉପଲବ୍ଧ ହୋଇ ବର୍ତ୍ତମାନ କରାଚୀ ମ୍ୟୁଜିୟମରେ ସଂରକ୍ଷିତ ହୋଇଛି (୯୦) । ଏଲୋରାରେ ସପ୍ତମ ଶତାବ୍ଦୀରେ ନିର୍ମିତ ଅନୁରୂପ ମୂର୍ତ୍ତିମାନ ମଧ୍ୟ ଉପଲବ୍ଧ ହୋଇଛି (୯୫) । ଏହି ଶତାବ୍ଦୀରେ ନିର୍ମିତ ଏକ ସୁନ୍ଦର ମୂର୍ତ୍ତି ଲକ୍ଷ୍ନୌ ମ୍ୟୁଜିୟମରେ ସଂରକ୍ଷିତ ହୋଇଛି (୯୬) । ଏଥିରେ ଏକାନଂଶା କୃଷ୍ଣ ବଳରାମଙ୍କ ମଧ୍ୟରେ ଦଣ୍ଡାୟମାନା । ବାମ ହାତରେ ରହିଛି ଏକ ସୁନ୍ଦର ପଦ୍ମପୁଷ୍ପ ଏବଂ ଦକ୍ଷିଣଭୂଜଟି କଟିଦେଶରେ ନଥାଇ ଜଣେ ପରିଚାରିକାଙ୍କର ମସ୍ତକଦେଶରେ ଅବସ୍ଥାପିତ । ଏକାଦଶ ଓ ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ଦୁଇଟି ପ୍ରେସ୍ତରର ଏକାନଂଶା ଓ କୃଷ୍ଣବଳରାମଙ୍କ ମୂର୍ତ୍ତି ଉତ୍ତରପ୍ରଦେଶର ଏଟା (Etah)ରେ ଓ ବିହାରର ଇମାଦପୁରରେ ମିଳିଅଛି (୯୭) । ଓଡ଼ିଶା ଷ୍ଟେଟ୍ ମ୍ୟୁଜିୟମ, ଭୁବନେଶ୍ୱରରେ ଏକ ବ୍ରୋଞ୍ଜ ବା (Brass) ବା ପିତ୍ତଳର କୃଷ୍ଣ, ବଳରାମ, ଏକାନଂଶାଙ୍କର ମୂର୍ତ୍ତି ସଂରକ୍ଷିତ ହୋଇଛି (୯୮) । କେଦାରନାଥ ମହାପାତ୍ରଙ୍କ ମତରେ ଏହା ସପ୍ତମ, ଅଷ୍ଟମ ଶତାବ୍ଦୀର ମୂର୍ତ୍ତି ହୋଇପାରେ । କିନ୍ତୁ ତାଙ୍କର ଏହି ସମସ୍ତ ନିର୍ଦ୍ଧାରଣକୁ ସମାଲୋଚକ କୁଲକେ, ଜି. ସି. ତ୍ରିପାଠୀ ପ୍ରଭୃତି ଅସ୍ୱୀକାର କରିଛନ୍ତି । ସେମାନେ କହନ୍ତି ଓଡ଼ିଶାରେ ଏୟୋଦଶ ଶତାବ୍ଦୀ ପୂର୍ବରୁ ଜଗନ୍ନାଥଙ୍କର ତ୍ରିମୂର୍ତ୍ତି (ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା) ମୋଟେ ନଥିଲେ ଓ ଏକାନଂଶା ମଧ୍ୟ ନଥିଲେ ।

---

୯୪ । C. J. R. T. O.—pp. 180. O. H. R. J.—'Misterious Darubrahm'—Dr. G. Mohapatra.

୯୫ । Krishna kumar, An Ekanamsa relief at Ellora—Journal of Indian History. Vol-44, 3, 831-838—Vidi Cl J. R, T. O—pp. 180. (N. 21)

୯୬ । I. V.—Plate. No.102

୯୭ । ଶ୍ରୀ କେଦାରନାଥ ମହାପାତ୍ର—'The Worship of Jagannath, Balabhadra and Subhadra—in—Sri Jagannath Smaranika Delhi—1969—pp. 49

୯୮ । C. J.—pp. 217 (Bronze image—according to Dr. K. C. Mishra)
C. J. R. T. O—pp-180—(Brass Plate—according to K. N. Mohapatra)—7·5cm. × 7·5cm. in size)

ସେମାନଙ୍କ ପାଣ୍ଡିତ୍ୟପୂର୍ଣ୍ଣ ଉକ୍ତିଟି ଏହି:—"There is no definite sign of the existence of any Jagannath or the so called Ekanaṁsa, Trinity in **Orissa** before the begining of the 13th century."—"(cf. Kulke 1973 and p. 195ff. bellow in this article)." (୯୯) ମାତ୍ର ଓଡ଼ିଶାରେ କୁହାଯାଉଥିବା ପ୍ରସିଦ୍ଧ ଐତିହାସିକ (୧୦୦) କୁଲ୍‌କେ ଓ ତାଙ୍କ ସହଯୋଗୀ ପଣ୍ଡିତମାନଙ୍କର ଏ ଉକ୍ତି ଅତ୍ୟନ୍ତ ଭ୍ରମସ୍ମାକ; ଏଥିରେ ତିଳେହେଲେ ସନ୍ଦେହ ନାହିଁ ।

ଅଷ୍ଟମ ଶତାବ୍ଦୀବେଳକୁ ମୁରାରି ମିଶ୍ର ଅନର୍ଘ ରାଘବ ଲେଖିବା ସମୟରେ ପୁରୁଷୋତ୍ତମକ୍ଷେତ୍ର ପ୍ରସିଦ୍ଧ ହୋଇସାରିଥିଲା ଓ ପୁରୁଷୋତ୍ତମଙ୍କର ଯାତ୍ରା ଦେଖିବାପାଇଁ ସାମୁଦ୍ରିକପଥରୁ ହଜାର ହଜାର ଲୋକ ଆସି ଏହି କ୍ଷେତ୍ରରେ ଲୁଣ୍ଠ ହେଉଥିଲେ ବୋଲି ତହିଁରେ ସ୍ପଷ୍ଟ ଉଲ୍ଲେଖ ଅଛି । କିନ୍ତୁ ଉପରୋକ୍ତ ସମାଲୋଚକମାନେ ଭାବନ୍ତି ଯେ, ଯେତେବେଳେ କ୍ଷେତ୍ରର ନାମ ପୁରୁଷୋତ୍ତମ ବୋଲି ଲେଖାଅଛି, ସେତେବେଳେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏଠାରେ ପୂଜିତ ହେଉଥିବାର ପ୍ରମାଣ କ'ଣ ? ଏହାର ଅନେକ ଗ୍ରନ୍ଥପ୍ରମାଣ ରହିଛି ବୋଲି ପୂର୍ବ ଅଧ୍ୟାୟରେ ଆଲୋଚନା କରାଯାଇଛି । ମତ୍ସ୍ୟପୁରାଣଠାରୁ ଆରମ୍ଭକରି ସ୍କନ୍ଦପୁରାଣର ଉତ୍କଳଖଣ୍ଡକୁ ଗମ୍ଭୀରଭାବରେ ଅନୁଧ୍ୟାନ କଲେ ଆମେ ନିଶ୍ଚୟ ଅବଗତ ହେବା ଯେ ଅନ୍ତତଃ ଅଷ୍ଟମ ଶତାବ୍ଦୀବେଳକୁ କୃଷ୍ଣ, ବଳଭଦ୍ର, ସୁଭଦ୍ରା, ଶିଳାବ୍ରହ୍ମ (ଅନନ୍ତ, ବାସୁଦେବ, ଏକାନଂଶା) ଓ ଦାରୁବ୍ରହ୍ମ (ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା) ଭାବରେ ପୂଜିତ ହେଲେଣି । ପୂର୍ବରୁ ଗ୍ରନ୍ଥ ପ୍ରମାଣମାନ ଆଲୋଚିତ ହୋଇଥିବାରୁ ଏଠାରେ ସେଗୁଡ଼ିକୁ ପୁଣି ଚର୍ବିତ ଚର୍ବଣ କରିବା ଅନାବଶ୍ୟକ । ତେବେ ଏହା ଥିର ନିଶ୍ଚିତ ଯେ ତ୍ରୟୋଦଶ ଶତକ ପୂର୍ବରୁ ଓଡ଼ିଶାରେ କୃଷ୍ଣବଳରାମ ପୂଜା ଓ କୃଷ୍ଣ, ବଳରାମ, ଏକାନଂଶା ପୂଜା ତଥା ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କର ଉପାସନା ଚାଲିଛି ଏବଂ ପୁରୀ ମନ୍ଦିରରେ ତ୍ରିମୂର୍ତ୍ତି ବା ଚତୁର୍ଦ୍ଧା ମୂର୍ତ୍ତିର ଉପାସନା ଥିଲେ ମଧ୍ୟ କୃଷ୍ଣପୁରୁଷୋତ୍ତମ ବା ଜଗନ୍ନାଥଙ୍କ ନାମରେ ସର୍ବଦା କ୍ଷେତ୍ରକୁ ଓ ମନ୍ଦିରକୁ ଅଭିହିତ କରାଯିବାର ପରମ୍ପରା ରହିଛି । କାରଣ, ମହାଭାରତ ଯୁଗରୁ ଶ୍ରୀକୃଷ୍ଣ ସ୍ୱୟଂ ପରଂବ୍ରହ୍ମ ଭାବରେ ଅଭିହିତ ହେବା ଦିନଠାରୁ ତାଙ୍କର ମହତ୍ତ୍ୱ ବଢ଼ିଯାଇ ତାଙ୍କରି ନାମରେ ହିଁ ପରଯୁଗରେ କ୍ଷେତ୍ରଟି ନାମିତ ହେବା ଅସ୍ୱାଭାବିକ ନୁହେଁ । ମାତ୍ର ଏହା ବୋଲି ଯେ ତାଙ୍କ (ପୁରୁଷୋତ୍ତମଙ୍କ) ସହିତ ଆଉ କେହି ଉପାସିତ ହେଉନଥିଲେ ଏପରି ଭାବିବା ବୃଥା । କାରଣ, ବର୍ତ୍ତମାନ ମଧ୍ୟ ଏହାକୁ 'ଜଗନ୍ନାଥ ମନ୍ଦିର' ବୋଲି କୁହାଯାଉଥିଲେ ହେଁ ଏଠାରେ ଚତୁର୍ଦ୍ଧା ମୂର୍ତ୍ତି ପୂଜିତ ହେଉଛନ୍ତି ।

୯୯ । C. J. R. T.O—pp.181(First para)
୧୦୦ । ସମାଜ—ତା ୯ । ୯ । ୮୦—ପୃ-୭

ବଳରାମ କୃଷ୍ଣଙ୍କର ଅଗ୍ରଜ ହୋଇଥିବାରୁ ପରେ ପରେ ଅନେକ (ଜଗନ୍ନାଥ) ମନ୍ଦିରକୁ ମଧ୍ୟ ତାଙ୍କ ନାମରେ ନାମିତ କରାଯାଇଛି । ପ୍ରାଚୀନ ମନ୍ଦିରମାନଙ୍କ ମଧ୍ୟରେ ଏପରି ସାକ୍ଷ୍ୟ ଦିଏ, ବାଲିପାଟଣା ଥାନାର ଭୁବନେଶ୍ୱର ଗ୍ରାମର 'ବଳରାମ ମନ୍ଦିର' । ଏହା ମଧ୍ୟ ତ୍ରୟୋଦଶ ଶତାବ୍ଦୀର ପୂର୍ବର କୀର୍ତ୍ତି । ଗଙ୍ଗରାଜାମାନଙ୍କର ଦ୍ୱାଦଶ ତାମ୍ରଫଳକରୁ ଜଣାଯାଏ ଯେ, ବର୍ତ୍ତମାନର ଜଗନ୍ନାଥ ମନ୍ଦିର ପୁରୀଠାରେ ଖ୍ରୀ: ଅ: ୧୧୧୨ରୁ ୧୧୪୭ ମଧ୍ୟରେ ନିର୍ମିତ ହୋଇଥିଲା (୧୦୧) । ଯେତେବେଳକୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଭାରତ ପ୍ରସିଦ୍ଧ ହୋଇସାରିଥିଲେ । ପୂର୍ବରୁ ଶଙ୍କରାଚାର୍ଯ୍ୟ (୭ମ-ଅଷ୍ଟମ ଶତକ) ଆସି ପାଶୁପତ ମତରେ ବଳଭଦ୍ରଙ୍କୁ ତାଙ୍କର ଆରାଧ୍ୟ **ଶିବ** ବୋଲି ଅଭିହିତ କରିସାରିଥିଲେ । ଶକ୍ତି ପୂଜାର ପ୍ରଭାବରେ ସୁଭଦ୍ରା ଭଦ୍ରକାଳୀ, ମହାମାୟା, ଅମ୍ବିକା ଭାବରେ ପ୍ରତିଷ୍ଠିତା ହୋଇସାରିଥିଲେ । ଦ୍ୱାଦଶ ଶତାବ୍ଦୀରେ ରାମାନୁଜାଚାର୍ଯ୍ୟ ପୁରୀକୁ ଆସିଲାବେଳକୁ ପୁରୁଷୋତ୍ତମ ପୀଠ ଏକ ଶୈବ, ଶକ୍ତି ବିଷ୍ଣୁଙ୍କର ସମନ୍ୱୟ କ୍ଷେତ୍ରରେ ପରିଣତ ହୋଇ-ସାରିଥିଲା । ବିଭିନ୍ନ ସ୍ଥାନରେ ଅନେକ ଜଗନ୍ନାଥ ମନ୍ଦିର, ବଳରାମ ମନ୍ଦିର ଯଥାଶୀଘ୍ର ପରେ ପରେ ଗଢ଼ିଉଠିଲା । ଏହା ହେଉଛି ସର୍ବଧର୍ମ ସମନ୍ୱୟ କ୍ଷେତ୍ର ଜଗନ୍ନାଥ ଧାମର ଲୋକପ୍ରିୟତାର ଫଳ । ଏହିରୁ ପରଂପରା ଓ ପ୍ରମାଣମାନ ଥାଉ ଥାଉ କାହିଁକି ଯେ ମହାମାନ୍ୟ ସମାଲୋଚକମାନେ ତ୍ରୟୋଦଶ ଶତାବ୍ଦୀ ବେଳକୁ ଜଗନ୍ନାଥଙ୍କର ତ୍ରିମୂର୍ତ୍ତିଙ୍କର ପୂଜା ଆରମ୍ଭ ହେଲା ବୋଲି ଲେଖିଲେ; 'ବାସ୍ତବିକ୍ ତାହା ବଡ଼ ବିଚିତ୍ର କଥା ।

କୃଷ୍ଣ, ବଳରାମ ଓ ଏକାନଂଶା (ସୁଭଦ୍ରା) (ପ୍ରସ୍ତରବିଗ୍ରହ) ଏକଦିଗରେ ଶିଳାବ୍ରହ୍ମ ରୂପେ ପୂଜା ପାଉଥିବାବେଳେ ଅନ୍ୟଦିଗରେ (କୃଷ୍ଣମୂର୍ତ୍ତି) ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା (ମହାଶକ୍ତି) ଦାରୁବ୍ରହ୍ମ ଭାବରେ ଉପାସିତ ହେଉଥିଲେ । କେତେକ ଭାବନ୍ତି ଯେ, ପ୍ରଥମେ

---

୧୦୧ । (କ) ଦାସଗୋବା ତାମ୍ରପତ୍ର—ରାଜ ରାଜ ତୃତୀୟ— ଶକାବ୍ଦ ୧୧୧୦ ବା ଖ୍ରୀ: ଅ: ୧୧୯୮ । ଦ୍ରଷ୍ଟବ୍ୟ—E.I. Vol. XXXI—Dr.D. C. Sircar.

(ଖ) Nagari plates of ଅନଙ୍ଗଭୀମ—ତୃତୀୟ ଶକାବ୍ଦ ୧୧୫୧-୧୨୩୦ =E. I. Vol. XXXVIII—Dr. D. C. Sircar

(ଗ) ଦ୍ୱାଦଶ ତାମ୍ରଲେଖର ସୂଚନା ଦ୍ରଷ୍ଟବ୍ୟ— (Note-1) —K. N. Mahapatra—The Jagannath Temple in Eastern India 1977—Bhubaneswar—pp. 1

(ଘ) O. H. R. J.—Vol. XVII—pp 211-12 and J. A. S B.—LXV, 1986 Part-1 pp-229.

ସେହି ବ୍ରହ୍ମପଦାର୍ଥ (ଜଗନ୍ନାଥଙ୍କ ଦାରୁବ୍ରହ୍ମ) ଏକାକୀ ପୂଜିତ ହେଉଥିଲେ । ପରେ ତାଙ୍କୁ ମୂର୍ତ୍ତି ଭିତରେ ସ୍ଥାପନ କରାଗଲା । ମାତ୍ର ତାହା ସତ୍ୟ ନୁହେଁ । ବ୍ରହ୍ମପଦାର୍ଥ ହେଉଛି ଆତ୍ମା ବା ପରମାତ୍ମାର ପ୍ରତୀକ । ତାଙ୍କୁ ଖାଲି ଆଖିରେ ଦେଖିବା ନିଷେଧ । ଏପର୍ଯ୍ୟନ୍ତ ମଧ୍ୟ ତାହା ପ୍ରତିପାଳିତ ହେଉଛି । ତେଣୁ ସେହି ବ୍ରହ୍ମକୁ (ଆତ୍ମାକୁ) ଘଟ ମଧ୍ୟରେ ରଖି ଅର୍ଥାତ୍ ନିର୍ଗୁଣ ବ୍ରହ୍ମକୁ ସଗୁଣ କରି, ତାହାର ଦର୍ଶନ ଆମେ କରୁଛୁ । ଏହାମଧ୍ୟରେ ଆତ୍ମତତ୍ତ୍ୱ ଓ ଶରୀର ତତ୍ତ୍ୱ ସନ୍ନିହିତ । ନଶ୍ୱରଶରୀର ପାଇଁ କାଷ୍ଠମୂର୍ତ୍ତିହିଁ ପ୍ରତୀକ । ଯେ ଯାହାହେଉ, ପୁରୁଷୋତ୍ତମକ୍ଷେତ୍ର ଦ୍ୱାଦଶ ଶତାବ୍ଦୀ ବେଳକୁ ଜଗତ୍ ପ୍ରସିଦ୍ଧ ହେଲା-ପରେ ସେହି ଶତାବ୍ଦୀର ଶେଷଆଡ଼କୁ ଭୁବନେଶ୍ୱରଠାରେ ଯେଉଁ ବଳରାମ ମନ୍ଦିର ପ୍ରତିଷ୍ଠିତ ହେଲା, ସେଥିରେ କୃଷ୍ଣ, ବଳରାମ ଓ ସୁଭଦ୍ରା ତ୍ରିମୂର୍ତ୍ତି ପୂଜିତ ହେଲେ । ଏହା ଭୁବନେଶ୍ୱରରେ ଥିବା ଅନନ୍ତବାସୁଦେବ ମନ୍ଦିରରେ ଥିବା ମୂର୍ତ୍ତିମାନଙ୍କର ଏକ ଅନ୍ତ୍ୟ ରୂପ । ପୁରୀର ଜଗନ୍ନାଥ ମନ୍ଦିରର ନିର୍ମାତା ତଥା ଚୋଡ଼ଗଙ୍ଗ ଦେବଙ୍କ ଅନୁଜ ଅନଙ୍ଗଭୀମଦେବଙ୍କର ପଟ୍ଟମହିଷୀ (୧୦୨) ବାଘଲ୍ଲଦେବୀ (୧୧୯୦-୧୧୯୮) ଖ୍ରୀ:ଅ:ରେ ଏ ମନ୍ଦିରଟିକୁ ନିର୍ମାଣ କରି ତହିଁରେ ଅନନ୍ତ, ବାସୁଦେବ, ସୁଭଦ୍ରା (ଏକାନଂଶା)ଙ୍କୁ ସ୍ଥାପନ କରିଥିଲେ । ଏ ପ୍ରକାର ଶିଳାମୂର୍ତ୍ତିମାନଙ୍କର ପରମ୍ପରା ବହୁଦିନରୁ ଥିଲା ସତ; ମାତ୍ର ସ୍ୱାମୀ ଅନଙ୍ଗଭୀମ-ଦେବ ଦାରୁବ୍ରହ୍ମଙ୍କ ପାଇଁ ମନ୍ଦିର ତୋଳାଇବା ହେତୁ, ସେଥିରେ ଅନୁପ୍ରାଣିତ ହୋଇ ବାଘଲ୍ଲଦେବୀ ଶିଳାବ୍ରହ୍ମ ହେଲେ ମଧ୍ୟ କୃଷ୍ଣ, (ଜଗନ୍ନାଥ), ବଳରାମ (ବଳଭଦ୍ର ଓ ସୁଭଦ୍ରାଙ୍କ ପାଇଁ ଏହି ବଳରାମ ମନ୍ଦିରଟି ପ୍ରତିଷ୍ଠା କରିବା ବିଚିତ୍ର ନୁହେଁ ।

---

୧୦୨ । The Jagannath Temples in Eastern India—pp 4—
See Note-3

"ତସ୍ୟାସୀଦନଙ୍ଗଭୀମନୃପତେରଗ୍ରାଂଶ ଲକ୍ଷ୍ମୀଃ ସ୍ୱୟଂ
ତତ୍ପ୍ରେମ୍ଣାଦଶପ୍ୟେନ ପଟ୍ଟମହିଷୀ ବାଘଲ୍ଲଦେବୀ ଭୁବ ॥

Verse 64—Found in all the Ganga inscriptions."

[ଏଠାରେ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର ଯାହା କହୁଛନ୍ତି ଯେ ଦାରୁବ୍ରହ୍ମ ଜଗନ୍ନାଥଙ୍କୁ ଦେଖି ଅନନ୍ତ (ବଳଭଦ୍ର( କୃଷ୍ଣ, ଜଗନ୍ନାଥ ଓ ସୁଭଦ୍ରାଙ୍କର ପଥରମୂର୍ତ୍ତି ଏହି ବଳରାମ ମନ୍ଦିରରେ ସ୍ଥାପିତ ହେଲା, ତାହା ଠିକ୍ ନୁହେଁ । ଏପ୍ରକାର ଅନନ୍ତମୂର୍ତ୍ତି', କୃଷ୍ଣମୂର୍ତ୍ତିଙ୍କର ପରମ୍ପରା ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିରୁ ଦେଖିଲେ, ପ୍ରଥମ ଶତାବ୍ଦୀ ପୂର୍ବରୁହିଁ ରହିଅଛି ବୋଲି ଆମେ ଦେଖୁ । ଏଣୁ, ଏପରି ଚିନ୍ତା ନ କରି ବରଂ ତାର ବିପରୀତ ଚିନ୍ତା କରିବା ଦରକାର । ଅନନ୍ତ ଓ କୃଷ୍ଣ ଉପାସନା ଜଗନ୍ନାଥ ବଳଭଦ୍ରଙ୍କଠାରୁ ପ୍ରାଚୀନ । ଉଭୟଙ୍କ ମଧ୍ୟରେ ସାମ୍ୟ ଥିଲେହେଁ ସ୍ୱତନ୍ତ୍ରତା ମଧ୍ୟ ରହିଛି ।]

ଅନନ୍ତ, ବାସୁଦେବ, ଏକାନଂଶାଙ୍କର ଏବଂବିଧ ଶିଳାବ୍ରହ୍ମ ମୂର୍ତ୍ତି ସପ୍ତମ ଶତାବ୍ଦୀରେ ନିର୍ମିତ ହୋଇଥିବାର ଲକ୍ଷ୍ମୌ ମ୍ୟୁଜିୟମରେ ସଂରକ୍ଷିତ ଥିବା ଏକ ପ୍ରସ୍ତରମୂର୍ତ୍ତି ଫଳକରୁ ଜଣାଯାଏ (୧୦୩) । କିନ୍ତୁ ତାଙ୍କୁ ଶିଳାବ୍ରହ୍ମ ବୋଲି କୁହାଯିବାର ପ୍ରମାଣ ନାହିଁ । ଆମ ଓଡ଼ିଶାରେ ନୀଳବ୍ରହ୍ମ ଯୁକ୍ତଜଗନ୍ନାଥଙ୍କୁ ଦାରୁବ୍ରହ୍ମ ବୋଲି କୁହାଯିବା ପରେ ଏହି ପ୍ରଦେଶର ଅନନ୍ତବାସୁଦେବ ସୁଭଦ୍ରାଙ୍କୁ ଶିଳାବ୍ରହ୍ମ ବୋଲି କୁହାଯାଉଛି । ମାତ୍ର ଲକ୍ଷ୍ମୌ ମ୍ୟୁଜିୟମରେ ଥିବା ତ୍ରିମୂର୍ତ୍ତିଟିକୁ ଶିଳାବ୍ରହ୍ମ ଇତ୍ୟାଦି କୁହାନଯାଇ 'କୃଷ୍ଣ, ବଳରାମ, ଏକାନଂଶା' ବୋଲି କୁହାଯାଉଛି । ସୁତରାଂ, ଏହି ତତ୍ତ୍ୱ ଉପରେ ଆତ୍ମା ଓ ଶରୀରତତ୍ତ୍ୱକୁ ଯୋଡ଼ି କ୍ଷଣସ୍ଥାୟୀ କାଷ୍ଠକୁ ଶରୀର ଭାବରେ ଗ୍ରହଣ କରି ଓ ତନ୍ମଧ୍ୟରେ ବା ଅଭ୍ୟନ୍ତରେ ବ୍ରହ୍ମପଦାର୍ଥସ୍ୱାକ ଅସ୍ଥାକୁ ରକ୍ଷି ଜଗନ୍ନାଥଙ୍କର ତ୍ରିମୂର୍ତ୍ତିକୁ ଦାରୁବ୍ରହ୍ମ ରୂପେ ରୂପାୟନ କରାଯାଇଥିବା ଖୁବ୍ ସମ୍ଭବ । ଯଦ୍ୟପି କୃଷ୍ଣ, ବଳରାମ, ଏକାନଂଶାଙ୍କର କ୍ରମପରିଣତି ରୂପେ ଏହି ଦାରୁବ୍ରହ୍ମ ତ୍ରିମୂର୍ତ୍ତିଙ୍କର ପୂଜାର୍ଚ୍ଚନା ପୁରୁଷୋତ୍ତମକ୍ଷେତ୍ରରେ ବିକଶିତ ରୂପେ ଚାଲିଲା, ଅନନ୍ତ (ବଳରାମ), ବାସୁଦେବ (କୃଷ୍ଣ), ଏକାନଂଶା, ସୁଭଦ୍ରାଙ୍କର ଶିଳାମୂର୍ତ୍ତି ଭାବରେ ଯେ ସମାନ ସମୟରେ ଉପାସନା କରାନଗଲା, ଏପରି ନୁହେଁ । ଅର୍ଥାତ୍ ଗୋଟାଏ ସମୟରେ ଆମେ ଦେଖୁ ଯେ, ଏଣେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କର ନାନାସ୍ଥାନରେ ମନ୍ଦିର ତିଆରି ଚାଲିଛି, ତେଣେ ଅନନ୍ତ, ବାସୁଦେବ ଓ ଏକାନଂଶାଙ୍କର ମଧ୍ୟ ମନ୍ଦିରତିଆରି ହୋଇ ତାଙ୍କର ପୂଜାର୍ଚ୍ଚନା ଚାଲିଛି । ଦଶମ ଶତାବ୍ଦୀରେ ଲଙ୍ଗୁଳିଙ୍କ ନେତୃତ୍ୱରେ ଅନନ୍ତ ବାସୁଦେବଙ୍କ ପାଇଁ ମନ୍ଦିର ନିର୍ମାଣ କରାଯାଇ ଅବିକଳ ଲକ୍ଷ୍ମୌ ମ୍ୟୁଜିୟମରେ ସଂରକ୍ଷିତ ମୂର୍ତ୍ତିମାନଙ୍କ ଭଳି ଅନନ୍ତ, ବାସୁଦେବ, ଏକାନଂଶାଙ୍କ ପାଇଁ ମୂର୍ତ୍ତି ନିର୍ମିତ ହୋଇ ଉପାସନା କରାଯାଇଛି । ଏ ମୂର୍ତ୍ତି ଅନ୍ୟ ତ୍ରୟୋଦଶ ଶତାବ୍ଦୀରେ ନିର୍ମିତ ହୋଇନାହାନ୍ତି । ଯେଉଁମାନେ ଏପରି ଭାବୁଛନ୍ତି, ତା'ର କିଛି ନିର୍ଦ୍ଦିଷ୍ଟ ପ୍ରମାଣ ନାହିଁ । ବିନ୍ଦୁସାଗରର ପଥର ବନ୍ଧରେ ତ ଅନନ୍ତ, ବାସୁଦେବଙ୍କର ସ୍ୱତନ୍ତ୍ର ମୂର୍ତ୍ତି ଖୋଦିତ ହୋଇ ସେହି ସୋମବଂଶୀ-ରାଜାଙ୍କ କାଳରୁ (ଦଶମ ଶତାବ୍ଦୀ) ପୂଜିତ ହେଉଥିଲେ । ପରେ ତ୍ରୟୋଦଶ ଶତାବ୍ଦୀରେ ଅନଙ୍ଗଭୀମଦେବଙ୍କ ଝିଅ ଚନ୍ଦ୍ରିକାଦେବୀ ମାତା ବାଘଲ୍ଲଦେବୀଙ୍କୁ ଅନୁସରଣ କରି ତଥା ନିଜର ବୀରସ୍ୱାମୀ ପରମର୍ଦ୍ଦିଦେବଙ୍କର ଯୁଦ୍ଧରେ ମୃତ୍ୟୁ ହେବାରୁ, ତାଙ୍କ ସ୍ମୃତିରକ୍ଷା ଲାଗି ସେହି ବିନ୍ଦୁସାଗର ତୀରରେ ୧୨୭୮ ଖ୍ରୀ: ଅ:ରେ ଅନନ୍ତ, ବାସୁଦେବ, ଏକାନଂଶା (ସୁଭଦ୍ରା)ଙ୍କ ପାଇଁ ଏକ ସୁନ୍ଦର ଓ ଅପେକ୍ଷାକୃତ ବୃହତ୍ତର ମନ୍ଦିର ନିର୍ମାଣ କରାଇଥିଲେ (୧୦୪) । ଏଣୁ, ଏହା ନିଶ୍ଚିତ ଯେ, ଚନ୍ଦ୍ରିକାଦେବୀ ଭୁବନେଶ୍ୱରରେ ଅନନ୍ତ ବାସୁଦେବ

୧୦୩ । I.V.—Plate. No.102.

୧୦୪ । O.H.R.J.—Vol. V.—No. 1. pp. 67 ff.
O.H.R.J—Vol. 1.—pp.278—284 ff.
C.J.R.T.O—pp. 191.

ମନ୍ଦିର ନିର୍ମାଣ କରିବାର ବହୁପୂର୍ବରୁ ଜଗନ୍ନାଥଙ୍କର ତ୍ରିମୂର୍ତ୍ତି ପୂଜିତ ହେଉଥିଲେ । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କର ଉପାସନା ଦ୍ୱାଦଶ ଶତାବ୍ଦୀରେ ଅତ୍ୟନ୍ତ ଲୋକପ୍ରିୟ ହୋଇଥିବାରୁ ତ୍ରୟୋଦଶ ଶତାବ୍ଦୀର ଆଦ୍ୟଭାଗରେ ଅର୍ଥାତ୍ ଅନଙ୍ଗଭୀମଦେବଙ୍କ ମୃତ୍ୟୁର ମୋଟେ ୬୦ ବର୍ଷ ପରେ ଜଗନ୍ନାଥ ମନ୍ଦିର ବେଢ଼ାରେ ଥିବା ପାତାଳେଶ୍ୱରଙ୍କ ମନ୍ଦିରରେ ଏକ ଶିଳାଲେଖ ଉତ୍କୀର୍ଣ୍ଣ ହୋଇ୍ ସନ୍ଧିରେ ହଳୀ (ବଳଭଦ୍ର), ଚକ୍ରୀ (ଜଗନ୍ନାଥ) ଓ ସୁଭଦ୍ରାଙ୍କର ଭୂୟସୀ ପ୍ରଶଂସା (୧୦୫) କରାଗଲା । ତାହାର କିଛିତ୍ ପରେ ଅନଙ୍ଗଭୀମ-ଦେବଙ୍କର ପୁତ୍ର ନରସିଂହଦେବ ନିର୍ମାଣ କରିଥିବା ବିଶ୍ୱବିଖ୍ୟାତ, କୋଣାର୍କର ସୂର୍ଯ୍ୟ-ମନ୍ଦିରରେ ଜଗନ୍ନାଥଙ୍କର ଦଧିବାମନ ବା ପତିତପାବନମୂର୍ତ୍ତି ଖୋଦିତ ହେଲା । ଅତଏବ, ଜଗନ୍ନାଥଙ୍କର ତ୍ରିମୂର୍ତ୍ତି ଚନ୍ଦ୍ରିକାଦେବୀ ଅନନ୍ତବାସୁଦେବ ମନ୍ଦିର ଭୁବନେଶ୍ୱରରେ ନିର୍ମାଣ କରିବା ପୂର୍ବରୁ ନଥିଲେ ବୋଲି କହିବା ପଛରେ କିଛି ଯୁକ୍ତି ନାହିଁ । ଡେଣ୍ଟ ଜର୍ମାନୀସଂସ୍ଥାର ସେହି ଗବେଷକଗଣ (A. Eschmann, ଏଚ୍ ମାନ୍ Kulke କୁଲ୍‌କେ ଓ ଗୟାଚରଣ ତ୍ରିପାଠୀ) ଅନେକ ସ୍ଥଳରେ ନିଜର ଉକ୍ତିକୁ ନିଜେ ଅଜାଣରେ ଲଙ୍ଘନ କରି ଆମର ଉଦ୍‌ଘାଟିତ ସତ୍ୟକୁ ସ୍ୱୀକାର କରିଛନ୍ତି ଯେ, ରାମାନୁଜଙ୍କ (ଖ୍ରୀ: ଅ: ୧୦୫୬-୧୧୩୭) ସମକାଳୀନ ଗଙ୍ଗରାଜା ଚୋଡ଼ଗଙ୍ଗଦେବ (୧୦୬) (ଖ୍ରୀ: ଅ: ୧୦୭୭-୧୧୪୭) ଓଡ଼ିଶାରେ ରାଜା ହେବାବେଳକୁ ପୁରୁଷୋତ୍ତମକ୍ଷେତ୍ରରେ ଜଗନ୍ନାଥଙ୍କର ତ୍ରିମୂର୍ତ୍ତି ପୂଜିତ ହେଉଥିଲେ ଏବଂ ସେହି ତ୍ରିମୂର୍ତ୍ତିଙ୍କ ପାଇଁ ସେ ଏହି ବିଶାଳ ଉତ୍ତୁଙ୍ଗ ମନ୍ଦିର ନିର୍ମାଣ କରାଇବାର ଯୋଜନା କରିଥିଲେ । ଏକଥା ମନ୍ଦିରରେ ଉପଲବ୍ଧ ମାଦଳାପାଞ୍ଜିର ଉକ୍ତି ସହିତ ପ୍ରାୟ ମିଳିଯାଉଛି । ମାଦଳାପାଞ୍ଜିରେ କୁହାଯାଇଛି ଯେ, ଯଯାତି ଯେଉଁ କ୍ଷୁଦ୍ର ମନ୍ଦିରଟି ନିର୍ମାଣ କରାଇଥିଲେ ତାହା ଭାଙ୍ଗି ଯାଇଥିବାରୁ ଗଙ୍ଗରାଜାଙ୍କୁ ଏହି ନୂତନ ମନ୍ଦିରଟି ନିର୍ମାଣ କରାଇବାକୁ ପଡ଼ିଥିଲା (୧୦୭) । ଏହି ତଥ୍ୟକୁ ମହାମାନ୍ୟ ଜର୍ମାନୀ ସଂସ୍ଥାର ପଣ୍ଡିତମାନେ ପରୋକ୍ଷରେ ସ୍ୱୀକାର କରିଛନ୍ତି । ସେମାନଙ୍କ ଭାଷାରେ—"It has been supposed that the great Purusottama temple was orignally meant for a stone image, which was lateron exchanged with the wooden figures. .××× It seems therefore most likely that he (Chodaganga) planned his temple for these figures (୧୦୮)" ଅର୍ଥାତ୍—

---

୧୦୫ । E. I. Vol. × × × PP-202
୧୦୬ । C. J. R. T. O—PP-182
୧୦୭ । ମାଦଳାପାଞ୍ଜି—ପୃ-୩୦
୧୦୮ । C. J. R. T. O—PP-192

'ପୁରୁଷୋତ୍ତମ ମନ୍ଦିରରେ ପ୍ରଥମେ ପୁରୁଷୋତ୍ତମଙ୍କର ପ୍ରସ୍ତରମୂର୍ତ୍ତି ପୂଜିତ ହେଉଥିଲେ । ପରେ ତାହା ଏହି କାଷ୍ଠପ୍ରତିମାଗୁଡ଼ିକରେ ରୂପାନ୍ତରିତ ହେଲେ । ତେଣୁ ଜଣାଯାଏ ଚୋଡ଼ଗଙ୍ଗଦେବ ସେହି ଦାରୁମୂର୍ତ୍ତିମାନଙ୍କ ପାଇଁ ଏହି ମନ୍ଦିର ନିର୍ମାଣ କରିବାର ଯୋଜନା କରିଥିଲେ । ଏଣୁ କୁହାଯାଇପାରେ ଯେ ଏହି ସମାଲୋଚକମାନେ ନିଜ ନିଜର ଅଭିମତରେ ସ୍ଥିର ନୁହନ୍ତି କି ସନ୍ଦେହମୁକ୍ତ ନୁହନ୍ତି । କିନ୍ତୁ ତାଙ୍କର 'ଏହି ଦ୍ୱିତୀୟ ଉକ୍ତି (୧୦୯) ପ୍ରକୃତ ପକ୍ଷରେ ଏକରକମ ସତ୍ୟ ।

ପୁରୁଷୋତ୍ତମକ୍ଷେତ୍ରରେ ଜଗନ୍ନାଥଙ୍କର ଏହି ଉତ୍ତୁଙ୍ଗ ମନ୍ଦିର ନିର୍ମିତ ହେବା ପରେ ଜଗନ୍ନାଥ ବା ପୁରୁଷୋତ୍ତମଙ୍କର ପୂଜାକୁ ଅଧିକ ଲୋକପ୍ରିୟ କରାଇବାପାଇଁ ଗଙ୍ଗ ରାଜାମାନଙ୍କ ଅମଳରୁ ବିଭିନ୍ନ ସ୍ଥାନରେ ପୁରୁଷୋତ୍ତମ ମନ୍ଦିରମାନ ନିର୍ମିତ ହେଲା । ସେତେବେଳକୁ ଜଗନ୍ନାଥଙ୍କୁ ଦାରୁବ୍ରହ୍ମ ବୋଲି କୁହାଯାଉଥିଲା ଏବଂ ଅନ୍ୟଏକ ଭାବରେ ପୂଜା ପାଉଥିବା ଅନନ୍ତ, ବାସୁଦେବ, ଏକାନଂଶାଙ୍କୁ ଶିଳାବ୍ରହ୍ମ ବୋଲି କୁହାଗଲା । ପୁଣି କାଷ୍ଠ ଓ ପ୍ରସ୍ତର ଉଭୟଙ୍କୁ ମଧ୍ୟ ଦାରୁ ବୋଲି କୁହାଯିବାର ପ୍ରମାଣ ଅଛି (୧୧୦) । ତେଣୁ, ଏସବୁ ଚିନ୍ତାଧାରାକୁ ଏକତ୍ର କରି କେଉଁଠି କେଉଁଠି ଜଗନ୍ନାଥଙ୍କର ପ୍ରତିମାକୁ କାଷ୍ଠରେ ନିର୍ମାଣ କରାଗଲା ତ କେଉଁଠି ମଧ୍ୟ ପ୍ରସ୍ତରରେ ନିର୍ମାଣ କରାଗଲା । ହେଲେ ଦାରୁର ମୂଳ ଅର୍ଥ ବା ଅଧିକ ଲୋକପ୍ରିୟ ଅର୍ଥ କାଷ୍ଠ ହୋଇଥିବାରୁ ଏବଂ ନଶ୍ୱର କଳେବରର ପରିବର୍ତ୍ତନ (ନବକଳେବର) ପାଇଁ କ୍ଷୟଶୀଳ କାଷ୍ଠ ହିଁ ଉପଯୁକ୍ତ ହୋଇଥିବାରୁ ଅଧିକାଂଶ ମୂର୍ତ୍ତି କାଷ୍ଠରେ ନିର୍ମିତ ହେଲେ । ଜଗନ୍ନାଥଙ୍କ ତ୍ରିମୂର୍ତ୍ତି ମଧ୍ୟରେ ନିର୍ଗୁଣ ବ୍ରହ୍ମସ୍ୱରୂପୀ ପୁରୁଷୋତ୍ତମ-ଜଗନ୍ନାଥ ମୁଖ୍ୟ ହୋଇଥିବାରୁ କେଉଁଠି କେଉଁଠି ତାଙ୍କର ଏକୁଟିଆ ମୂର୍ତ୍ତି ସ୍ଥାପିତ ହେଲେ । ଏ ମୂର୍ତ୍ତିଙ୍କୁ ଦଧିବାମନ ବା ପତିତପାବନ ବୋଲି କୁହାଯାଏ । ପୁଣି କେତେକ ମନ୍ଦିରରେ ତ୍ରିମୂର୍ତ୍ତି ଓ କ୍ରମେ ଚତୁର୍ଦ୍ଧା ମୂର୍ତ୍ତି ମଧ୍ୟ ଅବସ୍ଥାପିତ ହେଲେ । କିନ୍ତୁ କେଉଁଠି ଗୋଟିଏ ପତିତପାବନ—ଜଗନ୍ନାଥଙ୍କୁ ପ୍ରାଚୀନ ଯୁଗରୁ ପୂଜା ପାଉଥିବାର ଦେଖିଲେ ଆଜିର ସମାଲୋଚକଗଣ ଭାବନ୍ତି ଯେ, ସେତେବେଳେ ଜଗନ୍ନାଥଙ୍କର ତ୍ରିମୂର୍ତ୍ତି ବା ଚତୁର୍ଦ୍ଧା ମୂର୍ତ୍ତିର ପୂଜାବିଧି ପ୍ରଚଳିତ ହୋଇନଥିଲା (୧୧୧) । ଏପରି ଭାବିବା ଭୁଲ । ଏବେ ମଧ୍ୟ ଠାଏ ଠାଏ ଏପରି ଏକୁଟିଆ ପତିତପାବନ ମୂର୍ତ୍ତି ସ୍ଥାପନା

---

୧୦୯ । ମତ୍କୃତ—The Land of Vishnuରେ ଏହି ସତ୍ୟ ହିଁ ଉଦ୍‌ଘାଟିତ ହୋଇଛି । The Land of Vishnu—See chapter First and Last.

୧୧୦ । ସ୍କନ୍ଦ: ପୁ: ମା:—୨୬/୩୪—

'ମାଧବୀ ପ୍ରତିମାମେତାଂ ଦାରବୀଂ ଶୁଭଲକ୍ଷଣାମ୍ ।'

୧୧୧ । C. J. R. T. O—PP-192, 193 ff

ବରାହାବତାର । ମାତ୍ର ଏହାର ଅର୍ଥ ନୁହେଁ ଯେ ବର୍ତ୍ତମାନ ଚତୁର୍ଦ୍ଧାମୂର୍ତ୍ତିଙ୍କର ପୂଜାବିଧି ପ୍ରଚଳିତ ନାହିଁ ।

ଯଯାତିକେଶରୀ ଯାଜପୁରଠାରେ ଜଗନ୍ନାଥମନ୍ଦିରଟିଏ ନିର୍ମାଣ କରିଥିଲେ ବୋଲି ସ୍ଥାନୀୟ ପଣ୍ଡିତ ବୈଷ୍ଣବଚରଣ ଦାସ ଉଲ୍ଲେଖ କରିଛନ୍ତି (୧୧୨) । ଏ ମନ୍ଦିରରେ ଚତୁର୍ଦ୍ଧାମୂର୍ତ୍ତି ଦାରୁବିଗ୍ରହ ପୂଜିତ ହେଉଛନ୍ତି । ପଣ୍ଡିତ ଦାସ ଏପରି ଉଲ୍ଲେଖ କଲେ ମଧ୍ୟ ଏହା ଯେ ସମ୍ପୂର୍ଣ୍ଣ ସତ୍ୟ, ତାହା ଗ୍ରହଣ କରିବା ହଠାତ୍ ଆମ ପକ୍ଷରେ ସମ୍ଭବ ନୁହେଁ । କାରଣ ପଣ୍ଡିତ ଦାସ ଏ ସମ୍ପର୍କରେ କୌଣସି ପ୍ରମାଣ ଉପସ୍ଥାପନ କରି-ନାହାନ୍ତି । କେବଳ ସ୍ଥାନୀୟ ଲୋକ ମୁଖାବଚନ ପାରଂପରିକ ସୂତ୍ରରେ କହିଦେଇଛନ୍ତି ମାତ୍ର । ସେ ଦୃଷ୍ଟିରୁ ତାଙ୍କ କଥାରେ ଆଂଶିକ ସତ୍ୟ ଥାଇପାରେ; କିନ୍ତୁ ଏହା ନିଃସନ୍ଦେହ ନୁହେଁ । ଆମର ପୂର୍ବ ଅଧ୍ୟାୟରେ ଆଲୋଚିତ ଗ୍ରନ୍ଥପ୍ରମାଣରୁ ଜଣାଯାଏ ଯେ, ଉତ୍କଳଖଣ୍ଡ ଲେଖାହେଲା ବେଳକୁ (ଅଷ୍ଟମଶତକ) ପୁରୀଠାରେ ଚତୁର୍ଦ୍ଧାମୂର୍ତ୍ତି ପୂଜିତ ହୋଇସାରିଥିଲେ ଓ ମନ୍ଦିରର ମୁଖ୍ୟ ଦେବତା ଥିଲେ ପୁରୁଷୋତ୍ତମ-ଜଗନ୍ନାଥ । ତାହା ଯଦି ଧ୍ରୁବ, ତେବେ ପଣ୍ଡିତ ମହାଶୟଙ୍କର ଏହି ପରଂପରାରୁ ଗୃହୀତ ଉକ୍ତିଟି ସତ୍ୟ ବୋଲି ଗୃହୀତ ହେବାରେ କିଛି ଅନ୍ତରାୟ ନାହିଁ । ମାଦଳାପାଞ୍ଜିର ଉଲ୍ଲେଖ ଅନୁସାରେ ଯେପରି ଯଯାତିକେଶରୀ ସୋନପୁରରୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କୁ ଉଦ୍ଧାର କରି ପୁଣି ପୁରୁଷୋତ୍ତମକ୍ଷେତ୍ରରେ ଅବସ୍ଥାପିତ କଲେ (୧୧୩) ଓ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ଉପାଧିରେ ବିଭୂଷିତ ହେଲେ, ସେହି ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ଯଯାତି ଯେ ଯାଜପୁରରେ ଜଗନ୍ନାଥଙ୍କର ଚତୁର୍ଦ୍ଧାମୂର୍ତ୍ତି ସ୍ଥାପନା କରିନଥିଲେ; ସେ କଥା କିଏ କହିବ । ଯାଜପୁର ମହାଭାରତଯୁଗରୁ ମହିଷମର୍ଦ୍ଦିନୀ ଦ୍ୱିଭୂଜା ଦୁର୍ଗା—ବିରଜାଙ୍କର ପ୍ରଧାନପୀଠ ହେଲେ ମଧ୍ୟ ସୋମବଂଶୀ ରାଜତ୍ୱକାଳରେ ଏକ ଶୈବପୀଠ ଭାବରେ ପ୍ରାଧାନ୍ୟ ଲାଭ କରିଥିଲା । ତା'ଛଡ଼ା ସେହି ସମୟରେ ମଧ୍ୟ ଏଠାରେ ମହାବରାହ ପୂଜିତ ହେବାରୁ ଏହା ବରାହକ୍ଷେତ୍ର ନାମରେ ମଧ୍ୟ ନାମିତ ହୋଇଥିଲା (୧୧୪) ଏବଂ ଏଠାରେ ଶକ୍ତିପୂଜାର ପ୍ରାଧାନ୍ୟ ଥିବାରୁ ବରାହଙ୍କର ସ୍ତ୍ରୀରୂପ ବା ବାରାହୀ ମଧ୍ୟ ପୂଜିତା ହେଲେ (୧୧୫) । ନବମ

୧୧୨ । ଯାଜପୁର ବିରଜାକ୍ଷେତ୍ର ପରିକ୍ରମା—ବୈଷ୍ଣବ ଚରଣ ଦାସ—୧୯୭୯—ଯାଜପୁର-ନିଜ ପ୍ରକାଶନ—ପୃ-୮୨

୧୧୩ । ମାଦଳାପାଞ୍ଜି—

୧୧୪ । The Jagannath Temples in Eastern India—pp. 21.

୧୧୫ । ଯାଜପୁର ବିରଜାକ୍ଷେତ୍ର ପରିକ୍ରମା—ପୃ-୫୩—ବରାହୀଙ୍କର ମୂର୍ତ୍ତି ଦ୍ରଷ୍ଟବ୍ୟ ।

ଶତାବ୍ଦୀବେଳକୁ ଯାଜପୁର ବୈତରଣୀତୀର୍ଥ ଭାବରେ ପ୍ରସିଦ୍ଧି ଲାଭ କରିଥିବାର ଶାନ୍ତିକରଙ୍କର ଧନନ୍ତପୁର ତାମ୍ରଫଳକରୁ ଜଣାଯାଏ (୧୧୬) । ବିରଜା ମନ୍ଦିରର ସମ୍ମୁଖରେ ଯଯାତିକେଶରୀ (ପ୍ରଥମ) ସୁନ୍ଦର ଶୁଭସ୍ତମ୍ଭ ନିର୍ମାଣ କରିଥିଲେ (୧୧୭) । ବିଷ୍ଣୁ ହେଉଛନ୍ତି ବୈଦିକ ପରଂପରାରେ ଯଜ୍ଞର ଅଧିଷ୍ଠାତା ଯଜ୍ଞପୁରୁଷ । ତେଣୁ ତାଙ୍କ ମନ୍ଦିର ସମ୍ମୁଖରେ ଯଜ୍ଞ କରାଇବା ପାଇଁ ଯଯାତି ଏହି ଶୁଭସ୍ତମ୍ଭକୁ ସ୍ଥାପନା କଲେ । ବିରାଜ ହେଉଛନ୍ତି ସ୍ୱୟଂ ବିଷ୍ଣୁ । ସେଥିପାଇଁ ଶୁଭସ୍ତମ୍ଭଟି ଥିଲା ଏକ ଗରୁଡ଼ସ୍ତମ୍ଭ । ପୁରୀରେ ଜଗନ୍ନାଥ-ମହାବିଷ୍ଣୁଙ୍କ ସମ୍ମୁଖରେ ଯେପରି ଗରୁଡ଼ସ୍ତମ୍ଭ ରହିଛି, ଏହା ମଧ୍ୟ ଠିକ୍ ସେପରି ଏକ ଗରୁଡ଼ସ୍ତମ୍ଭ । ଏପରି ଏକ ପରଂପରାର ଦାୟାଦ ଭାବରେ ଧଉଳିଠାରେ କୁନ୍ତଦମିନାର ନିକଟରେ ଏକ ବିଷ୍ଣୁଧ୍ୱଜ ଗରୁଡ଼ସ୍ତମ୍ଭ ରହିଅଛି । ସେହିପରି କୋଣାର୍କରେ ମଧ୍ୟ ସୂର୍ଯ୍ୟଙ୍କର ସାରଥି ଅରୁଣଙ୍କ ଲାଗି ଏକ ସ୍ତମ୍ଭନିର୍ମିତ ହୋଇଥିଲା । ସେ ଯାହାହେଉ, ବର୍ତ୍ତମାନ ଏହି ଶୁଭସ୍ତମ୍ଭରେ ଆଉ ଗରୁଡ଼ଙ୍କର ମୂର୍ତ୍ତିଟି ନାହିଁ । ତାହା ବର୍ତ୍ତମାନ ସେଠାରୁ ଯାଇ ନିକଟସ୍ଥ ବାହାବଲପୁର ଛକରେ ମଧୁପୁର ଗ୍ରାମସ୍ଥ ନୃସିଂହ ମନ୍ଦିରରେ ସଂରକ୍ଷିତ ହୋଇଛି (୧୧୮)। ଅତଏବ କୁହାଯାଇପାରେ ଯେ, ଯଯାତିଙ୍କ (ପ୍ରଥମ) ସମୟରେ ମଧ୍ୟ ଯାଜପୁର ବିଷ୍ଣୁଙ୍କର ଆରାଧନା ପାଇଁ ଏକ ପୀଠ ଭାବରେ ଗଢ଼ିଉଠିଥିଲା । ତେଣୁ ଯଯାତି ସେଠାରେ ମହାବିଷ୍ଣୁ ଜଗନ୍ନାଥଙ୍କର ମନ୍ଦିର ନିର୍ମାଣ କରି ତହିଁରେ ଚତୁର୍ଦ୍ଧାମୂର୍ତ୍ତି ପ୍ରତିଷ୍ଠା କରିବା ଅସମ୍ଭବ ନୁହେଁ । ମାନ୍ୟ ଶ୍ରୀ କେଦାରନାଥ ମହାପାତ୍ର ଏ ମନ୍ଦିରଟି ଅନଙ୍ଗଭୀମଦେବ ନିର୍ମାଣ କରିଥିବାର ଅନୁମାନ କରିବା ଛଡ଼ା ଅଧିକ କିଛି ପ୍ରମାଣ ନଦେଇଥିବାରୁ ମୋତେ ଗ୍ରହଣଯୋଗ୍ୟ ନୁହେଁ (୧୧୯) ।

ଯାଜପୁରରେ ଜଗନ୍ନାଥଙ୍କର ଉପାସନା ଗଙ୍ଗ ରାଜତ୍ୱ କାଳରେ ହେଉ ବା ସୋମବଂଶୀମାନଙ୍କର ରାଜତ୍ୱ କାଳରେ ହେଉ, ଏହା ଯେ ଏକ ପ୍ରାଚୀନତର ଐତିହ୍ୟ, ଏଥିରେ କିଛି ସନ୍ଦେହ ନାହିଁ । ସେହିପରି କଟକଠାରେ (ଅଭିନବ ବାରାଣସୀ କଟକରେ) ଗୋଟିଏ ଜଗନ୍ନାଥ ମନ୍ଦିର ଥିଲା ଓ ଏହା ଗଙ୍ଗରାଜା ଅନଙ୍ଗଭୀମଦେବଙ୍କ ସମୟରେ ନିର୍ମିତ ହୋଇଥିଲା । ଅବଶ୍ୟ, ବର୍ତ୍ତମାନ ସେ ମନ୍ଦିରର ସ୍ଥିତି ନାହିଁ; ଏହା ମୁସଲମାନ ଆକ୍ରମଣରେ ନଷ୍ଟ ହୋଇଯାଇଛି । କିନ୍ତୁ ତାମ୍ରଲେଖରୁ ଏହି ଜଗନ୍ନାଥ ମନ୍ଦିର

---

୧୧୬ । ନବଜୀବନ—'ମାସିକ ଓଡ଼ିଆ ପତ୍ରିକା'—୧୯୬୯ –
(Vol. 14-parts. 1 and 2—pp. 25-34)
"ବାମନ ସ୍ୱାମୀ ଶର୍ମଣେ······ବୈରାହତୀର୍ଥେ···

୧୧୭ । The Jagannath Temples in Eastern India-pp.21.

୧୧୮ । ଯାଜପୁର ବିରଜାକ୍ଷେତ୍ର ପରିକ୍ରମା—ପୃ-୧୪ ।

୧୧୯ । The Jagannath Temples in Eastern India. pp.21.

ଅନଙ୍ଗଭୀମଦେବଙ୍କ ଦ୍ୱାରା ନିର୍ମିତ ହୋଇଥିବାର ପ୍ରମାଣ ଆମର ହସ୍ତଗତ ହୋଇଛି (୧୨୦)। ବର୍ତ୍ତମାନ ସେ ମନ୍ଦିର ଓ ସେ ମୂର୍ତ୍ତିମାନ ନଥିବାରୁ ମୂର୍ତ୍ତିମାନଙ୍କର ସ୍ୱରୂପ ସମ୍ପର୍କରେ କିଛି କହିବା ଠିକ୍ ହେବନାହିଁ। ଶ୍ରୀଯୁକ୍ତ ପରମାନନ୍ଦ ଆଚାର୍ଯ୍ୟ ଉଲ୍ଲେଖ କରିଥିବା ଏକ ପ୍ରସ୍ତରର ଭଗ୍ନ ଓ ମସ୍ତକହୀନ ନାରାୟଣ ମୂର୍ତ୍ତି, ଯାହାକି କଟକର ଏକ ପୁଷ୍କରିଣୀରୁ ଉପଲବ୍ଧ ହୋଇ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇଛି; ତାହା ହେଉଛି ସେହି ଜଗନ୍ନାଥ ପୁରୁଷୋତ୍ତମଙ୍କ(୧୨୧) ବିଗ୍ରହ, ଏହି ଉଲ୍ଲେଖ ନିତାନ୍ତ ଭିତ୍ତିହୀନ। ଏହା ସପକ୍ଷରେ କୌଣସି ପ୍ରମାଣ ନଥିବାରୁ ଏହା କଦାପି ଗ୍ରହଣୀୟ ନୁହେଁ। ଯାଜପୁର ଓ କଟକ ବ୍ୟତୀତ ପ୍ରାଚୀନ ଜଗନ୍ନାଥମନ୍ଦିରମାନଙ୍କ ମଧ୍ୟରେ ଟେକାଲିରେ ଥିବା ଜଗନ୍ନାଥ ମନ୍ଦିରଟି ଅନ୍ୟତମ। ଶୈଳଗଙ୍ଗଦେବଙ୍କର ରାଣୀ ଏହି ଦଧିବାମନ ଜଗନ୍ନାଥଙ୍କ ପାଇଁ ଭୂମିଦାନ କରିଥିବାର ଅଭିଲେଖ ଐତିହାସିକମାନଙ୍କର ହସ୍ତଗତ ହୋଇପାରିଛି (୧୨୨)। ଶୈଳଗଙ୍ଗଙ୍କ ପଟ୍ଟମହିଷୀ କସ୍ତୁରୀ କାମୋଦିନୀ ଭାଦ୍ର ଶୁକ୍ଳ ଦ୍ୱାଦଶୀ ଦିନ ୧୦୭୨ ଶକାବ୍ଦ ବା ୧୧୫୦ ଖ୍ରୀ: ଅ:ରେ କାମାର୍ଣ୍ଣବଙ୍କ ରାଜତ୍ୱ କାଳରେ ଏହି ଦାନପତ୍ର ପ୍ରଦାନ କରିଥିଲେ (୧୨୩)। ଅତଏବ, କୁହାଯାଇପାରେ ତ୍ରୟୋଦଶ ଶତାବ୍ଦୀ ପୂର୍ବରୁ ଜଗନ୍ନାଥଙ୍କର ଉପାସନା

---

୧୨୦। Nagari copper plates of Aniyankbhima Deva—III, E. I. Vol.—XXVII.

(କ) "ମକରସଂକ୍ରାନ୍ତ୍ୟାଂ......ଶ୍ରୀପୁରୁଷୋତ୍ତମଦେବସ୍ୟ ପ୍ରତିଷ୍ଠା ସମୟେ କାଶ୍ୟପସଗୋତ୍ରାୟ ଆଚାର୍ଯ୍ୟ ଚନ୍ଦ୍ରଶେଖରଶର୍ମଣେ ବ୍ରାହ୍ମଣାୟ ଚ ଦ୍ୱିବାଟୀପରିମିତାଂ ଭୂମିଂ ଭଗବତଃ ଶ୍ରୀପୁରୁଷୋତ୍ତମସ୍ୟ ପ୍ରୀତୟେ... ପ୍ରାଦାତ୍।"

(ଖ) ଅଭିନବ ବାରାଣସ୍ୟାଂ ଭଗବତଃ ଶ୍ରୀପୁରୁଷୋତ୍ତମ ଦେବସ୍ୟ ସନ୍ନିଧୌ ମକରଅମାବାସ୍ୟାଂ ବୁଧବାରେ କୁଦଣ୍ଡାବିଷୟେ ବିଲାସପୁର ଗ୍ରାମେ। ... ଅଷ୍ଟମାନାଧିକ ଚତୁର୍ବାଟୀ ପରିମିତାଂ ଭୂମିଂ ଭରଦ୍ୱାଜ ସଗୋତ୍ରାୟ ଦେବଧରଶର୍ମଣେ ବ୍ରାହ୍ମଣାୟ......ଭଗବତଃ ଶ୍ରୀପୁରୁଷୋତ୍ତମସ୍ୟ ପ୍ରୀତୟେ......ପ୍ରାଦାତ୍। (ଇତ୍ୟାଦି)

୧୨୧। Studies in Orissan History, Archaeology and Archives by—P. Acharya—pp. 527—528.

୧୨୨। ଉତ୍କଳ ସାହିତ୍ୟ—Vol. 21. No. 10, 1345 ସାଲ, ପୃ-୪୭୩, (The article of T. C. Rath.)

୧୨୩। ଭକ୍ତପ୍ରସାଦ—ଓଡ଼ିଆ ତୈମାସିକ—Vol. XI—ତୃତୀୟ ଖଣ୍ଡ—ଚୈତ୍ର—୧୩୪୯ ସାଲ—ପୃ-୧୫।

ବିଭିନ୍ନ ସ୍ଥାନରେ ଚତୁର୍ଦ୍ଧାମୂର୍ତ୍ତି ସ୍ୱରୂପରେ ବା ଏକମୂର୍ତ୍ତି ଦଧିବାମନ ରୂପେ କରାଯାଇଥିଲା । ତ୍ରୟୋଦଶ ଶତକରେ କୋଣାର୍କ ମନ୍ଦିରରେ କେବଳ ସେହି ଦଧିବାମନ ମୂର୍ତ୍ତି ଦେଖିବାକୁ ମିଳେ । ତାଙ୍କ ପାଖରେ ଥିବା ଦୁର୍ଗା ଓ ଶିବଙ୍କ (ଲିଙ୍ଗ) ସହିତ ଏ ମୂର୍ତ୍ତିର କିଛି ସମ୍ପର୍କ ନାହିଁ । ଏଥିରୁ ଖାଲି ବୁଝିବାକୁ ହେବ ଯେ, ନରସିଂହଦେବଙ୍କ ସମୟକୁ ଓଡ଼ିଶାରେ ଶିବ, ଶକ୍ତି ଓ ବିଷ୍ଣୁ ପୂଜା ଦୃଢ଼ ଭାବରେ ପ୍ରତିଷ୍ଠିତ ହୋଇସାରିଥିଲା ଓ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା । କେବଳ, ସେତିକି ମାତ୍ର । ନରସିଂହଦେବ କେବଳ ବୈଷ୍ଣବ ନଥିଲେ । ସେ ଶିବ ଓ ଦୁର୍ଗାଙ୍କୁ ମଧ୍ୟ ସମାନ ଭକ୍ତି ପ୍ରଦର୍ଶନ କରୁଥିଲେ । ତେଣୁ କୋଣାର୍କର ମୂର୍ତ୍ତିମାନଙ୍କରେ ରାଜା ନରସିଂହଦେବ ଶିବ, ଦୁର୍ଗା ଓ ଜଗନ୍ନାଥଙ୍କୁ ଏକାଠି ପୂଜା କରୁଥିବା କଥା ପ୍ରଦର୍ଶିତ ହୋଇଛି । ସେତେବେଳକୁ ଜଗନ୍ନାଥ ମନ୍ଦିର ମଧ୍ୟ ଏହି ତିନି ତତ୍ତ୍ୱର ମିଳନସ୍ଥଳ ହୋଇସାରିଛି । ଗ୍ରନ୍ଥ ପ୍ରମାଣରୁ ଜଣାଯାଏ, ଅଷ୍ଟମ ଶତାବ୍ଦୀଠାରୁ ବା ତାହା ପୂର୍ବରୁ ଏହି ତ୍ରିତତ୍ତ୍ୱର ପରିକଳ୍ପନା ଜଗନ୍ନାଥ ମନ୍ଦିରରେ ପ୍ରବେଶ କରିସାରିଛି । ଜଗନ୍ନାଥକ୍ଷେତ୍ର ହୋଇପାରିଛି ଶିବ(ବଳଭଦ୍ର), ଦୁର୍ଗା (ସୁଭଦ୍ରା), ବିଷ୍ଣୁ ଜଗନ୍ନାଥଙ୍କର ସମ୍ମିଳିତ ପୂଜାର ଏକ ପରମପାବନ କ୍ଷେତ୍ର । ସୋମବଂଶୀ ଯଯାତିଙ୍କ ସମୟରୁ ସୁଭଦ୍ରା (୧୨୪) ଓ ଶକ୍ତି ରୂପେ ଓ ବଳଭଦ୍ର ଏବଂ ଜଗନ୍ନାଥ ପୁରୁଷରୂପେ ପୂଜିତ ହୋଇଆସୁଥିବାର ପ୍ରମାଣ(୧୨୫) ସର୍ବଥା ଗ୍ରହଣୀୟ । ସେଥିପାଇଁ ସିଂହାସନରେ ଥିବାବେଳେ ଆମେ ସର୍ବଦା ଜଣେ ପୁରୁଷ ଓ ତାଙ୍କ ଶକ୍ତିଙ୍କୁ ଦେଖିବାକୁ ପାଉ । ଅର୍ଥାତ୍, ଗରୁଡ଼ସ୍ତମ୍ଭ ନିକଟରେ ଠିଆ ହୋଇ ଦର୍ଶନ କଲାବେଳେ ଟିକିଏ ବାମପଟକୁ ଘୁଞ୍ଚଗଲେ ଆମେ ପୁରୁଷରୂପୀ ଜଗନ୍ନାଥଙ୍କୁ ଓ ଶକ୍ତିରୂପା ସୁଭଦ୍ରାଙ୍କୁ ଦର୍ଶନ କରୁ । ପୁଣି ଠାକୁରମାନଙ୍କ ଆଡ଼କୁ ଚାହିଁ ଟିକିଏ ଦକ୍ଷିଣ ପଟକୁ ଘୁଞ୍ଚିଆସିଲେ ପୁରୁଷରୂପୀ

---

୧୨୪ । C. J. R. T. O.—pp. 176. (However, there are important reasons to believe that the cult (Jagannath) was local and if something was imported by Yayati, it was the figure of subhadra," ଏହି ଜର୍ମାନ ସମ୍ପ୍ରଦାର ପଣ୍ଡିତମାନେ କେବଳ ଅନୁମାନ କରନ୍ତି ମାତ୍ର ।)

୧୨୫ । ସ୍କନ୍ଦ. ପୁ, ମା.—୧୯/୧୩, ୧୫, ୧୭—

"ନ ଭେଦୋଽସ୍ତୀହ କୋ ବିପ୍ରାଃ କୃଷ୍ଣସ୍ୟ ଚ ବଳସ୍ୟ ଚ" ॥ ୧୩ ॥

"ଫୁଲ୍ଲନାମା ଭଗବାନ୍ ବିଷ୍ଣୁଃ ସ୍ୱନାମ୍ନା କମଳାଳୟା" ॥ ୧୫ ॥

"କୋଟ୍ୟନ୍ୟ ପୁଣ୍ଡରୀକାକ୍ଷାତ୍ ଭୁବନାନ୍ ଚତୁର୍ଦ୍ଦଶ
ଧାରୟେଦ୍ଭତ୍ସୁ ଫଣା ଶ୍ୱେତାଭୋଽନନ୍ତୋ ବଳସଂଜ୍ଞିତଃ
ତସ୍ୟଶକ୍ତି ସ୍ୱରୂପେଽସ୍ତଂ ଭଗନୀଶ୍ରୀଃ ପ୍ରବର୍ତ୍ତିକା" ॥ ୧୭ ॥

ବଳଭଦ୍ର (ଶିବ) ଓ ଶକ୍ତିରୂପା ସୁଭଦ୍ରା ଆମର ନେତ୍ରପଥରେ ଗୋଚର ହୁଅନ୍ତି। ଫଳରେ ସୁଭଦ୍ରା ବିଷ୍ଣୁଶକ୍ତି ଲକ୍ଷ୍ମୀ ଭାବରେ ଅବତୀର୍ଣ୍ଣ ହୁଅନ୍ତି ଓ ଶିବଶକ୍ତି ଦୁର୍ଗାଭାବରେ ମଧ୍ୟ ଆତ୍ମପ୍ରକାଶ କରନ୍ତି। ସତେ ଅବା ସେ ମହାଲକ୍ଷ୍ମୀ ଓ ଉକ୍ତପୀଠାଧୀଶ୍ୱରୀ ବିମଳା; ଉଭୟଙ୍କର ଏକ ମୂର୍ତ୍ତିମତୀ ଦେବୀ; ଏହି ଭାବ ସ୍ୱତଃ ହୃଦୟରେ ସ୍ଥାନ ପାଏ। ସୁଭଦ୍ରାଙ୍କୁ ସେଥିପାଇଁ ଲକ୍ଷ୍ମୀ ଓ ଭଦ୍ରକାଳୀ; ଏହି ଉଭୟରୂପେ ଆହ୍ୱାନ କରିବାର ବିଧି ସ୍କନ୍ଦପୁରାଣ ଉତ୍କଳଖଣ୍ଡ, ନୀଳାଦ୍ରି ମହୋଦୟ ଇତ୍ୟାଦିରେ ସ୍ଥାନ ପାଇଛି।

**ହରିହର ପୂଜା—**

ହରି ଓ ହରଙ୍କୁ ଏକତ୍ର କରି ହରିହର ପୂଜାର ପରଂପରା ଯେପରି ବହୁ ପ୍ରାଚୀନ କାଳରୁ ପ୍ରଚଳିତ, ସେହିପରି ଜଗନ୍ନାଥ ପୀଠରେ ଲକ୍ଷ୍ମୀ ଓ ଦୁର୍ଗାଙ୍କୁ ଏକୀଭୂତ କରି ସୁଭଦ୍ରା ରୂପେ ପୂଜା କରିବା ମଧ୍ୟ ଏକ ସଫଳ ପରିକଳ୍ପନା। ମତ୍ସ୍ୟପୁରାଣ କାଳରୁ ହରିହରଙ୍କର ଉପାସନା ଭାରତବର୍ଷରେ ଚାଲିଛି (୧୨୬)। ଏହି ଉପାସିତ ମୂର୍ତ୍ତିଙ୍କର ଚତୁର୍ଭୁଜରୁ ବାମପଟର ଦୁଇଭୁଜ ବିଷ୍ଣୁଙ୍କ ପାଇଁ ଉଦ୍ଦିଷ୍ଟ ଓ ଦକ୍ଷିଣ ଦୁଇଭୁଜ ଶିବଙ୍କ ପାଇଁ ଉଦ୍ଦିଷ୍ଟ। ଏ ପ୍ରକାର ମିଳିତ ମୂର୍ତ୍ତିର ଉପାସନା ଏ ଦେଶରେ ଋଗ୍‌ବେଦ କାଳରୁ ପ୍ରଚଳିତ ହୋଇଛି। ଅବଶ୍ୟ ସେ ମୂର୍ତ୍ତି ମଧ୍ୟ ଶିବବିଷ୍ଣୁ ବା ହରିହର ନଥାଇ ପାରନ୍ତି। ମାତ୍ର ଅନ୍ୟାନ୍ୟ ବୈଦିକ ଦେବତାଙ୍କୁ ଏକତ୍ର କରି ଉପାସନା କରାଯାଉଥିବାର ବିଧି ବୈଦିକ ଯୁଗରେ ଥିଲା ବୋଲି ମ୍ୟାକ୍‌ସମୁଲର ପ୍ରଭୃତି ଆଲୋଚନା କରିଛନ୍ତି (୧୨୭)।

ବୈଦିକ ଯୁଗରେ ବିଭିନ୍ନ ଦେବତାଙ୍କୁ ଗୋଟିଏ ଗୋଟିଏ ବିଶେଷ କ୍ଷେତ୍ରରେ ଅଧିକତର ଶକ୍ତିଶାଳୀ ବୋଲି ବର୍ଣ୍ଣନା କରାଯାଇଥିଲା। ମହାଭାରତ ଯୁଗବେଳକୁ ଏକ ପକ୍ଷରେ ବିଷ୍ଣୁଙ୍କୁ ଶ୍ରେଷ୍ଠତମ ଦେବତା ଭାବରେ ବର୍ଣ୍ଣନା କରାଗଲା ତ ଅନ୍ୟ ପକ୍ଷରେ ଶିବଙ୍କୁ ଶ୍ରେଷ୍ଠତମ ଦେବତା ଭାବରେ ଅଭିହିତ କରାଗଲା। ଏହି ସମୟରେ ବିଷ୍ଣୁ ଓ ରୁଦ୍ରଙ୍କୁ ଏକତ୍ର କରି ହରିରୁଦ୍ର ମୂର୍ତ୍ତି ଗଠନ କରିବାର ପ୍ରଚେଷ୍ଟା ମଧ୍ୟ ହୋଇଥିଲା। ଅର୍ଜୁନ ତାଙ୍କର ତପସ୍ୟାପରେ ଶିବଙ୍କୁ ହରିରୁଦ୍ର ଭାବରେ ସମ୍ବୋଧନ କରି ସ୍ତୁତି କରିବାର କଥା ମହାଭାରତରେ ଉଲ୍ଲେଖ ଅଛି (୧୨୮)। ତଦ୍‌ବନ୍ତ ହରିହର ମୂର୍ତ୍ତିମାନ୍ ମଧ୍ୟ କୁଷାଣ ରାଜତ୍ୱ ସମୟରୁ ଆମର ଉପଲବ୍ଧ ହେଉଅଛି (୧୨୯)। ପୁରାଣ ଯୁଗବେଳକୁ ମତ୍ସ୍ୟପୁରାଣରେ ହରିହରଙ୍କର ମୂର୍ତ୍ତିର ଆମେ ଯେଉଁ ବର୍ଣ୍ଣନା ପାଉ, ସେଥିରୁ ଜଣାଯାଏ, ମୂର୍ତ୍ତିଟିର ବାମପଟ ମାଧବଙ୍କ ପାଇଁ ବା ବିଷ୍ଣୁଙ୍କ ପାଇଁ ଉଦ୍ଦିଷ୍ଟ। ଦକ୍ଷିଣଭାଗ ଶିବଙ୍କ ପାଇଁ ଗଠିତ। ବିଷ୍ଣୁ

୧୨୬। ମତ୍ସ୍ୟପୁରାଣ—୨୬୦/୨୨-୨୭

୧୨୭। I. V. pp. 51 (The theory of Henotheism)

୧୨୮। ମହାଭାରତ—ଅନୁ/୪୦,୫୭

୧୨୯। I.V, pp-51

ହସ୍ତ ଦ୍ୱୟରେ ଶଙ୍ଖଚକ୍ର ଥିବ । ମଣିକେୟୂର ବିଭୂଷିତ ହୋଇଥିବ । ସେତେବେଳେ ଗଦାଧରଙ୍କର ଶଙ୍ଖ ବଦଳରେ ଗଦା ମଧ୍ୟ ଧାରଣ କରିବାର ବିଧି ଅଛି । ସେ ପୀତବସ୍ତ୍ର ପିନ୍ଧିଥିବେ ଓ ଚରଣଟି ମଣିଭୂଷିତ ହୋଇଥିବ । ଏ ହେଉଛି ମୂର୍ତ୍ତିଟିର ବାମପାର୍ଶ୍ୱର ରୂପ । ପୁଣି ଦକ୍ଷିଣ ପଟରେ ଥିବା ଶିବାଂଶଟିରେ ସର୍ପଶୋଭିତ ହୋଇଥିବ । ଅର୍ଥାତ୍ ହାର୍ ଓ ବଳୟ ଆକାରରେ ସର୍ପମାନ ବିଦ୍ୟମାନ ଥିବେ । ଦକ୍ଷିଣଭୁଜ ବରଦ ମୁଦ୍ରାରେ ଥିବ । ଉପବୀତ ଭାବରେ ଥିବ ଏକ ସର୍ପ । କୃତ୍ତିବାସଙ୍କର ବସ୍ତ୍ର ହୋଇଥିବ ଚର୍ମ । ପାଦଟି ଭୂଷିତ ହୋଇଥିବ ମଣି ଓ ରତ୍ନରେ । ତହିଁରେ ପୁଣି ଥିବ ନାଗ (ସର୍ପ) । ଏରୂପର **ଶିବନାରାୟଣ ବା ହରିହରମୂର୍ତ୍ତି** ମତ୍ସ୍ୟପୁରାଣ କାଳରେ ନିର୍ମିତ ହେଉଥିଲେ ବୋଲି ପ୍ରମାଣ ଅଛି (୧୩୦) । ଅର୍ଥାତ୍ ପ୍ରଥମ ଶତାବ୍ଦୀ ପୂର୍ବରୁ ଏପରି ବିଗ୍ରହ ଏ ଦେଶରେ ନିର୍ମିତ ହେଉଥିବା ନିତାନ୍ତ ନିଃସନ୍ଦେହ ।

ଦେବତା ମୂର୍ତ୍ତିପ୍ରକରଣରେ ମଧ୍ୟ ହରିହରଙ୍କର ଅନୁରୂପ ବର୍ଣ୍ଣନା ମିଳିଥାଏ (୧୩୧)। ଏଥିରେ କୁହାଯାଇଛି ହରିହରଙ୍କ ମୂର୍ତ୍ତି ଗଢ଼ିଲାବେଳେ ବା ଆଙ୍କିଲାବେଳେ ଦକ୍ଷିଣ ଭାଗରେ ସଦାଶିବଙ୍କର ଧବଳମୂର୍ତ୍ତି କରିବା ବିଧେୟ ଏବଂ ବାମ ଭାଗରେ ହୃଷୀକେଶଙ୍କର ନୀଳାକୃତି କରାଯିବ । ଶିବଙ୍କ ପଛର ହସ୍ତ ବରଦମୁଦ୍ରାରେ ଓ ତ୍ରିଶୂଳଧାରଣ କରି ଶୋଭା ପାଉଥିବ ଏବଂ ବିଷ୍ଣୁଙ୍କ ପଛର ହସ୍ତଦ୍ୱୟରେ ଚକ୍ର ଓ ପଦ୍ମ ଧାରଣ କରାଯାଇଥିବ । ମୂର୍ତ୍ତିଟିର ପାର୍ଶ୍ୱରେ ଶିବଙ୍କପଟକୁ ବୃଷଭ ଓ ବାମପଟକୁ ଅର୍ଥାତ୍ ବିଷ୍ଣୁଙ୍କ ପାର୍ଶ୍ୱକୁ

---

୧୩୦ । ମତ୍ସ୍ୟପୁରାଣ—୨୬୦/୨୨-୨୭—
(ଆନନ୍ଦାଶ୍ରମ, ପୁନା, ୧୯୦୭)

ବାମାର୍ଦ୍ଧେ ମାଧବଂ ବିଦ୍ୟାତ୍ ଦକ୍ଷିଣେ ଶୂଳପାଣିନମ୍ ।
ବାହୁଦ୍ୱୟଂ ଚ କୃଷ୍ଣସ୍ୟ ମଣିକେୟୂର ଭୂଷିତମ୍ ॥
ଶଙ୍ଖଚକ୍ରଧରଂ ଶାନ୍ତଂ ଆରକ୍ତାଙ୍ଗୁଲିବିଭ୍ରମମ୍ ।
ଚକ୍ରସ୍ଥାନେ ଗଦାଂ ବାପି ପାଣୌ ଦଦ୍ୟାତ୍ ଗଦାଭୃତଃ ॥
ଶଙ୍ଖ ଚୈବେତରେ ଦଦ୍ୟାତ୍ କଟ୍ୟର୍ଦ୍ଧଃ ଭୂଷଣୋଜ୍ଜ୍ୱଳମ୍ ।
ପୀତବସ୍ତ୍ର ପରିଧାନଂ ଚରଣଂ ମଣିଭୂଷିତମ୍ ।
ଭୁଜଙ୍ଗମ୍ ହାରବଳୟଂ ବରଦଂ ଦକ୍ଷିଣଂ କରମ୍ ।
ବ୍ୟାଳୋପବୀତ ସଂଯୁକ୍ତଂ କଟ୍ୟର୍ଦ୍ଧଂ କୃତ୍ତିବାସସମ୍ ॥
ମଣିରତ୍ନୈଶ୍ଚ ସଂଯୁକ୍ତଂ ପାଦଂ ନାଗ ବିଭୂଷିତମ୍ ।
ଶିବନାରାୟଣ ସ୍ୟୈବ କଳ୍ପମେବଂ ଚ ସୁନ୍ଦରମ୍ ॥

୧୩୧ । Devata murtiprakarana and Rupamandana-(Ed. by) V.M, Samkhya Tirtha--Cal, 1936-VI,-35-41,

ଗରୁଡ଼ର ମୂର୍ତ୍ତି ଥିବ (୧୩୨) । ପ୍ରାଚୀନ ମୂର୍ତ୍ତିତତ୍ତ୍ୱକୁ ଅଧ୍ୟୟନ କରି ଶିଳ୍ପୀମାନେ ହରିହରଙ୍କର ମୂର୍ତ୍ତିମାନ ମତ୍ସ୍ୟପୁରାଣ, ଦେବତା ମୂର୍ତ୍ତି ପ୍ରକରଣ ଇତ୍ୟାଦି ଗ୍ରନ୍ଥମାନଙ୍କରେ ଉପଦିଷ୍ଟ ହୋଇଥିବା ନିୟମାନୁସାରେ ନିର୍ମାଣ କରିଥିଲେ । ପ୍ରଥମଶତାବ୍ଦୀରୁ ବହୁପୂର୍ବରୁ ଏଭଳି ଅନେକ ମୂର୍ତ୍ତି ଏ ଦେଶରେ ନିର୍ମିତ ହୋଇଥିଲା ।

କୁଷାଣରାଜତ୍ୱକାଳରେ ନିର୍ମିତ ହରିହରମୂର୍ତ୍ତି ଦ୍ୱୟର ଦୁଇଟି ମସ୍ତକ କଳେବରଠୁ ଭଗ୍ନ ହୋଇ ମଥୁରା ମ୍ୟୁଜିୟମରେ ସଂଗୃହୀତ ହୋଇଅଛି (୧୩୩) । ପଞ୍ଚମଶତକରେ ନିର୍ମିତ ଏକ ହରିହର ମୂର୍ତ୍ତି ଏଲାହାବାଦ ମ୍ୟୁଜିୟମରେ ସଂରକ୍ଷିତ ହୋଇଛି (୧୩୪) । ଚତୁଷ୍କୋଣ ବିଶିଷ୍ଟ ଏହି ପ୍ରସ୍ତର ଫଳକରେ ଯଥାକ୍ରମେ ବ୍ରହ୍ମା, ବିଷ୍ଣୁ, ବାମନ ଓ ହରିହର ସ୍ଥାନ ପାଇଛନ୍ତି । ହରିହର ମୂର୍ତ୍ତିଟିରେ ଦକ୍ଷିଣପଟରେ ଶିବଙ୍କର ଜଟାଭାର, କୌପୀନ ଇତ୍ୟାଦି ପ୍ରଦର୍ଶିତ ହୋଇଥିବାବେଳେ ବାମପଟରେ ବିଷ୍ଣୁଙ୍କର ମୁକୁଟ ଓ ପୀତାମ୍ବର ପରିଷ୍ଫୁଟିତ ହୋଇଛି । ଉଭୟ ଦେବତା ନିଜନିଜର ଆୟୁଧମାନ ଧାରଣ କରିଛନ୍ତି । ସେହି ସମୟରେ ଗୁପ୍ତରାଜତ୍ୱ କାଳର ଏକ ହରିହର ମୂର୍ତ୍ତି ପାଟନା ମ୍ୟୁଜିୟମରେ ରହିଅଛି । ଶିବାଂଶରେ ଶିବ ଦକ୍ଷିଣପଟେ ପିନାକଧନୁ, ତ୍ରିଶୂଳ ଧରିଥିବାବେଳେ ବାମପଟେ ବିଷ୍ଣୁଙ୍କର ଆୟୁଧ ଶଙ୍ଖ ଓ ଚକ୍ରପୁରୁଷ ଧାରଣ କରିଛନ୍ତି (୧୩୫) । ସେହି ସଂଗ୍ରହାଳୟରେ ଥିବା ଅନ୍ୟଏକ ଅନୁରୂପ ହରିହର ମୂର୍ତ୍ତି ନବମଶତାବ୍ଦୀରେ ନିର୍ମିତ । ଶିବ ତାଙ୍କର ଦୁଇଟି ହସ୍ତରେ ପିନାକ ଓ ପଦ୍ମଧାରଣ କରିଛନ୍ତି ଏବଂ ବିଷ୍ଣୁଙ୍କର ଆୟୁଧଭାବରେ ଶୋଭାପାଉଛି ବାମପଟେ ଚକ୍ର ଓ ଗଦା । ଦୁଇକଡ଼ରେ ଯଥାକ୍ରମେ ନନ୍ଦୀ ଓ ଗରୁଡ଼ ଦଣ୍ଡାୟମାନ ରହିଛନ୍ତି । ବୃନ୍ଦାବନରେ ଜଣେ ମହନ୍ତଙ୍କର ନିଜ ସଂଗ୍ରହାଳୟରେ ନବମଶତାବ୍ଦୀରେ ନିର୍ମିତ ଏକ ସୁନ୍ଦର ହରିହର ମୂର୍ତ୍ତି ସଂରକ୍ଷିତ ହୋଇଛି (୧୩୬) । ଦକ୍ଷିଣପଟେ ଶିବ ଜଟାଭାର ଧାରଣ କରିଛନ୍ତି । କର୍ଣ୍ଣଦେଶରେ ସର୍ପ ବିଭୂଷିତ । ପରିଧାନ ଚର୍ମ । ହସ୍ତରେ ତ୍ରିଶୂଳ ଓ ଜପାମାଳା । ବାମରେ ବିଷ୍ଣୁଙ୍କ ପକ୍ଷରେ ମୁକୁଟ, କିରୀଟ ଓ

---

୧୩୨ । Devata Murti Prakarana—VI, 56-57.

" କାର୍ଯ୍ୟୋ, ହରିହରଶ୍ଚାପି ଦକ୍ଷିଣାର୍ଦ୍ଧେ ସଦାଶିବଃ ।
ବାମାର୍ଦ୍ଧେ ଚ ହୃଷୀକେଶଃ ଶ୍ୱେତନୀଳାକୃତିଃ କ୍ରମାତ୍ ।।
ବରଂ ତ୍ରିଶୂଳଂ ଚକ୍ରଞ୍ଚଧାରିଣୀ ବାହବଃ କ୍ରମାତ୍ ।
ଦକ୍ଷିଣେ ବୃଷଭଃ ପାର୍ଶ୍ୱେ ବାମେ ବିହଂଗରୁଡ଼ତ ।।

୧୩୩ । ମୂର୍ତ୍ତି ନମ୍ବର ୧୩୩୩ ଓ ୧୩୩୬ ।

୧୩୪ । ମୂର୍ତ୍ତି ନମ୍ବର—୨୯୨

୧୩୫ । I.V.(Fig, No.-45).

୧୩୬ । I.V (Fig No. 46)

ବନମାଳା ସୁଶୋଭିତ । କଟିଦେଶରେ ପୀତାମ୍ବର । ଉପର ହସ୍ତରେ ଆୟୁଧ ଚକ୍ର ଓ ନିମ୍ନ ହସ୍ତରେ ସୁଶୋଭିତ ଏକ ସୁନ୍ଦର ଶଙ୍ଖ । ହରିହରଙ୍କର ଉଭୟ ପାର୍ଶ୍ୱରେ ଉପସ୍ଥିତ ଦୁଇଜଣ ଆୟୁଧ ପୁରୁଷ । ମୂର୍ତ୍ତିଟିର ନିମ୍ନାଂଶରେ ଖୋଦିତ ନନ୍ଦୀ-ବୃଷଭ ଓ ଗରୁଡ଼ । ଗଠନ ଦୃଷ୍ଟିରୁ ଏହି ହରିହର ମୂର୍ତ୍ତିଟି ଅତି ସୁନ୍ଦର । ପୁଣି ସେହି ନବମ ଶତାବ୍ଦୀରେ ନିର୍ମିତ ଅନ୍ୟଏକ ମୂର୍ତ୍ତି ଦେଖାଯାଏ ଲକ୍ଷ୍ନୌ ସଂଗ୍ରହାଳୟଠାରେ । ଏ ମୂର୍ତ୍ତିଟିରେ ମଧ୍ୟ ପୂର୍ବୋକ୍ତ ପ୍ରକାରେ ସମସ୍ତ ଲକ୍ଷଣ ସ୍ପଷ୍ଟ । ଦକ୍ଷିଣରେ ନିଜର ଆୟୁଧ ଓ ଅନ୍ୟାନ୍ୟ ଲକ୍ଷଣ ସହିତ ଶିବ ଶୋଭିତ ହୋଇଥିବା ବେଳେ ବାମରେ ବିଷ୍ଣୁଙ୍କର ଅବସ୍ଥାନ ବଡ଼ ରମଣୀୟ । ନିମ୍ନଦେଶରେ ଠିକ୍ ସେହିପରି ରହିଛନ୍ତି ବୃଷଭ ନନ୍ଦୀ ଓ ଗରୁଡ଼ । ନବମ ଶତାବ୍ଦୀରେ ନିର୍ମିତ ଅନ୍ୟ ଏକ ହରିହର ମୂର୍ତ୍ତି ଆଶୁତୋଷ ମ୍ୟୁଜିୟମରେ ରହିଅଛି । ଏଥିରେ ମଧ୍ୟ ଲକ୍ଷଣମାନଙ୍କରେ କୌଣସି ବ୍ୟତିକ୍ରମ ନାହିଁ । ମୂର୍ତ୍ତିଟି ବଙ୍ଗମାନରୁ ମିଳିଛି ବୋଲି ତହିଁରେ ଉଲ୍ଲିଖିତ ହୋଇଛି । ନବମ ଶତାବ୍ଦୀ ପରେ ଦଶମ ଶତାବ୍ଦୀରେ ନିର୍ମିତ ହରିହର ମୂର୍ତ୍ତି ଅଦ୍ୟାପି ଭୁବନେଶ୍ୱରର ଲିଙ୍ଗରାଜମନ୍ଦିରର ବେଢ଼ା ଅଂଶର ନିମ୍ନ ଦେଶରେ ପୂର୍ବ ଓ ଦକ୍ଷିଣପଟକୁ ବିରାଜମାନ । ଏ ମୂର୍ତ୍ତିରେ କୌଣସି ଲକ୍ଷଣ ବ୍ୟତିକ୍ରମ ନାହିଁ । ଏହି ହରିହର ମୂର୍ତ୍ତିମାନଙ୍କର ଦ ... ଂଶ ଶିବଙ୍କ ପାଇଁ ଓ ବାମାଂଶ ବିଷ୍ଣୁଙ୍କ ପାଇଁ ଉଦ୍ଦିଷ୍ଟ । ସେହି ସମୟରୁ ଲିଙ୍ଗ ... ଭୁବନେଶ୍ୱରଙ୍କୁ ମଧ୍ୟ 'ହରିହର' ଭାବରେ ଉପାସନା କରାଯାଉଛି । ସେଥିପାଇଁ ମନ୍ଦିରର ଅଗ୍ରଭାଗରେ ତ୍ରିଶୂଳ ଖଞ୍ଜା ନଯାଇ ପିନାକଧନୁ ଓ ଶାର୍ଙ୍ଗଧନୁ ତଥା ଅର୍ଦ୍ଧଚନ୍ଦ୍ରର ପ୍ରତୀକ ଏକ ଧନୁ ହିଁ ଖଞ୍ଜାଯାଇଛି । ☼

ଦଶମଶତାବ୍ଦୀ ପରେ ଯେ ହରିହର ମୂର୍ତ୍ତିର ନିର୍ମାଣ ବନ୍ଦ ହୋଇଗଲା, ସେକଥା ନୁହେଁ । ଭାରତର ବିଭିନ୍ନ ପ୍ରାନ୍ତରେ ଏକାଦଶ ଓ ଦ୍ୱାଦଶ ଶତାବ୍ଦୀରେ ମଧ୍ୟ ଅନେକ ହରିହର ମୂର୍ତ୍ତି ନିର୍ମିତ ହେଲେ । ତନ୍ମଧ୍ୟରେ ଯୋଧପୁର୍ (ରାଜସ୍ଥାନ) ନିକଟସ୍ଥ ଓସିଆନ-ଠାରେ ଥିବା ହରିହର (ମନ୍ଦିର) ଅନ୍ୟତମ । ଏଠାରେ ହରିହର ମନ୍ଦିରଟି ଏକାଦଶ ଶତାବ୍ଦୀର ଏକ ଅଭୁଲ କୀର୍ତ୍ତି । ଏଥିରେ ଥିବା ହରିହର ମୂର୍ତ୍ତିରେ ପୂର୍ବୋକ୍ତ ଲକ୍ଷଣ ମାନଙ୍କର କୌଣସି ବ୍ୟତିକ୍ରମ ଦେଖାଯାଏ ନାହିଁ । ଯେ ଯାହାହେଉ, ଏହିସବୁ

---

☼ଦ୍ରଷ୍ଟବ୍ୟ—ତ୍ରିଭୁବନେଶ୍ୱର ପ୍ରଥମେ ହିଁ ଶିବ, ଲିଙ୍ଗରାଜ । ପରେ ସେ ହେଲେ, ହରିହର । ମନ୍ଦିରଚୂଡ଼ାରେ ଥିବା ପିନାକଧନୁ ହେଉଛି ପ୍ରକୃତରେ ଏକ ଅର୍ଦ୍ଧତ୍ରିଶୂଳ । ଏହା ଧନୁପରି କେତେକାଂଶରେ ଦେଖାଯାଉଥିବାରୁ ଏହାକୁ ପିନାକଧନୁ ବୋଲି କୁହାଯାଉଛି । ଯାହା ଜଣାଯାଉଛି, ପ୍ରଥମେ ଏଠାରେ ଏକ ତ୍ରିଶୂଳ ଥିଲା । ପରେ ହରିହର ଉପାସନା ଲିଙ୍ଗରାଜଙ୍କଠାରେ ଆରୋପିତ ହେବାପରେ ଏକ ଅର୍ଦ୍ଧତ୍ରିଶୂଳ ମନ୍ଦିରରେ ସ୍ଥାପନ କରାଗଲା ଓ ଶିବଲିଙ୍ଗ ଶିବ-ନାରାୟଣ ଭାବରେ ଗୋପାଳମନ୍ତ୍ରରେ ପୂଜା ପାଇଲେ ।

ପ୍ରତ୍ନତାତ୍ତ୍ୱିକ ପ୍ରମାଣମାନଙ୍କୁ ଆଧାର କରି ନିଃସନ୍ଦେହରେ କୁହାଯାଇପାରେ ଯେ, 'ହରି-ହରଙ୍କର ଉପାସନା ପ୍ରଥମଶତାବ୍ଦୀଠାରୁ ଆରମ୍ଭକରି ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଏ ଦେଶରେ ଚାଲିଥିଲା । ମତ୍ସ୍ୟପୁରାଣ ଭଳି ହର୍ଷବର୍ଦ୍ଧନଙ୍କ ପ୍ରାଚୀନ ହିନ୍ଦୁଗ୍ରନ୍ଥରେ ଏ ମୂର୍ତ୍ତି ନିର୍ମାଣ କରିବାର ଉପଦେଶ ଦିଆଯାଇଥିବାରୁ (ପ୍ରଥମ ଶତକଠାରୁ ଦ୍ୱାଦଶ ଶତକ ମଧ୍ୟରେ) ଏହି ସହସ୍ରାଧିକ ବର୍ଷ ମଧ୍ୟରେ ଏ ଉପାସନା ସାରାଭାରତରେ ନିଶ୍ଚୟ ପରିବ୍ୟାପ୍ତ ହୋଇ-ପାରିଥିବ । ଶିବ ଓ ବିଷ୍ଣୁଙ୍କର ଏହା ସମ୍ମିଳିତ ମୂର୍ତ୍ତି ହୋଇଥିବାରୁ ଶୈବ ଓ ବୈଷ୍ଣବ; ଉଭୟେ ଏ ଉପାସନାକୁ ଆଦର କରିଥିବେ । ତେଣୁ ଏହା ହୋଇଥିବ ଅଧିକତର ଲୋକପ୍ରିୟ ।

ଶିବ ଓ ବିଷ୍ଣୁଙ୍କୁ ମିଳିତ ଭାବରେ ହରିହର ମୂର୍ତ୍ତିରୂପେ ପୂଜାକରିବା ପଛରେ ଯେଉଁଥିରେ ବୈଷ୍ଣବ ଓ ଶୈବମାନଙ୍କର ମନଭେଦର ଅବସାନ ଘଟିଲା, ସେହିପରି ବିଷ୍ଣୁ-ମନ୍ଦିର ଓ ଶିବମନ୍ଦିର ଏକ ସ୍ଥାନରେ ନିର୍ମାଣ କରାଯିବା ହେତୁ ଗୋଟିଏ ମନ୍ଦିର ବେଢ଼ାରେ ଶୈବ ଓ ବୈଷ୍ଣବ ସାଇ ଠୁଳ ହୋଇପାରିଲେ । ଫଳରେ ଉଭୟଙ୍କ ସେମାନଙ୍କର ମତ-ପାର୍ଥକ୍ୟର ଅବସାନ ଘଟିଲା । ଓଡ଼ିଶାରେ ଅଷ୍ଟମ ଓ ନବମ ଶତାବ୍ଦୀ ମଧ୍ୟରେ ନିର୍ମିତ ଗନ୍ଧରାଡ଼ିରେ ଦୁଇଟି ମନ୍ଦିରରେ ପାଖାପାଖି ଶିବ (ସିଦ୍ଧେଶ୍ୱର) ଓ ବିଷ୍ଣୁ (ନୀଳମାଧବ) ପୂଜିତ ହେଉଛନ୍ତି (୧୩୭) । ଦଶମ ଶତାବ୍ଦୀ ବେଳକୁ ଭୁବନେଶ୍ୱରରେ ଲିଙ୍ଗରାଜଙ୍କ ବେଢ଼ାରେ ଅନେକ ଶିବମନ୍ଦିର ମଧ୍ୟରେ କୃଷ୍ଣ, ବଳରାମ, ଏକାନଂଶାଙ୍କର ମନ୍ଦିର ମଧ୍ୟ ନିର୍ମିତ ହେଲା । ✻ (୧୩୭କ) ଦ୍ୱାଦଶ ଶତାବ୍ଦୀର ଅନେକ ପୂର୍ବରୁ ପୁରୁଷୋତ୍ତମ ଜଗନ୍ନାଥଙ୍କ ବେଢ଼ାରେ ବିମଳାଙ୍କ ସହିତ ପଞ୍ଚମହାଦେବଙ୍କର ମନ୍ଦିର ନିର୍ମିତ ହୋଇଥିଲା

---

୧୩୭ । C.J.R.T.O—pp.15. (See also there theFig. No.49)
[କଣ୍ଟିଲୋ ଠାରେ ମଧ୍ୟ ପ୍ରାଗ୍‌ଗଙ୍ଗ Imperialଗଙ୍ଗଙ୍କ ରାଜତ୍ୱ କାଳରେ ନୀଳମାଧବ ଓ ସିଦ୍ଧେଶ୍ୱରଙ୍କର ମନ୍ଦିର ନିର୍ମିତ ହୋଇଥିଲା ।]

C.J.—Fig. No. 26.

✻୧୩୭କ । ଶିବପୀଠ ଲିଙ୍ଗରାଜ ମନ୍ଦିରକୁ ଏକ ବିଷ୍ଣୁକ୍ଷେତ୍ର ବା ପୀଠ ଭାବରେ ସେଠାରେ ବୈଷ୍ଣବ ଭକ୍ତ ସମାଗମ କରିବା ପାଇଁ ଅନେକ ବିଷ୍ଣୁମୂର୍ତ୍ତି ସ୍ଥାପନ କରାଗଲା । ସେଗୁଡ଼ିକ ହେଉଛି—ଏକ ନୃସିଂହ ବରାହ, ଲକ୍ଷ୍ମୀନାରାୟଣ ମୂର୍ତ୍ତି, ସତ୍ୟନାରାୟଣ ବା ବିଷ୍ଣୁମୂର୍ତ୍ତି (in front of Parvati temple) ଓ ଅନନ୍ତ ବାସୁଦେବ ସୁଭଦ୍ରା ମନ୍ଦିର । ପରେ ଏକ ପତିତପାବନ ଜଗନ୍ନାଥ ବିଗ୍ରହ ମଧ୍ୟ ଏଠାରେ ସ୍ଥାପିତ ହେଲା । ଏହାଦ୍ୱାରା ସମଗ୍ର ଓଡ଼ିଶାର ବୈଷ୍ଣବଧର୍ମ କେତେକାର ପରମ୍ପରା ସଂକ୍ଷେପରେ ରୂପାୟିତ ହେଲା । ଫଳରେ

ଏବଂ ନୃସିଂହ-ବିଷ୍ଣୁଙ୍କର ମନ୍ଦିର ସେଠାରେ ପୂର୍ବରୁ ରହିଥିଲା । ସେହିପରି ଭୁବନେଶ୍ୱରରେ ଦଶମଶତାବ୍ଦୀ ବେଳକୁ ଲିଙ୍ଗରାଜଙ୍କ ବେଢ଼ାରେ ପାର୍ବତୀଙ୍କର ମନ୍ଦିର ମଧ୍ୟ ଥିଲା । ଲିଙ୍ଗରାଜଙ୍କୁ ହରିହର ଭାବରେ ଉପାସନା କରାଯିବା ପୂର୍ବରୁ ଜଗନ୍ନାଥ ମନ୍ଦିରରେ ମଧ୍ୟ ତଦ୍ରୂପ ଉପାସନା ପ୍ରଚଳିତ ହୋଇଥିଲା ।

ହରିହର ମୂର୍ତ୍ତି ଯେପରି ଗୋଟିଏ ସମ୍ମିଳିତ (Composite) ମୂର୍ତ୍ତି, ସେହିପରି ଜଗନ୍ନାଥଙ୍କର ତ୍ରିମୂର୍ତ୍ତି ବା ଚତୁର୍ଦ୍ଧାମୂର୍ତ୍ତି ମଧ୍ୟ ଗୋଟିଏ ସମ୍ମିଳିତ ମୂର୍ତ୍ତି ବୋଲି ଧରାଯାଏ । ଯେପରି ହରିହରମୂର୍ତ୍ତିରେ ଦକ୍ଷିଣ ଭାଗ ହର ବା ଶିବଙ୍କ ପାଇଁ ଉଦ୍ଦିଷ୍ଟ ଓ ବାମଭାଗ ବିଷ୍ଣୁଙ୍କ ପାଇଁ ଉଦ୍ଦିଷ୍ଟ, ସେହିପରି ଜଗନ୍ନାଥଙ୍କର ତ୍ରିମୂର୍ତ୍ତିରେ ଦକ୍ଷିଣ ଭାଗରେ ଥିବା ବଳଭଦ୍ର ହେଉଛନ୍ତି ଶିବ ଓ ବାମପଟରେ ପୂଜିତ ହେଉଥିବା ଜଗନ୍ନାଥ ହେଉଛନ୍ତି ବିଷ୍ଣୁ । ବଳଭଦ୍ରଙ୍କୁ କାଳାଗ୍ନିରୁଦ୍ର ଓ ଜଗନ୍ନାଥଙ୍କୁ ମହାବିଷ୍ଣୁ ବୋଲି ଶାସ୍ତ୍ରୀୟ ପ୍ରମାଣ ଥିବାର ପୂର୍ବରୁ ଆଲୋଚିତ ହୋଇଛି । ଅତଏବ, କୁହାଯାଇପାରେ, ହରିହରପୂଜା ଲୋକପ୍ରିୟ ହେବାପରେ ଶୈବ ଓ ବୈଷ୍ଣବଙ୍କର ମତଦ୍ୱୈଧର ଅବସାନ ପରେ ଏବଂ ବିଷ୍ଣୁ-ଶିବ ଏକା ମନ୍ଦିର ପ୍ରାଙ୍ଗଣରେ ଶୈବ ଓ ବୈଷ୍ଣବ; ଉଭୟଙ୍କ ଦ୍ୱାରା ପୂଜିତ ହେବା ପରେ ବଳଭଦ୍ରଙ୍କୁ ଶିବ ବୋଲି ସ୍ୱୀକାର କରାଗଲା । ଫଳରେ ଜଗନ୍ନାଥକ୍ଷେତ୍ର ମଧ୍ୟ ଶିବ ଓ ବିଷ୍ଣୁ ଉଭୟଙ୍କର ଆରାଧନାର କ୍ଷେତ୍ର ହୋଇଉଠିଲା । ସେହିପରି ଭୁବନେଶ୍ୱରସ୍ଥ ଲିଙ୍ଗରାଜ ମହାପ୍ରଭୁ ହରିହର ଭାବରେ ଉପାସିତ ହେବାଫଳରେ ନୀଳାଦ୍ରି ଭଳି ଏ ସ୍ୱର୍ଣ୍ଣାଦ୍ରି ବା ଏକାମ୍ର ପୀଠ ମଧ୍ୟ ଶିବ ଓ ବିଷ୍ଣୁଙ୍କର ସମ୍ମିଳିତ କ୍ଷେତ୍ର ଭାବରେ ବିବେଚିତ ହେଲା । ଫଳରେ ପୁରୁଷୋତ୍ତମକ୍ଷେତ୍ର ପ୍ରତି ଆକୃଷ୍ଟ ହେଲେ ସପ୍ତମ ବା ଅଷ୍ଟମ ଶତକରେ ଶୈବଗୁରୁ ଶଙ୍କରାଚାର୍ଯ୍ୟ ଓ ଦ୍ୱାଦଶ ଶତାବ୍ଦୀରେ ବୈଷ୍ଣବଗୁରୁ ରାମାନୁଜ ଓ ଅନ୍ୟାନ୍ୟ ଧର୍ମଗୁରୁମାନେ ।

## ଶକ୍ତି ସୁଭଦ୍ରା :—

ମଧ୍ୟରେ ଥିବା ଦେବୀ ସୁଭଦ୍ରା ଶିବ ବଳଭଦ୍ର ଓ ବିଷ୍ଣୁ ଜଗନ୍ନାଥ, ଉଭୟଙ୍କର ଶକ୍ତି ଭାବରେ ବିବେଚିତ ହେଲେ । ତାଙ୍କୁ କମଳା, ଲକ୍ଷ୍ମୀ ବୋଲି ଯେତିକି ସ୍ୱୀକାର କରାଗଲା, ସେତିକି କାତ୍ୟାୟିନୀ, ଭୁବନେଶ୍ୱରୀ ବା ଦୁର୍ଗା ଭାବରେ ମଧ୍ୟ ଗ୍ରହଣ କରାଗଲା । ବୈଷ୍ଣବ-ମାନେ କୃଷ୍ଣ-ଜଗନ୍ନାଥ ଓ ବଳରାମ-ବଳଭଦ୍ରଙ୍କୁ ବିଷ୍ଣୁ ବୋଲି ଚିନ୍ତାକଲେ ସୁଭଦ୍ରାଙ୍କୁ ସେ ଉଭୟଙ୍କର ଶକ୍ତି ଭାବରେ ମାନିଲେ । ପୁଣି ରକ୍ଷଣଶୀଳ ଶୈବମାନେ ବଳଭଦ୍ରଙ୍କୁ

ଶୈବମାନଙ୍କ ସହିତ ବୈଷ୍ଣବ ଭକ୍ତମାନେ ଏଠାରେ ବହୁ ସଂଖ୍ୟାରେ ଆସି ପହଞ୍ଚିଲେ । ହରିହର ଶିବଙ୍କୁ ଦର୍ଶନ କରି ଓ ଏହିସବୁ ନାରାୟଣ ବିଗ୍ରହ-ମାନଙ୍କୁ ଦେଖି ସେମାନେ ମୁଗ୍ଧ ହେଲେ ।

ଶିବ, ଜଗନ୍ନାଥଙ୍କୁ ଭୈରବ ବୋଲି ସ୍ୱୀକାର କରି; ସେହି ଉଭୟ ଶିବଙ୍କର ଶକ୍ତି ଭାବରେ ସୁଭଦ୍ରାଙ୍କୁ ସ୍ୱୀକାର କଲେ । ମଧ୍ୟ ଯୁଗରେ (Medieval period) ଲିଖିତ ତନ୍ତ୍ରଗ୍ରନ୍ଥ 'ପୀଠନିର୍ଣ୍ଣୟ' ବା ମହାପୀଠ ନିରୂପଣରେ ଜଗନ୍ନାଥଙ୍କୁ ଭୈରବ' ବୋଲି କୁହାଯାଇଛି । (୧୩୮) କାଳିକା ପୁରାଣରେ ଜଗନ୍ନାଥଙ୍କୁ ଭୈରବ ବୋଲି କୁହାଯାଇ, ତାଙ୍କର କ୍ଷେତ୍ରକୁ ଜଗନ୍ନାଥ ଓ କାତ୍ୟାୟନୀଙ୍କର ପୁଣ୍ୟପୀଠ ବୋଲି ବର୍ଣ୍ଣନା କରାଯାଇଛି (୧୩୯) । ବୌଦ୍ଧତନ୍ତ୍ରମାନ ମଧ୍ୟ ଜଗନ୍ନାଥଙ୍କୁ କାତ୍ୟାୟନୀଙ୍କ ସହିତ ପୂଜିତ ହେବାର କଥା ଉଲ୍ଲେଖ କରିଛନ୍ତି । ଅଷ୍ଟମ ଶତାବ୍ଦୀରେ ବଙ୍ଗଳାର ପାଳବଂଶର ପ୍ରତିଷ୍ଠାତା ରାଜା ଗୋପାଳଙ୍କର ପୁତ୍ର ଅନଙ୍ଗବଜ୍ରଙ୍କର ପରବର୍ତ୍ତୀ ପଦ୍ମବଜ୍ର ବୌଦ୍ଧତନ୍ତ୍ର 'ହେବଜ୍ରତନ୍ତ୍ର'ରେ ଜଗନ୍ନାଥ ଉତ୍ତରଦେଶରେ କାତ୍ୟାୟନୀଙ୍କ ସହିତ (ଦୁର୍ଗାମାଧବ) ପୂଜିତ ହେବା କଥା ଉଲ୍ଲେଖ କରିଛନ୍ତି (୧୪୦) । ଡ଼: ଡି: ସି ସରକାର ଏହି ଗ୍ରନ୍ଥର ସମୟ ଅଷ୍ଟମଶତାବ୍ଦୀ ବୋଲି କହୁଥିବାସ୍ଥଳେ, ବି: ଭଟ୍ଟାଚାର୍ଯ୍ୟ ପ୍ରଭୃତି ଅନ୍ୟାନ୍ୟ ସମାଲୋଚକମାନେ ଏହି ଗ୍ରନ୍ଥ ଖ୍ରୀ: ଅ: ୬୯୩ ପୂର୍ବରୁ ରଚିତ ବୋଲି ପ୍ରମାଣ କରିଛନ୍ତି (୧୪୧) । ଯଦି ସେହି ସମାଲୋଚକମାନଙ୍କର କଥା ଗ୍ରହଣୀୟ ହୁଏ, ତେବେ ସପ୍ତମ ଶତାବ୍ଦୀରେ ଜଗନ୍ନାଥଙ୍କର ଉପାସନା ହୋଇସାରିଥିଲା ବୋଲି ବୁଝିବାକୁ ହେବ । ନାହିଁ, ଯଦି ଶ୍ରୀଯୁକ୍ତ ସରକାରଙ୍କ ମତକୁ ଗ୍ରହଣ କରାଯାଏ, ତେବେ ଅଷ୍ଟମଶତକ ବେଳକୁ ଜଗନ୍ନାଥ ତାନ୍ତ୍ରିକମାନଙ୍କ ମତରେ ଶିବରୂପ ଭୈରବ ବୋଲି ସ୍ୱୀକୃତ ହେବା ସମ୍ଭବ । ସେ ଯାହାହେଉ, ଏକଦା ଶୈବ ଓ ବୈଷ୍ଣବିକ ଶାକ୍ତମାନେ ବିମଳାଙ୍କୁ ଭୈରବୀ ଭାବରେ ଉପାସନା କରି ଜଗନ୍ନାଥଙ୍କୁ

---

୧୩୮ । The Sakta pithas—D. C. Sircar—Motilal Banarasi das—Delhi—1973—pp. 4. (For its date).—ପୀଠ ନିର୍ଣ୍ଣୟ ବା (ମହାପୀଠ ନିରୂପଣମ୍)—M. S. Royal Asiatic Society, Bengal. (Nos. 196,3400 and 5303)—ଉଦ୍ଧୃତ—The Sakta pithas—ଦ୍ରଷ୍ଟବ୍ୟ—ପୃ-୪୫ (Note-5) ।

"ବିରଜା ଚୋତ୍କଳେଖ୍ୟାତା ନାଭିର୍ମେ ମମ ଭୈରବଃ ।
ଗଣ୍ଡକ୍ୟାଂ ଗଣ୍ଡକୀ ଚଣ୍ଡୀ ଜଗନ୍ନାଥସ୍ତୁ ଭୈରବଃ ।

୧୩୯ । କାଳିକା ପୁରାଣ--୭୬/୪୩-୪୫ । (କାନ୍ୟଦେବ ଖ୍ରୀ:ଅ: ୧୦୯୭—୧୧୩୩ ମଧ୍ୟରେ ଏହି ପୁରାଣରୁ ଉଦ୍ଧୃତ ଦେଇଥିବାରୁ, ଏ ଉପପୁରାଣ ନିଶ୍ଚୟ ଏହି ସମୟର ପୂର୍ବବର୍ତ୍ତୀ ।)

୧୪୦ । ହେବଜ୍ରତନ୍ତ୍ର—(ବଙ୍ଗବାସୀ)—ପୃ: ୪୧୦—

"କାତ୍ୟାୟନୀଂ ଜଗନ୍ନାଥ ମୋଡ୍ରେଶଂ ଚ ପ୍ରପୂଜୟେତ୍" ।

୧୪୧ । The Sakta pithas—D. C. Sircar—pp.12,

ଭୈରବ ଭାବରେ ଉପାସନା କରିବାର ପରମ୍ପରା ଥିଲା (୧୪୨) । ତା'ଛଡ଼ା ଜଗନ୍ନାଥଙ୍କୁ ମଧ୍ୟ ଦେବୀ ଭାବରେ ବା ଦକ୍ଷିଣକାଳିକା ଭାବରେ ଦର୍ଶନ କରିବାକୁ ଶାକ୍ତମାନେ ପଛାଇ ନଥିଲେ (୧୪୩) । ଏସବୁ ବିଭିନ୍ନ ଭିନ୍ନ ଯୁଗରେ ଜଗନ୍ନାଥଙ୍କ ଉପରେ ବିଭିନ୍ନ ଧର୍ମାବଲମ୍ବୀ ବା ବିଭିନ୍ନ ମତବାଦୀଙ୍କ ଦ୍ୱାରା ଆରୋପିତ ହେଲେ ମଧ୍ୟ ସେ ଯେ ମୂଳତଃ ମହାବିଷ୍ଣୁ; ଏଥିରେ କିଛି ସନ୍ଦେହ କରିବାର ନାହିଁ । ଶିବମନ୍ଦିରରେ ହରିହର ମୂର୍ତ୍ତି ସ୍ଥାପନା କରି ଯେପରି କୁହାଯାଉଛି, ବିଷ୍ଣୁ ହେଉଛନ୍ତି ଶିବଙ୍କର ଅଙ୍ଗୀଭୂତ, ସେହିପରି ଜଗନ୍ନାଥଙ୍କୁ ଭୈରବ ବୋଲି ସ୍ୱୀକାର କରି ଶିବ-ଭୈରବଙ୍କୁ ଜଗନ୍ନାଥଙ୍କର ଅଙ୍ଗୀଭୂତ କରାଯାଇଛି (୧୪୩କ) ।

ଯଦିଓ ଭୁବନେଶ୍ୱର ଏକ ଶୈବପୀଠ, ତଥାପି ହରିହର ଉପାସନା ଫଳରେ ଶିବ ବିଷ୍ଣୁଙ୍କୁ ଅଙ୍ଗୀଭୂତ କରିଥିବାରୁ ଏହା ବୈଷ୍ଣବମାନଙ୍କର ମଧ୍ୟ ଏକ ଆଦରଣୀୟ କ୍ଷେତ୍ର ହୋଇପାରିଲା । କିନ୍ତୁ ମୂଳତଃ ଏହା ଥିଲା ଏକ ଶିବପୂଜାର କ୍ଷେତ୍ର । ପରେ ଦେଖ ଶିବପୂଜା ବା ଲିଙ୍ଗପୂଜା ଉପରେ ହରିହର ପୂଜାକୁ ଆରୋପ କରାଯାଇଥିଲା । ସେହିପରି ପୁରୁଷୋତ୍ତମକ୍ଷେତ୍ର ବା ପୁରୀ ମଧ୍ୟ ପ୍ରଥମରୁ ଥିଲା ଏକ ବୈଷ୍ଣବ ପୀଠ । ମାତ୍ର ପରେ ପୁରୁଷୋତ୍ତମଙ୍କ ଉପରେ ଭୈରବତ୍ୱ ଇତ୍ୟାଦି ଆରୋପିତ ହେଲା । ଫଳରେ ଏ କ୍ଷେତ୍ର ମଧ୍ୟ ଶୈବ, ଶାକ୍ତ, ବୈଷ୍ଣବ, ଧର୍ମଙ୍କର ପ୍ରାଣକେନ୍ଦ୍ର ହୋଇଉଠିଲା । ଏ କ୍ଷେତ୍ରରେ ପୁରୁଷୋତ୍ତମ ପୂଜିତ ହେଲେ ମଧ୍ୟ ବିମଳା (ଦୁର୍ଗା) ବି ସ୍ୱତନ୍ତ୍ର ଭାବରେ ଅନ୍ୟତ୍ର ପୂଜିତ ହେଉଥିଲେ । ପ୍ରାଚୀନ ମତ୍ସ୍ୟପୁରାଣରୁ ଯେପରି 'ବିମଳା ପୁରୁଷୋତ୍ତମ' ବୋଲି ଜଣାଯାଏ, ସେହିପରି ପରବର୍ତ୍ତୀ ସପ୍ତମ-ଅଷ୍ଟମ ଶତାବ୍ଦୀରେ ଲିଖିତ (ଶାକ୍ତଗ୍ରନ୍ଥ) ପୀଠ ନିର୍ଣ୍ଣୟ ଗ୍ରନ୍ଥରେ ଅନେକବାର ବିମଳା ନୀଳଗିରି-ପୁରୁଷୋତ୍ତମରେ ଅଧିଷ୍ଠାତ୍ରୀ ଦେବୀ ବୋଲି

---

୧୪୨ । C. J.—pp. 107. (ଉଦ୍ଧୃତ)—ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବଃ । (ଏବଂ The Land of Vishnu—pp—20,25,61, 62,63,64, 151, 152—For Vimala, pp. 62, 68,92,94—For ଭୈରବ ।)

୧୪୩ । "ଶ୍ରୀକ୍ଷେତ୍ରେ ତୁ ଜଗନ୍ନାଥଃ ସ୍ୱୟଂ ଦକ୍ଷିଣ କାଳିକା ॥

୧୪୩କ । ବିଷ୍ଣୁସହସ୍ରନାମରେ ବିଷ୍ଣୁଙ୍କୁ ତେଣୁ ଜଗନ୍ନାଥ ବୋଲି କୁହାଯିବା ସଙ୍ଗେ ସଙ୍ଗେ ରୁଦ୍ର (ଶ୍ଳୋକ ୧୭), ଈଶ୍ୱର (ଶ୍ଳୋ ।୧୯), ଲୋକନାଥ (ଶ୍ଳୋ ।୭), ଶର୍ବ,ଶିବ (ଶ୍ଳୋ ।୪); ଈଶାନ (ଶ୍ଳୋ ।୮), ଭୀମ (୩୯), ମହାଦେବ (ଶ୍ଳୋ ।୬୨), ବୋଲି ଶୈବନାମରେ ନାମିତ କରାଯାଇଛି ।

ଉଲ୍ଲେଖ ଅଛି (୧୪୪) । ଅତଏବ ସପ୍ତମ ଅଷ୍ଟମ ଶତାବ୍ଦୀ ବେଳକୁ ନୀଳଗିରି; ପୁରୁଷୋତ୍ତମ କ୍ଷେତ୍ର ତଥା ପୁରୁଷୋତ୍ତମ-ଜଗନ୍ନାଥ ପ୍ରସିଦ୍ଧ ହୋଇସାରିନ୍ତି ବୋଲି କହିବା ବାହୁଲ୍ୟ ମାତ୍ର । ବିମଳା ସ୍ୱତନ୍ତ୍ର ଭାବରେ ପୂଜିତ ହେଲେ ମଧ୍ୟ କ୍ରମେ ତାଙ୍କୁ ଜଗନ୍ନାଥଙ୍କର ଶକ୍ତି ଭୈରବୀ ବୋଲି ସ୍ୱୀକାର କରି ତାଙ୍କ ନିକଟରେ ଜଗନ୍ନାଥଙ୍କର ଭୋଗ ଅର୍ପିତ ହୋଇ ସେ ଭୋଗକୁ ମହାପ୍ରସାଦ ବୋଲି ସ୍ୱୀକାର କରାଗଲା । ଏହା ମଧ୍ୟ ଶଙ୍କରାଚାର୍ଯ୍ୟ .ପୁରୀ ଆସି ଭୋଗବର୍ଦ୍ଧନ ମଠ ପ୍ରତିଷ୍ଠା କରିବାର ପରବର୍ତ୍ତୀ ଘଟଣା ।

ବିମଳାଙ୍କୁ ଜଗନ୍ନାଥଙ୍କର ଏକ ଶକ୍ତି ଭାବରେ ଗ୍ରହଣ କରାଯାଇ ପୁଣି ଲକ୍ଷ୍ମୀ ସୁଭଦ୍ରା ବା ମଙ୍ଗଳମୟୀ (ସୁଭଦ୍ରା)ଙ୍କୁ କାତ୍ୟାୟନୀ-ସୁଭଦ୍ରା ଭାବରେ ସ୍ୱୀକାର କରାଗଲା । ଯଦିଓ ମହାଭାରତପ୍ରେମୀ ବୈଷ୍ଣବମାନେ ଏ ସୁଭଦ୍ରାଙ୍କୁ ଅର୍ଜୁନଙ୍କର ସ୍ତ୍ରୀ ତଥା ବଳଭଦ୍ରଙ୍କର ଭଗିନୀ ଭାବରେ ସ୍ୱୀକାର କଲେ, ତଥାପି ଅନ୍ୟ ସମସ୍ତେ ତାଙ୍କୁ ମହାଶକ୍ତି (ମଙ୍ଗଳମୟୀ) ସୁଭଦ୍ରା ଏକାନଂଶା ବା ଭଦ୍ରକାଳୀ ଭାବରେ ସ୍ୱୀକାର କଲେ ଏବଂ ସେଥିପାଇଁ ଅଷ୍ଟମଶତାବ୍ଦୀ ବେଳକୁ ଉତ୍କଳଖଣ୍ଡରେ ତାଙ୍କୁ ଓ ଉଭୟ ତତ୍ତ୍ୱର ଏକ ମିଳିତ ମର୍ମ୍ମ ମିଶ୍ର ଭାବରେ ବର୍ଣ୍ଣିତା କରାଗଲା (୧୪୫) । କାରଣ, ଦେବେଦେବଳକୁ ସୁଭଦ୍ରା ଯେପରି ଭାବରେ ବିବେଚିତ ହେଉଥିଲେ ସ୍କନ୍ଦପୁରାଣ ଉତ୍କଳଖଣ୍ଡ ସେପରି ଭାବରେ (୧୪୬) ବର୍ଣ୍ଣନା କଲା । ସେହି

---

୧୪୪ । The Sakta pithas—pp. 68. (Sircar)—pp. 27.31 (N)

"ବିଦ୍ୟା ବିଦ୍ୟାପୁରେ ଚୈବ ବିମଳା ନୀଳପର୍ବତେ
ରାମେଶ୍ୱରୀ ସେତୁବନ୍ଧେ ବିମଳା ପୁରୁଷୋତ୍ତମେ ।
(Sakta pithas—pp.31.(N))
ବିରଜା ଯାଗପୁର୍ଯ୍ୟାଙ୍କ ଭଦ୍ରେଽପି ଭଦ୍ରକର୍ଣ୍ଣିକା···

୧୪୫ । ସ୍କନ୍ଦ—ପୁ: ମା:—୧୯/୧୧,୧୪—

ଇୟଂ କୃଷ୍ଣାବତାରେ ହି ରୋହିଣୀ ଗର୍ଭସମ୍ଭବା ।
ବଳଭଦ୍ରାନୁଜଙ୍ଘାତା ବଳରୂପସ୍ୟ ଶକ୍ତିନାତ୍ ॥୧୧॥
ଭଗିନୀ ବଳଦେବସ୍ୟ ଇତ୍ୟେଷା ପୌରାଣିକୀ କଥା ॥୧୪॥

୧୪୬ । ସ୍କନ୍ଦ—ପୁ: ମା:—୧୯/୧୧—

ଲକ୍ଷ୍ମୀଃପ୍ରାଦୁର୍ବଭୂବେଯଂ ସର୍ବ ଚୈତନ୍ୟ ରୂପିଣୀ ॥୧୧॥

" " —୨୭/୫୭—

ଭଦ୍ରା ଭଦ୍ରସ୍ୱରୂପେ ତ୍ୱଂ ଭଦ୍ରକାଳୀ ! ନମୋଽସ୍ତୁତେ ।

ସମସ୍ତରେ ଲିଖିତ ଶାକ୍ତଗ୍ରନ୍ଥ 'ପୀଠନିର୍ଣ୍ଣୟ'ରେ ମଧ୍ୟ ସୁଭଦ୍ରାଙ୍କୁ କେଉଁଠି ହେଲେ ଅର୍ଜ୍ଜୁନଙ୍କର ସ୍ତ୍ରୀ ବୋଲି ବର୍ଣ୍ଣନା ନକରି ଭଦ୍ରକାଳୀ, କାତ୍ୟାୟନୀ ଇତ୍ୟାଦି ଶିବଙ୍କର ଶକ୍ତି ଭାବରେ ବର୍ଣ୍ଣନା କରାଯାଇଛି । ପୁରୁଷୋତ୍ତମକ୍ଷେତ୍ରରେ ବିମଳା ବିଶିଷ୍ଟ ଶିବଶକ୍ତି ଥିବାରୁ ତଥା ବଳି ଇତ୍ୟାଦି ଭୋଗ ପାଉଥିବାରୁ ତାଙ୍କୁ ଶାକ୍ତମାନେ ଏ କ୍ଷେତ୍ରରେ ବିଶେଷ ପ୍ରାଧାନ୍ୟ ଦେଇଥିଲେ । ସୁଭଦ୍ରାଙ୍କୁ ସେମାନେ ଶ୍ରଦ୍ଧା ଓ ଭକ୍ତି କରୁଥିଲେ ସତ; ମାତ୍ର ପୁରୁଷୋତ୍ତମ କ୍ଷେତ୍ରରେ ସୁଭଦ୍ରା ବିଷ୍ଣୁଶକ୍ତି ଲକ୍ଷ୍ମୀ ଓ ଶିବଶକ୍ତି କାତ୍ୟାୟନୀ, ଉଭୟଙ୍କର ସମାହାର ହୋଇଥିବାରୁ ଏବଂ ତନ୍ମଧ୍ୟରେ ବଳଭଦ୍ରଙ୍କର ଭଗିନୀ ଭାବରେ ବିବେଚିତ ହେଉଥିବାରୁ ଶାକ୍ତମାନେ ତାଙ୍କୁ ବିମଳାଙ୍କଠାରୁ ଅଧିକ ପ୍ରାଧାନ୍ୟ ଦେଉନଥିଲେ । ତଥାପି ଶାକ୍ତମାନଙ୍କ ମତରେ ଶୋଣନଦୀର ସଙ୍ଗମସ୍ଥଳରେ ସପ୍ତମ-ଅଷ୍ଟମ ଶତକରେ ପୂଜିତ ହେଉଥିବା ସୁଭଦ୍ରା (୧୪୮) (ଦୁର୍ଗା) ହେଉଛନ୍ତି, ପ୍ରକୃତ ମହାଶକ୍ତି । ଏହି ଶୋଣସଙ୍ଗମା 'ଈଶ୍ୱରପ୍ରିୟା ସୁଭଦ୍ରା ଓ ପୁରୁଷୋତ୍ତମକ୍ଷେତ୍ରର ସୁଭଦ୍ରା ଯେ ଗୋଟିଏ ଦୃଷ୍ଟିରୁ ଏକ ମହାଶକ୍ତି ବା ଉଭୟଙ୍କ ମଧ୍ୟରେ ତତ୍ତ୍ୱଦୃଷ୍ଟିରୁ ଯଥେଷ୍ଟ ସାମ୍ୟ ରହିଛି, ସେକଥା କେହି ଅସ୍ୱୀକାର କରିବାର ନୁହେଁ । ଯେ ଯାହାହେଉ, ଏକସିଦ୍ଧାନ୍ତ ଭାବରେ କୁହାଯାଇପାରେ, ସପ୍ତମ-ଅଷ୍ଟମ ଶତାବ୍ଦୀବେଳକୁ ପୁରୁଷୋତ୍ତମକ୍ଷେତ୍ର ଯେ ଶୈବ, ଶାକ୍ତ ଓ ବୈଷ୍ଣବମାନଙ୍କର ଏକ ସମନ୍ୱୟ ପୀଠ ହୋଇସାରିଥିଲା, ଏଥିରେ କିଛି ସନ୍ଦେହ ନାହିଁ । ଭୁବନେଶ୍ୱର ମୂଳତଃ ଯେପରି ଶିବପୀଠ, ପୁରୀ ସେପରି ଏକ ବିଷ୍ଣୁପୀଠ । ଧର୍ମପରଂପରା ବିବେଚନା କଲେ ସ୍ପଷ୍ଟ ଭାବରେ ଜଣାଯାଏ ଯେ, ବିଷ୍ଣୁ ଉପାସନା ବହୁକାଳରୁ ଭାରତରେ ତଥା ଓଡ଼ିଶାରେ ହୋଇଆସିଛି । ଜଗନ୍ନାଥ ମନ୍ଦିରରେ ପ୍ରଥମେ ପୁରୁଷୋତ୍ତମ ବିଷ୍ଣୁ ଓ ପରେ ଦାରୁମୂର୍ତ୍ତି ଜଗନ୍ନାଥ ପୂଜା ପାଇଛନ୍ତି । ପୁଣି କ୍ରମଶଃ ବଳଭଦ୍ର ସୁଭଦ୍ରା, ଆଦି ତାଙ୍କ ସହିତ ସଂଯୁକ୍ତ ହୋଇ ପୂଜିତ ହୋଇଛନ୍ତି । ସେଥିପାଇଁ ଜଗମୋହନରୁ ବା ନାଟମଣ୍ଡପରୁ ଦର୍ଶନ କଲେ ସିଂହାସନରେ ଏକାସାଙ୍ଗରେ ସମସ୍ତେ ଦୃଷ୍ଟିପଥାରୂଢ଼ ହୁଅନ୍ତି ନାହିଁ । ସଂଖ୍ୟା ବୃଦ୍ଧି

---

୧୪୭ । ପୀଠନିର୍ଣ୍ଣୟଃ—Vide-The Sakta pithus—pp. 30(N)—

ସୁଭଦ୍ରା ଭଦ୍ରଦାଭବ୍ୟା ଭଦ୍ରକାଲେଶ୍ୱରେ ତଥା ।
ମହାଭଦ୍ରା ଭଦ୍ରକାଳୀ ହରତାର୍ଥେ ଗବୀଶ୍ୱରୀ ।।

୧୪୮ । ଶାକ୍ତପୀଠ ନିର୍ଣ୍ଣୟଃ—Vide—The Sakta pithas—
Sircar—pp. 69: 2N (N)

"ଉତ୍ପଳାବର୍ତ୍ତକେ ଲୋଲା ସୁଭଦ୍ରା ଶୋଣସଙ୍ଗମେ । pp.69.
"ଭଦ୍ରା ଚ ଭଦ୍ରକାଳୀ ଚ ଭଦ୍ରେଶ୍ୱରୀଶ୍ୱର ପ୍ରିୟା ।। pp.29 (N.)

(ଶୋଣସଙ୍ଗମ—ବିହାରର ପାଟନାଠାରେ ଶୋଣନଦୀ ଗଙ୍ଗାରେ ମିଶିଛି ।)

ହିଁ ଏହାର ଏକ କାରଣ । ତେବେ ଯେ ଯାହାହେଉ, ଜଗନ୍ନାଥ ମନ୍ଦିର ଯେ ଏକ ସୃଷ୍ଟି-ମନ୍ଦିର ଏଥିରେ କୌଣସି ସନ୍ଦେହ ନାହିଁ । ସୃଷ୍ଟି ଏଠାରେ ଏକ ଓ ଅନେକ, ବ୍ୟଷ୍ଟି ଓ ସମଷ୍ଟି ଇତ୍ୟାଦି ରୂପରେ ପୂଜିତ ହୁଅନ୍ତି । ସେଥିପାଇଁ ସେ ମୂଳତଃ ଏକ ଓ ପରେ ଅନେକ । "ଏକୋଽହଂ, ବହୁସ୍ୟାମ୍"; ଏହା ହିଁ ଦର୍ଶାଏ । ନୋହିଲେ ସୃଷ୍ଟି-ବାହନ ଭାବରେ ସେଠାରେ ଗୋଟିଏ ଗରୁଡ଼ କାହିଁକି ଅଛନ୍ତି ? ଚତୁର୍ଦ୍ଧାମୂର୍ତ୍ତିଙ୍କ ପାଇଁ ବ୍ୟକ୍ତି ବାହନ କାହିଁକି ନାହାନ୍ତି; ଏହା ଏହି ସତ୍ୟକୁ ଉଦ୍‌ଘାଟନ କରୁଛି । ତା' ଛଡ଼ା ମନ୍ଦିର ଗାତ୍ରରେ ଥିବା ବୈଷ୍ଣବାତ୍ମକ ଶିଳ୍ପଭାସ୍କର୍ଯ୍ୟମାନ ଏଠାର ବୈଷ୍ଣବତ୍ୱକୁ ସ୍ୱୀକାର କରି ପରମ୍ପରାକୁ ମାନିନେଉଥିବା ବେଳେ, ଅଯଥାରେ ସନ୍ଦେହ ପୋଷଣ କରି ଏ ଦେବତାଙ୍କୁ ଆଦିବାସୀ ଦେବତା, ବୌଦ୍ଧ ବା ଜୈନ ଦେବତା ଭାବରେ ଚିତ୍ରଣ କରିବା ସେତିକି ହାସ୍ୟାସ୍ପଦ, ସେତିକି ବିଚିତ୍ର ।

# ତୃତୀୟ ପରିଚ୍ଛେଦ

## ଶିଳାଲେଖ ପ୍ରମାଣରେ ବିଷ୍ଣୁପୂଜା ଓ ପୁରୁଷୋତ୍ତମ-ଜଗନ୍ନାଥ

ଗ୍ରନ୍ଥପ୍ରମାଣ ଓ ପ୍ରତ୍ନତାତ୍ତ୍ୱିକ ପ୍ରମାଣ ଭିତ୍ତିରେ ବିଷ୍ଣୁପୂଜା ଓ ଜଗନ୍ନାଥ ଉପାସନାର ବିକାଶ ସମ୍ବନ୍ଧରେ ସମ୍ୟକ୍ ଆଲୋଚନା ପରେ ଏ ଦିଗରେ ଶିଳାଲେଖ ପ୍ରମାଣ ଗୁରୁତ୍ୱ ଓ ଆବଶ୍ୟକତା ଐତିହାସିକ ଦୃଷ୍ଟିରୁ ରହିଅଛି । ପୂର୍ବୋକ୍ତ ପ୍ରମାଣରୁ ଏହା ଜାଣିବା ସମୀଚୀନ ଯେ, ପ୍ରାଚୀନ ଭାରତ ଅତ୍ୟନ୍ତ ବିଶାଳ ହେଲେ ମଧ୍ୟ ଏକ ମହାଭାରତୀୟ ଧାର୍ମିକଚେତନା ସମଗ୍ର ଦେଶରେ ବ୍ୟାପି ରହିଥିଲା । ସେଥିପାଇଁ କୁରୁକ୍ଷେତ୍ରଠାରୁ ଆରମ୍ଭକରି ଗୟା ପ୍ରଭାସ କ୍ଷେତ୍ର, ରାମେଶ୍ୱରକ୍ଷେତ୍ର ପର୍ଯ୍ୟନ୍ତ ପ୍ରତ୍ୟେକଟି କୋଟିଏ କୋଟିଏ ତୀର୍ଥସ୍ଥାନ ବୋଲି ଗଣାଯାଉଥିଲା ଏବଂ ଗଙ୍ଗାଠାରୁ ଆରମ୍ଭକରି ଗୋଦାବରୀ ଓ ନର୍ମଦା ଆଦି ନଦୀମାନଙ୍କୁ ପବିତ୍ର ବୋଲି ବିଚାରକରି ନିଆଯାଉଥିଲା । ଏହି ତୀର୍ଥସ୍ଥାନ ଓ ପବିତ୍ର ନଦୀମାନ ପ୍ରତ୍ୟେକ ଭାରତୀୟଙ୍କ ପାଇଁ ପବିତ୍ର ବୋଲି ବିବେଚିତ ହୋଇଥିଲେ । ଏହି ଚିନ୍ତାଧାରା ନୂତନ ଚିନ୍ତାଧାରା ନୁହେଁ; ଅତି ପ୍ରାଚୀନ । (କୁରୁକ୍ଷେତ୍ର ଗୟାଗଙ୍ଗା ପ୍ରଭାସପୁଷ୍କରାଣି ଚ, ଏତାନି ପୁଣ୍ୟତୀର୍ଥାନି...) । ତାହା ସହିତ ବିଷ୍ଣୁ ଉପାସନା ମଧ୍ୟ ପ୍ରାଚୀନ ଓ ଏହି ଚିନ୍ତାଧାରା ସଙ୍ଗେ ସମକ୍ରମରେ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ("ଶୁକ୍ଳାମ୍ବରଧରଂ ବିଷ୍ଣୁଂ ଶଶିବର୍ଣ୍ଣଂ ଚତୁର୍ଭୁଜମ୍ ପ୍ରସନ୍ନବଦନଂ ଧ୍ୟାୟେତ୍...) । ଏଇଠି ଦେଖିବାର କଥା; ଏ ବିଷ୍ଣୁ ପୀତାମ୍ବରଧାରୀ ନୁହନ୍ତି; ଶୁକ୍ଳାମ୍ବର-ଧାରୀ । ପୁଣି କୃଷ୍ଣବର୍ଣ୍ଣ ନୁହନ୍ତି, ଶଶିବର୍ଣ୍ଣ ବା ଶୁକ୍ଳ । ଏହା ହେଉଛି, ଆମ ବିଷ୍ଣୁ ଉପାସନାର ଆଦିରୂପ । ପରେ ଅବଶ୍ୟ ବିଷ୍ଣୁଙ୍କୁ ବିଭିନ୍ନଦୃଷ୍ଟିରୁ କୃଷ୍ଣବର୍ଣ୍ଣ ବୋଲି ବିବେଚନା କରାଗଲା । ହୁଏତ ଏଥିରେ ଦକ୍ଷିଣଭାରତୀୟ ପ୍ରଭାବ ବା ଆଦିବାସୀ ସଂସ୍କୃତିର ପ୍ରଭାବ କିମ୍ବା ମିଶ୍ରିତ ହୋଇ ଏପରି ହୋଇଥିବ । ଫଳରେ ବିଷ୍ଣୁ ଚତୁର୍ଭୁଜ ହେଲେ ମଧ୍ୟ କୃଷ୍ଣକାୟ ହେଲେ । ସ୍ୱରୂପର ଆର୍ଯ୍ୟରୂପୀ ନ ହୋଇ ଅନାର୍ଯ୍ୟ ବା ଦ୍ରାବିଡ଼ରୂପୀ ହେଲେ । ଏହା ତ ଏକଦିଗର ଅନୁମାନର କଥା । ସଂସ୍କୃତି ମିଶ୍ରଣର କଥା । ହେଲେ, ମୂଳତଃ ଏହା ହେଉଛି ଆର୍ଯ୍ୟସଂସ୍କୃତି । ବୈଦିକ ଚିନ୍ତାଧାରା 'ଉରୁଗାୟ, ଉରୁକ୍ରମ, ବିକ୍ରମ' ଇତ୍ୟାଦି ସହିତ, ତଥା ବ୍ରାହ୍ମଣଗ୍ରନ୍ଥରେ ବର୍ଣ୍ଣିତ ବିଷ୍ଣୁ (ଶତପଥ ବ୍ରାହ୍ମଣ-୧୪.୧୧, ୧,୫ ) ଓ ମହାଭାରତର ବାସୁଦେବ ଉପାସନା ସହିତ ପରବର୍ତ୍ତୀ ଯୁଗର ବିଷ୍ଣୁ ଉପାସନାର ଯେ କିଛି ସମ୍ପର୍କ ନାହିଁ; ତାହା କୁହାଯାଇ ନପାରେ । ପୂର୍ବୋକ୍ତ

ଆଲୋଚନାମାନଙ୍କରୁ ଜଣାଯାଏ ଯେ, ବିଷ୍ଣୁ ପରବର୍ତ୍ତୀ ଯୁଗରେ ବିଭିନ୍ନ ରୂପରେ, ବିଭିନ୍ନ ଭାବରେ ପୂଜିତ ହେଉଥିଲେ । କେତେବେଳେ ଲକ୍ଷ୍ମୀଙ୍କ ସହିତ, କେତେବେଳେ ଶେଷନାଗଙ୍କ ସହିତ, କେତେବେଳେ ତାଙ୍କର ଆୟୁଧ ପୁରୁଷମାନଙ୍କ ସହିତ ଅଥବା ବ୍ୟୂହରୂପମାନଙ୍କ ସହିତ ପୂଜିତ ହେଉଥିବାର ଅନେକ ପ୍ରମାଣ ଉପଲବ୍ଧ ହୋଇଛି । ଆୟୁଧମାନଙ୍କ ମଧ୍ୟରୁ ଚକ୍ର, ଶଙ୍ଖଙ୍କୁ ପୁରୁଷ ବୋଲି ସ୍ୱୀକାର କରାଯାଉଥିବା ବେଳେ, ଗଦାଦେବୀଙ୍କୁ * ସ୍ତ୍ରୀ ବୋଲି କଳ୍ପନା କରାଯାଇଛି (୧) । ବିଷ୍ଣୁଧର୍ମୋତ୍ତରରେ ଏ ପ୍ରକାର ପରମ୍ପରାର ଆଭାସ ସ୍ପଷ୍ଟଭାବରେ ଉଲ୍ଲିଖିତ ହୋଇଅଛି (୨) । ଯେଉଁ ସାହା ପ୍ରଭାବରେ ପ୍ରଭାବିତ ହେଲେ ମଧ୍ୟ ହିନ୍ଦୁଧର୍ମର ପରମ୍ପରା ହେଉଛି ଆର୍ଯ୍ୟ ପରମ୍ପରା । ଅନ୍ୟ ଭାଷାରେ କହିଲେ ବୈଦିକ ପରମ୍ପରା । ଏ ପରମ୍ପରାର ଆପାତତଃ ରୂପରେ କିଞ୍ଚିତ ପରିବର୍ତ୍ତନ କାଳକ୍ରମେ ହୋଇଥିଲେ ମଧ୍ୟ ମୌଳିକତା ଯେ ସେଥିରେ ବିଲୁପ୍ତ ହୋଇନାହିଁ; ଏହା ସ୍ୱୀକାର କରିବାକୁ ହେବ । ସେହି ଦୃଷ୍ଟିରୁ ଦେଖିଲେ, ପୁରୁଷୋତ୍ତମ-ଜଗନ୍ନାଥ ଉପାସନା ଏକ ଭିନ୍ନ ରୂପରେ ଆପାତତଃ ପ୍ରତୀତ ହେଉଥିଲେ ମଧ୍ୟ ତନ୍ମଧ୍ୟରେ ସେହି

---

୧ । I. V.—PP.—9, 11, 17, 27, 102,

* ଦ୍ରଷ୍ଟବ୍ୟ—ସୁଦର୍ଶନ ଚକ୍ର ପୁଂଲିଙ୍ଗ, ତେଣୁ ଚକ୍ରପୁରୁଷ । ଗଦା ସ୍ତ୍ରୀଲିଙ୍ଗ; ତେଣୁ ଗଦାଦେବୀ । ଗଦାକାର ସୁଦର୍ଶନ ପୁରୁଷ ଓ ସ୍ତ୍ରୀ । ଆମର ଜଗନ୍ନାଥ ମନ୍ଦିରରେ ଥିବା ସୁଦର୍ଶନ ଗଦାକାର । ତାଙ୍କୁ ଦେବୀ ଭାବରେ ବିବେଚନା ନ କରାଯାଉଥିଲେ ମଧ୍ୟ ରଥଯାତ୍ରା ସମୟରେ ଦେବୀ ରଥରେ ହିଁ ନେବାକୁ ହୋଇଥାଏ । ସୁଭଦ୍ରାଙ୍କ ଭଳି ସେ ଜଗନ୍ନାଥଙ୍କର ଶକ୍ତି 'ଜଣେ ଇଚ୍ଛାଶକ୍ତି' ଓ ଜଣେ 'କ୍ରିୟା ଶକ୍ତି' । ସେ ଶକ୍ତି ଭାବେ ଶକ୍ତି ବା ଦେବୀରଥରେ ଯାଆନ୍ତି ।

୨ । ବିଷ୍ଣୁଧର୍ମୋତ୍ତରମ୍—୨।୮୫,୨—୧୫

"ଏକବକ୍ତ୍ର ଚତୁର୍ବାହୁଃ ସୌମ୍ୟରୂପଃ ସୁଦର୍ଶନଃ
ହଲଲଧ୍ବାଜ ମେଯାଭଃ ସର୍ବାଭରଣ ଭୂଷିତଃ ॥ × ×
ମଧ୍ୟେନ ତ୍ରିବଳିଭଙ୍ଗ ଶୋଭିତେନ ସୁସ୍ୱରୂଣା
ସ୍ତ୍ରୀରୂପଧାରଣୀ କ୍ଷୋଣୀ କାର୍ଯ୍ୟାତତ୍ର ପାଦମଧ୍ୟଗା ॥ × ×
ଉତ୍‌ଫୁଲ୍ଲ କମଳଂ ପାଣୌ କୁର୍ଯ୍ୟାତ୍ର ଦେବସ୍ୟ ଦକ୍ଷିଣେ
ବାମପାଣିଗତଂ ଶଙ୍ଖଂ ଶଙ୍ଖାକାରଂ ତୁ କାରୟେତ୍
ଦକ୍ଷିଣେ ତୁ ଗଦାଦେବୀ ତନୁମଧ୍ୟା ସୁଲୋଚନା
ସ୍ତ୍ରୀରୂପଧାରିଣୀ ମୁଗ୍ଧା ସର୍ବାଭରଣ ଭୂଷଣା ।

ବସ୍ତୁତଃ ଯେ ସ୍ପଷ୍ଟ; ଏଥିରେ ଦ୍ୱିରୁକ୍ତିର ଅବକାଶ ନାହିଁ । ମାତ୍ର, ଯଦି ଏହାକୁ ଏକ ପ୍ରାଚୀନ ପରମ୍ପରା ବୋଲି ସ୍ୱୀକାରକୁ ନଆଯାଏ, ତେବେ ସ୍ୱଭାବରେ ବସ୍ତୁ ପ୍ରକାର ବିକାଶ ଉପରେ ଶିଳାଲେଖ ପ୍ରମାଣକୁ ଏହି ଅଧ୍ୟାୟରେ ଗୁରୁତ୍ୱ ଦିଆଯାଇ ଆଲୋଚନା କରିବାକୁ ପଡ଼ୁଛି । କାରଣ, ଏହି ଧରଣର ପ୍ରମାଣର ପ୍ରାମାଣିକତା ଐତିହାସିକ ଦୃଷ୍ଟିରୁ ଅଧିକ ଗ୍ରହଣୀୟ ।

ମହାଭାରତ, ହରିବଂଶ ପ୍ରଭୃତିରେ ବାସୁଦେବ ଉପାସନା, ତଥା ଚତୁର୍ବ୍ୟୂହ, ପଞ୍ଚବ୍ୟୂହ ଇତ୍ୟାଦିଙ୍କର ଆରାଧନା କଥା ବର୍ଣ୍ଣିତ ହୋଇ ଲୋକପ୍ରିୟ ହୋଇପାରିବା ପରେ ଭାରତର ବିଭିନ୍ନ ସ୍ଥାନରେ ସେପରି ଆରାଧନା, ଅର୍ଚ୍ଚନା ଚାଲିଲା । ଶିଳାଲେଖରେ ମଧ୍ୟ ସେହି ଦେବାରାଧନା ବର୍ଣ୍ଣିତ ହେଲା । କୃଷ୍ଣୀବଂଶର ବାସୁଦେବ ସଙ୍କର୍ଷଣାଦି ପଞ୍ଚବୀରଙ୍କର ମୂର୍ତ୍ତି ପ୍ରତିଷ୍ଠିତ ହେଲା । ଖ୍ରୀ: ପୂ: ୨ୟ ଶତକରେ ଉତ୍କୀର୍ଣ୍ଣ 'ମୋରାକୂପ ଶିଳାଲେଖ' (Mora well inscription) ପ୍ରାଚୀନ ଯୁଗରେ ବାସୁଦେବ ଉପାସନାର ଏକ ସ୍ପଷ୍ଟ ପ୍ରତିଛବି ଭାବରେ ଏବେ ମଧ୍ୟ ଦଣ୍ଡାୟମାନ (୩) ।

ଖ୍ରୀ: ପୂ: ୧ମ ଶତାବ୍ଦୀରେ ମଥୁରାରେ ଶୋଦାସ ବୋଲି ଜଣେ ରାଜା ରାଜତ୍ୱ କରୁଥିଲେ । ସେତେବେଳେ 'ସାତ୍ୱତଧର୍ମ' ପ୍ରତିଷ୍ଠିତ ହୋଇସାରିଥିଲା । ବାସୁଦେବ ଉପାସନା ଲୋକପ୍ରିୟତା ଅର୍ଜନ କରିଥିଲା । ମଥୁରାର ଏକ ମନ୍ଦିରର ଦ୍ୱାରବନ୍ଧରେ ଖୋଦିତ ଏକ ଶିଳାଲେଖ ଏସବୁର ପ୍ରମାଣ ଦେଇଥାଏ (୪) । ଡ: ଏସ୍: ଅଗ୍ରୱାଲଙ୍କ ମତରେ ଏହି ଶିଳାଲେଖରେ ଉଲ୍ଲିଖିତ 'ମହାସ୍ଥାନ' ଶବ୍ଦର ଅର୍ଥ ହେଉଛି ମନ୍ଦିର । ଅର୍ଥାତ୍, ସେତେବେଳେ ମଥୁରାରେ ବାସୁଦେବଙ୍କର ଏକ ସୁନ୍ଦର ମନ୍ଦିର ଥିଲା ଓ ତହିଁରେ 'ବେଦୀ'* ଟିଏ ଏବଂ ତୋରଣ ମଧ୍ୟ ଶୋଭା ପାଉଥିଲା । 'ବସୁ' ବୋଲି ଜଣେ ରାଜା ଏସବୁ ନିର୍ମାଣ କରାଇଥିଲେ । ସେ ସାତ୍ୱତଧର୍ମର ପୃଷ୍ଠପୋଷକ ଥିଲେ (୫) ।

---

୩ । Fpigraphica Indica—Vol.XXIV, P, 194 ff.

"ଭଗବନଂ କୃଷ୍ଣୀନାଂ ପ୍ରତିମାଃ...ଶୈଳଦେବ ।

[Here after E. I]

୪ । F, I.—Vol. XXIV. PP. 208 ff.—

"ବସୁନା ଭଗବତୋ ବାସୁଦେବସ୍ୟ ମହାସ୍ଥାନ—

ଶୈଳଂତୋରଣଂ ବେଦିକା ଚ ।

ପ୍ରତିଷ୍ଠାପିତୋ ପ୍ରୀତୋ ଭଗବାନ୍ ବାସୁଦେବଃ ସ୍ୱାମୀସ୍ୟ (?)

ମହାକ୍ଷତ୍ରପସ୍ୟ ଶୋଡ଼ାସସ୍ୟ ସଂବର୍ତ୍ତୟିତାମ୍ ।"

୫ । ଡଃ ବାସୁଦେବ ଶରଣ ଅଗ୍ରବାଲ—Indian Art.—PP. 252.

* ଜଗନ୍ନାଥ ଜନ୍ମ ମହାବେଦୀରେ ହୋଇଥିଲା ବୋଲି ପରମ୍ପରା କହେ ।

ମଥୁରା ତ ଶ୍ରୀକୃଷ୍ଣଙ୍କର ଜନ୍ମସ୍ଥଳୀ ! ସେଥିପାଇଁ ସେଠାରେ ଏତେ ପୂର୍ବରୁ ଯୁଗରୁ ବାସୁଦେବ ଉପାସନା ପ୍ରତିଷ୍ଠିତ ଥିବା ବିଚିତ୍ର ନୁହେଁ । ମାତ୍ର ମଥୁରାଛଡ଼ା ଭାରତର ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ବାସୁଦେବଙ୍କର ପୂଜାର୍ଚ୍ଚନା ଧୂମଧାମ୍‌ର ସହିତ ଚାଲିଥିଲା । ରାଜସ୍ଥାନର ଚିତୋରଗଡ଼ ଜିଲ୍ଲାର ଘୋସୁଣ୍ଡି ବୋଲି ଏକ ଗ୍ରାମରେ ଗୋଟିଏ ଶିଳାଲେଖ ଉତ୍କୀର୍ଣ୍ଣ ହୋଇଅଛି । ଏହାର ସମୟ ହେଉଛି ଖ୍ରୀ: ପୂ: ୨ୟ ଶତକ । ଏଥିରୁ ଜଣାଯାଏ, ସେତେବେଳେ ଏହି ସ୍ଥାନରେ ଏକ ବାସୁଦେବ ମନ୍ଦିର ଥିଲା । ମନ୍ଦିରର ଚାରିପଟେ ସୁନ୍ଦର ପ୍ରାଚୀର ଥିଲା । (ପୂଜା-ଶିଳା-ପ୍ରାକାର) । ନିକଟରେ ଗୋଟିଏ ଉଦ୍ୟାନ ଥିଲା, ଯାହାର ନାମ ଥିଲା 'ନାରାୟଣ ବାଟିକା' (୬) । ଏ ମନ୍ଦିରରେ ବାସୁଦେବଙ୍କ ସହିତ ସଙ୍କର୍ଷଣ ପୂଜିତ ହେଉଥିଲେ ।

ଖାଲି ଚିତୋରଗଡ଼ ନୁହେଁ; ରାଜସ୍ଥାନର ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ବାସୁଦେବ ଉପାସନା ସେତେବେଳେ ଚାଲିଥିଲା । ଉଦୟପୁରରୁ ମିଳିଥିବା ଏକ ଶିଳାଲେଖ ଏହାର ସୂଚନା ଦେଇଥାଏ । ଉଦୟପୁରର 'ନାଗରି' ନାମକ ସ୍ଥାନରୁ ଯେଉଁ ଶିଳାଲେଖଟି ମିଳିଛି, ତହିଁରେ ମଧ୍ୟ ଘୋସୁଣ୍ଡି ଶିଳାଲେଖ ଭଳି ଅନୁରୂପ ଭାବରେ ଲେଖାଯାଇଛି (୭) । ସେଥିରେ ଲେଖା ଅଛି ଗଜାୟନ ନାମକ ରାଜା 'ପୂଜାଶିଳା ପ୍ରାକାର' ବାସୁଦେବ-ସଙ୍କର୍ଷଣଙ୍କ ପାଇଁ ନିର୍ମାଣ କରିଥିଲେ । ସେ ମଧ୍ୟ 'ନାରାୟଣବାଟିକା' ନିର୍ମାଣ କରାଇଥିଲେ । ଏହି ରାଜାଙ୍କର ସମୟ ହେଉଛି ଖ୍ରୀ: ପୂ: ପ୍ରଥମ ଶତାବ୍ଦୀ ।

ଏ ତ ହେଲା ଭାରତର ପଶ୍ଚିମାଞ୍ଚଳ । ମଧ୍ୟଭାରତରେ ମଧ୍ୟ ସେହି ଖ୍ରୀ:ପୂ: ପ୍ରଥମ ଦ୍ୱିତୀୟ ଶତାବ୍ଦୀବେଳଠାରୁ ବାସୁଦେବ-କୃଷ୍ଣଙ୍କର ପୂଜାର୍ଚ୍ଚନା ଲୋକପ୍ରିୟ ହୋଇପାରି-ଥିଲା । ଏହାର ଶିଳାଲେଖ ପ୍ରମାଣ ଏବେ ମଧ୍ୟ ବିଦ୍ୟମାନ । ବିଦିଶାର ବେଶନଗର ଶିଳାଲେଖରୁ ଜଣାଯାଏ, ସେଠାରେ ଖ୍ରୀ: ପୂ: ୨ୟ ଶତକରେ ଡାଇଅନ୍‌ଙ୍କର ପୁତ୍ର ରାଜା ହେଲିଓଡ଼ୋରସ୍ ଏକ ଗରୁଡ଼ସ୍ତମ୍ଭ ସ୍ଥାପନ କରିଥିଲେ । ଏହା ବାସୁଦେବଙ୍କ ତୃପ୍ତି ନିମିତ୍ତ

---

୬ । E. I.—Vol. XVI. PP. 25 ff—

"କାରିତୋ ଅୟଂ ରାଜ୍ଞା ଭଗବତେନ ଗାଜାୟନେନ ପରାଶରୀ ପୁତ୍ରେଣ (ସର୍ବତାତେନ ଅଶ୍ୱମେଧଯାଜୀ) ଜନାଂ ଭଗବଦଭ୍ୟାଂ ସଙ୍କର୍ଷଣ ବାସୁଦେବାଭ୍ୟାଂ (ଅନହତାଭ୍ୟାଂ ସର୍ବେଶ୍ୱରାଭ୍ୟାଂ ପୂଜାଶିଳା ପ୍ରାକାରେ ନାରାୟଣ-ବାଟିକା ।"

(ଆଉ ମଧ୍ୟ D.C. Sircarଙ୍କର Select Inscriptions-Calcutta, 1942, PP. 92. ଦ୍ରଷ୍ଟବ୍ୟ)

୭ । E. I.—Vol. XXII, PP. 198 ff.

ନିର୍ମିତ ହୋଇଥିଲା (୮) । ଏହି ଖ୍ରୀ: ପୂ: ଯୁଗରେ ଆନ୍ଧ୍ରର ଅନେକ ଗରୁଡ଼ସ୍ତମ୍ଭ ସଙ୍କର୍ଷଣ ଓ ବାସୁଦେବଙ୍କ ପାଇଁ ନିର୍ମିତ ହୋଇଥିବାର ପ୍ରମାଣ ନାନା ଘାଟଗୁମ୍ଫାରେ ଥିବା ନାଗଣିକା ଶିଳାଲେଖ ଦେଇଥାଏ (୯) । ଖ୍ରୀ: ପୂ: ୩ୟ ଶତାବ୍ଦୀରେ ଅଶୋକ ଜଣେ ବୌଦ୍ଧଧର୍ମାବଲମ୍ବୀ ରାଜା ଥିଲେ ମଧ୍ୟ ସେ ତାଙ୍କର ଶିଳାଲେଖରେ ଉଲ୍ଲେଖ କରିଛନ୍ତି ଯେ, "ଅନ୍ୟ ଧର୍ମ ପ୍ରତି ସମ୍ମାନ ପ୍ରଦର୍ଶନ କର" (୧୦) । ଖାରବେଳ ମହାମେଘବାହନ ମଧ୍ୟ ପ୍ରଥମ ଶତାବ୍ଦୀରେ ଲେଖିଛନ୍ତି ସେହିଭଳି ଅନ୍ୟ ଧର୍ମକୁ ସମ୍ମାନ ଦେବାପାଇଁ (୧୧) । ଡକ୍ଟର ଜେ. ଏନ୍. ବାନାର୍ଜିଙ୍କ ମତରେ ଏହି 'ଅନ୍ୟଧର୍ମ' ମଧ୍ୟରେ ଭାଗବତ ଧର୍ମକୁହିଁ ବୁଝିବାକୁ ହେବ । କାରଣ, ଦେଶରେ ବୌଦ୍ଧଧର୍ମର ପ୍ରବଳତା ସତ୍ତ୍ୱେ ଅଶୋକଙ୍କ ସମୟରେ ଭାଗବତ ଧର୍ମ ଓ କୃଷ୍ଣ ବାସୁଦେବ ଉପାସନା ବା ଶଙ୍କର୍ଷଣ-ବାସୁଦେବ ପୂଜା ବେଶ୍ ଲୋକପ୍ରିୟତା ଅର୍ଜନ କରିଥିଲା (୧୨) । ଏ ସବୁ ବିଚାରକୁ ନେବାବେଳେ ଭୁଲିଯିବାକୁ ହେବନାହିଁ ଯେ, ଖ୍ରୀ:ପୂ: ୩ୟ ଶତକରେ ଓଡ଼ିଶାର ଏହି ପୂର୍ବ ଅଞ୍ଚଳ (ଧଉଳି) ମଧ୍ୟ ଅଶୋକଙ୍କର ରାଜ୍ୟାନ୍ତର୍ଭୁକ୍ତ ହୋଇଥିଲା ଓ ଏଠାରେ ବୌଦ୍ଧ-ଧର୍ମର ପ୍ରାବଲ୍ୟ ଥିଲେ ମଧ୍ୟ ବାସୁଦେବ ଉପାସନା ବା ଆର୍ଯ୍ୟଧର୍ମ ମଧ୍ୟ ତିଷ୍ଠି ରହିଥିଲା । ଖାରବେଲଙ୍କ ସମୟ ବେଳକୁ ବୌଦ୍ଧଧର୍ମ ବଦଳରେ ଜୈନଧର୍ମ ରାଜାନୁଗତ ହୋଇଥିଲା । ତଥାପି ବୌଦ୍ଧଧର୍ମ: ଆର୍ଯ୍ୟଧର୍ମ ବା ବାସୁଦେବ ସଙ୍କର୍ଷଣ ଉପାସନା ଇତ୍ୟାଦି ଅନ୍ୟାନ୍ୟ ଧର୍ମମାନ ସମାଜରେ ବର୍ତ୍ତି ରହିଥିଲେ । ଖାରବେଲ ସେ ସବୁ ଧର୍ମ-ମାନଙ୍କ ପ୍ରତି ବିଦ୍ୱେଷ ଭାବ ପୋଷଣ କରୁନଥିଲେ । ଏହା ତାଙ୍କ ଖୋଦିତ ଖଣ୍ଡଗିରି-ଉଦୟଗିରିର ଶିଳାଲେଖମାନଙ୍କରୁ ଜଣାଯାଏ ।

ଆର୍ଯ୍ୟଧର୍ମର ଚେର ବୌଦ୍ଧ ଓ ଜୈନଧର୍ମ ପୂର୍ବରୁ ଏ ଦେଶରେ ଗୁଡ଼ିଆଡ଼େ ବିଛେଇ ହୋଇ ରହିଅଛି । ଅତଏବ ଆର୍ଯ୍ୟଧର୍ମର ପରିବର୍ତ୍ତନ ଓ ସାମୟିକ ବିକାଶ ମଧ୍ୟରେ ଏହି କୃଷ୍ଣବାସୁଦେବ ଓ ସଙ୍କର୍ଷଣ ଉପାସନାର ସୃଷ୍ଟି । ଖ୍ରୀ:ପୂ: ପ୍ରଥମ ଶତାବ୍ଦୀ

---

୮ । D. C. Sircar—Select Inscriptions—PP. 90;
I. V.– PP. 5, 20.

୯ । D. C. Sircar—Select Inscription—PP. 186.

୧୦ । Ashokan edicts No. 12.

୧୧ । ହାତୀଗୁମ୍ଫା ଶିଳାଲେଖ, ଭୁବନେଶ୍ୱର ।

୧୨ । J. N. Banerji—ପଞ୍ଚୋପାସନା (ବଙ୍ଗଳା)—
Cal. 1960. PP. 57-58.

ବେଳକୁ ଏହା ସାଧାରଣରେ ଲୋକପ୍ରିୟତା ଅର୍ଜନ କରିଥିବାର ଅନେକ ପ୍ରମାଣ ସେଥିପାଇଁ ଆମର ହସ୍ତଗତ ହୋଇଛି । ଖାଲି ଶିଳାଲେଖ ନାହିଁକି, ପ୍ରାଚୀନ ମୁଦ୍ରା-ମାନଙ୍କଠାରୁ ମଧ୍ୟ ଏପରି ପ୍ରମାଣ ମିଳୁଅଛି । (Numismatic evidence) । ମିତ୍ରବଂଶୀ ରାଜାମାନଙ୍କର ମୋହରରୁ ଏପରି ପ୍ରମାଣ ପ୍ରଚୁର ଭାବରେ ଦେଖାଯାଏ । ଖ୍ରୀ: ପୂ: ୨ୟ ଶତାବ୍ଦୀରେ ରାଜତ୍ୱ କରୁଥିବା ଅଗ୍ନିମିତ୍ରଙ୍କ ମୁଦ୍ରାମାନଙ୍କରେ ଅଗ୍ନିଙ୍କର ରୂପ ମୁଦ୍ରିତ ହୋଇଥିଲା । ଅଗ୍ନିପୂଜା ତ ବୈଦିକ ଯୁଗରୁ ଏ ଦେଶରେ ଚାଲିଛି । ଏଥିରେ ବଚିତ୍ରତା କ'ଣ ? ଅଗ୍ନିମିତ୍ରଙ୍କ ପରେ ବିଷ୍ଣୁମିତ୍ରଙ୍କର ପ୍ରଚଳିତ ମୁଦ୍ରାରେ ଚତୁର୍ଭୁଜ ବିଷ୍ଣୁଙ୍କର ମୂର୍ତ୍ତି ଅଙ୍କିତ ହୋଇଅଛି । ଏହା ସେ ସମୟରେ ଭାରତରେ ବିଷ୍ଣୁ ପୂଜା ପ୍ରଚଳନର ପ୍ରମାଣ ଦେଉଅଛି (୧୩) । ହୁଏ ତ ଏହି ସମୟର ଆହୁରି କିଛି ପୂର୍ବରୁ ବାସୁଦେବ ଓ ବଳରାମଙ୍କର ପୂଜା ଏ ଦେଶରେ ଚାଲିଥିବ । କହିବାକୁ ଗଲେ, ମହାଭାରତ ରଚିତ ହେବା ପରେ କୃଷ୍ଣ, ବଳରାମ ଅତି ଲୋକପ୍ରିୟ ହୋଇ ଉଠିଥିବେ ଓ ସେ ବୃଷ୍ଣିଙ୍କର ଉପାସନା ଆର୍ଯ୍ୟ ସମାଜରେ ଆରମ୍ଭ ହୋଇଯାଇଥିବ । ବୌଦ୍ଧଧର୍ମ ଇତ୍ୟାଦିର ପ୍ରାବଲ୍ୟ ସତ୍ତ୍ୱେ ମଧ୍ୟ ଏ ଉପାସନା ଚାଲୁରହିଥିବ । କାରଣ, ସମାଜରେ କିଛି ତ ଆର୍ଯ୍ୟଧର୍ମୀ ଥିବେ ? ସେଥିପାଇଁ ବୌଦ୍ଧଗ୍ରନ୍ଥ 'ସୁତ୍ତନିପାତ' ର ପ୍ରଥମ ନିର୍ଦ୍ଦେଶରେ ବାସୁଦେବ ଓ ବଳରାମଙ୍କ ଉପାସନା ବିଷୟ ଉଲ୍ଲିଖିତ ହୋଇଅଛି (୧୪) । ଏଥିରୁ ଏ ଉପାସନାର ପ୍ରାଚୀନତା ସହଜରେ ଅନୁମେୟ ।

ସେହି ଖ୍ରୀ: ଅ. ୨ୟ ଶତକବେଳକୁ ଓଡ଼ିଶାର ପଡ଼ୋଶୀ ରାଜ୍ୟ ଆନ୍ଧ୍ରରେ ଥିବା କୃଷ୍ଣାନଦୀର ଉପତ୍ୟକାରେ ବିଷ୍ଣୁପୂଜା ବ୍ୟାପିଥିବାର ଯଥେଷ୍ଟ ଶିଳାଲେଖ ପ୍ରମାଣ ରହିଅଛି । ଗୌତମୀପୁତ୍ର ଯଜ୍ଞଶ୍ରୀଙ୍କର ଏକ ଶିଳାଲେଖ କୃଷ୍ଣା ଜିଲ୍ଲାର ଚିନ୍ନା ନାମକ ଏକ ଗ୍ରାମରୁ ମିଳିଅଛି । ଏହି ଶିଳାଲେଖଟି ତାଙ୍କର ରାଜତ୍ୱକାଳ ଖ୍ରୀ: ଅ: ୧୭୪-୨୦୩ ମଧ୍ୟରେ ସେଠାରେ ଉତ୍କୀର୍ଣ୍ଣ ହୋଇଥିଲା ଓ ଏଥିରେ ବାସୁଦେବଙ୍କ ସ୍ତୁତି ହେଉଛି ପ୍ରଧାନ ବିଷୟ । (୧୫)

ଖ୍ରୀ. ଅ: ଚତୁର୍ଥ ଶତାବ୍ଦୀବେଳକୁ ଗୁପ୍ତରାଜାମାନେ ଅତ୍ୟନ୍ତ ଶକ୍ତିଶାଳୀ ହୋଇ-ଉଠିଥିଲେ । ସେମାନଙ୍କ ରାଜ୍ୟ ପୂର୍ବ ଭାରତସ୍ଥ ବଙ୍ଗ, ଅଙ୍ଗ, ଉତ୍କଳ ଓ କଳିଙ୍ଗ ଆଡ଼କୁ ବ୍ୟାପି ରହିଥିଲା । ସମୁଦ୍ରଗୁପ୍ତଙ୍କର ଏଲ୍ହାବାଦ ପ୍ରସ୍ତର ସ୍ତମ୍ଭ ଶିଳାଲେଖ ଏହାର ପ୍ରମାଣ

---

୧୩ । J.Allan—A catalogue of the Indian coins in the British Museum London. 1936. Pl.XXIX,6.

୧୪ । ସୌରୀର ଜୟସ୍ୱାଲ୍—
Early history of Vaishnavism-Delhi-1967-Chapter-1,

୧୫ । Jayaswal. S.—1976, pp. 179,Delhi.

ଦେଉଥାଏ (୧୬)। ଏହି ବଂଶର ରାଜାମାନେ ଅଧିକାଂଶ ବୈଷ୍ଣବ ଥିବାରୁ, ଏହି ସମୟରେ କଳିଙ୍ଗରେ ଓ ଭାରତର ଅନ୍ୟାନ୍ୟ ସ୍ଥାନରେ ବିଷ୍ଣୁ ଆରାଧନା ଅଧିକ ପ୍ରାଧାନ୍ୟ ଲାଭ କରିଥିଲା । ଶୈବଧର୍ମ ପ୍ରତି ମଧ୍ୟ ଏମାନଙ୍କର ଅନୁରାଗ କମ୍ ନଥିଲା । ଏହି ବଂଶର ରାଜାମାନଙ୍କର ନାମକରଣକୁ ଦେଖିଲେ ଏକଥା ଅତି ସହଜରେ ଅନୁମାନ କରାଯାଇ-ପାରେ । ସ୍କନ୍ଦଗୁପ୍ତ, କୁମାରଗୁପ୍ତ ଇତ୍ୟାଦିଙ୍କର ଶୈବ ଭିତ୍ତିକ ନାମକରଣ କରାଯାଇଥିବା ବେଳେ ମାଧବଗୁପ୍ତ ପ୍ରଭୃତିଙ୍କର ନାମ ବିଷ୍ଣୁ ଭିତ୍ତିକ ହୋଇଅଛି । ମାଧବଗୁପ୍ତ ମାଧବ ବା ବିଷ୍ଣୁଙ୍କର ଭକ୍ତ ଥିଲେ ବୋଲି ଆଦିତ୍ୟସେନଙ୍କ ପ୍ରତିଷ୍ଠିତ ଏକ ଶିଳାଲେଖରୁ ଜଣାଯାଏ । (Aphsad stone inscription) (୧୭) । ଏହାଙ୍କ ସମୟରେ ଗୁପ୍ତ ସାମ୍ରାଜ୍ୟରେ ମାଧବଙ୍କର ଉପାସନା ଅତ୍ୟନ୍ତ ଲୋକପ୍ରିୟତା ଅର୍ଜନ କରିଥିଲା । ଅବଶ୍ୟ ଗୁପ୍ତ ସାମ୍ରାଜ୍ୟ ସେତେବେଳକୁ ଆଉ ପୂର୍ବ ଭଳି ବିଶାଳ ନଥିଲା । ଏହା କର୍ଣ୍ଣସୁବର୍ଣ୍ଣର ରାଜା ଶଶାଙ୍କଙ୍କର ଅଧୀନସ୍ଥ ହୋଇଥିଲା । ସେତେବେଳେ ଓଡ଼ିଶାର କଙ୍ଗୋଦମଣ୍ଡଳରେ ( ଚିଲିକା ନିକଟବର୍ତ୍ତୀ ଅଞ୍ଚଳ) ମାଧବବର୍ମା ବୋଲି ଜଣେ ଶୈଳୋଦ୍ଭବବଂଶ ରାଜା ରାଜତ୍ୱ କରୁଥିଲେ । ସପ୍ତମ ଶତାବ୍ଦୀରେ ଲିଖିତ ମାଧବବର୍ମାଙ୍କର ଗଞ୍ଜାମ ଅଭିଲେଖରୁ (plates) ଜଣାଯାଏ ସେ ସେ ଶଶାଙ୍କଙ୍କ ଦ୍ୱାରା ବିଜିତ ହୋଇଥିଲେ (୧୮) । ସେତେବେଳେ ଏହି କଙ୍ଗୋଦ ଅଞ୍ଚଳରେ ମାଧବପୂଜା ଲୋକପ୍ରିୟତା ଅର୍ଜନ କରିଥିଲା । ରାଜାଙ୍କର ନାମକରଣ ସେଥିପାଇଁ ମାଧବଙ୍କ ନାମରେହିଁ ହୋଇଥିଲା ।

ପ୍ରାଚୀନ ଯୁଗରେ ଓଡ଼ିଶାର ବିଭିନ୍ନ ଅଂଶର ବିଭିନ୍ନ ନାମ ଥିଲା । ଉତ୍ତରାଞ୍ଚଳକୁ **ଉତ୍କଳ** ବା **ଓଡ୍ର** ବୋଲି କୁହାଯାଉଥିଲା । ଦକ୍ଷିଣାଞ୍ଚଳ ଥିଲା **କଳିଙ୍ଗ** । ଧଉଳି ବା ଭୁବନେଶ୍ୱର ଅଞ୍ଚଳ ଥିଲା **'ତୋଷଳ'** । ଚିଲିକାର ପାଖାପାଖି ଅଞ୍ଚଳକୁ **କଙ୍ଗୋଦ** ବୋଲି କୁହାଯାଉଥିଲା । ପଶ୍ଚିମ ଓଡ଼ିଶାକୁ କୁହାଯାଉଥିଲା **କୋଶଳ** (ଦକ୍ଷିଣ) । ଏହା ଥିଲା ଏକ ଆପାତତଃ ବିଭାଗ, ମାତ୍ର ବିଭିନ୍ନ ସମୟରେ ଏସବୁ ରାଜ୍ୟର ସୀମାରେ ପରିବର୍ତ୍ତନ ପରିଲକ୍ଷିତ ହୁଏ । ଯଥା, ଅଶୋକ ଓ ଖାରବେଳଙ୍କ ସମୟରେ ଭୁବନେଶ୍ୱର ଅଞ୍ଚଳକୁ ତୋଷଳ ବୋଲି କୁହାଯାଉନଥିଲା । ଏହା ଥିଲା କଳିଙ୍ଗ । କଳିଙ୍ଗ ଓ ଉତ୍କଳ ମଧ୍ୟରେ ବିବାଦ ଲାଗିରହୁଥିଲା । ବେଳେ ବେଳେ, କଳିଙ୍ଗର ଉତ୍ତର ସୀମାର କିଛି ଅଂଶ ଦକ୍ଷିଣ ଆଡ଼କୁ ଘୁଞ୍ଚି ଯାଉଥିଲା । ରଘୁଙ୍କ ଦିଗ୍ ବିଜୟ ବର୍ଣ୍ଣନା କରିବାକୁ ଯାଇ କାଳିଦାସ

୧୬ । Campus Inscriptions Indicarum—Here after C.I.I.—Vol III—pp. 7.

୧୭ । Cult of Jagannath-K.C. Mishra-Cal. 1971. pp. 2-3. Also see C. I. I. Vol. III. pp. 203-206.

୧୮ । Epigraphica Indica-Vol. VI. pp. 144.

ଉତ୍କଳ ଓ କଳିଙ୍ଗର ପରସ୍ପର ଶନ୍ତ୍ରୁତା ଥିବାର ଏକ ଆଗମ ଦେଇଚନ୍ତି । (୧୯) ଏହା ଥିଲା କାଳିଦାସଙ୍କ ସମୟର କଥା । ମହାଭାରତ ଯୁଗରେ ଉତ୍କଳ ଓ କଳିଙ୍ଗ ଦୁଇଟି ସ୍ୱତନ୍ତ୍ର ରାଜ୍ୟ ଥିବାର ଜଣାଯାଏ । ମହାଭାରତ, ଯୁଦ୍ଧରେ କଳିଙ୍ଗରାଜ ଦୁର୍ଯ୍ୟୋଧନଙ୍କ ପକ୍ଷରେ ଯୋଗ ଦେଇଥିବାବେଳେ ଉତ୍କଳରାଜ ନିରପେକ୍ଷ ଥିଲେ (୨୦) । ପୁଣି ମହାଭାରତର ସଭା ପର୍ବରୁ ଜଣାଯାଏ ଯେ ଉତ୍କଳରାଜ ଯୁଧିଷ୍ଠିରଙ୍କ ରାଜସୂୟଯଜ୍ଞକୁ ନିମନ୍ତ୍ରିତ ହୋଇଯାଇଥିଲେ (୨୧) । ଯେ ଯାହା ହେଉ, ଓଡ଼ିଶା କହିଲେ ବର୍ତ୍ତମାନ ଆମେ ଏହି ଉପରୋକ୍ତ ସବୁ ରାଜ୍ୟମାନଙ୍କୁ ବୁଝୁଛୁ । ପୁଣି ଆମର ଏହି ଜଗନ୍ନାଥକ୍ଷେତ୍ର ବା ପୁରୀ ଅଞ୍ଚଳ କେତେବେଳେ କଳିଙ୍ଗାନ୍ତର୍ଗତ ହୋଇଛି ତ କେତେବେଳେ ଉତ୍କଳ-ରାଜ୍ୟର ଅନ୍ତର୍ଗତ ହୋଇଛି । ପୁରାଣ ସମୟବେଳକୁ ଏହି ଅଞ୍ଚଳକୁ ପ୍ରାୟ ଓଡ୍ରଦେଶ ବୋଲି କୁହାଯାଉଛି । ସେତେବେଳକୁ କଳିଙ୍ଗ ଅଞ୍ଚଳ ଗଞ୍ଜାମ ଅଞ୍ଚଳକୁ ବୁଝାଯାଉଛି । ଅତଏବ ଏହିସବୁ କଥାକୁ ବିସ୍ତାରକୁ ନେଇ ଆମକୁ ଆମ ବିସ୍ତାରରେ ଆଗେଇବାକୁ ପଡ଼ିବ ।

ତେବେ ଏ ପର୍ଯ୍ୟନ୍ତ ଆମେ ଯାହା ଜାଣିଲୁ, ତାହା ହେଉଛି, ଗୀତାଧର୍ମ ଓ ମହାଭାରତୀୟ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ଭାରତରେ ଖ୍ରୀଷ୍ଟପୂର୍ବ ୨ୟ ଶତକ ବେଳଠାରୁ କୃଷ୍ଣ ବାସୁଦେବ ବା ବିଷ୍ଣୁଙ୍କର ଉପାସନା ଚାଲିଲାଣି । ଷଷ୍ଠ-ସପ୍ତମ ଶତାବ୍ଦୀ ବେଳକୁ ଓଡ଼ିଶାରେ ମଧ୍ୟ ବିଷ୍ଣୁପୂଜା ଲୋକପ୍ରିୟତା ଅର୍ଜନ କରିସାରିଲାଣି; ମାତ୍ର ଜଗନ୍ନାଥ-ପୁରୁଷୋତ୍ତମଙ୍କ ଉପାସନାର ଅବସ୍ଥା ସେତେବେଳକୁ କ'ଣ ତାହା ହିଁ ପ୍ରଶ୍ନ । ସେତେବେଳକୁ ଜଗନ୍ନାଥ ପୂଜିତ ହେଉଥିଲେ କି ନାହିଁ ? ଏହା ହିଁ ପ୍ରଶ୍ନବାଚୀ ।

ଓଡ଼ିଶାର ପ୍ରଖ୍ୟାତ ଜଗନ୍ନାଥଧର୍ମ ଗବେଷକ ପଣ୍ଡିତ ନୀଳକଣ୍ଠଦାସ ଓ ଡଃ ବେଣୀମାଧବ ପାଢ଼ୀ ବିଶ୍ୱାସ କରନ୍ତି; ପ୍ରାଚୀନ ଯୁଗରେ ଓଡ଼ିଶା ଏକ ମ୍ଳେଚ୍ଛଦେଶ ଥିଲା (୨୨) । ସେଠାରେ ଆଦିମ ଅଧିବାସୀଙ୍କର ଆଦିମ ଦେବତା ଜଗନ୍ନାଥ ପୂଜିତ

---

୧୯ । ରଘୁବଂଶ—୪ର୍ଥସର୍ଗ—
"ଉତ୍କଳଦର୍ଶିତପଥଃ କଳିଙ୍ଗାଭିମୁଖଂ ଯଯୌ ।। ଶ୍ଳୋକ-୩୮ ।।

୨୦ । ମ: ଭା: ଭୀଷ୍ମପର୍ବ ।

୨୧ । ମ: ଭା: ସଭାପର୍ବ—୩୧/ଶ୍ଳୋକ ୭୧-୭୨ ।

୨୨ । ବାୟୁର ସଂହିତା—ଉଦ୍ଧୃତ ଦାରୁଦେବତା ପୃ: ୯୧ । (ବି: ପାଢ଼ୀ) । କଟକ । ୧୯୬୪ ।

"ଚାତୁର୍ବର୍ଣ୍ୟ ବ୍ୟବସ୍ଥାନଂ ଯସ୍ମିନ୍ ଦେଶେ ନ ବିଦ୍ୟତେ
ମ୍ଳେଚ୍ଛଦେଶଃ ସ ବିଜ୍ଞେୟଃ ଆର୍ଯ୍ୟାବର୍ତ୍ତସ୍ତତଃ ପରମ୍ "

ହେଉଥିଲେ । ଡଃ ପାଢ଼ୀଙ୍କ ଭାଷାରେ, "ଏକା• ଜଗନ୍ନାଥ ହିଁ ଦାରୁଦେବତା ରୂପେ **ଅନାଦି** କାଳରୁ ପୂଜା ପାଇଆସୁଛନ୍ତି (୨୩) ।" ନୀଳକଣ୍ଠଦାସଙ୍କ ଉକ୍ତି ଉଦ୍ଧାର କରି ଡଃ ପାଢ଼ୀ ଲେଖିଛନ୍ତି—"ବୁଦ୍ଧଯୁଗ ପୂର୍ବରୁ ଏପରିକି ପ୍ରାଚୀନ ବେବିଲୋନ୍ ସଭ୍ୟତା-କାଳରୁ ଜଗନ୍ନାଥଙ୍କ ଅସ୍ତିତ୍ୱ ଥିଲା । ସେତେବେଳେ ଶବରଙ୍କ ବିନା ତାଙ୍କର ଉପାସକ ଆଉ କେହି ନଥିଲେ (୨୪) । ମାତ୍ର, ଜଗନ୍ନାଥ ଯଦି ଅନାଦିକାଳରୁ ପୂଜା ପାଇ ଆସୁଛନ୍ତି, ତେବେ ଏହି ଗୋଷ୍ଠୀର ସମାଲୋଚକମାନଙ୍କ ସିଦ୍ଧାନ୍ତ ଗ୍ରହଣଯୋଗ୍ୟ ହୋଇପାରେନା; କିନ୍ତୁ, ଏକଥା ସତ୍ୟ ନୁହେଁ ଯେ, ଜଗନ୍ନାଥ **ଅନାଦି** କାଳରୁ ପୂଜିତ ହେଉଛନ୍ତି । ଇତିହାସ ଏହାକୁ ଗ୍ରହଣ କରିପାରିବ ନାହିଁ । ଅବଶ୍ୟ ଅନାଦି କାଳରେ ଭାରତରେ ଆଦିମ ଅଧିବାସୀ ବ୍ୟାପି ରହିଥିଲେ ଓ ଆର୍ଯ୍ୟମାନେ ଆସିବାପରେ ସେମାନେ ବଣଜଙ୍ଗଲରେ ଯାଇ ରହିଲେ । ତେଣୁ ଆର୍ଯ୍ୟମାନେ ଭାରତକୁ ଆସିବାପୂର୍ବରୁ ଜଗନ୍ନାଥ ପୂଜିତ ହେଉଥିଲେ ଯଦି ସତ୍ୟ ହୁଅନ୍ତା, ତେବେ ଶବରମାନଙ୍କ ଦେବତା ବୋଲି ତାଙ୍କୁ ବିଚାରିବା ସମ୍ଭବ ହୋଇପାରନ୍ତା । ମାତ୍ର ଜଗନ୍ନାଥ ଏତେ ପୁରୁଣା ନୁହନ୍ତି । ଯଦିଓ ଟାଣି ଓଟାରି କେତେକ ଉକ୍ତିକୁ ନେଇ ତାଙ୍କ ଅସ୍ତିତ୍ୱ ବୈଦିକ ଯୁଗରେ ଥିଲା, ରାମାୟଣ ଯୁଗରେ ଥିଲା,୍ଓ ମହାଭାରତ ଯୁଗରେ ଥିଲା ବୋଲି ଅନେକ ମତବ୍ୟକ୍ତ କରନ୍ତି; ତାହା ମଧ୍ୟ ପ୍ରକୃଷ୍ଟ ପ୍ରମାଣର ଅଭାବରୁ ହଠାତ୍ ଗ୍ରହଣୀୟ ନୁହେଁ । ଏପରିକି ପଞ୍ଚମ-ଷଷ୍ଠ **ଶତାବ୍ଦୀ** ପର୍ଯ୍ୟନ୍ତ ଶିଳାଲେଖ ପ୍ରମାଣ ଦୃଷ୍ଟିରୁ ଆମ ନିକଟରେ ପୁରୀରେ ଜଗନ୍ନାଥ ପୂଜା ଥିବାର କୌଣସି ପ୍ରମାଣ ନାହିଁ । ହୁଏ ତ ଗ୍ରନ୍ଥପ୍ରମାଣରେ ଜଗନ୍ନାଥଙ୍କର ପ୍ରାଚୀନତା ପୁରାଣ ସମୟକୁ ଯାଇପାରେ । ଓଡ଼ିଶାକୁ ପୂର୍ବେ ଯେଉଁ ମ୍ଳେଚ୍ଛଦେଶ ବୋଲି କୁହାଯାଉଥିଲା, ସେଥିରେ ଖାଲି ଓଡ଼ିଶା କାହିଁକି, ସମଗ୍ର ପୂର୍ବଭାରତ ଓ କାଶୀ, କୋଶଳ ଦେଶାଦିକୁ ମଧ୍ୟ ମ୍ଳେଚ୍ଛଦେଶ ବୋଲି ବିଚାର କରାଯାଉଥିଲା । ଏପରି ବିଚାର କରୁଥିଲେ ଉତ୍ତରପଶ୍ଚିମ ଭାରତୀୟ ଆର୍ଯ୍ୟଗଣ (୨୫) । ଯେପରି ଆଜିକାଲି ବଡ଼ ବ୍ରାହ୍ମଣମାନେ ସାନ ବ୍ରାହ୍ମଣଙ୍କୁ ବ୍ରାହ୍ମଣରେ ଗଣନ୍ତି ନାହିଁ, ସେହିପରି ମହାଭାରତର ପୂର୍ବବର୍ତ୍ତୀ ଯୁଗରେ ବ୍ରହ୍ମାବର୍ତ୍ତର (୨୬) ଆର୍ଯ୍ୟ ଓ ବ୍ରାହ୍ମଣମାନେ ନିଜକୁ ବଡ଼ ମନେକରି କାଶୀ, କୋଶଳ, ଅଙ୍ଗ, ବଙ୍ଗ, ଉତ୍କଳ, କଳିଙ୍ଗର ବ୍ରାହ୍ମଣମାନଙ୍କୁ ମ୍ଳେଚ୍ଛବୋଲି ବିଚାରୁଥିଲେ । ଏଣୁ କୁହାଯାଇ ନପାରେ ଯେ, ଓଡ଼ିଶା ଏକ ନିର୍ଦ୍ଦିଷ୍ଟ ଶବରଦେଶ ଥିଲା ଓ ଏଠାରେ ଗୁରୁବର୍ଣ୍ଣୀ

---

୨୩ । ଦାରୁଦେବତା—ପୃ: ୧ ।

୨୪ । ଦାରୁଦେବତା—ପୃ: ୪୦ ।

୨୫ । ଶତପଥବ୍ରାହ୍ମଣ ଦ୍ରଷ୍ଟବ୍ୟ ।

୨୬ । ମ: ଭା:—ପର୍ବ XIV. ଅଧ୍ୟାୟ, ଅଧ୍ୟାୟ-୧୧୦, ଶ୍ଳୋକ-୪୪ ।

ନଥିଲେ । ସେପରି ଭାବିଲେ ଉତ୍ତର ଭାରତର କାଶୀ, କୋଶଳ ମଧ୍ୟ ଶବରରାଜ୍ୟ ଥିଲା ବୋଲି ଗ୍ରହଣ କରିବାକୁ ହେବ । ମାତ୍ର ତାହା ନୁହେଁ । ଅନାର୍ଯ୍ୟକାଳରେ ବୋଲି ଭାବିଲେ ସେପରି ପରିକଳ୍ପନା କରାଯାଇପାରେ; କିନ୍ତୁ ମହାଭାରତ ଯୁଗବେଳକୁ ନୁହେଁ । ପୁଣି ଏ ଦେଶରେ ଶବରମାନେ ବି ଥିବେ ଓ ସୂର୍ଯ୍ୟବଂଶୀ ମଧ୍ୟ ଥିବେ । ବୌଦ୍ଧ ଥିବେ; ଜୈନ ମଧ୍ୟ ଥିବେ । ସେପରି ଏକତରଫା ଭାବରେ ଭାବିବା ଠିକ୍ ହେବନାହିଁ । ଇତିହାସ ସେତିକି ଗ୍ରହଣ କରିବ ଓ ଯେପରି ଗ୍ରହଣ କରିବ, କେବଳ ସେତିକି ଓ ସେପରି ଚିନ୍ତାକରିବା ଦରକାର । ତା' ନହେଲେ କଳାଚଷମା ପିନ୍ଧିଲା ପରି ହେବ — ସବୁ କଳା ଦିଶିବ ।

ଇତିହାସର ଶିଳାଲେଖପ୍ରମାଣର ଦୃଷ୍ଟି ଯେତେ ଦୂରକୁ ଯାଇପାରେ, ସେଥିରେ ବିଚାରକଲେ ଆମେ ସ୍ପଷ୍ଟ ଦେଖିପାରିବା ଯେ ଓଡ଼ିଶାରେ ମୁଖ୍ୟତଃ ଜୈନ, ବୌଦ୍ଧ, ଶୈବ, ଶାକ୍ତ, ଓ ବୈଷ୍ଣବ ଦେଖାଯାଆନ୍ତି । ଜୈନଧର୍ମ ଖାରବେଳଙ୍କ ପୂର୍ବରୁ ଏଠାରେ ଥିଲା ଓ ଖାରବେଳଙ୍କ ସମୟରେ ଅନେକ ଉନ୍ନତି ଲାଭକଲା । ଅତଏବ ପ୍ରଥମ ଶତାବ୍ଦୀ ବେଳକୁ ଓଡ଼ିଶାରେ ଜୈନଧର୍ମ ଏକ ଶୀର୍ଷ ସୋପାନରେ ପହଞ୍ଚିଯାଇଥିଲା । ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାରେ ଜୈନମାନେ ଥିବାର ପ୍ରମାଣ ଅଛି (୨୭) । ସେହିପରି ବୌଦ୍ଧଧର୍ମ ମଧ୍ୟ ଓଡ଼ିଶାରେ ଖ୍ରୀ: ପୂ: ୩ୟ ଶତକରୁ ଅର୍ଥାତ୍ ଅଶୋକଙ୍କ ସମୟରୁ ବହୁଳ ଭାବରେ ରହିଥିଲା । ଅଶୋକ ନିଜେ ଏହି କଳିଙ୍ଗରେ ଉପଗୁପ୍ତଙ୍କଠାରୁ ବୌଦ୍ଧଧର୍ମର ଦୀକ୍ଷା ଗ୍ରହଣ କରିଥିଲେ । ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ଏହି ଧର୍ମ ଓଡ଼ିଶା ଭୂଇଁରେ ଆନନ୍ଦରେ ବଞ୍ଚିରହିଥିଲା । ଖ୍ରୀ: ଅ. ୬୩୯ରେ ସେଥିପାଇଁ ହୁଏନ୍‌ସାଂ ଏଠାକୁ ଭ୍ରମଣରେ ଆସିଥିଲେ । ପୁଣି ଅଷ୍ଟମରୁ ଦଶମ ଶତାବ୍ଦୀ ମଧ୍ୟରେ ଯେଉଁ ଭୌମକର ରାଜାମାନେ ଓଡ଼ିଶାର ଏହି (ପୁରୀ-ଭୁବନେଶ୍ୱର) ଅଞ୍ଚଳରେ ଶାସନ କରୁଥିଲେ, ସେମାନଙ୍କ ମଧ୍ୟରୁ ଅନେକ ଥିଲେ ବଜ୍ରଯାନୀ ବୌଦ୍ଧ । ସେମାନଙ୍କ ପରେ ଧୀରେ ଧୀରେ ବୌଦ୍ଧଧର୍ମ ଲୋକପ୍ରିୟତା ହରାଇଲା । ସେହିପରି ଚତୁର୍ଥ-ପଞ୍ଚମ ଶତାବ୍ଦୀବେଳକୁ ଓଡ଼ିଶାରେ ଶୈବଧର୍ମ ପ୍ରତିଷ୍ଠିତ ହୋଇଥିଲା (୨୮) । ଗୁପ୍ତରାଜତ୍ୱର ପରେ ପରେ ଏହା ଯଥେଷ୍ଟ ପ୍ରସାରଲାଭ କରିଥିଲା । ଷଷ୍ଠ-ସପ୍ତମ-ଶତାବ୍ଦୀ ବେଳକୁ ଏହା ଅତ୍ୟନ୍ତ ଲୋକପ୍ରିୟ ହୋଇପାରିଥିଲା । ଦଶମ-ଏକାଦଶ ଶତାବ୍ଦୀରେ ସୋମବଂଶୀ ରାଜାମାନଙ୍କ ରାଜତ୍ୱ କାଳରେ ଏହା ଚରମୋତ୍କର୍ଷ ଲାଭକଲା । ଓଡ଼ିଶାରେ ଶକ୍ତିପୂଜାର ପରମ୍ପରା ତ ଅଧିକତର ପ୍ରାଚୀନ । ଯାଜପୁରର ବିରଜା ଦେବୀ ଓ ପୁରୀର ବିମଳାଦେବୀଙ୍କର ବର୍ଣ୍ଣନା ଯଥାକ୍ରମେ ମହାଭାରତ ବ୍ରହ୍ମପୁରାଣ ଓ ମତ୍ସ୍ୟପୁରାଣ

---

ସରସ୍ୱତୀ-ଦୃଷଦ୍ୱତ୍ୟୋ ର୍ଦେବନଦ୍ୟୋ ର୍ଯଦନ୍ତରମ୍
ତଂ ଦେବନିର୍ମିତଂ ଦେଶଂ ବ୍ରହ୍ମାବର୍ତ୍ତଂ ପ୍ରଚକ୍ଷତେ ॥

୨୭ । C. J. R. T. O.—Stietencron-Monohar-Delhi-1978—pp. 4.

୨୮ । C. J. R. T. O.—pp. 4.

ମାନଙ୍କ ଭଳି ପ୍ରାଚୀନ ପୁରାଣରେ ମିଳୁଅଛି (୨୯) । ମୋଟାମୋଟି କହିବାକୁ ଗଲେ ଗୁପ୍ତ ରାଜତ୍ୱକାଳ ବେଳକୁ ଦେବୀପୂଜା ଓଡ଼ିଶାରେ ଆରମ୍ଭ ହୋଇଯାଇଥିଲା । ସପ୍ତମ-ଅଷ୍ଟମ ଶତାବ୍ଦୀବେଳକୁ ଏହା ଅତ୍ୟନ୍ତ ଲୋକପ୍ରିୟତା ଅର୍ଜନ କରିଥିଲା । ଅନେକସ୍ଥାନରେ ସପ୍ତମାତୃକା ବିଗ୍ରହମାନ ପ୍ରତିଷ୍ଠିତ ହୋଇଥିଲେ । ଭୌମକର ରାଜାଙ୍କ ଦ୍ୱାରା ଭୁବନେଶ୍ୱରରେ ବୈତାଳ ମନ୍ଦିରରେ ଦେବୀ ବିଗ୍ରହ ପ୍ରତିଷ୍ଠିତ ହେଲେ । ଏହାପରେ ଦ୍ୱାଦଶଶତାବ୍ଦୀ ମଧ୍ୟରେ ସୋମବଂଶୀ ଓ ଗଙ୍ଗବଂଶୀ ରାଜାଙ୍କ ଦ୍ୱାରା ଅନେକ ଦେବୀମନ୍ଦିର ନିର୍ମିତ ହେଲା । ଏବେ ମଧ୍ୟ ଦେବୀମନ୍ଦିର ପ୍ରତିଷ୍ଠାର ପ୍ରଚେଷ୍ଟା ଓଡ଼ିଶାରେ ପୂର୍ବଭଳି ଅବାଧଗତିଭାବରେ ଚାଲୁ ରହିଛି ।

ରାମାୟଣର ନାୟକ ରାମଚନ୍ଦ୍ର ଓ ମହାଭାରତର ଶ୍ରୀକୃଷ୍ଣ ଭଗବାନ୍ ବିଷ୍ଣୁଙ୍କର ଅବତାର ବା ଅଂଶବିଶେଷ ବୋଲି କାଳକ୍ରମେ ଗୃହୀତ ହୋଇଯିବାପରେ ଭାରତର ବିଭିନ୍ନ ପ୍ରାନ୍ତରେ ବିଷ୍ଣୁପୂଜା ଲୋକପ୍ରିୟ ହୋଇଉଠିଥିଲା (୨୯କ) । ରାମାୟଣ ଯୁଗରେ ଆର୍ଯ୍ୟପୁତ୍ର ରାମଚନ୍ଦ୍ର ଦୁର୍ଗମ ବିନ୍ଧ୍ୟପର୍ବତ ପାର ହୋଇ ଦାକ୍ଷିଣାତ୍ୟ ସହିତ ସୁସମ୍ପର୍କ ପ୍ରତିଷ୍ଠା କରିଥିଲେ । ସେହିପରି ମହାଭାରତ ଯୁଦ୍ଧର ବର୍ଣ୍ଣନାରୁ ଜଣାଯାଏ ଯେ ସେ ଯୁଦ୍ଧ ସଙ୍ଘଟିତ ହୋଇଥିଲା ସୁଦୂର କୁରୁକ୍ଷେତ୍ରରେ । ମାତ୍ର ସାରା ଭାରତର ରାଜାମାନେ ଏଥିରେ ଯୋଗ ଦେଇଥିଲେ । ଫଳରେ ସଂସ୍କୃତିର ପ୍ରସାରପାଇଁ ଭାରତର କୌଣସି ଅଂଶ କୌଣସି ଅଞ୍ଚଳପ୍ରତି ଦୁର୍ଗମ ରହିଲା ନାହିଁ" । ରାମାୟଣ ଓ ମହାଭାରତରେ ବିଷ୍ଣୁଙ୍କ ମହିମା ପ୍ରଖ୍ୟାପିତ ହେଲାପରେ ସାରା ଭାରତରେ ବିଷ୍ଣୁପୂଜା ବହୁଳ ଭାବରେ ଲୋକପ୍ରିୟ

୨୯ । "ଗଙ୍ଗାୟାଂ ମଙ୍ଗଳାନାମ ବିମଳା ପୁରୁଷୋତ୍ତମେ"—ମତ୍ସ୍ୟ ପୁରାଣେ ।
"ନ୍ୟଗ୍ରୋଧାକାରମିଦଂ କ୍ଷେତ୍ରଂ ବିରଜୋ ନାମ ବେଧସଃ" ......ବ୍ରହ୍ମପୁରାଣେ-ଅ. ୩, ୪୦......
(ମହାଭାରତ ଯୁଗରୁ ମଧ୍ୟ ବିରଜାକ୍ଷେତ୍ରର ସୂଚନା ମିଳିଥାଏ,=ମ: ଭା:-ବନ-୮୩/୬.)

୨୯କ । ସେଥିପାଇଁ ବିଷ୍ଣୁସହସ୍ରନାମରେ (ମହାଭାରତାନ୍ତର୍ଗତ) ବିଷ୍ଣୁଙ୍କୁ ଜଗନ୍ନାଥ (ପୃ:୫/ଶ୍ଳୋ: ୧୨) ବୋଲି କୁହାଯିବା ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣଙ୍କର ପ୍ରତିଶବ୍ଦମାନଙ୍କ ପ୍ରୟୋଗରେ ଧ୍ୟାନ କରାଗଲା । ଯଥା:-ବିଷ୍ଣୁ—ଗୋବିନ୍ଦ (ଶ୍ଳୋ ୫୮), ବନମାଳୀ (୭୦) କେଶବ (୭୯), ହରି (୭୪), ମାଧବ (୭୮), ବାସୁଦେବ, (୭୬) କୃଷ୍ଣ (୫୯) କେଶିହା (୭୯) ଶ୍ରୀଶ, ଶ୍ରୀନିବାସ, ଶ୍ରୀନିଧି (୭୫) । ଏଥିରେ ଶ୍ରୀକୃଷ୍ଣଙ୍କୁ ଲକ୍ଷ୍ମୀପତି 'ଶ୍ରୀଶ' ବିଷ୍ଣୁଭାବରେ ଧ୍ୟାନକରାଯାଇ ବିଷ୍ଣୁ କୃଷ୍ଣ ଉପାସନା ସମାଜରେ ପ୍ରତିଷ୍ଠିତ ହୋଇଥିଲା ।

ହୋଇଥିଲା । ରାମାୟଣରେ ରାବଣର ଶିବଉପାସନା ଓ ଚଣ୍ଡୀ ଉପାସନା ତଥା ରାମଚନ୍ଦ୍ରଙ୍କର ଦେବୀ ଉପାସନାର କାହାଣୀରୁ ସେତେବେଳେ ଶିବ ଓ ଦୁର୍ଗାଙ୍କର ଉପାସନା ସମାଜରେ ରହିଥିବାର ଅନୁମାନ କରାଯାଇପାରେ । ମଝିରେ ଅବଶ୍ୟ ବୌଦ୍ଧ ଓ ଜୈନଧର୍ମର ପ୍ରାବଲ୍ୟ ଫଳରେ ଆର୍ଯ୍ୟଧର୍ମର ଶିବ-ଦୁର୍ଗା ଓ ବିଷ୍ଣୁଙ୍କର ଉପାସନା କିଛିଟା ଦବିଯାଇଥିଲା । ମାତ୍ର ପ୍ରଥମ ଶତାବ୍ଦୀରେ କାଳିଦାସଙ୍କ ଲେଖାରୁ ଜଣାଯାଏ ଯେ, ତତ୍କାଳୀନ ସମାଜରେ ବିଷ୍ଣୁ, ଶିବ ଓ ଦୁର୍ଗାଙ୍କର ଉପାସନା ଚାଲିଥିଲା (୩୦) । କାଳିଦାସ ନିଜେ ଜଣେ ଶୈବ ଥିଲେ ଓ କାଳୀଙ୍କର ଭକ୍ତ ହୋଇଥିବାରୁ ତାଙ୍କୁ କାଳିଦାସ ବୋଲି କୁହାଯାଇଥିଲା । ପରେ ପରେ ଗୁପ୍ତ ଯୁଗରେ ଏହି ବୈଷ୍ଣବ ଧର୍ମ ଅଧିକ ଲୋକପ୍ରିୟ ହୋଇଥିଲା । ଖ୍ରୀ. ପୂ. ୨ୟ ଶତାବ୍ଦୀରୁ ଭାରତରେ ବାସୁଦେବ ସଙ୍କର୍ଷଣ ଉପାସନା ଲୋକପ୍ରିୟ ହେଲାଣି । ଅତଏବ ଓଡ଼ିଆ ଦୁର୍ଗମ ହେବ କାହିଁକି ଓ ଏ ଧର୍ମସ୍ରୋତରୁ ବାଦ୍ ଯିବ କାହିଁକି ? ଅଶୋକ ଓ ଖାରବେଳଙ୍କ ସମୟରୁ ତ ଏଠାରେ ସବୁଶ୍ରେଣୀର ଓ ସବୁଧର୍ମର ଲୋକ ବାସକରୁଛନ୍ତି । ଏଣୁ କୁହାଯାଇପାରେ ବୈଷ୍ଣବଧର୍ମ ଓ ବିଷ୍ଣୁପୂଜା ମଧ୍ୟ ଓଡ଼ିଶାରେ ସେହି ପ୍ରାଚୀନ କାଳରୁ ରହିଆସିଛି । କାରଣ, ଭାରତର ଧର୍ମଚେତନା ସହିତ ଓଡ଼ିଶାର ଧର୍ମଚେତନା ମଧ୍ୟ ଅଙ୍ଗାଙ୍ଗୀ ଭାବେ ଜଡ଼ିତ; ଏଥିରେ କୌଣସି ସନ୍ଦେହ ନାହିଁ ।

ସମୁଦ୍ରଗୁପ୍ତଙ୍କ ଦିଗ୍ବିଜୟ ପରେ ମାଠରବଂଶୀ ରାଜାମାନେ ( ମହାନଦୀଠାରୁ ମହେନ୍ଦ୍ର ପର୍ବତ ପର୍ଯ୍ୟନ୍ତ କଳିଙ୍ଗରେ ଓ ମହେନ୍ଦ୍ର ପର୍ବତର ଦକ୍ଷିଣପଟେ ରାଜତ୍ୱ କରିଥିଲେ । ଖ୍ରୀ: ଅ: ୩୬୪-୫୪୦ । ସେମାନେ ବିଷ୍ଣୁଭକ୍ତ ଥିବାରୁ କଳିଙ୍ଗରେ ବୈଷ୍ଣବ ଧର୍ମ ପ୍ରାୟ ୧୮୦ ବର୍ଷଧରି ପ୍ରତିଷ୍ଠିତ ହୋଇଥିଲା । ଏହି ବଂଶର ରାଜା ଅନନ୍ତ ଶକ୍ତିବର୍ମା । ତାଙ୍କ ରାଜତ୍ୱର ଚତୁର୍ଦ୍ଦଶ ବର୍ଷରେ ଏକ ଅଭିଲେଖରେ ଘୋଷଣା କରିଥିଲେ ଯେ, ସେ ନାରାୟଣଙ୍କର ଚରଣଭକ୍ତ (୩୧) । ସେହିବଂଶର ଚଣ୍ଡବର୍ମା ମଧ୍ୟ ବିଷ୍ଣୁଙ୍କର ଏକ ଭକ୍ତ ଥିଲେ । ସେ ପରମଭାଗବତ ଉପାଧି ଧାରଣ କରିଥିଲେ (୩୨) । ଅଭିଲେଖମାନଙ୍କରୁ

୩୦ । ମେଘଦୂତମ୍ ଗୋପବେଶସ୍ୟ ବିଷ୍ଣୁଃ—
(ମତ୍କୃତ ମେଘଦୂତ ଟୀକାଗ୍ରନ୍ଥର ମୁଖବନ୍ଧ ଦ୍ରଷ୍ଟବ୍ୟ)
ଶାକୁନ୍ତଳମ୍ ୧/୧ ପ୍ରତ୍ୟକ୍ଷାଭିଃ···ଈଶଃ—
(ମତ୍ସମ୍ପାଦିତ ଶାକୁନ୍ତଳର ମୁଖବନ୍ଧ ଦ୍ରଷ୍ଟବ୍ୟ ଓ
ମତ୍କୃତ ସଂସ୍କୃତ ସାହିତ୍ୟ ଇତିହାସ ଦ୍ରଷ୍ଟବ୍ୟ)

୩୧ । E. I. Vol. 28, PP. 175-179—(Andhavaram Plates)
"ନାରାୟଣସ୍ୱାମିନଃ ପାଦଭକ୍ତଃ"

୩୨ । Inscriptions of Orissa—Bobbili Plates Vol. 1/2, PP. 25. Here after = I. O.

ଜଣାଯାଏ, ଏହି ବଂଶର ଅନେକ୍ ରାଜା ପରମ ଭାଗବତ ଉପାଧି ଧାରଣ କରିଥିଲେ ଓ ବିଷ୍ଣୁଙ୍କର ପରମ ଭକ୍ତ ଥିଲେ । ସେମାନେ ଯେଉଁ ନାରାୟଣଙ୍କୁ ପୂଜାକରୁଥିଲେ ତାଙ୍କୁ 'ଭାଗବତସ୍ୱାମୀ ନାରାୟଣ' ବୋଲି କୁହାଯାଉଥିଲା (୩୩) । ଏ ବଂଶରେ ଶିବଭକ୍ତ ଅନନ୍ତବର୍ମାଙ୍କ (୩୪) ଭଳି ଅନ୍ୟ କେତେଜଣଙ୍କୁ ଛାଡ଼ିଦେଲେ ଆଉ ସମସ୍ତେ ପ୍ରାୟ ବିଷ୍ଣୁଭକ୍ତ ହିଁ ଥିଲେ । ଫଳରେ, ଦେଶରେ ବିଷ୍ଣୁ ଓ ଶିବ; ଉଭୟଙ୍କରି ଉପାସନା ପ୍ରତିଷ୍ଠିତ ଥିଲା । ମାତ୍ର ବିଷ୍ଣୁପୂଜା ଅଧିକ ଲୋକପ୍ରିୟତା ଅର୍ଜନ କରିଥିଲା । ମାଠର ରାଜାମାନେ ଦାକ୍ଷିଣାତ୍ୟ ଜୟ କରି ସେମାନଙ୍କ ସାମ୍ରାଜ୍ୟକୁ ମହାନଦୀ ପର୍ଯ୍ୟନ୍ତ ବିସ୍ତୃତ କରି ପାରିଥିଲେ । ଏହି ସମୟରେ ଅର୍ଥାତ୍ ଷଷ୍ଠଶତାବ୍ଦୀରେ ଓଡ଼ିଶାରେ ବୈଷ୍ଣବଧର୍ମ ଅଧିକ ଲୋକପ୍ରିୟ ହୋଇଥିଲା । କିନ୍ତୁ ଏ ସାମ୍ରାଜ୍ୟ ଓଡ଼ିଶାରେ ଅଳ୍ପଦିନ ତିଷ୍ଠିଥିଲା । ଫଳରେ ବୈଷ୍ଣବଧର୍ମ ଏକ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲା । ମାତ୍ର, ତଥାପି ବିଲୁପ୍ତ ହୋଇ ନଥିଲା । ବୈଷ୍ଣବଧର୍ମ ଦବିଯିବାର ସୁଯୋଗରେ ପୁଣି ବୌଦ୍ଧଧର୍ମ, ଶୈବଧର୍ମ ଓ ଶାକ୍ତଧର୍ମ ମୁଣ୍ଡଟେକିଥିଲେ । ହେଲେ, ସୁଯୋଗ ପାଇଲେ ବୈଷ୍ଣବଧର୍ମ ମଧ୍ୟ ନିଜର କାର୍ଯ୍ୟ ବିସ୍ତାର କରୁଥିଲା ଓ ବାଧାବିଘ୍ନ ଭିତରେ ତିଷ୍ଠି ରହିଥିଲା (୩୫) । ସେ ସମୟର ଦାନପତ୍ରମାନଙ୍କରୁ ଜଣାଯାଏ (୩୬) । ଯେ ବ୍ରାହ୍ମଣ ଦାନଗ୍ରହୀତା-ମାନଙ୍କ ମଧ୍ୟରେ କେତେକଙ୍କର ନାମ ବିଷ୍ଣୁଙ୍କ ନାମରେ ଅଭିହିତ ଥିଲା । ଏହା ହେଉଛି ଶୈଳୋଦ୍ଭବ ବଂଶୀ ରାଜାମାନଙ୍କର ରାଜତ୍ୱ ସମୟର (୭ମ-ଅଷ୍ଟମ ଶତାବ୍ଦୀ) ଓଡ଼ିଶାରେ ସାମାଜିକ ଅବସ୍ଥା ।

ଏହି ସମୟରେ ପାଶୁପତଧର୍ମ, ଶୈବଧର୍ମ ଯେତେ ଲୋକପ୍ରିୟ ହୋଇଥିଲା; ହୁଏତ ବୈଷ୍ଣବ ଧର୍ମ ସେତେ ନ ଥିଲା । ତଥାପି ଏହା ଥିଲା ଶୈବଧର୍ମର ପ୍ରଧାନ ପ୍ରତିଦ୍ୱନ୍ଦୀ । ଏଣୁ ଦୁଇଧର୍ମର ସମନ୍ୱୟର ସୋପାନ ଏତିକ ବେଳୁଁ ଆରମ୍ଭ ହୋଇ-ଯାଇଥିଲା । ଫଳରେ ଭୁବନେଶ୍ୱର ଓ ମଧ୍ୟ ଓଡ଼ିଶାର ଅନେକ ଶିବମନ୍ଦିର ଗାତ୍ରରେ

---

୩୩ । E. I. Vol. 30, PP. 112, I. O. Vol. 1/2. PP. 44—
(Ningondi grant of Prabhanjana Barma)
"ଭାଗବତସ୍ୱାମୀ ନାରାୟଣ ପାଦାନୁଧ୍ୟାତଃ"

୩୪ । Sripuram and Srungavarapukota plates of Ananta Varman I. O. Vol. 1/2. PP. 31, 35.

୩୫ । Hastivarman's Narasimha Palli Plates—(Time—Ganga Era—79, issued from Kalinga Nagar—
I. O. Vol. II, pp. 14.

୩୬ । I. O. Vol. 1/2. No. 24; 37.

ବିଷ୍ଣୁ ସମ୍ବନ୍ଧୀୟ ଭାସ୍କର୍ଯ୍ୟମାନ ସ୍ଥାନ ପାଇଲା । ଆଉ ଏହି ବୈଷ୍ଣବ ଶିଳ୍ପକଳାକୁ ପୁଣି ଶୈବମାନେ ଖଣ୍ଡନ କରାଗଲା (୩୭) । ଏସବୁ ପରବର୍ତ୍ତୀ ଯୁଗରେ ହରିହର ଉପାସନାର ସୋପାନ ନିର୍ମାଣ କଲା ଓ ଭୁବନେଶ୍ବରରେ ତ୍ରିଭୁବନେଶ୍ବର (ଲିଙ୍ଗରାଜ ମହାପ୍ରଭୁ) ହରିହର ଭାବରେ ଉପାସିତ ହେଲେ । (ହରିହର ଉପାସନା ପାଇଁ ପୂର୍ବ ପରିଚ୍ଛେଦ ଦ୍ରଷ୍ଟବ୍ୟ) ।

ଏସବୁ ଥିଲା ପୁରୀ-ଭୁବନେଶ୍ବର ଅଞ୍ଚଳ ଉପରେ ଦକ୍ଷିଣ ଆଡୁ ପ୍ରବାହିତ ହୋଇଥିବା ଧର୍ମସ୍ରୋତର ପ୍ରଭାବ । ତେଣେ ଉତ୍ତରପଟୁ ଯେଉଁ ଧାର୍ମିକଚେତନା ଏ ଅଞ୍ଚଳରେ ଗୁପ୍ତସାମ୍ରାଜ୍ୟ ପରେ ପ୍ରଭାବ ପକାଇଲା, ତାହା ମଧ୍ୟ ଦେଖିବାର କଥା । ଗୁପ୍ତସାମ୍ରାଜ୍ୟ ପରେ ହର୍ଷବର୍ଦ୍ଧନ ରାଜତ୍ୱ କରିଥିଲେ । ସେ ସମୟରେ ହର୍ଷ, ଶଶାଙ୍କ ଓ ଦ୍ୱିତୀୟ ପୁଲକେଶୀଙ୍କ ମଧ୍ୟରେ ଯୁଦ୍ଧବିଗ୍ରହ ଘଟିଥିଲା । ଏଥିରେ ବ୍ୟତିବ୍ୟସ୍ତ ହୋଇ ଅନେକ ବ୍ରାହ୍ମଣ ଉତ୍ତର ଓଡ଼ିଶା ଓ ମଧ୍ୟ ଓଡ଼ିଶାରେ ଆସି ବସତି ସ୍ଥାପନ କଲେ । ଏମାନଙ୍କୁ ଓଡ଼ିଶାର ବିଭିନ୍ନ ସାମନ୍ତରାଜା ଦାନପତ୍ରମାନ ଦେଇ ନିଷ୍କର ଜମି ପ୍ରଦାନ କରିଥିଲେ । ସେହି ରାଜାମାନଙ୍କ ମଧ୍ୟରେ 'ଲୋକବିଗ୍ରହ' (ତଣାସ ଦାନପତ୍ର), ଶିବ ଜ (ପଟିଆ କେଲା ଦାନପତ୍ର), ଶ୍ରୀଭାନୁ (ବାଲେଶ୍ବର ତାମ୍ରଫଳକ), ମଧ୍ୟମ ରାଜଦେବ (ପାରିକୁଦ ଦାନପତ୍ର) ଅନ୍ୟତମ । ଏହି ରାଜାମାନଙ୍କ ଦାନପତ୍ରମାନଙ୍କରୁ ଦାନଗ୍ରହୀତା ଅନେକ ବ୍ରାହ୍ମଣଙ୍କ ନାମ ବିଷ୍ଣୁଙ୍କ ନାମରେ ନାମିତ ଥିବାର ଜଣାଯାଏ (୩୮) । ଏଥିରୁ ଜଣାପଡ଼େ, ଓଡ଼ିଶା ସେତେବେଳେ ଏକ ଶାକ୍ତର ଅଞ୍ଚଳ ଥିଲା ଓ ଏଠାରେ ବୈଷ୍ଣବଧର୍ମ ପ୍ରତି ସେପରି ବିପଦ ନଥିଲା କି ବିଦ୍ୱେଷ ଭାବ ନଥିଲା । ତେଣୁ ବୈଷ୍ଣବ ନାମଧାରୀ ବ୍ରାହ୍ମଣମାନେ ଏଠି ବାସକରିବାକୁ ଉଚିତ ମନେକଲେ । ସାମନ୍ତରାଜାମାନେ ଏହି

୩୭ । C. J. R. T. O.—pp. 7.

୩୮ । ଶିବରାଜଙ୍କ ପଟିଆକେଲା ଦାନପତ୍ର—E. I. Vol. 9. PP. 285-288; I. O. 1/2 pp. 124-127. On the basis of C J. R. T. O—P. P. 9. see as such—

ଶଶାଙ୍କ (କର୍ଣ୍ଣସୁବର୍ଣ୍ଣର ରାଜା) ହର୍ଷବର୍ଦ୍ଧନଙ୍କ ଦ୍ୱାରା ପରାସ୍ତ ହୋଇ ଓଡ଼ିଶା ଆଡ଼କୁ ସପ୍ତମ ଶତାବ୍ଦୀରେ ମାଡ଼ିଆସିଲେ ଓ ଏଠାରେ ସାମନ୍ତରାଜାମାନଙ୍କୁ ପରାସ୍ତକରି ଏହି ବାଲେଶ୍ବର-ଭୁବନେଶ୍ବର-ପୁରୀ ଅଞ୍ଚଳ ଅଧିକାର କଲେ । ଶିବରାଜ ପୁରୀ-ଭୁବନେଶ୍ବର ଅଞ୍ଚଳରେ ଶଶାଙ୍କ ଆସିବା ପୂର୍ବରୁ ଶାସନ କରୁଥିଲେ ଓ ଅନେକ ଗ୍ରାମ ବ୍ରାହ୍ମଣମାନଙ୍କୁ ଦାନ ଦେଇଥିଲେ । ମୁଦ୍‌ଗଲ୍‌ବଂଶୀ ରାଜା ଶିବରାଜ ପରମମାହେଶ୍ବର ଥିଲେ ମଧ୍ୟ ବୈଷ୍ଣବ ଧର୍ମପ୍ରତି ବୀତଶ୍ରଦ୍ଧ ନଥିଲେ, ଓ ମାଧବ ମନ୍ଦିର ନିର୍ମାଣ କରାଇଥିଲେ ।

ବିଷ୍ଣୁଭକ୍ତ ବ୍ରାହ୍ମଣମାନଙ୍କୁ ଭୂମିଦାନ ଦେବା ସଙ୍ଗେ ସଙ୍ଗେ କେତେକ ବିଷ୍ଣୁମନ୍ଦିର ତୋଳାଇ ବୈଷ୍ଣବ ଧର୍ମକୁ ପୁଣି ଆଗେଇ ଦେଇଥିଲେ । ପ୍ରାଚୀ ନଦୀର ଅବବାହିକାରେ ଏହି ସମୟରେ କେତେକ ବିଷ୍ଣୁମନ୍ଦିର ନିର୍ମିତ ହୋଇଥିଲା (୩୯) । (୭ମ—୧୧ଶତକ ମଧ୍ୟରେ) । ସପ୍ତମ ଶତାବ୍ଦୀରେ ନିର୍ମିତ ଚଉରାଶିର ବିଷ୍ଣୁଙ୍କ ବିଗ୍ରହଠାରୁ ଆରମ୍ଭକରି ମୁଦ୍‌ଗଲ ଗ୍ରାମରେ (କାକଟପୁର) ଥିବା ସେହି ଶତାବ୍ଦୀର ମୁଦ୍‌ଗଲ ମାଧବଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକ ମୂର୍ତ୍ତି ହେଉଛନ୍ତି ଅତି ସୁନ୍ଦର ବିଷ୍ଣୁମୂର୍ତ୍ତି । ଏମାନେ ସମସ୍ତେ ଆର୍ଯ୍ୟମାନଙ୍କର ମୂର୍ତ୍ତିତତ୍ତ୍ୱ ଅନୁସାରେ ନିର୍ମିତ ।

ଓଡ଼ିଶାର ପଶ୍ଚିମପଟେ ଅର୍ଥାତ୍ ମଧ୍ୟପ୍ରଦେଶର ପୂର୍ବପଟେ ଗୁପ୍ତ ରାଜତ୍ୱକାଳରେ ବୈଷ୍ଣବଧର୍ମ ଲୋକପ୍ରିୟ ହୋଇଥିଲା । ରାୟପୁର ଅଞ୍ଚଳ, ରାଜିମ୍ ଓ ଶିର୍‌ପୁର ଅଞ୍ଚଳ ଥିଲା ବିଷ୍ଣୁ ଉପାସନାର ଏକ ପ୍ରଧାନ ଅଞ୍ଚଳ । ସେତେବେଳେ ପୁଷ୍କରୀରେ ନଳବଂଶ ରାଜତ୍ୱ କରୁଥିଲେ ଓ କୋରାପୁଟ ଅଞ୍ଚଳରେ ଥିବା ଉମରକୋଟ ସେମାନଙ୍କର ରାଜଧାନୀ ଥିଲା । ସେମାନେ କାଳକ୍ରମେ ରାଜ୍ୟବିସ୍ତାର କରି କଳାହାଣ୍ଡି ଓ ବସ୍ତର ଅଞ୍ଚଳ ଦଖଲ କରିନେଲେ; ଫଳରେ ରାଜିମ୍‌ଅଞ୍ଚଳ ସେମାନଙ୍କର ରାଜ୍ୟାନ୍ତର୍ଭୁକ୍ତ ହେବାରୁ ବୈଷ୍ଣବଧର୍ମ କୋରାପୁଟ ଓ କଳାହାଣ୍ଡି (ଆଧୁନିକ) ଅଞ୍ଚଳରେ ପ୍ରବେଶ କଲା । ଏହା ହେଲା ପ୍ରାୟ ପଞ୍ଚମ-ଷଷ୍ଠ ଶତାବ୍ଦୀର କଥା । ନଳରାଜାମାନେ ବିଷ୍ଣୁଭକ୍ତ ହେଲାପରେ ସେମାନଙ୍କ ଦ୍ୱାରା ଅନେକ ବିଷ୍ଣୁମନ୍ଦିର ନିର୍ମିତ ହେଲା । ନନ୍ଦବଂଶୀ ସ୍କନ୍ଦବର୍ମାଙ୍କର ପୋଡ଼ାଗଡ଼ ଶିଳାଲେଖରୁ ଜଣାଯାଏ ଯେ, ପୁଷ୍କରୀ ନିକଟରେ ପୋଡ଼ାଗଡ଼ଠାରେ ସେ ଏକ ବିଷ୍ଣୁମନ୍ଦିର ନିର୍ମାଣ କରିଥିଲେ (୪୦) । ଏହି ବିଷ୍ଣୁମନ୍ଦିର ସମ୍ମୁଖରେ ଦିଲ୍ଲୀର କୁତବମିନାର ନିକଟସ୍ଥ ବିଷ୍ଣୁମନ୍ଦିର ସମ୍ମୁଖସ୍ଥ ଗରୁଡ଼ସ୍ତମ୍ଭ ଭଳି ଏକ ଗରୁଡ଼ସ୍ତମ୍ଭ ଥିଲା ଓ ଏହି ସ୍ତମ୍ଭରେ ଉକ୍ତ ଶିଳାଲେଖଟି ଖୋଦିତ ହୋଇଥିଲା । ଏଠାରେ ଯେଉଁ ବିଷ୍ଣୁ ପୂଜା ପାଉଥିଲେ, ତାଙ୍କର ନାମ ସମ୍ଭବତଃ ଗୀତା ଧର୍ମକୁ ଅନୁସରଣ କରି **'ପୁରୁଷ'**※ ବୋଲି ରଖାଯାଇଥିଲା । ଶିଳାଲେଖଟି ଏହି ସୂଚନା ଦେଇଥାଏ ।

---

୩୯ । C. J. R. T. O. PP. 8.—
(କେଉଁ କେଉଁ ମନ୍ଦିର ନିର୍ମିତ ହେଲା ତାହା ଏହି ପୁସ୍ତକରୁ ସପ୍ରମାଣ ଦ୍ରଷ୍ଟବ୍ୟ ।)
ଶ୍ରୀଜୟଦେବ ଓ ଗୀତଗୋବିନ୍ଦ-କେଦାରନାଥ ମହାପାତ୍ର—ଦ୍ରଷ୍ଟବ୍ୟ ।

୪୦ । Podagada stone inscription—I. O. Vol. 1/2 PP. 94.

※ **ପୁରୁଷ**—ଓଡ଼ିଶାର ପଶ୍ଚିମପଟେ ଷଷ୍ଠ-ସପ୍ତମ ଶତାବ୍ଦୀରେ ବିଷ୍ଣୁ 'ପୁରୁଷ' ନାମରେ ପୂଜିତ ହେଉଥିଲେ । ସେହି ଦୃଷ୍ଟିରୁ ମହାବିଷ୍ଣୁ (ଜଗନ୍ନାଥ) ଙ୍କୁ ପୁରୁଷୋତ୍ତମ ବୋଲି କହିବାରେ ଅଯୌକ୍ତିକତା ନାହିଁ । ଏଣୁ ଜଗନ୍ନାଥଙ୍କୁ ସମ୍ଭବତଃ ମହାବିଷ୍ଣୁ ରୂପରେ ପୁରୁଷୋତ୍ତମ ବୋଲି କୁହାଯାଉଥିଲା ।

ଦକ୍ଷିଣକୋଶଳ (ସମ୍ବଲପୁର) ଓ ଓଡ଼ିଶାର ଉତ୍ତର ପଶ୍ଚିମ ଅଞ୍ଚଳରେ ଆଉ ଗୋଟିଏ ରାଜବଂଶ ସପ୍ତମ ଶତାବ୍ଦୀବେଳକୁ ରାଜତ୍ୱ କରୁଥିଲେ । ସେମାନେ ମଧ୍ୟ ଭାଗବତଧର୍ମୀ ଥିଲେ ଓ ବିଷ୍ଣୁମନ୍ଦିର ପ୍ରତିଷ୍ଠା କରିଥିଲେ । ଲକ୍ଷ୍ମୀନାରାୟଣଙ୍କ ଉପାସନା ଏମାନଙ୍କର ଧ୍ୟେୟ ଥିଲା (୪୧) । ମହାରାଜ ନରେନ୍ଦ୍ରଙ୍କର ପ୍ରଚଳିତ ମୁଦ୍ରାରେ ଗଜଲକ୍ଷ୍ମୀ ମୂର୍ତ୍ତି ସ୍ଥାନ ପାଉଥିଲେ । ତାଙ୍କର ଉତ୍ତରାଧିକାରୀ 'ପ୍ରସନ୍ନମାତ' ମହାରାଜାଙ୍କର ମୁଦ୍ରାରେ ଶଙ୍ଖଚକ୍ରଧାରୀ ଗରୁଡ଼ାରୋହୀ ବିଷ୍ଣୁ ଶୋଭାପାଉଥିଲେ (୪୨) । ଅତଏବ, ସେ ମଧ୍ୟ ବୈଷ୍ଣବ ଥିଲେ । ତାଙ୍କ ପରେ ମହାଜୟରାଜ ଓ ମହାସୁଦେବରାଜ ମଧ୍ୟ ପରମ-ଭାଗବତ ଥିଲେ (୪୩) । ମହାସୁଦେବରାଜ ଓ ତାଙ୍କର ଉତ୍ତରାଧିକାରୀ ପ୍ରବରରାଜ ଅଷ୍ଟମ ଶତାବ୍ଦୀବେଳକୁ ଆଧୁନିକ ସୁନ୍ଦରଗଡ଼, ବଲାଙ୍ଗିର, କଳାହାଣ୍ଡି ଇତ୍ୟାଦି ଜୟ କଲେ । ଫଳରେ ଏହି ସମୟରେ ବିଷ୍ଣୁ ଉପାସନା ଏସବୁ ଅଞ୍ଚଳରେ (ପଶ୍ଚିମ ଓଡ଼ିଶା) ବିଶେଷଭାବରେ ଲୋକପ୍ରିୟ ହୋଇଥିଲା ।

ସପ୍ତମ-ଅଷ୍ଟମ ଶତାବ୍ଦୀରେ ଶିରପୁର ଓ ମେଖଳ ଅଞ୍ଚଳରେ ପାଣ୍ଡୁବଂଶୀ ରାଜାମାନେ ରାଜତ୍ୱ କରୁଥିଲେ । ଶରଭପୁରୀୟ-ବଂଶୀ ମହାରାଜା ମହାସୁଦେବ ରାଜ; ପ୍ରବରରାଜ' ଇତ୍ୟାଦିଙ୍କ ପରେ ଦକ୍ଷିଣକୋଶଳ ପାଣ୍ଡୁବଂଶୀମାନଙ୍କର ଅଧିକାରକୁ ଆସିଲା । ତୀବରଦେବ ଏହି ଅଞ୍ଚଳର ଶାସନକର୍ତ୍ତା ହେଲେ । ସେ,ଓ ତାଙ୍କର ଉତ୍ତରାଧିକାରୀମାନେ ପରମ ବୈଷ୍ଣବ ଉପାଧି ଧାରଣ କରିଥିଲେ । ମହାନନ୍ନରାଜ ସେହି ବୈଷ୍ଣବରାଜାମାନଙ୍କ ମଧ୍ୟରେ ଅନ୍ୟତମ । ଏ ବଂଶର ହର୍ଷଗୁପ୍ତ' ଓ ରାଣୀ ବାସଟା'; ସମସ୍ତେ ବିଷ୍ଣୁଭକ୍ତ ଥିଲେ । ଏ ଦୁହେଁ ହେଉଛନ୍ତି ମହାଶିବଗୁପ୍ତ ବାଲାର୍ଜୁନଙ୍କର ପିତା, ମାତା । ରାଣୀ ବାସଟା ଶିର୍‌ପୁରରେ ଇଷ୍ଟକ ନିର୍ମିତ ଲକ୍ଷ୍ମଣ ମନ୍ଦିର ନିର୍ମାଣ କରାଇଥିଲେ

---

୪୧ । Kuruda plate of Maharaj Narendra—E. I. Vol. 31. No. 35. 36.

୪୨ । C. J. R. T. O. PP. 11.

୪୩ । E. I. Vol. pp. 314 ff (See Arang copper plate and Kauvatala plate.)

୪୪ । Sirpur Stone inscription, E. I. Vol. II. PP. 184—201
I. O. Vol. 4 PP. 69-70.
ପୁଣି ଦ୍ରଷ୍ଟବ୍ୟ—I. O. Vol. 4 PP-352.
(ଶିରପୁର ଥିଲା ଦକ୍ଷିଣ କୋଶଳର ରାଜଧାନୀ ।)

(୪୫) । (୭ମ-ଅଷ୍ଟମ ଶତାବ୍ଦୀ) । ଏହି ମନ୍ଦିରରେ ଏକ ଶିଳାଲେଖରେ ମନ୍ଦିର ବିଷୟରେ ଲେଖାଯିବା ସଙ୍ଗେ ସଙ୍ଗେ ପୁରୁଷୋତ୍ତମ ବିଷ୍ଣୁଙ୍କ ପ୍ରାର୍ଥନା କରାଯାଇଛି (୪୬) । ବୋଧ-ହୁଏ, ସେତେବେଳକୁ ବିଷ୍ଣୁଙ୍କୁ ପୁରୁଷୋତ୍ତମ ଭାବରେ ଉପାସନା କରାଗଲାଣି । ସେଥିପାଇଁ ବିଷ୍ଣୁଙ୍କ ବନ୍ଦନା କରିବାବେଳେ ଲେଖକ ପୁରୁଷୋତ୍ତମ ଭାବରେ ବିଗ୍ରହ କରିଛନ୍ତି ।

ଏହି ପାଣ୍ଡୁବଂଶୀ ରାଜାମାନେ ଅଲବୃଦ୍ଧନପରେ ସେମାନଙ୍କର ବଂଶର ନାମ ବଦଳାଇ 'ସୋମବଂଶୀ' ବୋଲି ଅଭିହିତ ହେଲେ (୪୭) । ପରେ ପରେ ସେମାନେ ସମୁଦ୍ର ଉପକୂଳସ୍ଥ ପୂର୍ବ ଓଡ଼ିଶାକୁ ଶାସନ କଲେ । ସେତେବେଳକୁ ଯାଜପୁରରେ ବିରଜା ଦେବୀ ପ୍ରତିଷ୍ଠିତ ହୋଇସାରିଥିଲେ । ପୁରୁଷୋତ୍ତମକ୍ଷେତ୍ରରେ ବିମଳାଦେବୀ ପୂଜା ପାଇ-ଆସୁଥିଲେ । (ଏହା ବିମଳାକ୍ଷେତ୍ର ନ ଥିଲା; ପୁରୁଷୋତ୍ତମକ୍ଷେତ୍ର ଥିଲା (୪୮) ।) ସୋମବଂଶୀ-ମାନେ ଆସି ଶୈବଧର୍ମର ପ୍ରଭୂତ ଉନ୍ନତି ଘଟାଇଲେ । ଫଳରେ ଏହି ଅଞ୍ଚଳରେ ଧର୍ମଚେତନାର ଏକ ଭାରସାମ୍ୟ ରଖାଯାଇଥିଲା ।

ପୁରୁଷୋତ୍ତମକ୍ଷେତ୍ର ଓ ଏକାମ୍ରକ୍ଷେତ୍ରରେ ସେତେବେଳକୁ ଯେଉଁ ଧର୍ମବିପ୍ଳବ ସୃଷ୍ଟି ହେଉଥିଲା; ତାହାର ସମାଧାନ ପାଇଁ ଧର୍ମଚେତନାମାନଙ୍କ ମଧ୍ୟରେ ଭାରସାମ୍ୟର ଆବଶ୍ୟକତା ଥିଲା । ସବୁ ଶ୍ରେଣୀର ଲୋକଙ୍କୁ ଉପାସନାର ଅଧିକାର ଦିଆଯାଇଥିଲା । ଅଶୋକସ୍ତମ୍ଭର ଭଗ୍ନ ଅଂଶକୁ ଆଣି ଶିବଲିଙ୍ଗ ଭାବରେ ପୂଜା କରିବାକୁ ପଡ଼ିଥିଲା (୪୯) ।

---

୪୫ । ସପ୍ତମ ଶତାବ୍ଦୀରେ ବୋଧହୁଏ ରାମ, ଲକ୍ଷ୍ମଣ ଇତ୍ୟାଦିଙ୍କର ପୂଜା ଓଡ଼ିଶାରେ ଲୋକପ୍ରିୟ ହୋଇଥିଲା । ସେଥିପାଇଁ ପଶ୍ଚିମ ଅଞ୍ଚଳରେ ବୈଷ୍ଣବ ମତାନୁକୁଳରେ ଲକ୍ଷ୍ମଣ ମନ୍ଦିର ନିର୍ମିତ ହୋଇଥିବାବେଳେ ଶୈବପୀଠ ଭୁବନେଶ୍ୱରରେ ସେହି ସପ୍ତମ ଶତାବ୍ଦୀରେ ଲକ୍ଷ୍ମଣେଶ୍ୱର, ଭରତେଶ୍ୱର ଓ ଶତ୍ରୁଘ୍ନେଶ୍ୱର ମନ୍ଦିର ନିର୍ମିତ ହୋଇ ଶିବ (ଈଶ୍ୱର) ଲିଙ୍ଗ ଭାବରେ ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ ପୂଜିତ ହେଲେ । (For the time of these temples see—K. N. Mohapatra in "Side lights of histoy and cultures of Orissa—Cuttack-1977-PP-543

୪୬ । (See the Ref No. 44 )

୪୭ । C. J. R. T.O—PP 13—
Stietencron writes—"The dynasty changed its name and became the Somavamsi dynasty ?

୪୮ । ମତ୍ସ୍ୟପୁରାଣ—"ଗଙ୍ଗାୟାଂ ମଙ୍ଗଳା ନାମ ବିମଳା ପୁରୁଷୋତ୍ତମେ" ।

୪୯ । ଭାସ୍କରେଶ୍ୱର ମନ୍ଦିର, ଭୁବନେଶ୍ୱର ଏହାର ଏକ ନିଦର୍ଶନ ।

ଅନେକ ବୌଦ୍ଧ ଦେବଦେବୀଙ୍କୁ ହିନ୍ଦୁ ଦେବ ଦେବୀ ଭାବରେ ପରିଣତ କରିବାକୁ ହୋଇଥିଲା । ବୈଷ୍ଣବଧର୍ମ, ଶୈବଧର୍ମ ଓ ଶାକ୍ତଧର୍ମକୁ ପରସ୍ପର ସହିତ ମେଳ ଖୁଆଇ ଏକ ସମୀକରଣ ଅବସ୍ଥା ସୃଷ୍ଟି କରିବାକୁ ହୋଇଥିଲା । ଏସବୁ ପ୍ରକ୍ରିୟା ପ୍ରାୟ ସମ୍ପୂର୍ଣ୍ଣ ହେଲା ଅଷ୍ଟମ ଶତାବ୍ଦୀର ଶେଷଭାଗରେ । କୁଲ୍‌କେ, ଷ୍ଟିଟେନ୍‌କୋନ୍ ଇତ୍ୟାଦି ପାଶ୍ଚାତ୍ୟ ଗବେଷକମାନେ ଜଗନ୍ନାଥଙ୍କର ପୂଜାବିଧି ଓ ନୃସିଂହମନ୍ତ୍ରର ପ୍ରୟୋଗକୁ ନେଇ ଜଗନ୍ନାଥ ଉପାସନା ନୃସିଂହ ଉପାସନାର ପରବର୍ତ୍ତୀ ରୂପ ବୋଲି ବିଶ୍ୱାସ କରିଛନ୍ତି। ମାତ୍ର ସେମାନେ ଗୋଟିଏ ଜିନିଷ ଏ କ୍ଷେତ୍ରରେ ଭୁଲିଯାଇଛନ୍ତି । ତାହା ହେଉଛି, ଜଗନ୍ନାଥଙ୍କର ଏବେ ଯେଉଁ ପୂଜାବିଧି ଚାଲିଛି, ତାହା ନୀଳାଦ୍ରି ମହୋଦୟ, କର୍ମାଙ୍ଗ ଆଦି ଗ୍ରନ୍ଥ ଉପରେ ପ୍ରତିଷ୍ଠିତ । ଏସବୁ ଗ୍ରନ୍ଥ ଷୋଡ଼ଶ ଶତାବ୍ଦୀ ବା ପରବର୍ତ୍ତୀ କାଳରେ ରଚିତ । ଅତଏବ ଏହାକୁ ପ୍ରମାଣ ଭାବରେ ନେଇ ଅଷ୍ଟମ, ନବମ ଶତାବ୍ଦୀରେ ବା ପ୍ରାଚୀନ ଯୁଗରେ ଜଗନ୍ନାଥଙ୍କ ପୂଜାବିଧି ଏକଭଳି ଥିଲା ବୋଲି ବିଶ୍ୱାସ କରିବା ଠିକ୍ ନୁହେଁ । ସେହି ଦୃଷ୍ଟିରୁ ସେମାନଙ୍କର କଳ୍ପିତ ମନ୍ତବ୍ୟ ମଧ୍ୟ ଗ୍ରହଣୀୟ ନୁହେଁ ।

ସେ ଯାହାହେଉ, ତ୍ରିପୁରୀର ଅଧିପତି କାଲ୍‌ଚୁରି ବଂଶୀ ରାଜାଙ୍କ ଦ୍ୱାରା ପରାସ୍ତ ହେବାରୁ ଶେଷପାଣ୍ଡୁବଂଶୀ ରାଜାମାନେ କଳାହାଣ୍ଡି ଓ ସୋନପୁର ଆଡ଼କୁ ଚାଲିଆସିଲେ ଓ ପରେ ସମୁଦ୍ର ଉପକୂଳସ୍ଥ ପୂର୍ବ ଓଡ଼ିଶା ଅଞ୍ଚଳରେ ପ୍ରବେଶ କଲେ । ସେମାନେ ଆଉ ପାଣ୍ଡୁବଂଶୀ ନ ବୋଲାଇ ସୋମବଂଶୀ ବୋଲାଇଲେ ଓ 'ସକଳକୋଶଳାଧିପତି' ଉପାଧି ତ୍ୟାଗକରି 'ତ୍ରିକଳିଙ୍ଗାଧିପତି' ଉପାଧି ଗ୍ରହଣ କଲେ । ପୁଣି ବୈଷ୍ଣବଧର୍ମ ପ୍ରତି ଅନୁରକ୍ତି କମାଇଦେଇ ଶୈବଧର୍ମ ପ୍ରତି ବିଶେଷ ଅନୁରକ୍ତ ରହିଲେ । ଏ ସମସ୍ତ ପରିବର୍ତ୍ତନ ପଛରେ ରାଜନୈତିକ ମସୁଧା ଥିଲା । ସେମାନେ ସେମାନଙ୍କର ସବୁକିଛି ପରିବର୍ତ୍ତନ କରିଦେଇ ଏକ ନୂତନ ରୂପନେଲେ ଓ ଫଳରେ ପୁଣି ଏକ ଶକ୍ତିଶାଳୀ ସୋମବଂଶୀ ଭାବରେ ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଛିଡ଼ାହେଲେ । ଦ୍ୱାଦଶ ଶତାବ୍ଦୀରେ ଗଙ୍ଗବଂଶୀ ରାଜାମାନେ ଶକ୍ତିଶାଳୀ ହୋଇଉଠିବାରୁ ଏମାନଙ୍କର ପତନ ହେଲା । ଆଉ ମୂଳରୁ ଶୈବଥିବା ଗଙ୍ଗବଂଶୀମାନେ ମଧ୍ୟ ନିଜର ରାଜନୈତିକ ସିଦ୍ଧି ଉଦ୍ଦେଶ୍ୟରେ ଶୈବ ଧର୍ମ ପ୍ରତି କମ୍ ଅନୁରକ୍ତି ପ୍ରକାଶ କରି ଅବହେଳିତ ବୈଷ୍ଣବଧର୍ମପ୍ରତି ଅଧିକ ମମତା ପ୍ରଦର୍ଶନ କଲେ । ଏସବୁ ରାଜଧର୍ମର ମୂଳରେ ଥିଲା ରାଜନୈତିକ ସିଦ୍ଧି ଓ ଲୋକପ୍ରିୟତା ଅର୍ଜନ । ପରିସ୍ଥିତି ଦେଖି ସୋମବଂଶୀ ଓ ଗଙ୍ଗବଂଶୀ ରାଜାମାନେ ଏପରି ଧର୍ମଚେତନାରେ ପରିବର୍ତ୍ତନ ଗ୍ରହଣ କରିଥିଲେ । ମାତ୍ର 'ବାସନ୍ତୀ'ଙ୍କ ମୃତ୍ୟୁପରେ ମହାଶିବଗୁପ୍ତ ବାଲାର୍ଜୁନ ନିଜର ପରମବୈଷ୍ଣବ ଉପାଧି ତ୍ୟାଗକରି ପରମମାହେଶ୍ୱର ଉପାଧି ଗ୍ରହଣ କରିଥିଲେ । ତାଙ୍କପରେ ମହାଭବଗୁପ୍ତ ଜନ୍ମେଜୟ (୧ମ) ଓ ତାଙ୍କର ଉତ୍ତରାଧିକାରୀ ମହାଶିବଗୁପ୍ତ ଯଯାତିଦେବ; ସମସ୍ତେ ଶୈବଧର୍ମୀ

ହୋଇ ବରମମାହେଶ୍ୱର ଉପାଧି ଗ୍ରହଣ କରିଥିଲେ । ଏମାନଙ୍କ ସମୟରେ ବିଷ୍ଣୁ ମନ୍ଦିର ଭଙ୍ଗାଯାଇ ନଥିଲା କି ତାହାର କିଛି ଅନିଷ୍ଟ କରାଯାଇନଥିଲା । ବରଂ ଅଧିକ ବିଷ୍ଣୁମନ୍ଦିର ମଧ୍ୟ ନିର୍ମାଣ କରାଯାଇଥିଲା । କିନ୍ତୁ ଯଯାତିକେଶରୀ ଜଗନ୍ନାଥଙ୍କର ଏକ ଶ୍ରେଷ୍ଠ ମନ୍ଦିର ନିର୍ମାଣ କରାଇଥିଲେ । ମାତ୍ର ସେମାନେ ଅଧିକ ତତ୍ପର ଥିଲେ ଶିବମନ୍ଦିରରୁ ନିର୍ମାଣ ପାଇଁ, ଶିବାର୍ଚ୍ଚନା ପାଇଁ । ପୁଣି ପରବର୍ତ୍ତୀ ଯୁଗରେ ତାହାର ବିପରୀତ ଭାବ ଆଚରିତ ହୋଇଥିଲା ଗଙ୍ଗବଂଶୀମାନଙ୍କ ରାଜତ୍ୱ କାଳରେ । କାରଣ, ଅବହେଳିତର ଉନ୍ନତି ବିଧାନ ସବୁଯୁଗରେ ଶାସକ ବା ରାଜାମାନଙ୍କର କର୍ତ୍ତବ୍ୟ । ଏଥିରେ ଥାଏ ରାଜନୈତିକ ସିଦ୍ଧି ଓ ଲୋକପ୍ରିୟତା ।

ମହାକବି କାଳିଦାସଙ୍କ ଯୁଗରୁ (୫୦) କଳିଙ୍ଗ; ଉତ୍କଳ ରାଜ୍ୟର ଉତ୍କର୍ଷ ବର୍ଣ୍ଣିତ ଓ ପ୍ରମାଣିତ ହୋଇଛି । ଏହି ଦେଶର ବେଳାଭୂମିରେ ତାଳବନଯୁକ୍ତ ମହୋଦଧି (୫୧), ଯୁଦ୍ଧରେ ବ୍ୟବହୃତ ସୁଶିକ୍ଷିତ ଗଜ, (୫୨) ଓ ଏଠାରେ ଅଧିବାସୀମାନଙ୍କର ପାନ ଖାଇବାର ସଉକ ଏବଂ ନାରିକେଳ ଓ ନାରିକେଳ ଆସବରେ ଶ୍ରଦ୍ଧା (୫୩) । ନିଖୁଣଭାବରେ କାଳିଦାସଙ୍କ ଲେଖାରେ ରୂପନେଇଛି । ଏହି ସମୟରେ ରୂଢ଼ୀଭାବରେ 'ପୁରୁଷୋତ୍ତମ' ଶବ୍ଦ କେବଳ ହରି ବା ବିଷ୍ଣୁଙ୍କ ପାଇଁ ଓ ଈଶ୍ୱର-ଶବ୍ଦ କେବଳ ଶିବଙ୍କ ପାଇଁ ବ୍ୟବହୃତ ହେଉଥିଲା (୫୪) । ଅନ୍ୟଭାଷାରେ କହିବାକୁ ଗଲେ ସେହି ସମୟ ବା ତା' ପୂର୍ବରୁ ବିଷ୍ଣୁ ପୁରୁଷୋତ୍ତମ ଭାବରେ ଉପାସିତ ହେବାର ପରମ୍ପରା ଆମ ଦେଶରେ ଥିଲା । ଜଗନ୍ନାଥ ମୂଳତଃ ପୁରୁଷୋତ୍ତମ ହୋଇଥିବାରୁ ବିଷ୍ଣୁଙ୍କ ଭିନ୍ନ ଅନ୍ୟ କେହି ନୁହନ୍ତି । ପୂର୍ବ ଆଲୋଚନାରୁ

---

୫୦ । କେତେକ ଐତିହାସିକଙ୍କ ମତରେ କାଳିଦାସ ଗୁପ୍ତ ରାଜାଙ୍କ ଦରବାରରେ (୪ର୍ଥ-୫ମ ଶତକ) ଆସନ ଅଳଂକୃତ କରିଥିଲେ । ପୁଣି କେତେକ କହନ୍ତି, କାଳିଦାସ ୧ମ ଶତାବ୍ଦୀର କବି । ଏହି ଦ୍ୱିତୀୟ ସିଦ୍ଧାନ୍ତଟି ଏବେ ପ୍ରତିଷ୍ଠିତ ହୋଇଛି ।
ଦ୍ରଷ୍ଟବ୍ୟ:—ମତ୍‌କୃତ "ସଂସ୍କୃତ ସାହିତ୍ୟର ଇତିହାସ" ।

୫୧ । ରଘୁବଂଶମ୍-୪/୩୪- ପ୍ରାପ ତାଳୀବନଶ୍ୟାମମୁପକଣ୍ଠଂ ମହୋଦଧେଃ ।

୫୨ । ରଘୁ-୪/୪୦-ପ୍ରତିଜଗ୍ରାହ କାଳିଙ୍ଗସ୍ତମସ୍ତୈର୍ଗଜସାଧନଃ ।

୫୩ । ରଘୁ-୪/୪୨—ତାମ୍ବୂଲୀନାଂ ଦଳୈସ୍ତତ୍ର ରଚିତାପାନଭୂମୟଃ; ନାରିକେଳାସବଂ......

୫୪ । ରଘୁ-୩/୪୯-ହରର୍ଯଥୈକଃ ପୁରୁଷୋତ୍ତମଃ ସ୍ମୃତୋ ମହେଶ୍ୱରସ୍ତ୍ର୍ୟମ୍ବକ ଏବ ନାପରଃ, ମହାଭାରତ ଯୁଗରୁ ବିଷ୍ଣୁଙ୍କ ନାମ ପୁରୁଷୋତ୍ତମ ହୋଇଥିଲା । ମ. ଭା.-୧୩/୧୩୫, ୧୬; ମାତ୍ର ପରେ ରୂଢ଼ୀ' ହେଲା ।

ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ଆମ ସମାଜରେ ରାଜାନୁଗତ ବା ରାଜାନୁଗ୍ରହ ଦୃଷ୍ଟିରୁ ଗୋଟିଏ ଗୋଟିଏ ଧର୍ମର ବିକାଶ ଓ ପତନ ସାଧିତ ହୋଇଥାଏ । କେତେବେଳେ ବିଷ୍ଣୁପୂଜା ଅଧିକ ଲୋକପ୍ରିୟ ହୋଇଯାଏ ତ କେତେବେଳେ ଶିବ ଉପାସନା ବିଷ୍ଣୁପୂଜାକୁ ଦବାଇ ଦେଇ ଅଧିକ ଲୋକପ୍ରିୟ ହୁଏ । ପୁଣି କେତେବେଳେ ବୌଦ୍ଧଧର୍ମ, କେତେବେଳେ ଜୈନଧର୍ମ ଓ କେତେବେଳେ ଶକ୍ତି ଆରାଧନା ସମୟ, ସୁଯୋଗ ଓ ରାଜାନୁଗତ୍ୟକୁ ନେଇ ସମାଜରେ ଲୋକପ୍ରିୟ ହୋଇଥାଏ । ଆଉ ଗୋଟିଏ ମନେ-ରଖିବାର କଥା ହେଉଛି ଯେ, ଗୋଟିଏ ଧର୍ମ ଲୋକପ୍ରିୟ ହୋଇଥିବାବେଳେ ଅନ୍ୟ ଧର୍ମ ସବୁ ବିଲୁପ୍ତ ହୋଇଯାଇଥାଏ ବୋଲି ନିଶ୍ଚିତ ଭାବରେ ଧରିଯାଇ ନପାରେ । ସେହିସବୁ ଧର୍ମଗୁଡ଼ିକ ଦବି ରହିଥାନ୍ତି ଓ ଅନ୍ୟ ଏକ ସୁଯୋଗରେ ସେମାନଙ୍କର ପୁଣି ଉତ୍ଥାନ ହୋଇଥାଏ । ଯଦି କୌଣସି ଧର୍ମର ପୂର୍ଣ୍ଣ ବିଲୋପ ସାଧନ ହୋଇଥାଏ, ଅର୍ଥାତ୍ ସମାଜରେ କେହିହେଲେ ସେ ଧର୍ମାବଲମ୍ବୀ ନଥାନ୍ତି, ସେ ଧର୍ମର ପୁନର୍ଜାଗରଣ ଦୁଷ୍କର ହୋଇପଡ଼େ । ଏହା ହିଁ ପାରମ୍ପରିକ କାଳସ୍ରୋତର ମତ ।

ଅଶୋକଙ୍କ ସମୟରୁ (ଖ୍ରୀ: ପୂ: ୩ୟ ଶତକ) ଦେଖିଲେ ଜଣାଯାଏ, ବୌଦ୍ଧଧର୍ମର ଉନ୍ନତି ଆମଦେଶରେ ସାଧିତ ହୋଇଥିଲେ ମଧ୍ୟ ବ୍ରାହ୍ମଣ୍ୟଧର୍ମ ମଧ୍ୟ ବଞ୍ଚିରହିଥିଲା (୫୫) । ଖାରବେଳଙ୍କ ସମୟରେ ମଧ୍ୟ ବ୍ରାହ୍ମଣ୍ୟଧର୍ମ (ବିଷ୍ଣୁ, ଶିବ, ଶକ୍ତି)ର କ୍ଷତି କରାଯାଇ ନଥିଲା (୫୬) । ୨ୟ ଓ ତୃତୀୟ ଶତାବ୍ଦୀ ମଧ୍ୟରେ ରଚିତ ବିଷ୍ଣୁଧର୍ମ ବୋଲି ଗୋଟିଏ ଗ୍ରନ୍ଥରୁ ଜଣାଯାଏ (୫୭), ଓଡ୍ରଦେଶରେ ଶ୍ରୀକୃଷ୍ଣ ପୁରୁଷୋତ୍ତମ ଭାବରେ ପୂଜା ପାଉଥିଲେ । ଏଥିରେ ସ୍ପଷ୍ଟଭାବରେ ଲେଖାଅଛି, **"ଓଡ୍ରେ ତୁ ପୁରୁଷୋତ୍ତମମ୍"** ।' ଅର୍ଥାତ୍, ୨ୟ-ତୃତୀୟ ଶତାବ୍ଦୀବେଳକୁ ପୁରୁଷୋତ୍ତମକ୍ଷେତ୍ରରେ ପୁରୁଷୋତ୍ତମ (ବିଷ୍ଣୁ) ଓଡ୍ର ନା

---

୫୫ । Ashokan Rock Edict—No.XIII.

୫୬ । ହାତୀଗୁମ୍ଫା ଶିଳାଲେଖ, ଭୁବନେଶ୍ୱର ।

୫୭ । ବିଷ୍ଣୁଧର୍ମ—

An unpublished manuscript preserved at Asiatic Society of Bengal (ASP,MS, No. 1670) R. C. Hazra ଏହାକୁ ଅଧ୍ୟୟନ (Study) କରି ଏହାର ସମୟ ୨ୟ-୩ୟ ଶତକ ବୋଲି ସ୍ଥିର କରିଅଛନ୍ତି । (See—R. C. Hazra, (Studies in the Upapurans, Vol. 1. Cal.-1958); See also, K. S. Behera-Bharati Utkal University-Vol. VII. 1973 No December3-PP,22,

ଉତ୍କଳରେ ପୂଜା ପାଉଥିଲେ । ମାତ୍ର ଦୁଃଖର ବିଷୟ, ଏ ପର୍ଯ୍ୟନ୍ତ ଏହି ଶତାବ୍ଦୀରେ ପୁରୁଷୋତ୍ତମକ୍ଷେତ୍ରରେ ପୁରୁଷୋତ୍ତମ କୃଷ୍ଣ ପୂଜାପାଉଥିବାର କୌଣସି ଶିଳାଲେଖ ମିଳିନାହିଁ । ହୁଏତ ଅନୁସନ୍ଧାନ ପରେ ମିଳିପାରେ । ମାତ୍ର ତା' ବୋଲି ଭାବିବା ଠିକ୍ ନୁହେଁ ଯେ, ସେତେବେଳେ ପୁରୁଷୋତ୍ତମଙ୍କ ଉପାସନା ନଥିଲା । ଶିଳାଲେଖ ପ୍ରମାଣାଭାବରେ ଅନ୍ୟାନ୍ୟ ପ୍ରମାଣକୁ ତ ବିଶ୍ୱାସ କରିବାକୁ ହେବ । ଯଥା; ବୈଦିକ ଯୁଗର ସାମାଜିକ ଅବସ୍ଥା, ରାଜା ଓ ରାଜ୍ୟର ବ୍ୟବସ୍ଥା ତଥା ଧର୍ମାଚରଣର ବ୍ୟବସ୍ଥା ଇତ୍ୟାଦିକୁ ଆମେ ଗ୍ରହଣ କରୁଛୁ ଶିଳାଲେଖର ବିନା ସହାୟତାରେ । ଅତଏବ ୨ୟ-ତୃତୀୟ ଶତକରେ ଓଡ଼ିଶାର ଧର୍ମଧାରା ବିଷୟ ଅବଗତ ହେବାପାଇଁ ଶିଳାଲେଖ ଏପର୍ଯ୍ୟନ୍ତ ଆବିଷ୍କୃତ ନ ହୋଇଥିବାରୁ ଆମକୁ ଗ୍ରନ୍ଥ ପ୍ରମାଣାଦି ଅନ୍ୟାନ୍ୟ ପ୍ରମାଣମାନଙ୍କ ଉପରେ ନିର୍ଭର କରିବାକୁ ହେବ । ଅନ୍ୟଥା, ଅନ୍ୟପନ୍ଥା ନାହିଁ ।

ଚତୁର୍ଥ-ପଞ୍ଚମ ଶତାବ୍ଦୀବେଳକୁ ଗୁପ୍ତରାଜତ୍ୱ ସମୟ । ଏଣେ ଓଡ଼ିଶାରେ ମାଠରମାନଙ୍କ ରାଜତ୍ୱ ।' ଏମାନେ ସମସ୍ତେ ବିଷ୍ଣୁ ଉପାସକ । ଏଣୁ, ଏହି ସମୟରେ ନିଶ୍ଚୟ ପୁରୁଷୋତ୍ତମକ୍ଷେତ୍ରର ଉନ୍ନତି ହୋଇଥିବ । ମାତ୍ର ଏ ବାବଦରେ ଏପର୍ଯ୍ୟନ୍ତ ଶିଳାଲେଖ ପ୍ରମାଣ ଆମର ହସ୍ତଗତ ହୋଇନାହିଁ । ଖାଲି, ଏତିକ ଜାଣିବାର କଥା ଯେ ଏ ବଂଶର ପ୍ରଭଞ୍ଜନ ବର୍ମା (୫୮) ଚଣ୍ଡବର୍ମା ପ୍ରଭୃତି ରାଜାମାନେ ନାରାୟଣଙ୍କର ଉପାସକ ଥିଲେ ଓ ପରମ ଭାଗବତ ଉପାଧି ଧାରଣ କରିଥିଲେ । ଏମାନେ ମହେନ୍ଦ୍ରଗିରିଠାରୁ ଆରମ୍ଭକରି ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରେ ବିଷ୍ଣୁମନ୍ଦିର ନିର୍ମାଣ କରାଇଥିଲେ । ମାଦଳା-ପାଞ୍ଜିରେ ଉଲ୍ଲିଖିତ ଅଛି ଯେ ଭୁବନେଶ୍ୱରରେ ଚଣ୍ଡକେଶରୀ ନାମକ ଜଣେ ରାଜା ବିନ୍ଦୁହ୍ରଦ ନାମକ ଏକ ପୁଷ୍କରିଣୀ ଖୋଳାଇଥିଲେ (୫୯) । ବିନ୍ଦୁସାଗର କୂଳରେ ଯେଉଁଠି ଅନନ୍ତବାସୁଦେବଙ୍କ ମନ୍ଦିର ଅଛି, ସେଇଠି ଘାଟ ସ୍ଥାନରେ ଅନନ୍ତବାସୁଦେବ ବିନ୍ଦୁସାଗର କୂଳରେ ପଥର ପ୍ରାଚୀରରେ ଖୋଦିତ ହୋଇ ପୂଜିତ ହେଉଛନ୍ତି । ଏହା ହେଉଛି ମନ୍ଦିରରେ ପୂଜିତ ହେଉଥିବା ମୂଳ ଅନନ୍ତବାସୁଦେବଙ୍କ ମୂର୍ତ୍ତିଠାରୁ (୬୦)

୫୮ । See—Ningondi copper plate grant—
Epigraphica Indica-Vol. XXX PP. 117-118, and Vol. XXVII, 33-36.pp.
Indian Antiquary-XIII(1884)pp. 49 (Chicacole coper plate).
ଏଥିରେ ପ୍ରଭଞ୍ଜନବର୍ମାଙ୍କ ଉପାଧି ଥିଲା—"ଭଗବତସ୍ୱାମୀ ନାରାୟଣ ପାଦାନୁଧ୍ୟାତଃ ।"

୫୯ । ମାଦଳାପାଞ୍ଜି—ପ୍ରାଚୀ-୧୯୬୯—ପୃ: ୧୦୪. ଚଣ୍ଡିକେଶରୀ ଭୁବନେଶ୍ୱର ଦେଉଳ ତୋଳାଇଲେ । ବିନ୍ଦୁହ୍ରଦନାମ ପୋଖରୀ ଖୋଳାଇଲେ ।

୬୦ । ମୂଳଅନନ୍ତବାସୁଦେବମୂର୍ତ୍ତି—ପୂର୍ବରୁ ପୂଜାପାଉଥିବା ଏହି ମୂର୍ତ୍ତି'ମାନ ଖରାପ

ପ୍ରାଚୀନତର (୭୧) । ବର୍ତ୍ତମାନର ଅନନ୍ତବାସୁଦେବ ମନ୍ଦିର ଖ୍ରୀ: ଅ: ୧୨୭୮ ରେ ଅନଙ୍ଗଭୀମଦେବ (ଗଙ୍ଗବଂଶୀ) ଙ୍କ କନ୍ୟା ଚନ୍ଦ୍ରିକାଦେବୀ ନିର୍ମାଣ କରାଇଥିଲେ । ଇତିହାସ ଅଧ୍ୟାପକ ଶରତ୍‌ଚନ୍ଦ୍ର ବେହେରା ଅନୁଭବ କରନ୍ତି ଯେ, ବିନ୍ଦୁସାଗର ପଥର ପ୍ରାଚୀରରେ ଥିବା ପ୍ରାଚୀନ ଅନନ୍ତବାସୁଦେବ ମୂର୍ତ୍ତି ମୂର୍ତ୍ତିତତ୍ତ୍ୱ ଅନୁସାରେ ବିଚାର କଲେ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ହେବେ (୭୨) । ସେ କହନ୍ତି, ଯେ ପୂର୍ବେ ମାଠରମାନେ ଏଠାରେ ଅନନ୍ତ ଓ ବାସୁଦେବଙ୍କୁ ପୂଜା କରୁଥିଲେ । ପରେ ସେହି ସ୍ଥାନରେ ଚନ୍ଦ୍ରିକାଦେବୀ ତ୍ରୟୋଦଶ ଶତାବ୍ଦୀରେ ଏହି ମନ୍ଦିରଟି ତୋଳାଇଲେ ଓ ତହିଁରେ ନୂତନ ମୂର୍ତ୍ତି ସ୍ଥାପନ କରି ଏହି ମୂର୍ତ୍ତିମାନଙ୍କୁ ଆଣି ଘାଟସ୍ଥାନରେ ରଖିଲେ ।

ଅବଶ୍ୟ ଏହି ତଥ୍ୟକୁ ଆମେ ଆଂଶିକ ଗ୍ରହଣ କଲେ ମଧ୍ୟ ପୂର୍ଣ୍ଣତଃ ଗ୍ରହଣ କରିପାରୁ ନାହିଁ । ବିନୟର ସହିତ ଏଠି ଆମକୁ କିଛି କହିବାକୁ ପଡ଼ୁଛି । ହୁଏତ ଡଃ ବେହେରାଙ୍କ କହିବାନୁସାରେ ଏହି ମୂର୍ତ୍ତି ପଞ୍ଚମ ଶତାବ୍ଦୀର ହୋଇଥାଇପାରେ । କିନ୍ତୁ ମାଠରମାନେ ଏହାକୁ ପ୍ରତିଷ୍ଠା କରିଥିବା କଥା କୌଣସି ଶିଳାଲେଖ ବା ଗ୍ରନ୍ଥ ପ୍ରମାଣରେ ନାହିଁ । ଯଦି ହୋଇଥିବ, ତେବେ ତାହା ଅନୁମାନର କଥା ମାତ୍ର । କାରଣ, ପଞ୍ଚମ-ଷଷ୍ଠ ଶତାବ୍ଦୀରେ ଗୁପ୍ତମାନଙ୍କ ପରେ ଏଠାରେ ମାଠରମାନଙ୍କ ରାଜ୍ୟ ଥିଲା । କିନ୍ତୁ ମୁଁ କେତୋଟି ତଥ୍ୟ ଏଠାରେ ଐତିହାସିକମାନଙ୍କ ବିଚାରପାଇଁ ଆଣୁଅଛି । ଅବଶ୍ୟ ଏ ତଥ୍ୟାବଳୀର ପର୍ଯ୍ୟାଲୋଚନା ମୋର ପୁସ୍ତକ The Land of Visnuରେ କରାଯାଇଛି । କଥା ହେଉଛି, ମାଦଳାପାଞ୍ଜିର ଗୋଟାଏ ପୋଥିରେ ବିନ୍ଦୁସାଗର ଚଣ୍ଡକେଶରୀ ଖୋଳାଇଥିଲେ ବୋଲି ଉଲ୍ଲେଖ ଅଛି । ସେ ମଧ୍ୟ ବିନ୍ଦୁସାଗରର (ହୁଡ଼ାରେ) କୂଳରେ ଥିବା ପଥର ପ୍ରାଚୀର ନିର୍ମାଣ କରି ପାଣିକୁ ପୋଖରୀରେ ଅଟକାଇ ରଖିଥିବେ । କାରଣ, ସେହି ପୋଖରୀଟି ମୁଖ୍ୟତଃ ପାଣି ଅଟକାଯାଇ କରାଯାଇଛି । ଯଦି ଏପରି ହୋଇଥାଏ, ତେବେ ସେ ମଧ୍ୟ ପଥର ପ୍ରାଚୀରରେ ବାସୁଦେବ ମୂର୍ତ୍ତିକୁ ପ୍ରତିଷ୍ଠା କରିଥିବେ । ପ୍ରାଚୀର ନିର୍ମାଣ ବେଳେ ଏପରି କରାଯିବା ଖୁବ୍ ସମୀଚୀନ । କିନ୍ତୁ ପ୍ରଶ୍ନ ହେଉଛି ଏ ଚଣ୍ଡି କେଶରୀ

---

ଦେଖାଯାଉଥିବାରୁ ଓ ଏମାନଙ୍କର ଆଖି ଲିଭିଯିବାରୁ, ଏବେ ଅଳ୍ପବର୍ଷ ହେଲା ନୂଆମୂର୍ତ୍ତି ମନ୍ଦିରରେ ପ୍ରତିଷ୍ଠା ହୋଇଛନ୍ତି ।

୭୧ । ଦ୍ରଷ୍ଟବ୍ୟ—ମୋର ଗ୍ରନ୍ଥ, The Land of Visnu-Delhi-D.K. Publisher Delhi, 1980.

୭୨ । Side lights, Orissan Culture-pp. 372 "There must have been an old temple where this Vishnu image was installed" —Behera.

କଏ ? ଡଃ. ବେହେରାଙ୍କ କଥାକୁ ବିଚାରକଲେ ଦେଖିଲେ ଜଣାଯାଏ ଯେ ମାଠରବଂଶରେ ଜଣେ ବିଷ୍ଣୁଭକ୍ତ ରାଜା ଚଣ୍ଡବର୍ମା ଥିଲେ (୭୩) । ଏଣୁ ଆମେ ଭାବିବା ସ୍ୱାଭାବିକ୍ ଯେ ଏହି ଚଣ୍ଡବର୍ମା ହୁଏତ ଏହି ବାସୁଦେବ ମୂର୍ତ୍ତି ନିର୍ମାଣ କରାଇଥିବେ । ମାତ୍ର ଟିକିଏ ଭଲକରି ବିଚାରକଲେ ଦେଖାଯାଏ ଯେ ଚଣ୍ଡକେଶରୀ ହେଉଛନ୍ତି ସୋମବଂଶୀ ରାଜା ମାଦଳାପାଞ୍ଜିର ସେହି ପୋଥିରେ ଲେଖାଅଛି । ପାଣ୍ଡୁବଂଶୀଙ୍କ ପରେ ଏହି ବଂଶ ରାଜତ୍ୱକଲେ (୭୪) । ଶିଳାଲେଖ ଦୃଷ୍ଟିରୁ ଦେଖିଲେ ପାଣ୍ଡୁବଂଶୀଙ୍କ ପରେ ବଂଶ ନାମ ପରିବର୍ତ୍ତନ କରି ସୋମବଂଶୀ କେଶରୀବଂଶୀ ରାଜାମାନେ ରାଜତ୍ୱକରିବା କଥା ଗ୍ରହଣୀୟ । ମାତ୍ର ମାଦଳାପାଞ୍ଜିର ଅନ୍ୟ ପୋଥିକୁ ବିଚାରକୁ ନେଇ ତୁଳନାକରି ଦେଖିଲେ ଜଣାଯାଏ ଯେ ଏ ବଂଶରେ ଚଣ୍ଡକେଶରୀ ବୋଲି ଜଣେ ରାଜା ଥିବାର ଅନ୍ୟପୋଥି-ମାନଙ୍କରେ ନାହିଁ । ସେଥିରେ ଅଛି ଚନ୍ଦ୍ରକେଶରୀ (୭୫) । ଶିଳାଲେଖରେ କିନ୍ତୁ ଚନ୍ଦ୍ରକେଶରୀଙ୍କ ସମ୍ପର୍କରେ ସେପରି କିଛି ନାହିଁ । ଏଣେ କପିଳସଂହିତା, ସ୍ୱର୍ଣ୍ଣାଦ୍ରି ମହୋଦୟ, ଏକାମ୍ର ପୁରାଣ ଓ ଏକାମ୍ର ଚନ୍ଦ୍ରିକାରେ ସ୍ପଷ୍ଟ ଉଲ୍ଲେଖ ଅଛି ଯେ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରର ନିର୍ମାତା ହେଉଛନ୍ତି ମହାରାଜ ଚନ୍ଦ୍ର (୭୬) । ଏହାକୁ ଭିତ୍ତିକରି କେହି କେହି ଐତିହାସିକ ଚନ୍ଦ୍ରର ଅର୍ଥ ଲଲାଟେନ୍ଦୁ କେଶରୀ ବୋଲି କହୁଥିବା ବେଳେ କେହି କେହି କର୍ଣ୍ଣସୁବର୍ଣ୍ଣର ରାଜା ଶଶାଙ୍କ ବୋଲି କହୁଥାନ୍ତି । ପୁଣି କେହି କେହି ଚନ୍ଦ୍ର ଅର୍ଥରେ ସୋମବଂଶୀ ରାଜା ବୋଲି ବିଚାର କରନ୍ତି । ମାତ୍ର ସୋମବଂଶୀ ବୋଲି ବିଚାର କଲେ ସମସ୍ୟାଟି ଠାରୁ ଦୂରେଇ ରହିବା ଭଲ ମନେହୁଏ । ପୁଣି ଲଲାଟେନ୍ଦୁ କେଶରୀଙ୍କୁ କେହି 'ଇନ୍ଦୁ କେଶରୀ' ବୋଲି କହନ୍ତି ନାହିଁ କି ଏପରି ତାଙ୍କ ନାମର ପ୍ରସିଦ୍ଧି ନାହିଁ । ଆଉ ଶଶାଙ୍କଙ୍କ କଥା ଚିନ୍ତା କଲେ ଦେଖାଯାଏ ଯେ, ଏହା ଏକ ଭିନ୍ନନାମ ଓ ସେ ଏଠାରେ ନିଷ୍କଣ୍ଟକ ଭାବରେ ଆନନ୍ଦରେ ଶାସନ କରିନଥିଲେ । ହର୍ଷବର୍ଦ୍ଧଙ୍କ ଭଳି

---

୭୩ । Epigraphica Indica. Vol. XXVII, pp. 33-36 (See his Bobili Charter)

୭୪ । ମାଦଳାପାଞ୍ଜି-ପୃ: ୧୦୪ (ପ୍ରାଚୀ)—"ଏଠାରେ ପାଣ୍ଡୁବଂଶ ନିର୍ଶୋଧନ ହେଲେ । ଏବେ କେଶରୀବଂଶ ପ୍ରବେଶ ହେଲେ" । (ମରୁତ୍‌କେଶରୀ, କର୍ଣ୍ଣକେଶରୀ, ନୃପକେଶରୀ, ଧ୍ରୁବକେଶରୀ, ପଦ୍ମକେଶରୀଙ୍କ ପରେ ଯଥାକ୍ରମେ **ଚଣ୍ଡକେଶରୀ** ରାଜତ୍ୱ କଲେ ।) "**ଚଣ୍ଡକେଶରୀ** ଭୋଗକଲେ ତେପନ ବର୍ଷ । ଏ ରାଜା ବନ୍ଦୁହର ନାମେ ପୋଖରୀ ଖୋଳାଇଲେ । ଭୁବନେଶ୍ୱର ଦେଉଳ ତୋଳାଇଲେ ।"

୭୫ । ମାଦଳାପାଞ୍ଜି-ପୃ: ୧୮ –

୭୬ । "ପ୍ରାସାଦଞ୍ଚୋହ୍ୟସାଧୋଽସ୍ୟଂ କଲୌ ଚନ୍ଦ୍ର କରିଷ୍ୟତି ।"
(କପିଳସଂହିତାରେ ଏହି ଶ୍ଳୋକଟି ଅଛି ।)

ଶକ୍ତିଶାଳୀ ରାଜା ତାଙ୍କ ପରେ ଶାନ୍ତ ଭାବରେ ଲାଗିରହିଥିଲେ । ଏପରି ଅବସ୍ଥାରେ ମାନସିକ ଶାନ୍ତି କାହୁଁ ଆସିବ ଯେ, ସେ ଆଗନ୍ତୁକ ଭାବରେ ହଠାତ୍ ଆସି ଏଠାର ଲୋକମାନଙ୍କ ସ୍ୱାସ୍ଥ୍ୟ ପାଇଁ ଏପରି ଏକ ଉତ୍ତୁଙ୍ଗ ମନ୍ଦିର (ଲିଙ୍ଗରାଜମନ୍ଦିର) ଓ ଏତେ ବଡ଼ ପୁଷ୍କରିଣୀ (ବିନ୍ଦୁସାଗର) ଖୋଳାଇ ପାରିବେ ? ଅତଏବ, ସୋମବଂଶୀ ରାଜା ଯଯାତି କେଶରୀଙ୍କ ଦ୍ୱାରା କାର୍ଯ୍ୟ ଆରମ୍ଭ ହୋଇଥିଲେ ମଧ୍ୟ ଲିଙ୍ଗରାଜମନ୍ଦିର ଓ ବିନ୍ଦୁସାଗର ପୁଷ୍କରିଣୀର କାର୍ଯ୍ୟ ଚନ୍ଦ୍ର କେଶରୀଙ୍କ ସମୟରେ ହିଁ ଶେଷ ହୋଇଥିଲା (୬୭) । ସୋମବଂଶୀ ରାଜାମାନେ ଶିବଭକ୍ତ ହେଲେ ମଧ୍ୟ ବିଷ୍ଣୁଙ୍କ ପ୍ରତି ଅନାସକ୍ତ ନ ଥିଲେ । ଫଳେ ଯଯାତି ଦେବ ଜଗନ୍ନାଥଙ୍କ ପାଇଁ ୩୮ ହାତ ଉଚ୍ଚର ଏକ ମନ୍ଦିର ପୁରୀଠାରେ ନିର୍ମାଣ କରାଇଥିଲେ (୬୮) ଏବଂ ସମ୍ଭବତଃ ଚନ୍ଦ୍ରକେଶରୀ (ଚଣ୍ଡକେଶରୀ) ବିନ୍ଦୁସାଗରର ପଥର ପ୍ରାଚୀରରେ ଅନନ୍ତ ବାସୁଦେବ ମୂର୍ତ୍ତିସ୍ଥାପନ କରିଥିବେ (୬୯) । ତେଣୁ ଅନୁମାନ କରିବାକୁ ହୁଏ ଯେ, ଏହି ବାସୁଦେବମୂର୍ତ୍ତିଙ୍କର ସମୟ ହେଉଅଛି ଦଶମ-ଏକାଦଶ ଶତାବ୍ଦୀ; ଦଶମ-ଶତାବ୍ଦୀର ଶେଷ ଓ ଏକାଦଶ ଶତାବ୍ଦୀର ଆଦ୍ୟଭାଗ ।

ମାଠରଙ୍କ ପରେ କଙ୍ଗୋଦମଣ୍ଡଳର ଶୈଳୋଦ୍ଭବ ବଂଶୀୟ ରାଜାମାନେ ମଧ୍ୟ ବୈଷ୍ଣବଧର୍ମ ପ୍ରତି ବଦାନ୍ୟତା ପ୍ରଦର୍ଶନ କରିଥିଲେ। ସେମାନଙ୍କର ଶିଳାଲେଖରୁ ଜଣାଯାଏ ଯେ, ସେମାନେ ଶୈବ ଥାଇ 'ପରମମାହେଶ୍ୱର' ଉପାଧି ଗ୍ରହଣ କରିଥିଲେ । ତଥାପି ବୈଷ୍ଣବଧର୍ମ ପ୍ରତି ଆନୁଗତ୍ୟ ପ୍ରଦର୍ଶନ କରିଥିଲେ । ଏହି ବଂଶର ମାଧବରାଜ ନିଜକୁ 'ଭଗବାନ' ଚକ୍ରଧର ମାଧବଙ୍କ ସହିତ ତୁଳନା କରୁଥିବାର ଶିଳାଲେଖରୁ ଜଣାଯାଏ (୭୦) । ମାଧବରାଜ ଖ୍ରୀ: ଅ: ୬୨୦ରେ ରାଜା ଶଶାଙ୍କଙ୍କ ଅଧୀନରେ ଜଣେ ସାମନ୍ତରାଜା ଥିଲେ । ଶଶାଙ୍କଙ୍କ ଅଧୋପତନ ପରେ ସେ ପୁଣି ଶକ୍ତିଶାଳୀ ହୋଇଉଠିଲେ ଓ ନିଜକୁ ସକଳ କଳିଙ୍ଗାଧିପତି ବୋଲି ଘୋଷଣା କଲେ (୭୧) । କିନ୍ତୁ ଅଳ୍ପବର୍ଷପରେ

---

୬୭ । ଏ ପ୍ରସଙ୍ଗରେ ଆଉ ଅଧିକ ଆଲୋଚନା ଲାଗି ମୋର ଗ୍ରନ୍ଥ 'The Land of Vishnu' ଦ୍ରଷ୍ଟବ୍ୟ ।

୬୮ । ମାଦଳାପାଞ୍ଜି—ପ୍ରାଚୀନ—ପୃ: ୫-୬ ।

୬୯ । ଚନ୍ଦ୍ରକେଶରୀ ଯେପରି ଏକ ସମ୍ଭାବନା, ଲଲାଟକେଶରୀ ମଧ୍ୟ ଏକ ସମ୍ଭାବନା । ଉପଯୁକ୍ତ ପ୍ରମାଣ ନ ମିଳିଲାଯାଏଁ ଏ ସମ୍ଭାବନାମାନ ସମ୍ଭାବନାରେ ହିଁ ରହୁଛି ।

୭୦ । Khurdha plates of Madhyamaraj—I. O. Vol. I/II pp. 167-168 & pp. 163; Journal of Asiatic Society, Bengal (J. A. S. B.) Vol. LXIII, pp· 282-286 (1904) ("ଭଗବାନ୍ ମାଧବ ଶ୍ରୀ ମାଧବରାଜଃ କୁଶଳୀ")

୭୧ । J· A· S· B.-Vol· LXXII· pp· 282 (1904)· Khurdha plates·

ତାଙ୍କର ଏହି ଉପାଧି ଆଉ ନଥିଲା । ସମ୍ଭବତଃ ସେ ସପ୍ତମ ଶତାବ୍ଦୀର ପ୍ରଥମାର୍ଦ୍ଧରେ ପ୍ରାକ୍ ଗଙ୍ଗରାଜାଙ୍କ ଦ୍ୱାରା ପରାସ୍ତ ହୋଇଥିଲେ ଓ ରାଜ୍ୟର କେତେକ ଅଂଶ ହରାଇଥିଲେ (୭୨) । ଶୈଳୋଦ୍ଭବବଂଶୀଙ୍କ ଭଳି ଏହି ପ୍ରାକ୍‌ଗଙ୍ଗମାନେ ମଧ୍ୟ ଶୈବ ଥିଲେ । ଅତଏବ ଏହି ସମୟରେ ଶୈବଧର୍ମର ପ୍ରବଳ ପ୍ରଚାର ଫଳରେ ବୌଦ୍ଧଧର୍ମ କିଛିଟା ଦବି ଯାଇଥିବ । କିନ୍ତୁ ଦେଶରେ ଯେ ମୋଟେ ବିଷ୍ଣୁଭକ୍ତ ନଥିବେ ଏପରି ନୁହେଁ ।

ସପ୍ତମ ଶତାବ୍ଦୀରେ (ଖ୍ରୀ: ଅ: ୬୩୮ରେ) ଚୀନ୍ ପରିବ୍ରାଜକ ହୁଏନ୍‌ସାଂ' ଓଡ଼ିଶାକୁ ଆସିଥିଲେ । ସେତେବେଳେ ଶୈବଧର୍ମ ରାଷ୍ଟ୍ରର ମୁଖ୍ୟ ଧର୍ମ ଥିବାରୁ ପୁରୀର ପୁରୁଷୋତ୍ତମ-ବିଷ୍ଣୁକ୍ଷେତ୍ର ସେପରି ବିଶେଷ ଲୋକପ୍ରିୟ ନଥିଲା । ଏଣେ ପୁରୁଷୋତ୍ତମ ଯଦି ବୌଦ୍ଧ-ଦେବତା ହୋଇଥାନ୍ତେ, ତେବେ ବୌଦ୍ଧଧର୍ମୀ ହୁଏନ୍‌ସାଂଙ୍କ ଦୃଷ୍ଟି ବିଶେଷଭାବରେ ପୁରୁଷୋତ୍ତମଙ୍କ ଉପରେ ପଡ଼ିଥାନ୍ତା ଓ ନିଜର ବିବରଣୀରେ ସେ ତାଙ୍କୁ ଏକ ପ୍ରମୁଖ ସ୍ଥାନ ଦେଇଥାନ୍ତେ । ମାତ୍ର ପୁରୁଷୋତ୍ତମ ତ ବିଷ୍ଣୁଙ୍କ ଭିନ୍ନ ଅନ୍ୟକିଛି ନୁହନ୍ତି । ତେଣୁ ହୁଏନ୍‌ସାଂ, ଏ କ୍ଷେତ୍ର ଉପରେ ଗୁରୁତ୍ୱ ଦେଇନଥିଲେ । ତଥାପି ସେ ତାଙ୍କ ବିବରଣୀରେ ଚେଲିତାଲୋ [Che-li-ta-lo] ନଗର ଉଚ୍ଛ Wucha ଦେଶର ଦକ୍ଷିଣ-ପୂର୍ବରେ ସମୁଦ୍ରକୂଳରେ ଅବସ୍ଥିତ ବୋଲି ଲେଖିଛନ୍ତି । ଏହାକୁ ସମାଲୋଚକମାନେ ବିଚାର କରନ୍ତି ଯେ, ଏହି 'ଚେଲିତାଲୋ' ନଗର ହେଉଛି ଶ୍ରୀକ୍ଷେତ୍ର ଓ ଉଚ୍ଛର ଅର୍ଥ ସେମାନେ ଭାବନ୍ତି 'ଉଡ୍ର' ବା ଉଡ୍ରଦେଶ ଉତ୍କଳ (୭୩) । ଚୀନ୍ ପରିବ୍ରାଜକ ଇସିଂ I-tsingଙ୍କ ବିବରଣୀରେ ମଧ୍ୟ (ଶ୍ରୀକ୍ଷେତ୍ର) 'ପ୍ରୋମ୍' Prome ନଗର କଥା କୁହାଯାଇଛି (୭୪) । ଏହି ପ୍ରୋମ୍‌ର ଅର୍ଥ ହେଉଛି ପୁରୁଷୋତ୍ତମ । ସମାଲୋଚକମାନେ

୭୨ । C. J.—K. C. Mishra pp. 11.

୭୩ । K. S. Behera-Bharati' U. U. Journal, 1973 December, Vol. VII. No.13, pp. 22. T. Waters, on Yuan Chwangs Travels in India. Vol. II. 193-94.
କନିଂହାମ୍ 'ଚେଲିତାଲୋ' କୁ' ଚରିତ୍ରପୁର ବୋଲି ଅର୍ଥ କରି ଏହାକୁ ପୁରୀ ବୋଲି ଭାବନ୍ତି ।
See also, N. K. Sahu-History of Orissa, Utkal University, 1964, pp. 142.

୭୪ । I. Tsing-A record of Buddhist practices (Takakusued) Oxford. 1896, pp. 9-10
( ଚେଲିତାଲୋ = ଶ୍ରୀକ୍ଷେତ୍ର ଓ ପ୍ରୋମ୍ = ପୁରୁଷୋତ୍ତମ—ଏହି ଦୁଇଟି ଚୀନା

ସ୍ୱତନ୍ତ୍ର, କଳିଙ୍ଗର ଲୋକେ ବ୍ରହ୍ମଦେଶକୁ ଯାଇ ବସତି ସ୍ଥାପନ କଲାପରେ ସେଠାରେ ପ୍ରୋମ୍ ବୋଲି ଶ୍ରୀପୁରୁଷୋତ୍ତମକ୍ଷେତ୍ର ନାମରେ ଏକ ନଗରର ନାମକରଣ କରିଥିଲେ । ଏଥିରୁ ଜଣାଯାଏ, ଇସିଂଙ୍କ ପୂର୍ବରୁ (ଖ୍ରୀ: ଅ: ୬୭୧-୬୯୫) ଓଡ଼ିଶାରେ ପୁରୁଷୋତ୍ତମକ୍ଷେତ୍ର ପ୍ରତିଷ୍ଠିତ ଥିଲା (୭୫) ଓ ଏଠାରେ ବିଷ୍ଣୁଦେବତା ପୁରୁଷୋତ୍ତମ ପୂଜା ପାଉଥିଲେ । ମାତ୍ର ପରେ (ରକ୍ତବାହୁ) ବୈଦେଶିକ ଆକ୍ରମଣ ହେତୁ ଶତାଧିକ ବର୍ଷପାଇଁ ପୁରୁଷୋତ୍ତମକ୍ଷେତ୍ରରୁ ଠାକୁରମାନେ ଅନ୍ତର୍ହିତ ହୋଇ ସୋନ୍‌ପୁରରେ ମାଟିତଳେ ପୋତାହୋଇ ରହିଲେ (୭୬) । ବୋଧହୁଏ ଭୌମକରମାନଙ୍କ ସମୟରେ ଠାକୁରେ ମନ୍ଦିରରେ ନଥିବାରୁ ପୁରୁଷୋତ୍ତମଙ୍କ ବିଷୟରେ ଭୌମକର ଶିଳାଲେଖରେ ସେପରି କିଛି ଉଲ୍ଲେଖ ମିଳେ ନାହିଁ । ତଥାପି ଦାନପତ୍ରମାନଙ୍କରେ ଦେଖାଯାଏ ଯେ, ବ୍ରାହ୍ମଣମାନଙ୍କର ନାମ ମଧ୍ୟରେ ପୁରୁଷୋତ୍ତମ, ବଳଭଦ୍ର ନାମଧାରୀ ବ୍ୟକ୍ତିମାନେ ଥିଲେ (୭୭) । ଏଥିରୁ ଓଡ଼ିଶାରେ ସେ ଯୁଗରେ ପୁରୁଷୋତ୍ତମଙ୍କର ଲୋକପ୍ରିୟତା ବେଶ୍ ଅନୁଭୂତ ହୁଏ । ଅତଏବ, ଏଥିରେ କିଛି ସନ୍ଦେହ ନାହିଁ ଯେ, ପୁରୁଷୋତ୍ତମକ୍ଷେତ୍ରର ସ୍ଥିତି ଭୌମକର ଯୁଗରେ ଥିଲା ଓ ବୈଷ୍ଣବମାନଙ୍କର "କ୍ଷେତ୍ରପ୍ରତି ଧ୍ୟାନ ଅତୁଟ ରହିଥିଲା । ଭୌମକରରାଜା ତୃତୀୟ ଶୁଭାକରଦେବଙ୍କ ଦ୍ୱାରା ଉତ୍କୀର୍ଣ୍ଣ ଏକ ଅଭିଲେଖରେ 'ପୁରୁଷୋତ୍ତମ' ଶବ୍ଦ ରହିଅଛି(୭୮) । ଏହା ମଧ୍ୟ ଓଡ଼ିଶାରେ ପୁରୁଷୋତ୍ତମ-ବିଷ୍ଣୁ-ଉପାସନାର ଏକ ସଙ୍କେତ ।

---

ଶବ୍ଦର ଅର୍ଥ ଏପରି ଭାବରେ ସମାଲୋଚକମାନେ ଗ୍ରହଣ କରିଥିବାରୁ ଏଠାରେ ସେପରି ଅର୍ଥରେ ଆମେ ତାଙ୍କ ବକ୍ତବ୍ୟକୁ ନେଇଛୁ । ମାତ୍ର, ଏ ସ୍ୱଚନା ସମାଲୋଚକ ମାନଙ୍କର ହୁଏତ ଠିକ୍ ନ ହୋଇପାରେ । 'ଭାଷାତାତ୍ତ୍ୱିକ ଉଚ୍ଚାରଣ ଦୃଷ୍ଟିରୁ 'ଚେଲିତାଲୋ' ଶ୍ରୀକ୍ଷେତ୍ର ହେବ ନାହିଁ କି ପ୍ରୋମ୍' ପୁରୁଷୋତ୍ତମ ହେବ ନାହିଁ ।)

୭୫ । K. S. Behera—Bharati, U. U. December 1973-pp. 22.

୭୬ । ଦ୍ରଷ୍ଟବ୍ୟ—ମାଦଳାପାଞ୍ଜି, ମୋର ଗ୍ରନ୍ଥ The Land of Visnu ଓ ମୋର ଅନ୍ୟଗ୍ରନ୍ଥ Jagannath in the History and Religious Traditious of Orissa.

୭୭ । Neulpur plate of Subhakara 1. (Karaking) E. I. Vol. XV,PP. 1-8. See also—B. Mishra—Orissa under the Bhauma kings.

୭୮ । Hindol plate of Subhakar iii—Vide-K. C. Panigrahi Bhauma karas and the Somavamshis of Orissa-pp.27,

ଭୌମକର ରାଜାମାନେ ବୌଦ୍ଧ ଥିଲେ ସତ; ମାତ୍ର ଶିବ, ଶକ୍ତି ଓ ବିଷ୍ଣୁଙ୍କ ପ୍ରତି ଏମାନେ ପରାଙ୍ମୁଖ ନଥିଲେ । ଏହି ରାଜାମାନଙ୍କ ସମୟରେ ମହାନଦୀକୂଳର ଗନ୍ଧରାଡ଼ି-ଠାରେ ନୀଳମାଧବ-ବିଷ୍ଣୁ ଓ ସିଦ୍ଧେଶ୍ୱର-ଶିବଙ୍କର ଯୁଗ୍ମ ମନ୍ଦିର ନିର୍ମିତ ହୋଇଥିଲା । ପାଶ୍ଚାତ୍ୟ ଗବେଷକ ଚାର୍ଲସ୍ ଫାବ୍ରି ଓ ଷ୍ଟିଟେନ୍‌କ୍ରୋନ୍ ଏ କଥାକୁ ନିଜ ନିଜର ମୁଖବନ୍ଧରେ ସ୍ୱୀକାର କରିଛନ୍ତି (୭୯) । ଅର୍ଥାତ୍ ଭୌମକରଙ୍କ ସମୟବେଳକୁ (୭ମ ଶତକ ଶେଷ—ଅଷ୍ଟମଶତକ) ନୀଳମାଧବ ଦେବ ଓ ତତ୍ ସମ୍ବନ୍ଧୀୟ ଉପାଖ୍ୟାନ ପ୍ରସିଦ୍ଧ ହୋଇ-ଯାଇଥିଲା । ସ୍କନ୍ଦପୁରାଣର ଉତ୍କଳଖଣ୍ଡ ଏହି ଅଷ୍ଟମ ଶତାବ୍ଦୀରେ ରଚିତ ହୋଇ ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ବିଷୟ ପ୍ରଚାର କରିଥିଲା (୮୦) । ଫଳରେ ନବମ ଶତାବ୍ଦୀ ବେଳକୁ ଆର୍ଯ୍ୟଧର୍ମ ରକ୍ଷକ ଶିବଭକ୍ତ ଶଙ୍କରାଚାର୍ଯ୍ୟ ପୁରୁଷୋତ୍ତମକ୍ଷେତ୍ରର ମହିମା ଶୁଣି ବୈଷ୍ଣବଧର୍ମ ପ୍ରତି ଆକୃଷ୍ଟ ହୋଇ ସୁଦୂର କେରଳରୁ ଏହି କ୍ଷେତ୍ରକୁ ଧାଇଁଆସିଥିଲେ । ମାତ୍ର ବିଷ୍ଣୁ ପୁରୁଷୋତ୍ତମଙ୍କୁ ଶିବଭାବରେ ପରିଣତ କରିପାରି ନ ଥିଲେ । ବରଂ ନିଜେ ବିଷ୍ଣୁଭକ୍ତ ହୋଇ ଯଜାତିକେଶରୀଙ୍କ ସହାୟତାରେ ସୋନପୁରରୁ ମହାପ୍ରଭୁଙ୍କ ମାଟିତଳୁ ଉଦ୍ଧାର କରି ଆଣିଁ ପୁରୁଷୋତ୍ତମକ୍ଷେତ୍ରରେ ଠାକୁରମାନଙ୍କ ପାଇଁ ଭୋଗ ଖଞ୍ଜା କଲେ (୮୧) । ଯଜାତିଙ୍କ ପୂର୍ବରୁ ଇନ୍ଦ୍ରଦ୍ୟୁମ୍ନ ଉପାଖ୍ୟାନ ଲୋକପ୍ରିୟ ହୋଇ ପ୍ରଚଳିତ ଥିବାରୁ ଯଜାତି କେଶରୀଙ୍କୁ ତାଙ୍କ ନୂତନ ପ୍ରତିଷ୍ଠାଲାଗି ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ଉପାଧି ମିଳିଥିଲା ।

ଏହା ବାସ୍ତବିକ୍ ଆଶ୍ଚର୍ଯ୍ୟର ବିଷୟ ଯେ ସପ୍ତମ ଶତାବ୍ଦୀ ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ର ସମ୍ବନ୍ଧରେ ପୌରାଣିକ ଗ୍ରନ୍ଥ ପ୍ରମାଣ ରହିଥିଲେ ମଧ୍ୟ ଶିଳାଲେଖ ପ୍ରମାଣ ଦୃଷ୍ଟିରୁ ସେପରି କିଛି ପ୍ରାଚୀନ ପ୍ରମାଣ ମିଳୁନାହିଁ । ଏ କଥା ଅଧ୍ୟାପକ ଡଃ କାହ୍ନୁ ଚରଣ ମିଶ୍ର ତାଙ୍କ ଗ୍ରନ୍ଥରେ ସ୍ପଷ୍ଟ ଉଲ୍ଲେଖ କରି ନିଜର ଅଭିମତ ଦେଇଛନ୍ତି ଯେ, ନୀଳମାଧବ-

---

ref. 34. and See also;-B. Mishra, Orissa under the Bhauma kings-pp. 14-17.

୭୯ । H. V. Stietencron—C. J. R. T. O. pp.15; Note-47.

Charlles Eabri—History of the art of Orissa 1974. pp. 137-139. ଅନ୍ୟ କେତେକଙ୍କ ମତରେ ଏହା ଭଞ୍ଜବଂଶୀଙ୍କ ଦ୍ୱାରା ନିର୍ମିତ —Side lights pp.342.

୮୦ । ମୋର ଗ୍ରନ୍ଥ The Land of Vishnuର ଶେଷ ଅଧ୍ୟାୟ "Date of Purusottam Mahatmyan, Skanda Purana ଦ୍ରଷ୍ଟବ୍ୟ ।

୮୧ । ମାଦଳାପାଞ୍ଜି ପ୍ରାଚୀ ପୃ: ୫. —C. J. -pp. 152. 157;

ପୁରୁଷୋତ୍ତମ ଭୌମକରମାନଙ୍କ ଦ୍ୱାରା ପୂଜିତ ହେଉଥିଲେ (୮୨) । ସେ ମନେକରନ୍ତି, ଶୈଳୋଦ୍‌ଭବଙ୍କ ପରେ କଙ୍ଗୋଦ ଓ ତୋଷାଳୀରେ ଭୌମକରମାନେ ରାଜତ୍ୱ କଲା ସମୟରେ ପୁରୁଷୋତ୍ତମ, ବଳଭଦ୍ର ଓ ପ୍ରଜ୍ଞେଶ୍ୱରୀ ରାଷ୍ଟ୍ରଦେବତା ଭାବରେ ଗୃହୀତ ହୋଇଥିବେ (୮୩) । ପରେ ଏହି ପ୍ରଜ୍ଞେଶ୍ୱରୀ ସୁଭଦ୍ରା ହୋଇଯିବେ । ମାତ୍ର ଏପରି ଖାଲି ମନେ ମନେ ଭାବିଲେ ଚଳିବ ନାହିଁ । ସେଥିପାଇଁ ଉପଯୁକ୍ତ ପ୍ରମାଣ ଦେବା ଆବଶ୍ୟକ । କିନ୍ତୁ ଡଃ ମିଶ୍ର ଏଥିପାଇଁ କୌଣସି ବଳିଷ୍ଠ ପ୍ରମାଣ ଦେଇନାହାନ୍ତି । ଖାଲି ଭାବିଛନ୍ତି ମାତ୍ର । ଏଣୁ ଗବେଷଣାରେ ତାଙ୍କର ଏହା ନିର୍ଦ୍ଧାରିତ ତଥ୍ୟ ଭାବରେ ଗ୍ରହଣ କରାଯିବ କିପରି ?

ଯଦି ପୁରୁଷୋତ୍ତମ, ବଳଭଦ୍ର, ସୁଭଦ୍ରା ଭୌମକରମାନଙ୍କ ସମୟରେ ରାଷ୍ଟ୍ରଦେବତା ବା ରାଷ୍ଟ୍ରର ରକ୍ଷକ ଭାବରେ ଗୃହୀତ ହୋଇଥାନ୍ତେ, ତେବେ ଏହି ଦେବତାଙ୍କ ବିଷୟରେ ନାନା ସୂତ୍ର ସେତେବେଳର ଶିଳାଲେଖରୁ ମିଳନ୍ତା । ମାତ୍ର ସେପରି କିଛି ମିଳୁନାହିଁ । ଭୌମରାଜାମାନଙ୍କ ଉପାଧି କେତେବେଳେ 'ପରମ ସୌଗତ', 'ପରମ ତଥାଗତ', ପୁଣି କେତେବେଳେ ପରମ ମାହେଶ୍ୱର, ଆଉ କେତେବେଳେ ପରମ ବୈଷ୍ଣବ ବୋଲି ମିଳୁଅଛି (୮୪) । ଏଥିରୁ ଜଣାଯାଏ ଯେ, ସେହି ସମୟରେ ଓଡ଼ିଶାରେ ଏ ସମସ୍ତ ଧର୍ମ ପ୍ରତିଷ୍ଠିତ ରହିଥିଲା । କିନ୍ତୁ ରାଷ୍ଟ୍ରଧର୍ମ ଭାବରେ ବୈଷ୍ଣବ ଧର୍ମକୁ ଗ୍ରହଣ କରିବା ଏଥିକରେ ସମୀଚୀନ ହେବ ନାହିଁ । ଅବଶ୍ୟ ଏହି ରାଜବଂଶର ଦ୍ୱିତୀୟ ଶୁଭାକରଦେବଙ୍କ ମାତା ତ୍ରିଭୁବନ ମହାଦେବୀଙ୍କ ପରେ ଆଉ ଦୁଇଜଣ ରାଣୀ ରାଜତ୍ୱ କରିଥିଲେ । ସେମାନେ ହେଲେ ଧର୍ମା ମହାଦେବୀ ଓ ଦଣ୍ଡୀ ମହାଦେବୀ । ଡଃ କାହ୍ନୁଚରଣ ମିଶ୍ରଙ୍କ ମତରେ ଏ ଦୁହେଁ ପରମ ବୈଷ୍ଣବୀ ଉପାଧି ଗ୍ରହଣ କରିଥିଲେ (୮୫) । ଡଃ ଷ୍ଟିଟେନ୍‌କୋନ୍‌ଙ୍କ ମତରେ

---

ଦ୍ରଷ୍ଟବ୍ୟ: ଶ୍ରୀମନ୍ଦିର ସମାଚାର ଶଙ୍କର ରଥଯାତ୍ରାବିଶେଷାଙ୍କ । P. Mukherji Visnavism in Orissa-pp.20-21. side·lights pp 341·

୮୨ । C· J. PP. 21· "It, is quite probable that the god Nilamadhava alias Purusottam, was popularly worshipped by the Buddhist Bhaumakaras and it is they···"

୮୩ । C. J. pp. 15.

୮୪ । C. J· pp.22.—

୮୫ । C J pp. 22—
(ଡଃ ମିଶ୍ର କେଉଁଠି ଏହା ପାଇଲେ ? ସତ୍ୟ ହୋଇଥିଲେ ଭଲ; ମାତ୍ର ଏ ତଥ୍ୟ ଅମୂଳକ ହୋଇଥିଲେ ପରବର୍ତ୍ତୀ ଗବେଷକମାନଙ୍କୁ ବିଭ୍ରାନ୍ତ କରିପାରେ ।)

ଭୌମକର ବଂଶର ଦୁଇଜଣ ବୈଷ୍ଣବୀ-ରାଣୀ ହୋଇଛନ୍ତି, ପ୍ରଥମ ଶାନ୍ତିକରଦେବଙ୍କ ସ୍ତ୍ରୀ ତ୍ରିଭୁବନମହାଦେବୀ ଏବଂ ଚତୁର୍ଥ ଶୁଭକର ଦେବଙ୍କ ପତ୍ନୀ ପୃଥିବୀମହାଦେବୀ, ଯାହାଙ୍କୁ ଦ୍ୱିତୀୟ ତ୍ରିଭୁବନମହାଦେବୀ ବୋଲି ମଧ୍ୟ କୁହାଯାଏ । ଦଣ୍ଡୀମହାଦେବୀ ପରମବୈଷ୍ଣବୀ ନୁହନ୍ତି; ସେ ହେଉଛନ୍ତି ପରମ ମାହେଶ୍ୱରୀ । ୱେଣ୍ଡି ଡଃ ଷ୍ଟିଟେନ୍‌କ୍ରୋନ୍ କହନ୍ତି, ଡଃ କାହ୍ନୁଚରଣ ମିଶ୍ରଙ୍କର ଏ ବାବଦରେ ତଥ୍ୟ ଭୁଲ ଅଟେ (୮୬) ।

ସେ ଯାହାହେଉ, ଶିଳାଲେଖର ଆଲୋଚନାରୁ ଜଣାଯାଏ ଯେ, ଭୌମକରଙ୍କ ରାଜତ୍ୱ-କାଳରେ କଙ୍ଗୋଦ ଓ ତୋଷଳ ଅଞ୍ଚଳରେ ଏକ ସର୍ବଧର୍ମ-ସମନ୍ୱୟ ହୋଇଥିଲା । ଏ ବଂଶର ରାଜା କ୍ଷେମକର ଦେବଙ୍କ ସମୟରେ ହୀନଯାନ ବୌଦ୍ଧଧର୍ମ ଅଧିକ ଲୋକପ୍ରିୟ ଥିଲା । ପରେ ଅବଶ୍ୟ ମହାଯାନ ଗୋଷ୍ଠୀ ବଳବତ୍ତର ହେଲେ । ପ୍ରଥମ ଶୁଭକରଦେବଙ୍କର ପୂର୍ବବର୍ତ୍ତୀ ରାଜାମାନେ ବୌଦ୍ଧ ଥିଲେ । ମାତ୍ର ଶୁଭକରଙ୍କ ପରବର୍ତ୍ତୀ ରାଜାମାନେ ପ୍ରାୟ ମୁଖ୍ୟତଃ ଶିବଭକ୍ତ ହେଲେ । ଏମାନଙ୍କ ମଧ୍ୟରେ ପୁଣି ତ୍ରିଭୁବନମହାଦେବୀ ବିଷ୍ଣୁଭକ୍ତ ଥିଲେ ଓ ପରମବୈଷ୍ଣବୀ ଉପାଧି ଗ୍ରହଣ କରିଥିଲେ (୮୭) । ଏମାନଙ୍କ ସମୟରେ ବୈଦିକଧର୍ମ ଦେଶରେ ପ୍ରଚଳିତ ଥିଲା (୮୮) । ବ୍ରାହ୍ମଣମାନେ ଆନନ୍ଦରେ ବସବାସ

---

୮୬ । C. J. R. T. O. pp 14 (Stietencron) ସେ କହନ୍ତି—

"The information that Dandi Mahadevi was also a divotee of Visnu, repeated by many scholars who all copy from each other, last instance is K. C. Mishra; 1971 pp.22,"is wrong."

ଦ୍ରଷ୍ଟବ୍ୟ—କୁମାରଙ୍କ ଅଭିଲେଖ (Plate)ରୁ ଜଣାଯାଏ, ଦଣ୍ଡୀ ମହାଦେବୀଙ୍କର ଉପାଧି ଥିଲା— ପରମମାହେଶ୍ୱରୀ, ପରମଭଟ୍ଟାରିକା, ମହାରାଜାଧିରାଜ, ପରମେଶ୍ୱରୀ··· । ବିନାୟକ ମିଶ୍ର—Orissa under the Bhauma Kin s—Cal· 1934-pp 61

୮୭ । ତ୍ରିଭୁବନ ମହାଦେବୀଙ୍କର ଢେଙ୍କାନାଳ ଅଭିଲେଖ (Plate). B· Mishra Orissa under Bhauma Kings —PP. 26,

"ଲକ୍ଷ୍ମୀରିବା କ୍ଷତ୍ରୈତସ୍ଥିତିଃ । ପରମବୈଷ୍ଣବୀ ମାତାପିତୃପାଦାନୁଧ୍ୟାତା ପରମଭଟ୍ଟାରିକା ମହାରାଜା ପରମେଶ୍ୱରୀ ଶ୍ରୀ ତ୍ରିଭୁବନମହାଦେବୀ କୁଶଳିନୀ···"

ପୁଣି ଦେଖନ୍ତୁ—B. Mishra. PP.24.

୮୮ । B. Mishra. P.93.

କରୁଥିଲେ । ସେମାନେ ଶିବ ଓ ବିଷ୍ଣୁଙ୍କର ଭକ୍ତ ଥିଲେ । ଅନେକଙ୍କର ନାମ ଶିବଙ୍କର ଓ ବିଷ୍ଣୁଙ୍କର ନାମରେ ନାମିତ ହୋଇଥିଲା । ପ୍ରଥମ ଶୁଭାକରଙ୍କ ସମୟରେ ବହୁ ଶହ ବ୍ରାହ୍ମଣ ଓଡ଼ିଶାକୁ ଆସିଥିଲେ ଓ ରାଜା ଶୁଭାକର ସେମାନଙ୍କୁ ଘରବାଡ଼ି ଓ ଗ୍ରାମ ଦାନ କରିଥିଲେ । ନେଉଲପୁର ଦାନପତ୍ରରୁ ଜଣାଯାଏ, ଏହି ବ୍ରାହ୍ମଣମାନଙ୍କ ମଧ୍ୟରୁ ଅନେକଙ୍କର ନାମ ବିଷ୍ଣୁଙ୍କ ନାମରେ ନାମିତ ଥିଲା । ଏହି ନାମଗୁଡ଼ିକ ମଧ୍ୟରେ ଭଟ୍ଟ ପୁରୁଷୋତ୍ତମ, ପୁରୁଷୋତ୍ତମସ୍ୱାମୀ, ବଳଭଦ୍ରସ୍ୱାମୀ, ଅନେକ ଥିଲେ (୮୯) । ପୁଣି ଶିବସ୍ୱାମୀ ଓ ମହାଦେବସ୍ୱାମୀ ମଧ୍ୟ ଥିଲେ । ଏଥିରୁ ଜଣାଯାଏ, ସେକାଳରେ ବ୍ରାହ୍ମଣମାନେ ଶିବ ଓ ବିଷ୍ଣୁ ଉଭୟଙ୍କୁ ଭକ୍ତି କରୁଥିଲେ । ଏ ଉଭୟଧର୍ମର ପ୍ରଚାର ପାଇଁ ରାଜ୍ୟରେ ବୈଷ୍ଣବାଚାର୍ଯ୍ୟ ଓ ଶୈବାଚାର୍ଯ୍ୟମାନେ ମଧ୍ୟ ଥିଲେ (୯୦) ।

ଓଡ଼ିଶାର ଶିଳାଲେଖମାନଙ୍କରୁ ଜଣାଯାଏ ଯେ ଏହି ଦୁଇଧର୍ମର ଆଚାର୍ଯ୍ୟମାନେ ନିଜ ନିଜର ଧର୍ମକୁ ଲୋକପ୍ରିୟ କରିବାକୁ ଆପ୍ରାଣ ଉଦ୍ୟମକରି ପ୍ରଚାର ଚଳାଇଥିଲେ । ପ୍ରାଚୀନଗଙ୍ଗ, ଶୈଳୋଦ୍ଭବ, ଭୌମକର ଓ ସୋମବଂଶୀମାନଙ୍କ ସମୟ ପର୍ଯ୍ୟନ୍ତ ଏହି ଦୁଇଧର୍ମ ମଧ୍ୟରେ ପ୍ରବଳ ପ୍ରତିଦ୍ୱନ୍ଦ୍ୱିତା ଚାଲିଥିଲା । ପତଙ୍ଗଶୈବାଚାର୍ଯ୍ୟ, ପ୍ରଥମାଚାର୍ଯ୍ୟ, ଗଗନଶୈବାଚାର୍ଯ୍ୟ ପ୍ରଭୃତିଙ୍କ ପ୍ରଗାଢ଼ ଉଦ୍ୟମ ଫଳରେ ପ୍ରାଚୀନଗଙ୍ଗ ଓ ସୋମବଂଶୀଙ୍କ ସମୟରେ ଶୈବଧର୍ମ ବୈଷ୍ଣବଧର୍ମଠାରୁ ଅଧିକ ଲୋକପ୍ରିୟ ହୋଇଥିଲା (୯୧) । ଭୌମକରଙ୍କ ସମୟରେ ମଧ୍ୟ ଅନୁରୂପ ଅବସ୍ଥା ସୃଷ୍ଟି ହୋଇଥିଲା । ଏ ବଂଶର ଅଧିକାଂଶ ରାଜା ଥିଲେ ପରମମାହେଶ୍ୱର ଓ ଶିବଭକ୍ତ । ତଥାପି ସମାଜରେ ଅନେକ ବିଷ୍ଣୁଭକ୍ତଥିଲେ ଓ ନିଜର ପୁତ୍ରମାନଙ୍କର ନାମ ବିଷ୍ଣୁଙ୍କ ନାମରେ ହିଁ ରଖୁଥିଲେ । ହିନ୍ଦୋଲଦାନପତ୍ରରୁ ଜଣାଯାଏ, ଦେଶରେ ମଧୁରିପୁ ଭଗବାନ ବିଷ୍ଣୁଙ୍କର ଓ ଲକ୍ଷ୍ମୀଙ୍କର ପ୍ରାଧାନ୍ୟ

---

୮୯ । B. Mishra pp 4-6 Neulpur plate of Subhakar 1.
See—
ପୁରୁଷୋତ୍ତମ ସ୍ୱାମୀ (ଭଟ୍ଟ) —Line 10, 18, 11,
ବଳଭଦ୍ର ସ୍ୱାମୀ—Line No 23,25,26.
ଶିବସ୍ୱାମୀ, ମହାଦେବସ୍ୱାମୀ—Line No, 14,
ଶମ୍ଭୁସ୍ୱାମୀ—Line No, 15. and so on.

୯୦ । B. Mishra—p. 15. Line No. 23.
"ଶୈବାଚାର୍ଯ୍ୟ ତପସ୍ୱି ନାମ୍" (ହିନ୍ଦୋଳଦାନପତ୍ର—ଶୁଭାକରଦେବ ।)

୯୧ । Inscriptions of Orissa—Vol. III Part 1. pp.36

କିଛି କମ୍ ନଥିଲା (୯୨) । ହୁଏତ ସେତେବେଳେ ଦେଶରେ ଲକ୍ଷ୍ମୀନାରାୟଣଙ୍କ ପୂଜା ମଧ୍ୟ ଚାଲିଥିବ । ତା' ନହେଲେ ପ୍ରଶସ୍ତିକାରଙ୍କ ମନରେ ବିଷ୍ଣୁଙ୍କ କୋଳରେ ବସିଥିବା ପଦ୍ମଧାରିଣୀ ଲକ୍ଷ୍ମୀଙ୍କର ପରିକଳ୍ପନା ଆସିଲା କିପରି ? ତ୍ରିଭୁବନ ମହାଦେବୀଙ୍କର ଢେଙ୍କାନାଳ ଦାନପତ୍ରରେ ଚନ୍ଦ୍ରାମଣି ଓ ପୁରୁଷୋତ୍ତମ ଶବ୍ଦର ଉଲ୍ଲେଖ ଅଛି (୯୩) । ମାତ୍ର ଏହା ପୁରୀର ପୁରୁଷୋତ୍ତମ ଠାକୁରଙ୍କ ବିଷୟସମ୍ବନ୍ଧିତ ନ ହୋଇଥିବାରୁ ଏହାର ଆଲୋଚନା ନିଷ୍ପ୍ରୟୋଜନ । କିନ୍ତୁ ଶିବକରଦେବଙ୍କର ତାଳଚେର ଶିଳାଲେଖରେ ଏ ବଂଶର ସିଂହକେଶରୀଙ୍କ ପୁତ୍ର ଗୟାଡ଼ରାଜଙ୍କ ବର୍ଣ୍ଣନା ପ୍ରସଙ୍ଗରେ ଗୟାଡ଼ରାଜଙ୍କୁ ବୈକୁଣ୍ଠ (ବିଷ୍ଣୁଙ୍କର ଏକ ରୂପ)ଙ୍କ ଭକ୍ତି ମହାମହିମା ବୋଲି ବର୍ଣ୍ଣନା କରାଯାଇଛି (୯୪) । ଶେଷରାଣୀ ଧର୍ମମହାଦେବୀଙ୍କ କୁମୁରାଙ୍ଗ ଦାନପତ୍ରରେ ବିଷ୍ଣୁଙ୍କ ସମ୍ବନ୍ଧରେ କିଛି ପ୍ରତ୍ୟକ୍ଷ ପ୍ରମାଣ ନଥିଲେ ମଧ୍ୟ ଏହି ଦାନପତ୍ରର ଲେଖକଙ୍କ ନାମ ଦାମୋଦର ବୋଲି ଉଲ୍ଲେଖ ଅଛି (୯୫) । ଏଥିରୁ ଅନ୍ତତଃ ଏତିକି ବୁଝାପଡ଼େ ଯେ ଭୌମକର ବଂଶୀ ରାଜାମାନଙ୍କର ଶାସନକାଳ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ତୋଷଳ ଓ କଙ୍ଗୋଦ ଅଞ୍ଚଳରେ ବିଷ୍ଣୁଭକ୍ତ ଥିଲେ ଓ ଅନ୍ୟକଥାରେ କହିବାକୁ ଗଲେ ଏଠାରେ ବିଷ୍ଣୁପୂଜାର ପରଂପରା ଥିଲା । ମାତ୍ର ତାହା ଶୈବଧର୍ମ ଭଳି ସେପରି ଲୋକ ପ୍ରିୟ ନ ଥିଲା । ଏଣେ ଦାନପତ୍ରରେ ପୁରୁଷୋତ୍ତମଙ୍କ ମନ୍ଦିର (ପୁରୀ ମନ୍ଦିର) ର ବର୍ଣ୍ଣନା କରିବା ପ୍ରାସଙ୍ଗିକ ନ ହୋଇଥିବାରୁ ଓ ବୈଷ୍ଣବଧର୍ମ ବିଶେଷଭାବରେ ରାଜାନୁଗତ ହୋଇନଥିବାରୁ ଭୌମକରଙ୍କ ଦାନପତ୍ରରେ ପୁରୁଷୋତ୍ତମ ମନ୍ଦିର ସେତେବେଳେ ଥିଲା ବୋଲି କିଛି ଉଲ୍ଲେଖ ମିଳେ ନାହିଁ । କିନ୍ତୁ ସେତେବେଳେ ଏହି ମନ୍ଦିର ନ ଥିଲା ବୋଲି ନିର୍ଦ୍ଦିଷ୍ଟ ଭାବରେ କୁହାଯାଇପାରିବ ନାହିଁ । ଦାନପତ୍ରରେ ପ୍ରସଙ୍ଗ ନଥାଇ ପୁରୁଷୋତ୍ତମଙ୍କ ବିଷୟ କାହିଁକି ବା ଲେଖାଥା'ନ୍ତା ? ଅତଏବ ସେପରି ପ୍ରତ୍ୟକ୍ଷ ପ୍ରମାଣ ନ ଥିଲେ ମଧ୍ୟ, ଏତିକି କୁହାଯାଇପାରେ ଯେ ରାଜ୍ୟରେ

---

୯୨ । B. Mishra pp 16, Line-30,—
"ଲକ୍ଷ୍ମୀବକ୍ଷସ୍ଥଲେବା ବସତି ମଧୁରିପୋ ର୍ଯାବଦମ୍ଭୋଜ ହସ୍ତା ।"

୯୩ । B. Mishra pp 24 (Bhauma Kings) Line 15, 16,
"କୁସୁମବାସିତପାଣିନା ଚନ୍ଦ୍ରାମଣିନେବ-ସତ୍ୟାନୁରକ୍ତ୍ୟା ସରସ୍ୱତ୍ୟା ପବିତ୍ରିତାସ୍ୟ ପଦ୍ମାପଦ୍ମେନ ପୁରୁଷୋତ୍ତମେନ...ମହାରାଜାଧିରାଜ ପରମେଶ୍ୱରେଣ ଶ୍ରୀଲଳିତହାରଦେବେନ..."

୯୪ । B. Mishra—pp 43. Line 13.
'ବୈକୁଣ୍ଠଭକ୍ତିମହିମାନୁପଚିତସ୍ତାଡ଼ଃ ।। କୁଣ୍ଠେତରସିଦ୍ଧଜିତାଖିଳ ବୈରିକଣ୍ଠଃ ।।"

୯୫ । B Mishra—pp 64 Line 43—
"ଉତ୍କୀର୍ଣ୍ଣଂ ଦାମୋଦରେଣ ।"

ସେତେବେଳେ ପୁରୁଷୋତ୍ତମ ଅଥବା ବିଷ୍ଣୁଙ୍କ ଉପାସନା ଚାଲିଥିଲା । ଓଡ଼ିଶାରେ ବୈଷ୍ଣବ ଧର୍ମର ଏପରି ଦୁରବସ୍ଥା ସମୟରେ ବୈଷ୍ଣବଧର୍ମକୁ ପୁଣି ଅଧିକ ଲୋକପ୍ରିୟ କରିବାପାଇଁ ବୈଷ୍ଣବ ଆଚାର୍ଯ୍ୟମାନେ ନିଶ୍ଚୟ ପ୍ରଚେଷ୍ଟା କରିଥିବେ । ଫଳରେ ସେହି ସମୟରେ ସ୍କନ୍ଦ ପୁରାଣ ଉତ୍କଳଖଣ୍ଡ ମାଧ୍ୟମରେ ପୁରୁଷୋତ୍ତମ ପୂଜାକୁ କ୍ରମଶଃ ଲୋକପ୍ରିୟ କରି ଭାରତରେ ବିଖ୍ୟାତ କରାଯାଇପାରିଥିଲା । ଏଥିରେ ପଞ୍ଚମହାଦେବଙ୍କ ଠାରୁ ପୁରୁଷୋତ୍ତମ ବିଷ୍ଣୁଙ୍କର ମହତ୍ତ୍ୱ ଅଧିକ ବୋଲି ଦେଖାଇଦିଆଗଲା । ଫଳରେ ଯଯାତିକେଶରୀ ଓ ଶଙ୍କରାଚାର୍ଯ୍ୟ ଶୈବ ହେଲେ ମଧ୍ୟ ଏ କ୍ଷେତ୍ର ପ୍ରତି ଅନୁରକ୍ତ ହୋଇଥିଲେ ।

ସ୍କନ୍ଦପୁରାଣ ଉତ୍କଳଖଣ୍ଡ ବୈଷ୍ଣବଧର୍ମକୁ ପୁଣି ଲୋକପ୍ରିୟଭାବରେ ଗଢ଼ିତୋଳିବା ପରେ ଶୈବଧର୍ମ ଓ ବୈଷ୍ଣବଧର୍ମ ମଧ୍ୟରେ ଏକ ସମନ୍ୱୟ ପ୍ରତିଷ୍ଠା କରାଗଲା । ଫଳରେ ରାଜ୍ୟରେ ହରିହର ପୂଜା ପ୍ରତିଷ୍ଠିତ ହୋଇ ଏହି ଉଭୟ ଧର୍ମ ମଧ୍ୟରେ ଥିବା ବିବାଦକୁ ଦୂର କଲା । ସେତେବେଳେ ଭୌମକରମାନେ କଙ୍ଗୋଦ ଓ ତୋଷଳ ଅଞ୍ଚଳରେ ରାଜତ୍ୱ କରୁଥିଲେ, ସେତେବେଳେ ପ୍ରାୟ ପାଣ୍ଡୁବଂଶୀମାନେ ପଶ୍ଚିମ ଓଡ଼ିଶାରେ ଶାସନ କରୁଥିଲେ । ସେହି ସମୟରେ ନିର୍ମିତ ସୋନପୁରର ସୁବର୍ଣ୍ଣମେରୁ ଓ ସୋମେଶ୍ୱର ମନ୍ଦିର କାନ୍ଥରେ ବିଷ୍ଣୁ ଅନନ୍ତଶାୟୀଙ୍କର ମୂର୍ତ୍ତି, ଦେଖିବାକୁ ମିଳେ (୯୬) । ଏଥିରୁ ଜଣାଯାଏ, ଏ ଦୁଇଟି ବିଷ୍ଣୁ ମନ୍ଦିର ଥିଲା । ମାତ୍ର ଏବେ ଯାହା ଦେଖାଯାଉଛି, ଏହା ହେଉଛି ଶିବମନ୍ଦିର; କାରଣ, ବିଷ୍ଣୁ ମନ୍ଦିରକୁ ଏଠାରେ ଶିବମନ୍ଦିର ଭାବରେ ପରିଣତ କରାଯାଇଛି; ତଥାପି କାନ୍ଥରେ ପୂର୍ବରୁ ଥିବା ଅନନ୍ତଶାୟୀ ବିଷ୍ଣୁଙ୍କୁ ଉଠାଇ ଦିଆନଯାଇ ପୂର୍ବଭଳି ରଖାଯାଇଛି । ଏଥିରୁ ଶୈବଧର୍ମ ଓ ବୈଷ୍ଣବଧର୍ମ ମଧ୍ୟରେ ଏକ ମିଳାମିଶା ହୋଇଥିବାର ଅନୁମାନ କରାଯାଏ । ମହାନଦୀକୂଳରେ ଫୁଲବାଣୀ ଜିଲ୍ଲାର ଗନ୍ଧରାଡ଼ିଠାରେ ଏକ ପରିସରରେ ନିର୍ମିତ ନୀଳମାଧବ (ବିଷ୍ଣୁ) ଓ ସିଦ୍ଧେଶ୍ୱର (ଶିବ)ଙ୍କ ମନ୍ଦିର ମଧ୍ୟ ଏହି ହରିହର ପୂଜାର ଏକ ପ୍ରାଚୀନ ଆଖ୍ୟାପ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଶିଳ୍ପକଳାର ଭଞ୍ଜମାନଙ୍କ ରାଜତ୍ୱ ସମୟରେ ମଧ୍ୟ ଅନୁରୂପ ବ୍ୟବସ୍ଥା ଥିବାର ଦେଖିବାକୁ ମିଳିଥାଏ । ସେହି ସମୟର ଏକ ଶିଳାଲେଖରୁ ଜଣାଯାଏ ଯେ, ରାଜା ଦେଇଥିବା ଗୋଟିଏ ଜମିକୁ ଶିବ (ପ୍ରଦ୍ୟୁମ୍ନେଶ୍ୱର) ଓ ବିଷ୍ଣୁ (ଲୋକମାଧବ)ଙ୍କ ମଧ୍ୟରେ ବଣ୍ଟାଯାଇଥିଲା (୯୭) । କାଳକ୍ରମେ ଯେତେବେଳେ ସୋମବଂଶୀମାନେ ଓଡ଼ିଶାର ଉପକୂଳ ଅଞ୍ଚଳକୁ ଶାସନ କଲେ, ସେତେବେଳେ ଭୁବନେଶ୍ୱରରେ ଲିଙ୍ଗରାଜ ମନ୍ଦିରରେ ଥିବା ତ୍ରିଭୁବନେଶ୍ୱରଙ୍କୁ ହରିହର ଭାବରେ ଉପାସନା କରାଗଲା ଓ ପରେ ମନ୍ଦିର ବେଢ଼ାରେ (ବିଷ୍ଣୁ) ପୁରୁଷୋତ୍ତମ, (ଅନନ୍ତ)

---

୯୬ । C. J. R. T O.-pp. 14.
୯୭ । E I. Vol. 26 pp. 165-171.

ବଳଭଦ୍ର ଓ ଏକାନଂଶାଙ୍କର ମନ୍ଦର ମଧ୍ୟ ନିର୍ମାଣ କରାଗଲା । ଫଳରେ ଏହି ମନ୍ଦିରକୁ ଶୈବ, ବୈଷ୍ଣବ ଓ ଶାକ୍ତମାନେ ସମସ୍ତେ ଆସି ଏକତ୍ର ଆର୍ଯ୍ୟ ଧର୍ମର ସ୍ୱାଦ ଆସ୍ୱାଦନ କଲେ । ※

ସୋମବଂଶୀମାନଙ୍କ ପରେ ଗଙ୍ଗବଂଶୀମାନେ ଏ ଅଞ୍ଚଳରେ ରାଜତ୍ୱ କଲେ । ବର୍ତ୍ତମାନର ଏହି ଉତ୍ତୁଙ୍ଗ ଜଗନ୍ନାଥମନ୍ଦର ଗଢ଼ାଗଲା । ବିଷ୍ଣୁକ୍ଷେତ୍ର ପୁରୁଷୋତ୍ତମକ୍ଷେତ୍ରରେ ମଧ୍ୟ ଶୈବ, ଶାକ୍ତ ଓ ବୈଷ୍ଣବମାନେ ଯାଏ ଏକତ୍ର ଠୁଳହେଲେ । ସେମାନେ ଭୁବନେଶ୍ୱରର ଲିଙ୍ଗରାଜମନ୍ଦରର ପରିସର ଭଳି ଏଠାରେ ମଧ୍ୟ ଧର୍ମର ତ୍ରିବେଣୀସଙ୍ଗମ ଅନୁଭବ କଲେ । ପୁରୁଷୋତ୍ତମ ଜଗନ୍ନାଥଙ୍କୁ ବିଷ୍ଣୁ-କୃଷ୍ଣ, ବଳଭଦ୍ରଙ୍କୁ ଶିବ ଓ ମାତା ସୁଭଦ୍ରାଙ୍କୁ ଶକ୍ତି ବା ଦୁର୍ଗା ବୋଲି ବିବେଚନା କରି ପୀଠ ଶୈବ, ଶାକ୍ତ ଓ ବୈଷ୍ଣବଙ୍କ ପାଇଁ ଏକ ଅପୂର୍ବ ସମନ୍ୱୟ କ୍ଷେତ୍ର ହୋଇପାରିଲା । ରାମାନୁଜ, ମଧ୍ୱଙ୍କ ଭଳି ସମସ୍ତ ପ୍ରମୁଖ ବୈଷ୍ଣବାଚାର୍ଯ୍ୟଗଣ ଆକୃଷ୍ଟ ହୋଇ ଏ କ୍ଷେତ୍ରକୁ ଆସିଲେ । ସାରା ଭାରତରେ ଏ କ୍ଷେତ୍ରର ମହିମା ପରିବ୍ୟାପ୍ତ ହେଲା । ପୂର୍ବରୁ ଯେଉଁ ଅଞ୍ଚଳରେ ଶୈବ-ଧର୍ମ କେବଳ ନୁହିଁ ଉନ୍ନତିର ଓ ଲୋକପ୍ରିୟତାର ଚରମ ସୀମାରେ ପହଞ୍ଚିଥିଲା, ସେହି ରାଜ୍ୟରେ ଦ୍ୱାଦଶ ଶତାବ୍ଦୀବେଳକୁ ବୈଷ୍ଣବକ୍ଷେତ୍ର ପୁରୁଷୋତ୍ତମକ୍ଷେତ୍ର ହେଲା ଏକ ପ୍ରମୁଖ କ୍ଷେତ୍ର, ତୀର୍ଥରାଜ । ଦେଶର ଗଙ୍ଗବଂଶୀ ରାଜାଗଣ ଥିଲେ ଏହି ବୈଷ୍ଣବଧର୍ମ ତଥା ପୁରୁଷୋତ୍ତମ ଉପାସନାର ପ୍ରଧାନ ପୃଷ୍ଠପୋଷକ । ଯେଉଁ ଗଙ୍ଗମାନେ ପୂର୍ବେ

---

※ ଦ୍ରଷ୍ଟବ୍ୟ—ଭୁବନେଶ୍ୱରରେ ଶୈବ, ଶାକ୍ତ ଓ ବୈଷ୍ଣବମାନଙ୍କ ଚିତ୍ତ ପ୍ରମୋଦ ନିମିତ୍ତ ମନ୍ଦରମାନଙ୍କ ମଧ୍ୟରେ ନିମ୍ନୋକ୍ତ ମନ୍ଦରମାନ ପ୍ରଧାନ ।

୧ । ଶୈବଙ୍କ ପାଇଁ—ଲିଙ୍ଗରାଜଙ୍କ ଠାରୁ ଆରମ୍ଭକରି ଶତ ଶତ ଲିଙ୍ଗପୂଜିତ ମନ୍ଦର ।

୨ । ଶାକ୍ତମାନଙ୍କ ପାଇଁ—ବୈତାଳ ମନ୍ଦର, ଗୌରୀମନ୍ଦରଠାରୁ ଆରମ୍ଭକରି ଲିଙ୍ଗରାଜଙ୍କ ବେଢ଼ାରେ ଥିବା ପାର୍ବତୀ, ଭୁବନେଶ୍ୱରୀ, ଆଦିଙ୍କ ମନ୍ଦର ।

୩ । ବୈଷ୍ଣବଙ୍କ ପାଇଁ—ଅନନ୍ତବାସୁଦେବଙ୍କ ମନ୍ଦର, ଲିଙ୍ଗରାଜଙ୍କ ବେଢ଼ାରେ ଆଉ ଏକ ଅନନ୍ତବାସୁଦେବ ମନ୍ଦର, ସତ୍ୟନାରାୟଣ ଚତୁର୍ଭୁଜ ବିଷ୍ଣୁମନ୍ଦର, ଲକ୍ଷ୍ମୀନାରାୟଣ ମନ୍ଦର ଓ ନୃସିଂହ ମନ୍ଦର । ପରବର୍ତ୍ତୀ କାଳରେ ଏକ ପତିତପାବନ ଜଗନ୍ନାଥ ମନ୍ଦର । ପୁରୀରେ ସେପରି ଜଗନ୍ନାଥ ବେଢ଼ାରେ ବିମଳା ଭୁବନେଶ୍ୱରୀ ଓ ପଞ୍ଚ-ମହାଦେବଙ୍କର ଅପୂର୍ବ ସମାବେଶ । ତା' ଛଡ଼ା ଦୁର୍ଗାଙ୍କୁ ସପ୍ତଶତୀ ଚଣ୍ଡୀରେ 'ନାରାୟଣୀ' ଭାବରେ ଗ୍ରହଣ କରିବାମୂଳରେ ସେହି ଅପୂର୍ବ ସମନ୍ୱୟ ବିଦ୍ୟାମାନ । "ନାରାୟଣୀ ନମସ୍ତୁତେ" ।

ମହେନ୍ଦ୍ରାଚଳରେ ଗୋକର୍ଣ୍ଣେଶ୍ୱର(୯୮)ମହାଦେବଙ୍କୁ ଉପାସନାକରି ଶୈବଭାବରେ ଅଭିହିତ ହୋଇଥିଲେ ସେମାନେ ପୁଣି ଦ୍ୱାଦଶ ଶତାବ୍ଦୀ ବେଳକୁ ପୁରୁଷୋତ୍ତମ-ବିଷ୍ଣୁଙ୍କର ପ୍ରଧାନ ଉପାସକ ହେଲେ ଓ ପୁରୁଷୋତ୍ତମଙ୍କୁ ସର୍ବବ୍ୟାପୀ ବିଶ୍ୱରୂପ ଭଗବାନ୍ ବିଷ୍ଣୁ ବୋଲି ଗଙ୍ଗ-ଶିଳାଲେଖରେ ପ୍ରଚାର କଲେ (୯୯) । କଥା ହେଉଛି, ଲୋକମତ ଯେଉଁଆଡ଼େ ଯିବ, ରାଜମତ ସେହିଆଡ଼େ ଯିବ । ଯଦି ତା' ନହୁଏ ତେବେ ରାଜ୍ୟର ପ୍ରଜାମାନେ ରାଜାଙ୍କ ପ୍ରତି ଅନୁରକ୍ତ ରହିବେ ନାହିଁ । ଅବଶ୍ୟ ଏଥିରେ ଧର୍ମାଚାର୍ଯ୍ୟମାନଙ୍କର ଅନେକ ଭୂମିକା ରହିଛି । ସେଥିପାଇଁ ମୋଗଲ ସମ୍ରାଟ୍ ମହାପ୍ରତାପୀ ଆକ୍‌ବର 'ରାଜ୍ୟବାସୀମାନଙ୍କ ସହଯୋଗିତା ଲାଭ ପାଇଁ ନିଜେ ମୁସଲମାନ୍ ହେଲେ ମଧ୍ୟ ହିନ୍ଦୁମାନଙ୍କ ଭଳି ଚଳୁଥିଲେ ଓ ହିନ୍ଦୁଘରେ ବିବାହ କରିଥିଲେ । ଏପରି ଧର୍ମ ପରିବର୍ତ୍ତନରେ ଯଦି ଦେଶରେ ଶାନ୍ତି ପ୍ରତିଷ୍ଠିତ ହେଲା, ତେବେ କ୍ଷତି କ'ଣ ? ସେହି ଦୃଷ୍ଟିରୁ ଦେଖିଲେ ଜଣାଯାଏ, ଯେତେବେଳେ ବୈଷ୍ଣବଧର୍ମୀ ପାଣ୍ଡୁବଂଶୀ ରାଜାମାନେ ଆସି ଏହି ଅଞ୍ଚଳରେ (ପୁରୀ-ଭୁବନେଶ୍ୱରାଦି ପୂର୍ବ ଓଡ଼ିଶା) ପ୍ରବେଶ କଲେ, ସେତେବେଳେ ଏ ଅଞ୍ଚଳରେ ଶୈବଧର୍ମ ପ୍ରତିଷ୍ଠିତ ଥିଲା ଓ ଅଧିକାଂଶ ଲୋକ ଶୈବ ଥିଲେ । ଶୈଳୋଦ୍ଭବ ଓ ଭୌମକର-ମାନେ ଅଧିକାଂଶ ଶୈବଧର୍ମକୁହିଁ ସମର୍ଥନ କରିଥିଲେ । ଅବଶ୍ୟ ଭୌମକରଙ୍କ ସମୟରେ ବୌଦ୍ଧଧର୍ମ ଓ ବଜ୍ରଯାନ ପ୍ରଚାର ବିଶେଷ ଉନ୍ନତ ହେତୁ ଶୈବଧର୍ମ କିଛିଟା ଅବନତର ସମ୍ମୁଖୀନ ହୋଇଥିଲା । ତେଣୁ ସୋମବଂଶୀମାନେ ଏ ଅଞ୍ଚଳ ଜୟକଲାପରେ ନିଜର ବଂଶ ନାମ ଓ ଧର୍ମ ପରିବର୍ତ୍ତନ କରି ନିଜକୁ ନିଛକ ଶୈବଭାବରେ ପ୍ରକାଶ କରି ଏହି ଅଞ୍ଚଳର ପ୍ରଜାମାନଙ୍କ ମନରେ ଏକ ଦୃଢ଼ଧାରଣା ସୃଷ୍ଟି କଲେ ଯେ, ସେମାନେ ଶୈବଧର୍ମକୁ ରକ୍ଷା କରିବେ । ଫଳରେ ରାଜ୍ୟର ଅଧିକାଂଶ ଲୋକ ସୋମବଂଶ ରାଜତ୍ୱକୁ ସ୍ୱାଗତ କଲେ ।

୯୮—I. O. Vol. III, pt II, 1961. pp,402. The inscription of the Eastern Gangas,

"ଶ୍ରୀମତାଂ ଅଖିଳଭୁବନବିନୁତନୟବିନୟଦୟାଦାନଦାକ୍ଷିଣ୍ୟସତ୍ୟ…………
ଆନେୟସଗୋତ୍ରାଣାଂ……ମହେନ୍ଦ୍ରାଚଳଶିଖର ପ୍ରତିଷ୍ଠସ୍ୟ ସଚରାଚରଗୁରୋଃ
ସକଳଭୁବନ ନିର୍ମାଣୈକସୂତ୍ରଧାରସ୍ୟଭଗବତୋ ଗୋକର୍ଣ୍ଣସ୍ୱାମିନଃ ପ୍ରସାଦାତ୍…

୯୯ । Ganga inscription-Dasgoba Copper Plate of Rajraj Dev III (1198-1211 A.D.)

ପାଦୌ ଯସ୍ୟ ଧରାନ୍ତରୀକ୍ଷମଖିଳଂ ନାଭିଷ୍ଟ ସର୍ବାଦିଶଃ
ଶ୍ରୋତ୍ରେ ନେତ୍ରଯୁଗଂ ରବୀନ୍ଦୁଯୁଗଳଂ ମୂର୍ଦ୍ଧାପି ଚ ଦ୍ୟୌରସୌ ।।
ପ୍ରାସାଦଂ ପୁରୁଷୋତ୍ତମସ୍ୟ ନୃପତିଃ କୋ ନାମ କର୍ତ୍ତୁଂ କ୍ଷମଃ
ତସ୍ୟେତ୍ୟାଦ୍ୟନୃପୈରୁପେକ୍ଷିତମୟଂ ଚକ୍ରେଥ ଗଙ୍ଗେଶ୍ୱରଃ ।।

ଶୈବାଚାର୍ଯ୍ୟମାନେ ଏହି ଧର୍ମ ପରିବର୍ତ୍ତନରେ ରାଜାଙ୍କୁ ନିଶ୍ଚୟ ସାହାଯ୍ୟ କରିଥିବେ । ରାଜାନୁଗତଧର୍ମ ଫଳରେ ଶୈବଧର୍ମ ଅନ୍ୟାନ୍ୟ ଧର୍ମମାନଙ୍କ ମଧ୍ୟରେ ପ୍ରମୁଖସ୍ଥାନ ଅଧିକାର କରିଥିଲା ।

ମାତ୍ର ସେତେବେଳକୁ ବୈଷ୍ଣବାଚାର୍ଯ୍ୟଙ୍କର ପରାମର୍ଶ କ୍ରମେ ପୁରାଣରେ ଉତ୍କଳଖଣ୍ଡ ରଚିତ ହୋଇ ତାହାକୁ ସ୍କନ୍ଦପୁରାଣର ଅନ୍ତର୍ଗତ କରିଦିଆଯାଇଥିଲା । ଅଷ୍ଟାଦଶ ପୁରାଣାନ୍ତର୍ଗତ ସ୍କନ୍ଦପୁରାଣର ଏହି ଉତ୍କଳଖଣ୍ଡ (ବୈଷ୍ଣବଖଣ୍ଡ) ଗୋଟିଏ ଅଂଶ ବୋଲି ପ୍ରଚାର କରିବାର ଉଦ୍ଦେଶ୍ୟ ହେଲା ଯେ, ଲୋକେ ଏହାକୁ ପୁରାଣକାର ବ୍ୟାସଙ୍କ ରଚନା ବୋଲି ବିଚାରିବେ ଓ ବିଶ୍ୱାସ କରିବେ । ଫଳରେ ବୈଷ୍ଣବ ଧର୍ମର ଅଭ୍ୟୁତ୍ଥାନ ହୋଇ ତାହା ସବୁଠାରୁ ଅଧିକ ଲୋକପ୍ରିୟ ହେବ ।

କ୍ରମଶଃ ଏ ଉଦ୍ଦେଶ୍ୟ ସଫଳ ହେଲା । ଲୋକେ ଇନ୍ଦ୍ରଦ୍ୟୁମ୍ନ ଉପାଖ୍ୟାନ ପ୍ରଭୃତି ତଥ୍ୟାବଳୀକୁ ବିଶ୍ୱାସ କଲେ । ଯଯାତିକେଶରୀ (ପ୍ରଥମ) ଲୋକମାନଙ୍କର ବିଷ୍ଣୁପ୍ରୀତିକୁ ଉପେକ୍ଷା କରିପାରିଲେ ନାହିଁ । କ୍ଷୁଦ୍ରହେଲେ ମଧ୍ୟ ଅଳ୍ପ ଉଚ୍ଚର ଏକ ମନ୍ଦିର ପୁରୁଷୋତ୍ତମଙ୍କ ପାଇଁ ତୋଳାଇଲେ (୧୦୦) । ଏ ମନ୍ଦିର ତାହାଙ୍କ ଯୁଗର ଲିଙ୍ଗରାଜ ମନ୍ଦିର ପରି ଭବ୍ୟ ନଥିଲା । ତଥାପି ଲୋକେ ବିଷ୍ଣୁଭକ୍ତି ଆଡ଼କୁ ଆକୃଷ୍ଟ ହେଲେ । ରାଜାଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି କୁହାଗଲା ।ସେହି କ୍ଷୁଦ୍ର ମନ୍ଦିରଟିରେ ଲୋକସମାଗମ ବଢ଼ିବାକୁ ଲାଗିଲା । ଏପରି (୧୦ ମରୁ ଦ୍ୱାଦଶଶତକ) ଶତାଧିକ ବର୍ଷ ବିତିଯିବାପରେ ସୋମବଂଶର ପତନ ହେଲା ଓ ଗଙ୍ଗବଂଶୀ ରାଜା ଚୋଡ଼ଗଙ୍ଗଦେବଙ୍କ ଅଧିକାରକୁ ଏହି ଅଞ୍ଚଳ ଆସିଲା । (ଖ୍ରୀ: ଅ: ୧୦୭୭-୧୧୪୭ ।)

ଏ କଥା ସତ ଯେ ସୋମବଂଶୀମାନେ ଶୈବାଚାର୍ଯ୍ୟଙ୍କ ମତକୁ ଅଧିକଭାବରେ ଗ୍ରହଣ କରିଥିଲେ । ଏହି ସମୟରେ ବୈଷ୍ଣବ ଧର୍ମର ପ୍ରଭାବ ସମାଜରେ ପୁଣି ମୁଣ୍ଡ ଟେକୁଥିବା ଦେଖି ଶୈବାଚାର୍ଯ୍ୟମାନେ ରାଜାଙ୍କୁ ବିଶେଷଭାବରେ ଶୈବଧର୍ମ ପ୍ରତି ଆକୃଷ୍ଟ କରି ଟାଣି ରଖିଲେ । ଫଳରେ ସୋମବଂଶୀରାଜାମାନେ ଆଉ ବିଷ୍ଣୁଙ୍କ ପାଇଁ ମନ୍ଦିର ନିର୍ମାଣ କରିବାକୁ ମନ ବଳାଇଲେ ନାହିଁ । କିନ୍ତୁ ସେମାନଙ୍କ ମନରୁ ବିଷ୍ଣୁଙ୍କର ସୌନ୍ଦର୍ଯ୍ୟ ଓ ପରାକ୍ରମର କାହାଣୀ ପୋଛି ହୋଇଯାଇନଥିଲା । ସୁଯୋଗ ପାଇଲାକ୍ଷଣି ଅତର୍କିତ ଭାବରେ ତାହା ଆତ୍ମପ୍ରକାଶ କରୁଥିଲା । ତେଣୁ ଏହି ବଂଶର ରାଜା ଉଦ୍ୟୋତକେଶରୀ ତାଙ୍କ ପିତା ଯଯାତି (୨ୟ)ଙ୍କର ରୂପ ଓ ଶକ୍ତିକୁ ଏକ ଶିଳାଲେଖରେ ବର୍ଣ୍ଣନା କରିବାକୁ

---

୧୦୦ । ମାଦଳା ପାଞ୍ଜି ପୃ: 30-31—
C. J. R. T. O. pp. 21-21. See for detail.

ଯାଇ ତହିଁରେ ପ୍ରକାଶକଲେ, ଯଯାତି (୨ୟ) ହେଉଛନ୍ତି ମଧୁଦୈତ୍ୟର ନିହନ୍ତା ସ୍ୱୟଂ ବିଷ୍ଣୁଙ୍କର ଏକ ଅବତାର । "(ପ୍ରଥିତଧର୍ମମଧୁସୂଦନସ୍ୟ)" (୧୦୧)। ଏଥିରୁ ଯଥାର୍ଥରେ ବୁଝାଯାଏ ଯେ ସୋମବଂଶୀଯୁଗରେ ବିଷ୍ଣୁଙ୍କର ମହିମାକୀର୍ତ୍ତନ ମଧ୍ୟ କରାଯାଉଥିଲା (୧୦୨)। ଦେଶରେ ଅନେକ ବିଷ୍ଣୁଭକ୍ତ ଥିଲେ। ମାତ୍ର ରାଜାମାନେ ବୈଷ୍ଣବଧର୍ମ ପ୍ରତି ଆଗ୍ରହ ପ୍ରକାଶ ନ କରୁଥିବାରୁ ଧର୍ମରକ୍ଷାପାଇଁ ସେମାନେ ହୁଏତ ଅନ୍ୟରାଜ୍ୟଙ୍କୁ ଚାହୁଁଥିବେ। ସେମାନଙ୍କର ଏ ଆବଶ୍ୟକତା ପୂରଣ କରିଥିଲେ ଗଙ୍ଗରାଜବଂଶ। ଗଙ୍ଗବଂଶୀମାନେ ବୈଷ୍ଣବଧର୍ମ ପ୍ରତି ବିଶେଷ ଆଗ୍ରହ ପ୍ରଦର୍ଶନ କରିଥିଲେ ମଧ୍ୟ ପୂର୍ବବର୍ତ୍ତୀରାଜାଙ୍କ ପନ୍ଥାଙ୍କ ଅନୁସରଣ କରି ଶୈବଧର୍ମକୁ ଉପେକ୍ଷା କରିନଥିଲେ। ଫଳରେ ସେମାନେ ସମ୍ମୁନ୍ନତ ଶୈବଧର୍ମ ଓ ପୁନରୁତ୍ଥିତ ବୈଷ୍ଣବଧର୍ମ; ଏ ଉଭୟଙ୍କର ସମର୍ଥନ ପାଇଥିଲେ।

ଗୁପ୍ତଯୁଗର ପୂର୍ବରୁ (୧୦୩) ଓ ଗୁପ୍ତଯୁଗଠାରୁ (୧୦୪) ଓଡ଼ିଶାରେ ଦେବୀ ଆରାଧନା ଚାଲିଥିଲା। ଯାଜପୁର ପ୍ରଭୃତି ସ୍ଥାନରେ ପ୍ରାଚୀନ-ଶକ୍ତି ଆରାଧନାର ପରମ୍ପରା ଅଦ୍ୟାପି ରହିଅଛି। ଦ୍ୱିଭୁଜା, ଚତୁର୍ଭୁଜା ମହିଷମର୍ଦ୍ଦିନୀ ଦୁର୍ଗାଙ୍କର ପ୍ରାଚୀନ-ମୂର୍ତ୍ତିମାନ ଓଡ଼ିଶାର ବିଭିନ୍ନ ସ୍ଥାନରେ ମିଳିଥାଏ। ଅଷ୍ଟମ ଶତାବ୍ଦୀବେଳକୁ ଓଡ଼ିଶାରେ ତାନ୍ତ୍ରିକ ଶକ୍ତିପୂଜାର ବହୁଳ ପ୍ରଚାର ହୋଇଥିଲା। ହିନ୍ଦୁଧର୍ମର ଏହି ତାନ୍ତ୍ରିକ ଶକ୍ତି ପୂଜା ସହିତ ତାଳଦେଇ ବୌଦ୍ଧବଜ୍ରଯାନ ପରମ୍ପରାରେ ମଧ୍ୟ ଶକ୍ତିପୂଜା ଓଡ଼ିଶାରେ ସେହି ସପ୍ତମ ଅଷ୍ଟମ ଶତାବ୍ଦୀରେ ଚାଲିଥିଲା। ମହାଯାନଗୋଷ୍ଠୀଙ୍କ ମଧ୍ୟରେ 'ତାରା'ଙ୍କର ଉପାସନା ପ୍ରବଳ ହୋଇଥିଲା।

---

୧୦୧। Inscriptions of Orissa—Vol.4, No· 35/22-23—Narasimhapur Plate of Mahabhavagupta Udyotakeshari.

୧୦୨। ଭୁବନେଶ୍ୱର-ପୁରୀ ଅଞ୍ଚଳରେ ସୋମବଂଶୀଙ୍କ ସମୟରେ ଅନେକ ବିଷ୍ଣୁମନ୍ଦିର ନିର୍ମିତ ହୋଇଥିଲା। ଚୌରାଶୀ ଗ୍ରାମର ଲକ୍ଷ୍ମୀନୃସିଂହମନ୍ଦିର—ଜ: ଗୀ: ପୃ: ୨୨୦—K· N. Mohapatra, ମୁଦ୍‌ଗଲ ଗ୍ରାମର ମୁଦ୍‌ଗଲ ମାଧବ (C. J· R. T O.- pp-21) ଇତ୍ୟାଦି (ଭୌମସମୟ) ସେହି ପ୍ରାଚୀନ ମାଧବ ପୂଜାର ପରିଚାୟକ।

୧୦୩। R. P. Chanda—Memories of the Archaeological Survey of India—pp. 4-5

୧୦୪। K. C. Panigrahi—quoted in side lights—pp. 367, Note-28

ବଜ୍ରତାରା, ଏକଜଟାରା ଆଦିଙ୍କର ପୂଜା ବୌଦ୍ଧଶକ୍ତି ପୂଜାର ବିଶେଷ ପରିଚୟସୂଚକ । ଫଳରେ ଓଡ଼ିଶାର ସମାଜରେ ଅଷ୍ଟମଶତାବ୍ଦୀ ବେଳକୁ ଅନେକ ଶାକ୍ତ ଧର୍ମାବଲମ୍ବୀ ଥିଲେ । ସପ୍ତମଶତାବ୍ଦୀରେ ନିର୍ମିତ ଭୁବନେଶ୍ୱରର ପରଶୁରାମେଶ୍ୱର ମନ୍ଦିରରେ ଜଗମୋହନ କାନ୍ଥରେ ସପ୍ତମାତୃକାଙ୍କର ମୂର୍ତ୍ତି ରହିଅଛି । ସେହି ଭୁବନେଶ୍ୱରରେ ଅଷ୍ଟମ ଶତାବ୍ଦୀରେ ନିର୍ମିତ ବଇତାଳମନ୍ଦିରରେ ସପ୍ତମାତୃକାଙ୍କ ମୂର୍ତ୍ତିମାନ ମୁଖ୍ୟଦେବତା କପାଳିନୀ ଦେବୀଙ୍କର ପାର୍ଶ୍ୱରେ ଥିବା କାନ୍ଥରେ ରହିଛନ୍ତି । ଯାଜପୁର ଦଶାଶ୍ୱମେଧଘାଟ, ପୁରୀର ମାର୍କଣ୍ଡେଶ୍ୱର ପୁଷ୍କରିଣୀ କୂଳ, ଭୁବନେଶ୍ୱରର ଅନେକ ପ୍ରାଚୀନ ମନ୍ଦିର ଉପତ୍ୟକାର ବହୁ ମନ୍ଦିର,(୧୦୫), କଳାହାଣ୍ଡିର ବେଲଖଣ୍ଡି, ଇତ୍ୟାଦି ଅନେକ ସ୍ଥାନରେ ମାତୃକାପୂଜାର ପରିଚୟ ମିଳିଥାଏ । ଭୁବନେଶ୍ୱର ନିକଟବର୍ତ୍ତୀ ହୀରାପୁରର ଚଉଷଠି ଯୋଗିନୀ ଓଡ଼ିଶାର ତାନ୍ତ୍ରିକ ଶକ୍ତିପୂଜାର ସୂଚନା ଦେଇଥାଏ । ପଶ୍ଚିମ ଓଡ଼ିଶାର ବଲାଙ୍ଗିର ଅନ୍ତର୍ଗତ ରାଣୀପୁର ଝରିଆଲରେ ମଧ୍ୟ ଚଉଷଠି ଯୋଗିନୀ ଉପାସନାର ପରମ୍ପରା ଥିଲା । ଏଣେ ପୁରୀରେ ବିମଳାଦେବୀ ବହୁପୂର୍ବତନ କାଳରୁ ପୂଜିତ ହେଉଥିଲେ । ✻ ତାଙ୍କ ପୁଣି ପରେ ଜଗନ୍ନାଥ (ବିଷ୍ଣୁ) ଭୈରବଙ୍କର ଶକ୍ତି ଭାବରେ ଗ୍ରହଣ କରାଗଲା । ଯାଜପୁର ଓ ପୁରୀରେ ଥିବା ଶକ୍ତିପୀଠମାନଙ୍କ ମଧ୍ୟରୁ ଅନେକ ପୀଠ ସୋମବଂଶୀମାନଙ୍କ ସମୟରେ ହିଁ ପ୍ରତିଷ୍ଠିତ ହୋଇଥିଲା । ଏଣୁ ଏହି ପ୍ରାଚୀନ ପରମ୍ପରାକୁ ଗଙ୍ଗମାନେ ଉପେକ୍ଷା କରିବାର ବାଟ ନଥିଲା । ସେଥିପାଇଁ ସେମାନେ ପୁରୀଠାରେ ବୈଷ୍ଣବ, ଶୈବ ଓ ଶାକ୍ତଙ୍କର ସମନ୍ୱୟକୁ ଅଧିକଭାବରେ ଉତ୍ସାହିତ କରି ବିଶେଷ ଲୋକସମର୍ଥନ ଲାଭ କରିଥିଲେ । ଏଥିପାଇଁ ପୁରୁଷୋତ୍ତମକ୍ଷେତ୍ର ହିଁ ଥିଲା ଏକ ପ୍ରଧାନ ପୀଠ ।

---

୧୦୫ । ପ୍ରାଚୀନପୁରୀର ଐତିହାସିକ ବିଭବ;
ଜୟଦେବ ଓ ଗୀତଗୋବିନ୍ଦ—କେଦାରନାଥ ମହାପାତ୍ର । (ଅଧିକ ଜାଣିବାଲାଗି ଦ୍ରଷ୍ଟବ୍ୟ ।)
See also,to know more about Jagannath during the Gangas;—my book—'Jagannath in the history and Religious traditions of Orissa. Punthi Pustak, Calcutta; and 'Jagannath during the period of Gangas and Suryas;—My paper, Published in 'Side lights of Orissa·· ed· M. N. Das—Vidyapuri, Cuttak.

✻ ଦ୍ରଷ୍ଟବ୍ୟ—ଶକ୍ତି ବା ଦେବୀମାନଙ୍କୁ ଶୈବୀ ଓ ବୈଷ୍ଣବୀ ବୋଲି ବିଚାର କରାଯାଉଥିଲା । ଦୁର୍ଗାଙ୍କୁ ଶିବଙ୍କ ପତ୍ନୀ ବୋଲି ବିଚାର କରାଯିବା ସତ୍ତ୍ୱେ ତାଙ୍କୁ ପୁଣି ନାରାୟଣୀ (ନାରାୟଣୀ ନମସ୍ତୁତେ—"ଚଣ୍ଡୀ ସପ୍ତଶତୀ") ବା ବିଷ୍ଣୁ ଶକ୍ତି ବୋଲି ବିଚାର କରାଯାଇ ଦୁର୍ଗାମାଧବ ଉପାସନା କରାଗଲା ।

ମାଦଳାପାଞ୍ଜିରୁ ଜଣାଯାଏ "ଶ୍ୱେତଗଙ୍ଗଦେବଙ୍କ ରାଜତ୍ୱ ପୂର୍ବରୁ ଭୁବନେଶ୍ୱର-ପୁରୀ ଅଞ୍ଚଳରେ ଭୁବନେଶ୍ୱର ବା ତ୍ରିଭୁବନେଶ୍ୱରଙ୍କ ଦେଶରେ ରାଷ୍ଟ୍ରଦେବତା ଭାବରେ ପ୍ରାଧାନ୍ୟ ଦିଆଯାଉଥିଲା । କେଶରୀ ବା ସୋମବଂଶୀ ରାଜାମାନେ ସେହି ତ୍ରିଭୁବନେଶ୍ୱର ଲିଙ୍ଗରାଜଙ୍କୁ ବିଶେଷ ସମ୍ମାନ ଦେଖାଉଥିଲେ । ମାତ୍ର କଳିକେଶରୀ ବୋଲି ଜଣେ ରାଜାଙ୍କର ଜଣେ ବ୍ରାହ୍ମଣ ବାସୁଦେବ ରଥଙ୍କ ସହିତ ନ ପଡ଼ିବାରୁ ବାସୁଦେବ ରଥ ତ୍ରିଭୁବନେଶ୍ୱରଙ୍କ ନାମରେ ଲୋକମାନଙ୍କୁ କହି ସମ୍ଭବତଃ ସୋମବଂଶୀ ରାଜାଙ୍କ ବିରୁଦ୍ଧରେ ମତାଇଥିଲେ ଯେ, ଦେଶରେ ଧର୍ମରକ୍ଷା କରିବାକୁ ସୋମବଂଶୀମାନେ ଅସମର୍ଥ । ତେଣୁ ଠାକୁରଙ୍କ ଆଜ୍ଞାନୁସାରେ ଗଙ୍ଗମାନେ ଦେଶ ଶାସନ କରିବେ । ତାହାପରେ ସେ ଦକ୍ଷିଣରେ ଥିବା କଳିଙ୍ଗକୁ ଯାଇ ଶ୍ୱେତଗଙ୍ଗଙ୍କୁ ଡକାଇଆଣି ସୋମବଂଶୀଙ୍କୁ ତାଙ୍କଦ୍ୱାରା ପରାସ୍ତ କରାଇ ଦେଶରେ ଗଙ୍ଗରାଜତ୍ୱ ପ୍ରତିଷ୍ଠା କରାଇଲେ (୧୦୬) । ତ୍ରିଭୁବନେଶ୍ୱରଙ୍କର ଆଜ୍ଞାକଥା ଶୁଣିଥିବାରୁ ଦେଶର ଲୋକସମର୍ଥନ ସୋମବଂଶୀଙ୍କ ପ୍ରତି ନ ଥିଲା ଓ ଏହା ଗଙ୍ଗମାନଙ୍କ ପ୍ରତି ଅନୁରକ୍ତ ରହିଥିଲା । ଫଳରେ ଗଙ୍ଗରାଜାମାନେ ଏ ଅଞ୍ଚଳରେ ନିଷ୍କଣ୍ଟକ ଭାବରେ ରାଜତ୍ୱ କଲେ (୧୦୭) ।

ମାଦଳାପାଞ୍ଜିରେ ବର୍ଣ୍ଣିତ 'ଶ୍ୱେତଗଙ୍ଗା' (ଶ୍ୱେତଗଙ୍ଗ) ଦେଉଛନ୍ତି 'ଗୋକର୍ଣ୍ଣେଶ୍ୱର'ଙ୍କ ଆଶିଷରୁ ଜାତ (୧୦୮) । ଐତିହାସିକ ଦୃଷ୍ଟିରୁ ବିଶ୍ଳେଷଣ କଲେ ଏହାର ଅର୍ଥ ହେଉଛି,

---

୧୦୬ । ମାଦଳାପାଞ୍ଜି—ପୃ: ୨୧-୨୩. "ଶ୍ରୀ ସିଦ୍ଧେଶ୍ୱର କଳିରାଜା ବ୍ରାହ୍ମଣ ବାସୁଦେବ ରଥଠାରୁ ଥରେ ଟଙ୍କି ନେଇ ଆଉଥରେ ପଠାଣଜଣଙ୍କୁ ଲେଖିଦେଲକୁ ଏ ବାସୁଦେବ ରଥ ରାଜାଙ୍କୁ କହିଲେ, "ମୁଁ ଟଙ୍କି କରଜ ଦେଇଅଛି । ଏବେ ପଠାଣ ଜଣେ ଉଜ୍ଜର ଲଗାଉଛି । ରାଜା କହିଲେ, "ତୁ ବାସୁ, ସେ ପଠାଣ ଜଣେ । ଏମନ୍ତ ଶୁଣି ସେ ବ୍ରାହ୍ମଣ ବାସୁଦେବ ରଥ ଭୁବନେଶ୍ୱରଙ୍କୁ ସେବା କଲେ......

୧୦୭ । ଯୁଗେ ଯୁଗେ ଓଡ଼ିଶାରେ ଶାସନ ପରିବର୍ତ୍ତନ ବେଳେ ଓଡ଼ିଶା ଇତିହାସରେ ଠାକୁରଙ୍କ ଆଜ୍ଞା କାମ କରିଛି । ଏଥିରେ ବ୍ରାହ୍ମଣମାନଙ୍କର ହାତ ରହିଅଛି । ସେମାନେ ଯେଉଁ ରାଜାଙ୍କୁ ଚାହିଁଛନ୍ତି, ସେ ସିଂହାସନାରୂଢ଼ ହୋଇଛନ୍ତି । ସେମାନେ ପ୍ରଚାର କରିଛନ୍ତି ଯେ, ଏହା ହେଉଛି ରାଷ୍ଟ୍ରଦେବତାଙ୍କ ଆଜ୍ଞା । ପୁରୁଷୋତ୍ତମଦେବଙ୍କ ସିଂହାସନ ପ୍ରାପ୍ତିବେଳେ ଠାକୁରଙ୍କର (ଜଗନ୍ନାଥ) ଆଜ୍ଞା ଯେପରି କାମ କରିଥିଲା, ଖ୍ରୀ: ଅ: ୧୮୦୩ରେ ଇଂରେଜମାନେ ଓଡ଼ିଶା ଅଧିକାର କରିବାବେଳେ ମଧ୍ୟ ଜଗନ୍ନାଥଙ୍କ ଆଜ୍ଞା ସେପରି କାମ କରିଥିଲା । ଦ୍ରଷ୍ଟବ୍ୟ:-ମୋର ବହି Jagannath in the History and Religious Traditions of Orissa, Punthi. Cal. 7

୧୦୮ । ମାଦଳା-ପୃ: ୨୧ ।

ଯେ ହେଉଛନ୍ତି ମହେନ୍ଦ୍ର ଗିରିରେ ପୂଜିତ ହେଉଥିବା ଗୋକର୍ଣ୍ଣେଶ୍ୱର (ଶିବ)ଙ୍କର ପ୍ରସାଦରୁ ଜାତ । ଅର୍ଥାତ୍, ତାଙ୍କର ପିତା ଦେବେନ୍ଦ୍ର ବର୍ମା ଏହି ଗୋକର୍ଣ୍ଣେଶ୍ୱରଙ୍କୁ ଭକ୍ତି କରିବା ଫଳରେ ତାଙ୍କୁ ପୁତ୍ରଭାବରେ ପାଇଥିଲେ । ଉପରୋକ୍ତ ଟେବୁଲ୍‌ରୁ ଚୋଳଗଙ୍ଗଙ୍କର ପୂର୍ବପୁରୁଷ ବା ବଂଶାବଳୀର ଏକ ଚିତ୍ର ଆମ ନିକଟରେ ସ୍ପଷ୍ଟଭାବରେ ଉପସ୍ଥାପିତ ହୋଇପାରେ ଓ ଏହାପରେ ଶିଳାଲେଖର ସମର୍ଥନ ରହିଅଛି । ଯଥା:—




[ଏହି ଟେବୁଲ୍‌ଟି ଡଃ. ସତ୍ୟନାରାୟଣ ରାଜଗୁରୁ ସ୍ଥିର କରିଛନ୍ତି:—History of the Gangas-pt. I. 1968 Orissa Museum. ]

ଅନନ୍ତବର୍ମା ଚୋଳଗଙ୍ଗଙ୍କର ପିତା ଦେବେନ୍ଦ୍ର ବର୍ମା ଜଣେ ବିଶିଷ୍ଟ ଶୈବ ଥିବାରୁ ତାଙ୍କର ପ୍ରଭାବ ଚୋଳଗଙ୍ଗଙ୍କ ଉପରେ ପଡ଼ିଥିଲା । ତେଣୁ ସେ ପ୍ରଥମେ ଜଣେ ଶୈବ ଥିଲେ । ତାଙ୍କ ଜୀବନକାଳର ପ୍ରଥମ ଏକତ୍ରିଶ ବର୍ଷ ସେ 'ପରମମାହେଶ୍ୱର' ଥିବାର ଜଣାଯାଏ (୧୦୯) । ଅର୍ଥାତ୍ ଚୋଳଗଙ୍ଗ (୧୦୭୭-୧୧୪୭ଖ୍ରୀ: ଅ: ) ଖ୍ରୀ: ଅ: ୧୧୦୮ ପର୍ଯ୍ୟନ୍ତ ଶୈବ ଥିଲେ । ମାତ୍ର ଖ୍ରୀ: ଅ: ୧୧୧୨ (୧୦୩୪ ଶକାବ୍ଦ)ରେ ଏକ ତାମ୍ର-ଲେଖରୁ (Korni plate) ସେ ବୈଷ୍ଣବ ଧର୍ମପ୍ରତି ଅନୁରକ୍ତ ହୋଇଥିବାର ଜଣାଯାଏ

---

୧୦୯ । C. J. R. T. O—PP, 22.; J·

(୧୧୦) । ଏଥିରେ ତାଙ୍କର ଯେଉଁ ଉପାଧିଗୁଡ଼ିକ ଥିଲା, ତାହା ଦେଉଛି;—"ପରମମାହେଶ୍ୱର, ପରମବୈଷ୍ଣବ ଓ ପରମବ୍ରାହ୍ମଣ୍ୟ" । ଖ୍ରୀ: ୧୧୧୮ ବେଳକୁ ପୂର୍ବ ଏକ ଅଭିଲେଖରୁ ଜଣାଯାଏ ଯେ ସେତେବେଳକୁ ତାଙ୍କର 'ପରମମାହେଶ୍ୱର' ଉପାଧିଟି କଟିଯାଇ କେବଳ 'ପରମ ବୈଷ୍ଣବ ଓ ପରମ ବ୍ରାହ୍ମଣ୍ୟ' ଉପାଧି ଦ୍ୱୟ ରହିଥିଲା (୧୧୧) । ଅର୍ଥାତ୍, ପ୍ରଥମେ ଚୋଡ଼ଗଙ୍ଗ ଥିଲେ କେବଳ ଶୈବ । ପରେ ବୈଦିକ ବ୍ରାହ୍ମଣ୍ୟଧର୍ମ ଓ ବୈଷ୍ଣବଧର୍ମ; ଏ ଉଭୟଙ୍କୁ ଗ୍ରହଣ କରିନେଲେ । ଅର୍ଥାତ୍, ଏହି ତିନିଧର୍ମ ପ୍ରତି ସେ ସମବ୍ୟବହାର କରିଥିଲେ । ତାହାପରେ ଜଗନ୍ନାଥ ଧର୍ମରେ ବିଶେଷ ଭାବରେ ଅନୁପ୍ରାଣିତ ହେଲାପରେ ଓ ଏହି ଧର୍ମର ମାହାତ୍ମ୍ୟ ବୁଝିଲାପରେ ସେ ବୈଷ୍ଣବବ୍ରାହ୍ମଣ୍ୟଧର୍ମର ଏକ ମିଳିତ କେନ୍ଦ୍ରବିନ୍ଦୁ ଦାରୁବ୍ରହ୍ମ-ପୁରୁଷୋତ୍ତମ ତଥ୍ୟଯୁକ୍ତ ବୈଷ୍ଣବ ଧର୍ମପ୍ରତି ବିଶେଷ ଅନୁରକ୍ତ ହୋଇଥିଲେ । ସେଥିପାଇଁ ଶିଳାଲେଖରେ ପରବର୍ତ୍ତୀ ସମୟରେ ଆମେ ତାଙ୍କୁ 'ପରମବୈଷ୍ଣବ ଭାବରେ ଦେଖିବାକୁ ପାଉଛେ ।

ରାଜନୈତିକ ଜୀବନରେ ତାଙ୍କର ଦକ୍ଷିଣରେ ଚୋଳବଂଶୀ ରାଜା କୁଲତୁଙ୍ଗ ଓ ତାଙ୍କର ଶକ୍ତିଶାଳୀପୁତ୍ର ବିକ୍ରମଚୋଳ ପ୍ରଧାନ ଶତ୍ରୁ ହୋଇଥିଲେ । ଉତ୍ତରପଟେ ସୋମ-ବଂଶୀରାଜାମାନେ ମଧ୍ୟ ଶତ୍ରୁତା ଆରମ୍ଭ କରିଥିଲେ । ଏଣେ ବଙ୍ଗଳାର ପାଳବଂଶୀରାଜା ରାମପାଳ ମଧ୍ୟ ସୋମବଂଶୀ ଓ ଚୋଳଗଙ୍ଗଙ୍କ ସହିତ ଯୁଦ୍ଧବିଗ୍ରହରେ ଲିପ୍ତ ଥିଲେ । ଚୋଳଗଙ୍ଗ ବିକ୍ରମଚୋଳଙ୍କ ଦ୍ୱାରା ଦୁଇଥର (୧୧୨) ପରାସ୍ତ ହୋଇଥିଲେ । ଏହା ଥିଲା ଖ୍ରୀ: ଅ: ୧୧୧୮ର ପୂର୍ବବର୍ତ୍ତୀ ଘଟଣା । କାରଣ, ଖ୍ରୀ: ଅ: ୧୦୯୨-୧୧୧୮ ବିକ୍ରମଚୋଳ ପିତା କୋଲତୁଙ୍ଗଙ୍କ ରାଜ୍ୟର ବେଙ୍ଗିଠାରେ ଶାସକ ପଦରେ ନିଯୁକ୍ତ ହୋଇଥିଲେ ଓ ସେହି ବେଙ୍ଗିଠାରୁ ହିଁ ସେ ଚୋଳଗଙ୍ଗଙ୍କୁ ଆକ୍ରମଣ କରିଥିଲେ । ଏ ପରାଜୟ ଚୋଳଗଙ୍ଗଙ୍କୁ ନିଶ୍ଚୟ ବାଧିଥିବ । ତାଙ୍କର ଇଷ୍ଟଦେବତା ଶିବ ତାଙ୍କୁ ଏ ଯୁଦ୍ଧରେ ସାହାଯ୍ୟ କରିପାରିଲେ ନାହିଁ ବୋଲି ସେ ନିଶ୍ଚୟ ଅନୁଭବ କରିଥିବେ । ୧୧୧୦ ଖ୍ରୀ: ଅ:ରେ ଚୋଳଗଙ୍ଗ ଏପରି କୋଲତୁଙ୍ଗଙ୍କ ପୁତ୍ରଙ୍କ ନିକଟରେ ପରାଜୟ ବରଣ କଲେ । ଖ୍ରୀ: ଅ: ୧୧୧୨ରେ ସେ ତେଣୁ ବୈଷ୍ଣବଧର୍ମ ପ୍ରତି ଅନୁରକ୍ତ ହୋଇ ମହାଶକ୍ତିଶାଳୀ

---

୧୧୦ । Korni Copper Plate of Cholaganga, 2nd set, line 102 in: J. A. H. R. S. 1, 3 (1927).

୧୧୧ । Vishakhapattanam Plate-(Saka. 1040)-I.O.III, 1, PP. 80.

୧୧୨ । C. J. R. T. O.—Kulke—PP—146.

ବିଷ୍ଣୁଙ୍କର ଆଶ୍ରୟ ଗ୍ରହଣ କଲେ ※ (୧୧୩) । ଫଳରେ ଖ୍ରୀ: ଅ: ୧୧୧୨ ରେ ସେ ମହାନଦୀ ଉପତ୍ୟକା ଜୟକଲେ । ଏହାଦ୍ୱାରା ତାଙ୍କର ବିଷ୍ଣୁଭକ୍ତି ଅଧିକ ଦୃଢ଼ୀଭୂତ ହେଲା । ମହାନଦୀ ଉପତ୍ୟକାର ଅଧୀଶ୍ୱର ଥିବା ସୋମବଂଶୀ ରାଜା ତାଙ୍କର ଅଧୀନସ୍ଥ ହେଲେ; ଏହା ସେହି କୋର୍ଣ୍ଣି ତାମ୍ରଲେଖରୁ ଜଣାଯାଏ । ଏ ତାମ୍ରଲେଖ ଚୋଡ଼ଗଙ୍ଗଙ୍କ ଦ୍ୱାରା ଲେଖାଯାଇଥିଲା ଖ୍ରୀ: ଅ: ୧୧୧୩ରେ । ପରେ ଏହି ଅଧୀନସ୍ଥ (ସାମନ୍ତରାଜା) ସୋମବଂଶୀ ରାଜାଙ୍କୁ ଗାଦୀରୁ ଉଠାଇଦେଇ ସେମାନଙ୍କ ରାଜ୍ୟକୁ ଚୋଡ଼ଗଙ୍ଗ ନିଜ ରାଜ୍ୟରେ ମିଶାଇଦେଲେ ଓ ଖ୍ରୀ: ଅ: ୧୧୧୮ରେ ବିଶାଖାପାଟଣା ଲେଖରେ ନିଜକୁ ସମଗ୍ର ଉତ୍କଳାଧିପତି ବୋଲି ଘୋଷଣା କଲେ (୧୧୪) । ଖ୍ରୀ: ଅ: ୧୧୧୩ ବେଳକୁ ସୋମବଂଶୀମାନେ ମଧ୍ୟ ଶୈବ ଥାଇ ଶିବଙ୍କ ପ୍ରତି ଅତୁଟ ବିଶ୍ୱାସ ରଖିଥିଲେ । ସେମାନେ ବଙ୍ଗଳାର ରାମପାଳ ଓ କଳିଙ୍ଗନଗରର ଚୋଳଗଙ୍ଗଙ୍କ ନିକଟରେ ଏକାଦିକ୍ରମେ ପରାସ୍ତ ହେଉଥିବାର ଦେଖି ଚୋଳଗଙ୍ଗଙ୍କର ଶିବଙ୍କ ଉପରୁ ଭରସା ତୁଟିବା ସଙ୍ଗେ ସଙ୍ଗେ ବିଷ୍ଣୁଙ୍କ ଶକ୍ତି ଉପରେ ଅଧିକରୁ ଅଧିକ ଭରସା ଆସିଲା । କାରଣ, ଏ ଯୁଦ୍ଧ କେବଳ ଚୋଳଗଙ୍ଗ ଓ ସୋମବଂଶୀଙ୍କ ଯୁଦ୍ଧ ନଥିଲା; ଥିଲା ଶିବ ଓ ବିଷ୍ଣୁଙ୍କ ମଧ୍ୟରେ ଯୁଦ୍ଧ ※ । ଯୁଦ୍ଧରେ ବିଷ୍ଣୁଙ୍କପକ୍ଷ ଜୟଯୁକ୍ତ ହେଲେ । ତେଣୁ ଖାଲି ଚୋଳଗଙ୍ଗ ନାହିଁକି; ତାଙ୍କର ରାଜ୍ୟବାସୀ ସୈନ୍ୟସାମନ୍ତମାନେ ମଧ୍ୟ ବିଷ୍ଣୁଭକ୍ତିକୁ ପସନ୍ଦ କରିଥିଲେ ।

ଖ୍ରୀ: ଅ: ୧୧୨୦ ରେ ବଙ୍ଗଳାର ଶକ୍ତିଶାଳୀ ରାଜା ରାମପାଳଙ୍କର ମୃତ୍ୟୁହେଲା । ଏଥିରେ ଚୋଳଗଙ୍ଗ ମନେକଲେ, ସତେ ଅବା ବିଷ୍ଣୁ ତାଙ୍କୁ ଅପୂର୍ବ ବରଦାନ କଲେ ।

---

୧୧୩ । Koṙni Copper Plate. J. A· H· R. S· (1927)·
See also Alagum inscription of 1136 A.D·—I. O. Vol· III/1 No 165.

※ ଦ୍ରଷ୍ଟବ୍ୟ:—ଜନସାଧାରଣଙ୍କ ମଧ୍ୟରେ ଏକଥା ସାଧାରଣତଃ ଦେଖାଯାଏ ଯେ, ଯଦି ଜଣେ ଦେବତାଙ୍କୁ ପୂଜାକରି, ଭକ୍ତି କରି ସୁଫଳ ନ ହେଲା ଓ କିଛି କ୍ଷତି ହେଲା, ତେବେ ଲୋକେ ସେ ଦେବତାଙ୍କୁ ଆଉ ଆରାଧନା ନକରି ଅନ୍ୟ ଦେବତାଙ୍କର ଶରଣାପନ୍ନ ହୁଅନ୍ତି । ଯୁଦ୍ଧରେ ପରାଜୟ ବରଣ କରିବାରୁ ଚୋଳଗଙ୍ଗଙ୍କର ତାହା ହିଁ ହେଲା ଓ ଶୈବଧର୍ମରୁ ଫେରି ବୈଷ୍ଣବ ଧର୍ମପ୍ରତି ଅନୁପ୍ରାଣିତ ହେଲେ ।

୧୧୪ । C. J. R. T. O—P. 146

※ । ଦ୍ରଷ୍ଟବ୍ୟ—(ମନେପଡ଼େ; ପୁରୁଷୋତ୍ତମଦେବଙ୍କ କାଞ୍ଚିବିଜୟ ଥିଲା ଗଣେଶ ଓ ଜଗନ୍ନାଥଙ୍କ ମଧ୍ୟରେ ଯୁଦ୍ଧ । ଏହା ଥିଲା ଆମର ସେ ଯୁଗର ପାରମ୍ପରିକ ବିଶ୍ୱାସଧାରା ।

ସେ ଉତ୍ସାହିତ ହୋଇ ହୁଗୁଲି ନଦୀ ପର୍ଯ୍ୟନ୍ତ ସୈନ୍ୟବାହିନୀ ଧରି ଆକ୍ରମଣକରି ମାଡ଼ିଗଲେ ଓ ଯୁଦ୍ଧରେ ଜିଣି ଉତ୍ତରରେ ନିଜର ରାଜ୍ୟ ସେହି ହୁଗୁଲି ନଦୀ ପର୍ଯ୍ୟନ୍ତ ବିସ୍ତାର କଲେ (୧୧୫)। ଏଣେ ଦକ୍ଷିଣରେ ମୁଖଲିଙ୍ଗମ୍' (କଳିଙ୍ଗ ନଗର) ଅଞ୍ଚଳ ମଧ୍ୟ ତାଙ୍କର ରାଜ୍ୟାନ୍ତର୍ଗତ ଥିଲା। ଏଠାରେ ଶିବ ଗୋକର୍ଣ୍ଣେଶ୍ୱରଙ୍କର ପ୍ରାଧାନ୍ୟ ମଧୁକେଶ୍ୱର ଗଙ୍ଗରାଜାଙ୍କର କୁଳଦେବତା ଭାବରେ ପୂଜିତ ହେଉଥିଲେ ମଧ୍ୟ ତାଙ୍କଠାରେ ବିଷ୍ଣୁତ୍ୱ ଆରୋପ କରାଯାଇ ହରିଶୟନ ଏକାଦଶୀ—ଦ୍ୱାଦଶୀ ଭଳି ବିଷ୍ଣୁଙ୍କର ଯାନଯାତ୍ରା ଏଠାରେ କରାଇବାକୁ ସେ ଭୁଲି ନଥିଲେ (୧୧୬)। ଠାକୁରଙ୍କର ଚିତ୍ତବିନୋଦନ ପାଇଁ ଏଠାରେ ଏକ ବିଷ୍ଣୁ ପ୍ରତିମା ବସାଯିବା ସଙ୍ଗେ ସଙ୍ଗେ ଦେବଦାସୀ ଭାବରେ ନୃତ୍ୟନିପୁଣା ନର୍ତ୍ତକୀଙ୍କୁ ରଖାଯାଇଥିଲା। ଖାଲି ଏତିକ ନୁହେଁ; ଜଗନ୍ନାଥ ଧର୍ମରେ ସେ ଏପରି ଅନୁପ୍ରାଣିତ ହୋଇପଡ଼ିଥିଲେ ଯେ (ଶିବ) ମଧୁକେଶ୍ୱରଙ୍କୁ ବିଷ୍ଣୁ ଭାବରେ ଜାଣିକରି ତାଙ୍କୁ ମଧ୍ୟ ଜଗତର ନାଥ ବା ଜଗନ୍ନାଥ ଭାବରେ ଗ୍ରହଣ କରିଥିଲେ। ଏହା ତାଙ୍କର ଶିଳାଲେଖରୁ ଜଣାଯାଇଥାଏ (୧୧୭)। ଖ୍ରୀ: ଅ: ୧୧୦୮ ରେ ଏହି ଶିଳାଲେଖଟି ଉତ୍କୀର୍ଣ୍ଣ ହୋଇଥିଲା। ଅର୍ଥାତ୍, ଅଷ୍ଟମ ଶତାବ୍ଦୀଠାରୁ ସ୍କନ୍ଦପୁରାଣ, ଉତ୍କଳଖଣ୍ଡ ଇତ୍ୟାଦି ମାଧ୍ୟମରେ ପୁରୁଷୋତ୍ତମ ପୂଜା ପ୍ରଚାର ହେବାଫଳରେ ଏହା ଲୋକପ୍ରିୟ ହୋଇଥିଲା ଓ ତାହାର ଚୋଳଗଙ୍ଗଙ୍କ ଉପରେ ପଡ଼ିଥିଲା। ତା'ଛଡ଼ା ଏହି ରାଜାଙ୍କ ଉପରେ ତାଙ୍କ ରାଣୀମାନଙ୍କର ପ୍ରଭାବ ମଧ୍ୟ ପଡ଼ିଥିଲା। ଶ୍ୱଶୁରଙ୍କର ପ୍ରଭାବ ପଡ଼ିବା କଥା ମଧ୍ୟ ବିଚିତ୍ର ନୁହେଁ। ତାଙ୍କର ପାଟରାଣୀ କସ୍ତୁରୀଗୋଣ୍ଡ ଚୋଡ଼ଦେବୀ ଚୋଳବଂଶର ବୀରଚୋଡ଼ଙ୍କର କନ୍ୟା ଥିଲେ। ବୀରଚୋଡ଼ କୁଲତୁଙ୍ଗଚୋଳଙ୍କର ଥିଲେ ତୃତୀୟ ପୁତ୍ର। ଏହି ବୀରଚୋଡ଼ ପିତାଙ୍କ ଦ୍ୱାରା ବେଙ୍ଗିର ପ୍ରଶାସକ ଭାବରେ ନିଯୁକ୍ତ ଥିବାସମୟରେ (ଖ୍ରୀ: ଅ: ୧୦୭୮-୧୦୮୪ ଓ ଆଉ-ଥରେ ୧୦୮୮-୧୦୯୨ ଖ୍ରୀ: ଅ: ) ସର୍ପବରଂ ନାମକ ସ୍ଥାନରେ ବିଷ୍ଣୁ-ପୁରୁଷୋତ୍ତମଙ୍କ ମନ୍ଦିର ନିର୍ମାଣ (୧୧୮) କରାଇଥିଲେ। ଯଯାତିକେଶରୀ ପୁରୀରେ ପୁରୁଷୋତ୍ତମ-ଜଗନ୍ନାଥଙ୍କର ମନ୍ଦିର ନିର୍ମାଣ କଲାପରେ ବୋଧହୁଏ ଏହା ପୁରୁଷୋତ୍ତମ ଉପାସନା ପାଇଁ ଦ୍ୱିତୀୟ ପ୍ରଚେଷ୍ଟା। ସେତେବେଳେ ବୈଷ୍ଣବ ଧର୍ମ ପୁଣି ପୁନରୁତ୍ଥିତ ହୋଇଥିବ। ଅନେକ

---

୧୧୫। C. J. R. T. O—pp. 147.

୧୧୬। C. J. R. T. O– P. 23; I. O. Vol.III.1 No 32, 37, 27

୧୧୭। I. O. Vol. III/1 No-47 ମହାଦ୍ୱାଦଶୀରେ ଅନନ୍ତବର୍ମାଙ୍କ ରାଣୀ ସୋମଲଦେବୀଙ୍କ ସାପଦାନ ପ୍ରସଙ୍ଗରେ ଏହା ଲେଖାଅଛି:—

"ପ୍ରାଦାତ୍ ଅଙ୍ଗେଣ୍ଟଂ ମହାଦ୍ୱାଦଶ୍ୟାଂ ମଧୁକେଶ୍ୱରସ୍ୟ ଜଗତୋ ନାଥାସ୍ୟ ଦୀପମ୍"

—Time Saka 1030 = 1108 A. D.

୧୧୮। C. J. R. T O—pp-24 ଏହି ଗ୍ରାମଟିର ପ୍ରଚଳିତ ନାମ ହେଉଛି,

ଭକ୍ତ ପୁରୁଷୋତ୍ତମଙ୍କୁ ପୂଜାକରିବାପାଇଁ ଆଗେଇ ଆସିଥିବେ । ଅନନ୍ତବର୍ମାଙ୍କ ପରିବାର ଉପରେ ଏହାର ଯଥେଷ୍ଟ ପ୍ରଭାବ ପଡ଼ିଥିବ । ସେଥିପାଇଁ ଚୋଡ଼ଗଙ୍ଗଙ୍କ ରାଜସ୍ଵଇ ପରମର୍ଦ୍ଦି-ଦେବ ଓ ତାଙ୍କର ସ୍ତ୍ରୀମାନେ ଏଠାରେ ଅନେକ ଦାନପୁଣ୍ୟ କରିଥିବାର ଏହି ମନ୍ଦିରର କଅଣ୍ଟି ଶିଳାଲେଖରୁ ଜଣାପଡ଼େ (୧୧୯) ।

ଖ୍ରୀ: ଅ: ୧୧୧୮ରେ ଚୋଳରାଜ କୁଲତୁଙ୍ଗ ଇହଲୀଳା ସମ୍ବରଣ କରିବାପରେ ରାଜଗାଦୀରେ 'ଅଧିଷ୍ଠିତ ହେବାପାଇଁ ତାଙ୍କର ଝାରପୁଅ ବିକ୍ରମଚୋଳ ବେଙ୍ଗିରୁ ଗୋଦାବରୀ ଅବବାହିକାରେ ଥିବା ତାଙ୍କର ରାଜଧାନୀକୁ ଚାଲିଗଲେ । ଏହି ସୁଯୋଗରେ ବେଙ୍ଗି ପଶ୍ଚିମ ଚାଲୁକ୍ୟରାଜା ଷଷ୍ଠ ବିକ୍ରମାଦିତ୍ୟଙ୍କ ଦ୍ଵାରା ଅଧିକୃତ ହେଲା । ଏହି ଚାଲୁକ୍ୟରାଜା ଚୋଳଗଙ୍ଗ ଓ ଚୋଳବଂଶୀ ରାଜା; ଏ ଉଭୟଙ୍କର ଶତ୍ରୁ ଥିଲେ (୧୨୦) । ମାତ୍ର ଖ୍ରୀ: ଅ: ୧୧୨୬ ରେ ଏହି ବିକ୍ରମାଦିତ୍ୟଙ୍କର ମୃତ୍ୟୁ ହେବାରୁ ତାହା ଚୋଳଗଙ୍ଗଙ୍କ ପ୍ରତି ଏକ ଆଶୀର୍ବାଦ ହେଲା । ପିତାଙ୍କ ମୃତ୍ୟୁପରେ ତାଙ୍କର ପୁତ୍ର ତୃତୀୟ ସୋମେଶ୍ଵର ଶକ୍ତିଶାଳୀ ଚୋଳରାଜଙ୍କୁ ଡରି ତାଙ୍କ ବିରୁଦ୍ଧରେ ଚୋଳଗଙ୍ଗ ମହାରାଜାଙ୍କ ସହିତ ମିଶି ଏକ ମେଣ୍ଟ କଲେ । ପ୍ରଥମେ ଚୋଳରାଜ ଯୁଦ୍ଧରେ ଗୋଦାବରୀ କୂଳରେ ସୋମେଶ୍ଵର ଓ ଚୋଳଗଙ୍ଗଙ୍କୁ ପରାସ୍ତ କଲେ (୧୨୧) ମାତ୍ର ପରେ କୌଶଳକ୍ରମେ ସୋମେଶ୍ଵର ଓ ଚୋଳରାଜଙ୍କ ହାତରୁ ଛଡ଼ାଇ ନେଇ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କଲେ । ତାଙ୍କର ରାଜ୍ୟ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବ୍ୟାପିଯିବା ପରେ ସେ ଦେବ, ଋଷି,

---

"ଶ୍ରୀପୁରୁଷୋତ୍ତମ ଚାଟେଶ୍ଵେଡ଼ବଲ୍ଲଭର" ଓ ବର୍ତ୍ତମାନ ଏହି ମନ୍ଦିରଟିର ନାମ ହେଲା, ଚାଟେଶ୍ଵେଡ଼ବଲ୍ଲଭର' । ଏହା ପୂର୍ବଗୋଦାବରୀ ଜିଲ୍ଲାର କୋକନଦ ତାଲୁକରେ ଅବସ୍ଥିତ ।

୧୧୯ । C. J. R. T. O—pp-25, See also I. O. Vol. 3/1. Nos. 18, 42. 99-103, 105, 125-133.

୧୨୦ । K. A. N. Shastri—Economy The of a South Indian Temple in the Chola period in; The Malaviya Commemoration Volume. 1932 and also see for detail his 'The history of South India from pre-historic times to the fall of Vijayanagar, Madras 1958, and also his '**The Cholas**—Madras—1955 for detal: p-328 ff.

୧୨୧ । Ibid—1958-pp-186

ପିତୃ ଓ ବ୍ରାହ୍ମଣମାନଙ୍କୁ ଆପ୍ୟାୟିତ କରିଥିଲେ (୧୨) । ବୋଲି ଶିଳାଲେଖରୁ ଜଣାଯାଏ । ଏହା ପ୍ରାୟ ଖ୍ରୀ: ଅ: ୧୧୩୪/୩୫ ସମୟର ଘଟଣା ହେବ । ପଶ୍ଚିମ ଓଡ଼ିଶା ପଟୁ ଦ୍ୱିତୀୟ ରତ୍ନଦେବ ଯେତେବେଳେ ଆକ୍ରମଣ କରି ଚୋଳଗଙ୍ଗଙ୍କ ଶାସନରେ ବିଘ୍ନ ଘଟାଉଥିଲେ ମଧ୍ୟ ଏଡ଼େ ବଡ଼ ସାମ୍ରାଜ୍ୟର ଅଧୀଶ୍ୱର ଚୋଳଗଙ୍ଗଙ୍କ ପକ୍ଷରେ ଏହା ସେପରି ଏକ କଷ୍ଟକର ବ୍ୟାପାର ନଥିଲା । ଏହି ସମୟ ଥିଲା ଚୋଳଗଙ୍ଗଙ୍କ ରାଜତ୍ୱକାଳ ମଧ୍ୟରେ ଏକ ଗୌରବମୟ ତଥା ଆନନ୍ଦର ମୁହୂର୍ତ୍ତ । ସେତେବେଳେ ରାଜାମାନଙ୍କର ଦିଗ୍‌ବିଜୟ କରିବାପରେ କୀର୍ତ୍ତି ରକ୍ଷାକରିବା ଥିଲା ଏକ ପ୍ରାଚୀନ ପରମ୍ପରା । ଏହି ପରମ୍ପରା ଅନୁସାରେ ମନ୍ଦିର ତୋଳାଇବା କଥା ପ୍ରଥମେ ଆସୁଥିଲା । ଏହାଦ୍ୱାରା ପ୍ରଥମେ ଦେବତା ଓ ପରେ ଋଷି, ପିତୃ ଏବଂ ବ୍ରାହ୍ମଣମାନଙ୍କୁ ସନ୍ତୁଷ୍ଟ କରିବାର ପ୍ରଥା ହିନ୍ଦୁଧର୍ମରେ ରହିଥିଲା । ଏହି ପ୍ରଥାର ଅନୁଗାମୀ ହୋଇ ଯଯାତି କେଶରୀ ଭୁବନେଶ୍ୱରରେ ଶିବମନ୍ଦିର ଓ ପୁରୀଠାରେ ପୁରୁଷୋତ୍ତମଙ୍କ ପାଇଁ ମନ୍ଦିର ନିର୍ମାଣ କରିଥିଲେ । ତାଙ୍କରି ପଦାଙ୍କ ଅନୁସରଣ କରି ଗଙ୍ଗବଂଶର ଏହି ପରାକ୍ରମୀ ରାଜା ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରର ସମକକ୍ଷ ଉଚ୍ଚଙ୍କ ପୁରୁଷୋତ୍ତମ ମନ୍ଦିର ପୁରୁଷୋତ୍ତମକ୍ଷେତ୍ରରେ ମହାବିଷ୍ଣୁ ଜଗନ୍ନାଥଙ୍କ ପାଇଁ ନିର୍ମାଣ କରିବାକୁ ଆରମ୍ଭ କରିଦେଲେ । ଦେଶରେ ଅରାଜକତା, ଆନ୍ଦୋଳନ, ବହିଃଶତ୍ରୁ ଆକ୍ରମଣ ଆଦି ଲାଗିରହିଥିଲେ ଏହା ସମ୍ଭବ ହୋଇନଥାନ୍ତା । କହିବାକୁ ଗଲେ ଚୋଳଗଙ୍ଗଙ୍କର ଶକ୍ତି, ସାମର୍ଥ୍ୟ, ମହାନୁଭବତା ଧର୍ମପ୍ରତି ଉଦାରତା ବା ଧର୍ମନିରପେକ୍ଷତା ଫଳରେ ଏହା ଥିଲା । ତାଙ୍କ ରାଜ୍ୟରେ ଏକ ଶାନ୍ତିର ସମୟ । ସେତେବେଳକୁ ଚୋଳ-ମାନଙ୍କଦ୍ୱାରା ତାଞ୍ଜୋରରେ (୧୧୬ପୃଷ୍ଠ) ବୃହଦୀଶ୍ୱର-ଶିବଙ୍କ ପାଇଁ ଏକ ପ୍ରକାଣ୍ଡ ମନ୍ଦିର ନିର୍ମିତ ହୋଇଥିଲା । ଏଣେ ଭୁବନେଶ୍ୱର ମନ୍ଦିର ତ ଓଡ଼ିଶାରେ ଶୈବମାନଙ୍କ ପାଇଁ ସୋମବଂଶୀଙ୍କ ଅମଳରୁ ନିର୍ମିତ ହୋଇସାରିଥିଲା । ମାତ୍ର ବିଷ୍ଣୁଙ୍କ ପାଇଁ ଏଡ଼େ ବିଶାଳ ମନ୍ଦିର କେଉଁଠିହେଲେ ନଥିଲା । କାରଣ, ମାଠରଙ୍କ ପରେ ଓଡ଼ିଶାରେ ସେପରି ବିଷ୍ଣୁଭକ୍ତ ରାଜା ନଥିଲେ । ଯିଏ ଥିଲେ, ସେମାନେ ବୈଷ୍ଣବଧର୍ମ ପାଇଁ ସେପରି କିଛି ଆଖିଦୃଶିଆ କାମ କରିନଥିଲେ । ଯଯାତିକେଶରୀ ଶିବଙ୍କ ପାଇଁ ମନ୍ଦିରଟିଏ ନିର୍ମାଣ କଲେ, ଅଥଚ ବିଷ୍ଣୁଙ୍କ ପାଇଁ କ୍ଷୁଦ୍ର ମନ୍ଦିରଟିଏ ପୁରୀଠାରେ ତୋଳାଇଥିଲେ । ଶୈବାଚାର୍ଯ୍ୟ ଓ ଶୈବ ରାଜାଙ୍କ ଦ୍ୱାରା ବୈଷ୍ଣବଧର୍ମ ଅନେକ କ୍ଷତଗ୍ରସ୍ତ ହୋଇଥିଲା । ଶୈବ ଓ ବୈଷ୍ଣବଙ୍କ ମଧ୍ୟରେ କଳହ ଲାଗିରହିଥିଲା । ଉଭୟେ ଉଭୟଙ୍କୁ ଏପରି ଘୃଣା କରୁଥିଲେ ଯେ, ସେମାନେ କହୁଥିଲେ ବ୍ୟାଘ୍ରଦ୍ୱାରା ଆକ୍ରାନ୍ତ ହୋଇ ମୃତ୍ୟୁବରଣ କରିବା ପରେ ଶ୍ରେୟସ୍କର ମାତ୍ର ପରସ୍ପରଙ୍କ ପାଇଁ ଅପର ମନ୍ଦିରରେ ପଶିଯାଇ ଆତ୍ମରକ୍ଷା କରିବା ଅଦ୍ଭୁତକର ।

୧୨ । I. O, Vol. III/1. No· 158 and Vol. II 2 pp. 396,

ଶୈବମାନେ କହୁଥିଲେ:—

"ବ୍ୟାଘ୍ରେଣ ଗାଢ଼୍ୟମାନୋଽପି ନ ଗଚ୍ଛେତ୍ ବିଷ୍ଣୁ ମନ୍ଦିରମ୍ ।

ସେହିପରି ବୈଷ୍ଣବମାନେ କହୁଥିଲେ:—

ବ୍ୟାଘ୍ରେଣ ତାଡ଼୍ୟମାନୋଽପି ନ ଗଚ୍ଛେତ୍ ଶଙ୍କରାଳୟମ୍ ।। ଇତ୍ୟାଦି ।।

ଏପରି ଭାବନା କେବଳ ପ୍ରଜାମାନଙ୍କ ମଧ୍ୟରେ ସୀମିତ ନଥିଲା । ରାଜାମାନେ ମଧ୍ୟ ଗୋଟାଏ ଗୋଟାଏ ଧର୍ମର ବଶବର୍ତ୍ତୀ ହୋଇ ଅନ୍ୟଧର୍ମ ପ୍ରତି ସାତନ୍ତ୍ର୍ୟ ହିଁ ଥିଲେ ଓ ଫଳରେ ଅନିଷ୍ଟ ସାଧନ କରୁଥିଲେ । ଚୋଳଗଙ୍ଗଙ୍କ ରାଜତ୍ୱ କାଳରେ ଚୋଳରାଜ କୁଲତୁଙ୍ଗ ନିଜେ ଖ୍ରୀ: ଅ: ୧୧୩୫ରେ ଚିଦାମ୍ବରଠାରେ ଏକ ବିଷ୍ଣୁ ମନ୍ଦିରରୁ ବିଷ୍ଣୁଙ୍କ ପ୍ରତିମାକୁ ନେଇ ସମୁଦ୍ରରେ ଫିଙ୍ଗିଦେଲେ ଓ ସେହି ସ୍ଥାନରେ ଶିବ ମନ୍ଦିର ନିର୍ମାଣକରି ଶିବଙ୍କୁ ପ୍ରତିଷ୍ଠା କରିଥିଲେ (୧୨୩) । ଏଥିରେ ବୈଷ୍ଣବ ପୃଷ୍ଠପୋଷକ ଚୋଳଗଙ୍ଗ ନିଶ୍ଚୟ ବ୍ୟଥିତ ହୋଇଥିବେ । ପଡ଼ୋଶୀ ରାଜ୍ୟରେ ବିଷ୍ଣୁଙ୍କର ଏ ନିର୍ଯ୍ୟାତନା ତାଙ୍କୁ ବେଶ୍ ବାଧିଥିବ । ସେଥିପାଇଁ ପୁରୁଷୋତ୍ତମକ୍ଷେତ୍ରରେ ବିଷ୍ଣୁଙ୍କର ଏ ମହାମନ୍ଦିର ତୋଳିବାରେ ସେ ନିଶ୍ଚୟ ଆଗେଇ ଆସିଥିବେ । ଏଥିରେ ପ୍ରଜାମାନଙ୍କ ମନରେ ଅଶେଷ ଆନନ୍ଦର ସଞ୍ଚାର ହୋଇଥିବ । ଏଇ ହେଲା ଏବର ଜଗନ୍ନାଥ ମନ୍ଦିର ନିର୍ମାଣର ପୃଷ୍ଠଭୂମି ଓ ଇତିହାସ (୧୨୪) । ଇତିହାସ ଏଇଠି ସରିଗଲା ବୋଲି ଭାବିନେଲେ ଏକ ଚରମ ଭୁଲ୍ ହେବ । ସ୍ୱୟଂ ସମ୍ପୂର୍ଣ୍ଣ ଜଗନ୍ନାଥଙ୍କ ଉପରେ ଆଲୋଚନା କରି ଟିକିନିଖି ବିଚାର କଲେ ଜଣାଯିବ ସେହି ଭଗ୍ନ ଅଂଶଗୁଡ଼ିକ ମଧ୍ୟ ଗୋଟିଏ ଗୋଟିଏ ପୂର୍ଣ୍ଣତାର ପ୍ରତୀକ । ଯିଏ ସ୍ୱୟଂ ଦାରୁବ୍ରହ୍ମ ଓ ବ୍ରହ୍ମର ପ୍ରତୀକ, ତାଙ୍କର ଇତିହାସ ଓ ମୌଳିକତା ଉଦ୍‌ଘାଟନ କରିବା ମାଦୃଶ ଅଳ୍ପବୁଦ୍ଧିସମ୍ପନ୍ନ ବ୍ୟକ୍ତି ପକ୍ଷରେ ସର୍ବଥା ଅସମ୍ଭବ । କାରଣ:—

"ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ ।
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ" ।।
ଓଁ, ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ ।।

---

୧୨୩ । K. A. N. Shastri-1955. P. 348; C. J. R. T. O.- P. 150.

୧୨୪ । ଚୋଡ଼ଗଙ୍ଗଙ୍କ ପରେ ଶ୍ରୀଜଗନ୍ନାଥ ମନ୍ଦିରର ସର୍ବାଙ୍ଗୀଣ ଇତିହାସ , (ଦ୍ୱାଦଶ ଶତକଠାରୁ ୧୯୦୦ ମସିହା ପର୍ଯ୍ୟନ୍ତ) ଜାଣିବାଲାଗି ମତ୍‌କୃତ "Jagannath in the History and Religious Traditions of Orissa"- Punthi Pustak, Vidhan Sarani, Calcutta, ପୁସ୍ତକ ଦର୍ଶନୀୟ ।

# ସହାୟକ ଗ୍ରନ୍ଥସୂଚୀ

## [ Bibliography ]

### ସଂସ୍କୃତ (Sanskrit)


୧ । ଅଗ୍ନିପୁରାଣମ୍—ଗୁରୁମଣ୍ଡଳ—କଲକତା—୧୯୫୭; ଆନନ୍ଦାଶ୍ରମ ସଂସ୍କୃତ ସିରିଜ୍, ପୁନା—୧୯୦୦, (A.S.S.)

୨ । ଅଥର୍ବବେଦଃ—ବରେଲୀ—୧୯୬୨; ବମ୍ବେ—୧୮୯୫—୧୮୯୮

୩ । ଅନର୍ଘରାଘବମ୍—ମୁରାରି—ବମ୍ବେ—୧୯୦୮

୪ । ଅପରାଜିତା ପୃଚ୍ଛା—ଗାୟକୋବାଡ଼ ଓରିଏଣ୍ଟାଲ ସିରିଜ୍—ବରୋଦା—୧୯୫୦ । ଏବଂ—

,, —Trans.—W.D. Whitney—Cambridge—1905

୫ । ଅଭିଜ୍ଞାନ ଶାକୁନ୍ତଳମ୍—କାଳିଦାସ—ସମ୍ପାଦନା—

୧ । ଗୋପୀନାଥ ମହାପାତ୍ର, କଟକ ।

୨ । ସାରଦାରଞ୍ଜନ ରାୟ, କଲିକତା ।

ବିଭିନ୍ନ ସଂସ୍କରଣ—୩ । ଏମ୍. ଆର୍. କାଲେ, ଦିଲ୍ଲୀ ।

୪ । ରମେନ୍ଦ୍ରମୋହନ ବୋଷ । କଲିକତା ।

୬ । ଅମରକୋଷଃ—ଅମରସିଂହ—ମଣିପ୍ରଭା—ଚୌଖମ୍ବା—ବାରାଣସୀ—୧୯୫୭

୭ । ଅଷ୍ଟାଧ୍ୟାୟୀ—ପାଣିନି—ସିଦ୍ଧାନ୍ତକୌମୁଦୀ ।

୮ । ଅହିର୍ବୁଧ୍ନ୍ୟ ସଂହିତା—ସମ୍ପାଦନା—O. F. Schrader—Madras—1916; and Poona 1912,

୯ । ଅହିର୍ବୁଧ୍ନ୍ୟସଂହିତା—2Vols.—ସମ୍ପାଦନା—ପଣ୍ଡିତ ଏମ୍. ଡି. ରାମାନୁଜାଚାର୍ଯ୍ୟ, ଦ୍ୱିତୀୟ ସଂସ୍କରଣ, ଆଡ୍ୟାରଗ୍ରନ୍ଥାଳୟ, ମାନ୍ଦ୍ରାଜ—୧୯୬୬

୧୦ । ଈଶାଦିବିଂଶୋତ୍ତର ଶତୋପନିଷଦଃ—ପଞ୍ଚମ ସଂସ୍କରଣ—ନିର୍ଣ୍ଣୟ ସାଗର ପ୍ରେସ୍, ବମ୍ବେ—୧୯୪୩ ।

୧୧ । ଋଗ୍‌ବେଦଃ—ବୈଦିକ ସଂଶୋଧନ ମଣ୍ଡଳ—4 Vols.—ପୁନା—୧୯୩୩-୪୬

୧୨ । ଐତେରେୟ ବ୍ରାହ୍ମଣ—ସଂସ୍କୃତଭାଷ୍ୟ ସହିତ—ପୁନା—୧୮୯୫ ଏବଂ—
Trans.—A. B. Keith କଥ୍‌ଙ୍କ ଅନୁବାଦ—କେମ୍ବ୍ରିଜ୍—୧୯୨୦

୧୩ । କଠୋପନିଷଦ—ସମ୍ପାଦନା —ସ୍ୱାମୀସର୍ବାନନ୍ଦ— ରାମକୃଷ୍ଣମଠ, ମାନ୍ଦ୍ରାଜ—
୧୯୬୨

୧୪ । କାଳିକାପୁରାଣମ୍— ବେଙ୍କଟେଶ୍ୱର ପ୍ରେସ୍—ବମ୍ବେ, ୧୯୦୮।

୧୫ । କୂର୍ମପୁରାଣମ୍—ବେଙ୍କଟେଶ୍ୱର ପ୍ରେସ୍, ବମ୍ବେ—୧୯୨୭ ।

୧୬ । କୌଶୀତକୀ ବ୍ରାହ୍ମଣ—ଅନୁବାଦ—ଏ. ବି. କଥ୍—କେମ୍ବ୍ରିଜ୍—୧୯୨୦ ।

୧୭ । ଗରୁଡ଼ପୁରାଣମ୍—ଚୌଖମ୍ବା—ବାରାଣସୀ, ୧୯୭୭ ।

୧୮ । ଗୀତଗୋବିନ୍ଦମ୍—ଜୟଦେବ—ଧର୍ମଗ୍ରନ୍ଥଷ୍ଟୋର—କଟକ—୧୯୭୫ ।

୧୯ । ଗୋପଥବ୍ରାହ୍ମଣ—ସମ୍ପାଦନା—ମିତ୍ର ଓ ବିଦ୍ୟାଭୂଷଣ—କଲିକତା—୧୮୭୨ ।

୨୦ । ଗୋପାଳାର୍ଚ୍ଚନବିଧିଃ—ପୋଥି ।

୨୧ । ଚତୁର୍ବର୍ଗଚିନ୍ତାମଣି—ହେମାଦ୍ରି, କଲିକତା—୧୮୭୮ । (Bibliotheca Series.)

୨୨ । ଚୈତନ୍ୟଚନ୍ଦ୍ରୋଦୟଃ—କବିକର୍ଣ୍ଣପୁର, ବାରାଣସୀ—୧୯୬୬ ।

୨୩ । ଛାନ୍ଦୋଗ୍ୟୋପନିଷଦ—ରାମକୃଷ୍ଣମଠ (Mylapore), ମାନ୍ଦ୍ରାଜ—୧୯୬୨ ।

୨୪ । ତୈତ୍ତିରୀୟସ୍ୟ ବ୍ରାହ୍ମଣ—ସମ୍ପାଦନା —ଆର୍. ମିତ୍ର—କଲିକତା—୧୮୮୫ ।

୨୫ । ନାରଦୀୟ ମହାପୁରାଣ—ବେଙ୍କଟେଶ୍ୱର ପ୍ରେସ୍—ବମ୍ବେ—୧୯୦୫ ।

୨୬ । ନିରୁକ୍ତ—ଯାସ୍କ ।

୨୭ । ନୀଳାଦ୍ରିନାଥ ପୂଜାବିଧିଃ—ପୋଥି ।

୨୮ । ନୀଳାଦ୍ରିମହୋଦୟମ୍—ସୋନପୁର ରାଜା ପ୍ରକାଶିତ—ପ୍ରଥମ ସଂସ୍କରଣ—
କଟକ-୧୯୨୬ ଏବଂ ଶ୍ରୀଧର ମହାପାତ୍ର ସମ୍ପାଦିତ—ଗ୍ରନ୍ଥମନ୍ଦିର, କଟକ—୧୯୮୫

୨୯ । ନୈଷଧୀୟଚରିତମ୍—ଶ୍ରୀହର୍ଷ ନାରାୟଣୀ ଟୀକା—୧୯୨୭ । ବେଙ୍କଟେଶ୍ୱର
ପ୍ରେସ୍, ବମ୍ବେ—(୧୯୮୪ ସଂଭତ୍ର)

୩୦ । ପଣ୍ଡିତସର୍ବସ୍ୱ—ଉତ୍କଳବିଶ୍ୱବିଦ୍ୟାଳୟ, କଟକ—୧୯୩୬ ।

୩୧ । ପଦ୍ମପୁରାଣମ୍—ଗୁରୁମଣ୍ଡଳ – ତୃତୀୟ-ଚତୁର୍ଥଖଣ୍ଡ, କଲିକତା—୧୯୫୮ । ଏବଂ –
ଆନନ୍ଦାଶ୍ରମ – ପୁନା – ୧୮୯୩ -୯୪।

୩୨। ପାଶୁପତସୂତ୍ରମ୍ — ଗାଏକୋବାଡ଼ ଓରିଏଣ୍ଟାଲ୍ ସିରିଜ — ବରୋଦା ।

୩୩। ବରାହପୁରାଣମ୍ — ବରେଲୀ — ୧୯୭୩

୩୪। ବିଷ୍ଣୁଧର୍ମୋତ୍ତରପୁରାଣମ୍ — ସମ୍ପାଦନା — ପ୍ରିୟବାଳ ଶାହ — ବରୋଦା — ୧୯୫୮ ଏବଂ ଗାଏକୋବାଡ଼ ସଂସ୍କରଣ ବରୋଦା — ୧୯୫୮ ।

୩୫। ବିଷ୍ଣୁପୁରାଣମ୍ — ଗୀତାପ୍ରେସ୍, ଗୋରଖପୁର — ୨୦୩୩ ସମ୍ବତ୍ ଅଷ୍ଟମ ସଂସ୍କରଣ ।

୩୬। ବିଷ୍ଣୁସହସ୍ରନାମସ୍ତୋତ୍ରମ୍ — ରାମକୃଷ୍ଣସେବା ସଂଘ, ଉତ୍ତରା, କୌଶଲ୍ୟାଗଙ୍ଗ, ଭୁବନେଶ୍ୱର-୨ — ତା ୨୩-୧୦-୧୯୮୫ ।

୩୭। ବୃହଦାରଣ୍ୟକୋପନିଷଦ — ରାମକୃଷ୍ଣମଠ, ମାଡ୍ରାଜ — ୧୯୬୨ ।

୩୮। ବୃହଦ୍ଦେବତା — ସମ୍ପାଦନା — Macdonnel — Harvard Oriental Series — 1904, ଏବଂ ଦିଲ୍ଲୀ ସଂସ୍କରଣ — ୧୯୬୫

୩୯। ବୃହତ୍ ସଂହିତା — ବରାହମିହିର — ଅନୁବାଦ — ଭି. ଏସ୍. ଶାସ୍ତ୍ରୀ (V. S. Shastri) — ଇଂରାଜୀ — ବାଙ୍ଗାଲୋର — ୧୯୪୭ ।
ଏବଂ, ହିନ୍ଦୀ ଅନୁବାଦ — ଏ. ଏନ୍. ଝା — ବାରାଣସୀ -- ୧୯୫୯'

୪୦। ବେଦାନ୍ତଦର୍ଶନ (ବ୍ରହ୍ମସୂତ୍ରମ୍) — ବରେଲୀ -- ୧୯୬୫

୪୧। ବୈଖାନସାଗମମ୍ -- ସମ୍ପାଦନା -- କେ: ଏସ୍: ଶାସ୍ତ୍ରୀ -- ତ୍ରିଭେନ୍ଦ୍ରମ୍ -- ୧୯୩୫

୪୨। ବ୍ରହ୍ମପୁରାଣମ୍ — ପୁନା -- ଆନନ୍ଦାଶ୍ରମ — ୧୮୯୫

୪୩। ବ୍ରହ୍ମସୂତ୍ରମ୍ — ଚମନଲାଲ୍ ସମ୍ପାଦିତ -- ବରେଲୀ -- ୧୯୮୦

୪୪। ଭବିଷ୍ୟପୁରାଣମ୍ — ବରେଲୀ — ୧୯୭୪ ।

୪୫। ଭାଗବତପୁରାଣମ୍ — ନିର୍ଣ୍ଣୟସାଗର ପ୍ରେସ୍, ବମ୍ବେ, ୧୯୧୬ ।

୪୬। ମତ୍ସ୍ୟପୁରାଣମ୍ -- ଆନନ୍ଦାଶ୍ରମ, ପୁନା -- ୧୯୦୭ ।

୪୭। ମହାଭାରତମ୍ — ଭଣ୍ଡାରକର ଓରିଏଣ୍ଟାଲ ରିସର୍ଚ୍ଚ, ପୁନା — ୧୯୨୭-୧୯୬୦ ।

୪୮। ମାନସୋଲ୍ଲାସ — ଗାଏକୋବାଡ଼ ଓରିଏଣ୍ଟାଲ୍ ସିରିଜ୍, ବରୋଦା — ୧୯୩୯

୪୯। ମେଘଦୂତମ୍ — କାଳିଦାସ — ସମ୍ପାଦନା — ଗୋପୀନାଥ ମହାପାତ୍ର, କଟକ — ୧୯୮୬ ।

୫୦। ରଘୁବଂଶମ୍ — କାଳିଦାସ — ଚୌଖମ୍ବା — ମଣିପ୍ରଭା — ବାରାଣସୀ — ବି: ସଂ: ୨୦୦୭

୫୧। ରଘୁବଂଶମ୍ -- କାଳିଦାସ -- ସମ୍ପାଦନା -- ଏମ୍. ଆର୍. କାଲେ; -- ମୋତିଲାଲ୍ -- ଦିଲ୍ଲୀ -- ୧୯୭୨ ।

୫୨ । ରାମାୟଣମ୍—ବାଲ୍ମୀକି--ଗୀତାପ୍ରେସ୍, ଗୋରଖପୁର ବି: ସ: ୨୦୧୭ ।

୫୩ । ଲିଙ୍ଗପୁରାଣମ୍--ବେଙ୍କଟେଶ୍ୱର ପ୍ରେସ୍--ବମ୍ବେ, ସମ୍ବତ୍ ୧୯୮୭ ।

୫୪ । ଶତପଥବ୍ରାହ୍ମଣ--ବୈଦିକ ଯନ୍ତ୍ରାଳୟ--ଆଜମେର୍, ସମ୍ବତ୍ ୧୯୫୯ ।

୫୫ । ଶିବପୁରାଣମ୍--ବରେଲୀ--୧୯୭୦ ।

୫୬ । ଶିଲ୍ପରତ୍ନମ୍--ତ୍ରିବେନ୍ଦ୍ରମ୍ ସଂସ୍କୃତ ସିରିଜ୍--୧୯୨୯ ।

୫୭ । ଶ୍ରୀମଦ୍ ଭଗବଦ୍ ଗୀତା—ଗୀତା ପ୍ରେସ, ସମ୍ବତ୍—୧୯୯୫ ।

୫୮ । ଶୁକ୍ଳନୀତିଃ--ଏସ୍. ବ ପ୍ରେସ୍ (S. V. Press)--୧। ୪୭ ।

୫୯ । ଶ୍ୱେତାଶ୍ୱେତର ଉପନିଷଦ--ରାମକୃଷ୍ଣମଠ--ମାଦ୍ରାଜ – ୧୯୬୨ ।

୬୦ । ସ୍କନ୍ଦପୁରାଣ – ବେଙ୍କଟେଶ୍ୱର ପ୍ରେସ୍ – ବମ୍ବେ – ୧୯୦୯; ଏବଂ ଗୁରୁମଣ୍ଡଳ ସଂସ୍କରଣ – କଲିକତା – ୧୯୬୦ ।

୬୧ । ସାଂଖ୍ୟକାରିକା – ଈଶ୍ୱରକୃଷ୍ଣ – ଭାଷ୍ୟ – ବାଚସ୍ପତି ମିଶ୍ରଙ୍କର 'ସାଂଖ୍ୟତତ୍ତ୍ୱ କୌମୁଦୀ' ସହିତ – ସମ୍ପାଦନା – ଏସ୍. ଏ.ଶ୍ରୀ· ନିବାସନ୍ – ହମ୍ବୁର୍ଗ – ୧୯୬୭ ।

୬୨ । ସାଂଖ୍ୟଦର୍ଶନ – (ସାଂଖ୍ୟସୂତ୍ର – କପିଳ) ସମ୍ପାଦନା – ରାମଶର୍ମା ଆଚାର୍ଯ୍ୟ – ବରେଲୀ – ୧୯୮୨ ।

୬୩ । ହରିବଂଶମ୍ – ବରେଲୀ – ୧୯୬୭ ।

୬୪ । ହରିବଂଶପୁରାଣ – ସମ୍ପାଦନା – ଜିନସେନସୂରୀ – ପୁନା – ୧୯୩୦ ।

୬୫ । ହେବଜ୍ରତନ୍ତ୍ର – ବଙ୍ଗବାସୀ ସଂସ୍କରଣ । କଲିକତା ।

## ଇଂରାଜୀ (English)

1. Acharya P.—Studies in the Orissan History, Archaeology and Archives—Baripada—Orissa-1969.

2. Agarwal V. S.—Indian Art—Varanasi-1965.

3. ,, Matsya Purana a study—Varanasi-1963.

4. ,, —Vamana Purana a study—Varanasi-1964.

5. Allan J.—A catalogue of Indian coins in British Museum-London—1936.

6. Apte V.S.—The students Sanskrit English Dictionary Delhi-1965.

7. Awasthy A. B. L.—Studies in Skanda Purana - part 1.-Locknow-1966.

8. Banerjea J. N.—Development of Hindu Iconography-Cal.—1956.

9. Bhattasali N. K.—Iconography of Buddhist and Brahmanical sculptures in Dacca Museum—Dacca-1929.

10. Brown Percy—Indian Architecture—Bombay-1965.

11. Chakravarty Pulina Vihari—Origin and Development of Sankhya system of thought, Calcutta-1951,

12. Danielou Alaion—Hindu Polytheism—London-1964.

13. Das M. N.—Ed.—Side lights of History and Orissan culture—Cuttack-1977.

14. Das N. K.—Hints on the Significance of the History of Jagannath. O.H.R.J. VII—1958,1-36.

15. Dasgupta S. N.—A history of Sanskrit literature—Calcutta University-1962.

16. De S.K.—The early history of Vaisnava faith and movement of Bengal—Calcutta-1961.

17. Desai kalpana—Iconography of Vishnu, Delhi-1973.

18. Dixit M. G.—Sirpur and Rajim temples. (Pages lost).

19. Eschmann A., Hulke H., Tripathy G. C.—The Cult fo Jagannath and Regional Traditions of Orissa, Delhi-1978.

20. Fabri C.—History of the Art of Orissa—Cal-1974.

21. Ganguli M. M.—Orissa and Her remains—Cal. 1912.

22. Gonda J.—Aspects of Early Vaisnavism—Utrecht-1954.

23. Hopkins E. W.—Religions of India—Boston.-1895.

24. Hultzsch. E— (Ed.) Carpus Inscriptions Indicarum-Vol. 1. (Ashokan Inscriptions)—Oxford-1925.

25. Hunter W.—History of Orissa—Smith Elder and Co, 15 Waterloo Palace—1872.

26. Jayaswal Sauvira—The Origin and Development of Vaishnavism.—Delhi—1967.

27. „ —Early History of Vaishnavism - Delhi-1967.

28. Kaningham Alexander—Bhilsa topes and Barahut stupa - London-1954.

29. Keith A. B.—A History of Sanskrit literature - London-1961.

30. Macdonell A. A.—History of Sanskrit literature—London-1928.

31. „ —Vedic Index - Ed. with A. B. Keith—2 vols. Motilal, Delhi-1967.

32. „ —Vedic Mythology--Varanasi-1963.

33. Mahatab H. K.—Misterious Jagannath and Problems of History of Orissa. (No date). (May be in 1983 ?). Kality Press, Bhubaneswar.

34. Mishra Vinayak—Orissa under the Bhauma Kings-Calcutta-1934.

35. Mishra K. C.—The Cult of Jagannath - Firma K. L. M-Cal.1971.

36. Mitra R. L.—The Antiquities of Orissa, 2 Vol.s. Cal-1875. Vol. II—Cal.-1880.

37. Mital A. C.—An early history of Orissa—Benaras.-1962.

38. Mahapatra Gopinath - Jagannath in the History and Religious Traditions of Orissa. Punthipustak-Calcutta-1982.

39. „ „—The Land of Vishnu, (A study of Jagannath)-D. K. Publisher - Delhi-1979.

40. Mohapatra K. N.—A descriptive catalogue of Sanskrit Manuscripts - B. B. S. R. - Vol. 1. 1958, Vol. 2. 1960.

41. Mohapatrā K. N.—The Jagannath Tesbples in Eastern India, Bhubaneswar-1977.

42. Mohapatra L. K.—Ritual Kinship in Orissa—Bulletin of Deccan college, Res. Inst. Poona - XXX, 1-2. (1973) 89-105.

43. Panigrahi K. C.—Archaeological Remains at Bhubaneswar—Cal. 1961.

44. ,, —Chronology of the Bhaumakaras and the Somavamsi kings of Orissa—Madras.,-1961.

45. Rajguru S. N.—Inscriptions of Orissa - Vol. 1. (2-5) - B.B.S.R. - 1958-66

46. Rao T. A. Gopinath—Elements of Hindu Iconography- Madras. 1914 and Varanasi - 1968.

47. Ray Chaudhuri H. C.—Early History of Vaisnava sect.-Cal.-1942.

48. Renou L.—Religions of India - London-1953.

49. Sankhya Tirtha V. M.—Devata murti prakarana and Rupamandana - Calcutta-1936.

50. Saraswati S. K.—Early sculptures of Bengal - Cal-1962.

51. Sharma Ramashraya—Socio-political study of Valmiki Ramayan - Motilal. Delhi-1971.

52. Shastri K.A.N.—The history of south India from pre-historic times to the full of Vijayanagar - Madras-1958.
,, —The Cholas - Madras-1955.

53. Sircar D. C.—The Saktapithas - Motilal. - Delhi-1973.

54. Sivaram murti C.—Indian sculpture - New Delhi-1961.

55. Smith D.—Vaisnava Iconography Madras-1969.

56. Stella Kramrisch—The Hindu Temple - Cal-1946.

57. Takakusu—(Ed.)—A record of Buddhist practices.- Oxford. 1896.

58. Vidyanathan K. S.—The Kalinga Wars of the reign of Kulottunga-(in Qrart. J. Mythic Society, XXVIII—1938. (241-259).

59. Vogel J. Ph.—Catalogue of the Archaeological Museum,- Mathura - Allahabad-1911.

60. ,, —Catalogue of the British Museum - Chamb.- Cal. - 1909.

61. Winternit Z.M.—History of Indian liteature. Vol.III - Delhi-1963.

ହିନ୍ଦୀ, ବଙ୍ଗଳା, ଓଡ଼ିଆ ଇତ୍ୟାଦିରେ ରଚିତ ସହାୟକ ଗ୍ରନ୍ଥାବଳୀ—

୧। ଅବସ୍ଥି ଏ. ବି. ଏଲ୍—ଗୁରୁଡ଼ପୁରାଣ, ଏକ ଅଧ୍ୟୟନ, ହିନ୍ଦୀ, ଲକ୍ଷ୍ନୌ ୧୯୬୮

୨। ଉପାଧ୍ୟାୟ ବଳଦେବ—ସଂସ୍କୃତ ସାହିତ୍ୟ କା ଇତିହାସ, ବାରାଣସୀ—୧୯୬୮

୩। ,, —ପୁରାଣବିମର୍ଶ, ବାରାଣସୀ—୧୯୬୫

୪। ,, —ଭାରତୀୟ ଦର୍ଶନ, ବାରାଣସୀ, ଓଡ଼ିଆ ଅନୁବାଦ, ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମିଶ୍ର—ଓଡ଼ିଆ ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର—୧୯୭୭

୫। କବିରାଜ କୃଷ୍ଣଦାସ—ଚୈତନ୍ୟ ଚରିତାମୃତ, ବଙ୍ଗଳା, କଲିକତା ୧୯୫୭

୬। ତ୍ରିପାଠୀ ଉମାଶଙ୍କର—ଶିବପୁରାଣକା ଦାର୍ଶନିକ ତଥା ଧାର୍ମିକ ଆଲୋଚନା, ବାରାଣସୀ ୧୯୭୭

୭। ଦାସ ଅଚ୍ୟୁତାନନ୍ଦ—ଶୂନ୍ୟସଂହିତା, କଟକ ୧୯୧୪

୮। ଦାସ ଈଶ୍ୱର—ଚୈତନ୍ୟ ଭାଗବତ, ଓଡ଼ିଆ, ଭୁବନେଶ୍ୱର—୧୯୬୬

୯। ଦାସ ଜଗନ୍ନାଥ—ଓଡ଼ିଆ ଭାଗବତ, କଟକ ୧୯୦୪

୧୦। ଦାସ ଦିବାକର—ଜଗନ୍ନାଥ ଚରିତାମୃତ, ପୋଥି No. cy· 806. ରାଜ୍ୟସଂଗ୍ରହାଳୟ, ଭୁବନେଶ୍ୱର।

୧୧। ଦାସ ନୀଳକଣ୍ଠ—ଗୀତା ପ୍ରବେଶ, ଓଡ଼ିଆ, କଟକ।

୧୨। ଦାସ ବୃନ୍ଦାବନ—ଚୈତନ୍ୟ ଭାଗବତ, ବଙ୍ଗଳା, କଲିକତା ୧୯୨୮

୧୩। ଦାଶ ବୈଷ୍ଣବ ଚରଣ—ଯାଜପୁର ବିରଜାକ୍ଷେତ୍ର ପରିକ୍ରମା, ଯାଜପୁର ୧୯୭୮

୧୪। ଦାସ ଯଶୋବନ୍ତ—ପ୍ରେମଭକ୍ତି ବ୍ରହ୍ମଗୀତା, କଟକ

୧୫। ଦାସ ଶିଶୁକୃଷ୍ଣ—ଦେଉଳତୋଳା, କଟକ (ଓଡ଼ିଆ ଜଗନ୍ନାଥ କମ୍ପାନୀ)

୧୬। ଦାସ ସାରଳା—ମହାଭାରତ, ଓଡ଼ିଆ, ସମ୍ପାଦନା, ଆର୍ତ୍ତବଲ୍ଲଭ ମହାନ୍ତି ଭୁବନେଶ୍ୱର ୧୯୬୮-୭୦

୧୭ । ଦାସ ସୂର୍ଯ୍ୟନାରାୟଣ — ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥତତ୍ତ୍ୱ, ଫ୍ରେଣ୍ଡସ୍ ପବ୍ଲିସର, କଟକ ।

୧୮ । ଦେବ ଜୟାନନ୍ଦ — ଚୈତନ୍ୟମଙ୍ଗଳ, ବଙ୍ଗଳା ସମ୍ପାଦନା, ବି. ବି. ମଜୁମଦାର ଓ ଏସ୍. ମୁଖୋପାଧ୍ୟାୟ, କଲିକତା,୧୯୭୧ ।

୧୯ । ପଟ୍ଟନାୟକ ସୁଧାକର — (ସମ୍ପାଦିତ),. ଚକଡ଼ାପୋଥି ଓ ଚକଡ଼ା ଭୁଆଣ ଚୌଣ୍ଡି ଚକଡ଼ା କୃତ, କଟକ ୧୯୫୯ ।

୨୦ । ପଣ୍ଡା ଆର୍. ପି — ପ୍ରାଚୀନଦୀର ଐତିହାସିକ ବିଭବ, କଟକ ୧୯୬୯ ।

୨୧ । ପାଢ଼ୀ ବେଣୀମାଧବ — ଦାରୁଦେବତା, କଟକ ୧୯୬୪ ।.

୨୨ । ବାବାଜୀ କେ: ଏନ୍. — ପଞ୍ଚୋପାସନା (ବଙ୍ଗଳା), କଲିକତା ୧୯୬୦ ।

୨୩ । ବିଦ୍ୟାବିନୋଦ ଏମ୍. ଏନ୍. — ଶ୍ରୀକ୍ଷେତ୍ର, ବଙ୍ଗଳା, ଗୌଡ଼ୀୟ ମିଶନ କଲିକତା ।

୨୪ । ବିପ୍ର ଦିବାକର — ଜଗନ୍ନାଥାମୃତ ଗୀତା (ପୋଥି) ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

୨୫ । ମହତାବ ହରେକୃଷ୍ଣ — ଓଡ଼ିଆ ଇତିହାସ (ପ୍ରଥମଭାଗ) ଷ୍ଟୁଡ଼େଣ୍ଟସ ଷ୍ଟୋର, କଟକ ୧୯୬୪ ।

୨୬ । ମହାନ୍ତି ଆର୍ତ୍ତବଲ୍ଲଭ — ସମ୍ପାଦିତ, ମାଦଳାପାଞ୍ଜି, ପ୍ରାଚୀସଂସ୍କରଣ ୧୯୬୯ ।

୨୭ । ମହାନ୍ତି ବଂଶୀଧର — ଶ୍ରୀଜଗନ୍ନାଥ, କଟକ, ପ୍ରଥମ ସଂସ୍କରଣ ।

୨୮ । ମହାପାତ୍ର କେଦାରନାଥ — ଶ୍ରୀ ଜୟଦେବ ଓ ଗୀତଗୋବିନ୍ଦ, ଭୁବନେଶ୍ୱର ୧୯୭୩

୨୯ । ମହାପାତ୍ର ଗୋପୀନାଥ — ସଂସ୍କୃତ ସାହିତ୍ୟର ଇତିହାସ ନାଳନ୍ଦା, କଟକ ୧୯୭୫

୩୦ । ଯଦୁବଂଶୀ ଲେ: ଡା: — ଶୈବ ମତ, ପାଟନା ୧୯୫୫ ।

୩୧ । ଶାସ୍ତ୍ରୀ ଦୋଳଗୋବିନ୍ଦ — ନାଥଧର୍ମର କ୍ରମବିକାଶ, କଟକ — ୧୯୭୧ ।

୩୨ । ସରକାର ଗୁରୁଦାସ — ମନ୍ଦିରେର କଥା — କଲିକତା ୧୯୫୧

୩୩ । ସାମନ୍ତରାୟ ନଟବର — ଓଡ଼ିଆ ବୈଷ୍ଣବ ସାହିତ୍ୟ କଟକ ୧୯୫୯ ।

**Journals, Reports, Proceedings, Records, News-letters:—**

1. Asiatic Researches.
2. Bhanja Pradipa, 1349. sala (Oriya)
3. Bharati.—Utkal University Research journal, 1973.
4. Epigraphica Indicasala Vol. XXIV; XXXI-

ଦାସଗୋବାତାମ୍ର ପଟ୍ଟ ।

5. Indian Historical Quarterly-Vol.XIV, 3; 1938-
ଜାଗଗୁଫାଶିଳାଲେଖ ।
6. International seminal on Buddhism—Cuttack-1976.
(The Universe.)
7. Jagannath Smaranika - New Delhi - Vol. 1- 1977.
8. Journal of Andhra Historical Research Society.
Vol X. - 1937. (The Sailodbhava dynasty—R. C. Majumdar.)
9. Journal of Asiatic Society, Bengal - Vol. LXV, 1896; Vol. VII-1911. (443-447-The Article of B. C. Majumdar.)
10. Journal of Bhandarkar Research Institute - Poona-1936-37.
11. Journal of Bihar Orissa Research Society.
12. Journal of Bombay branch of Royal Asiatic Society.
10. Mahakosal Historical Society.
14. Naba Bharata, (Oriya).
15. Naba Jivana, (Oriya).
16. Orissa Historical Research Journal. (O.H.R.J) Vol. XVII, and my paper here 'Misterious Daru-Brahma'-Vol. XXIII-No. 1-4.
17. Orissa Turism News letter—Febru March—1983—
18. Proceedings of Indian History Congress - Nagpur-1950.
19. proceedings of Orissa History Congress-Berhampur-1977.
20. Purana Bulletin - Kashiraj Trust, Varanasi, 1979 January and July issues.
21. Records of Rights, Prepared under Puri, Sri Jagannath Temple Act Orissa Act, XIV of 1952 by L. Panda. ( 4 Vol.s., Govt. Press; Cuttack 1953.)
22. Reports of Archaeological Survey of India 1808-1809.
23. Utkal Sahitya 1329 Sala. (Oriya)
24. Souvenir of Indo German Seminar on German thinkers..., Published by 'The Universe' Maitri Sarani, Cuttack on 5.10.1986.
25. Srimandira Samachara (Oriya) Published from Jagannath Temple, Puri—1970-71.

———